# ଆମ ମଧୁସୂଦନ

ଲେଖକ
**ସୁରସିଂହ ପଟ୍ଟନାୟକ**

ପ୍ରକାଶକ:
ଆମ ଓଡ଼ିଶା
୪ ଆର୍ ୧/୨, ୟୁନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ:
ସାକେତ୍ ପ୍ରେସ୍ ସର୍ଭିସ୍
ଭୁବନେଶ୍ୱର-୧୫

ପ୍ରଥମ ପ୍ରକାଶ: ୨୮ ଏପ୍ରିଲ, ୨୦୧୦


ପ୍ରଚ୍ଛଦ:
ଶଶିକାନ୍ତ ରାଉତ

ମୂଲ୍ୟ: ଟ.୨୪୦/-

AMA MADHUSUDAN
by Surasinha Patnaik,
Publisher: Ama Odisha,
4R 1/2, unit-3, Bhubaneswar-1

Price: Rs.240/-

# ଦୁଇପଦ କଥା

ଏହି ପୁସ୍ତକର ପ୍ରାରମ୍ଭରେ ସ୍ଥାନିତ ମଧୁସୂଦନ ଦାସଙ୍କ ''ମାତୃ ଆରାଧନାରେ ଜନ୍ମଭୂମିର ଆବାହନ'' ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ପ୍ରେରଣାଦାୟକ । ସର୍ବାଗ୍ରେ ମଧୁସୂଦନ ହେଉଛନ୍ତି ନବସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରତିଷ୍ଠାତା । ଓଡ଼ିଶାର ସ୍ୱାଧୀନତାର ରବି ୧୫୬୮ ସାଲରେ ଅସ୍ତମିତ ହେବା ପରେ ଓଡ଼ିଶା ପ୍ରଦେଶକୁ ସ୍ୱତନ୍ତ୍ର ସତ୍ତାର ପରିଚୟ ଓ ସ୍ୱୀକୃତି ମିଳିଥିଲା ୧୯୩୬ ସାଲରେ ଏବଂ ଓଡ଼ିଶା ସମଗ୍ର ଦେଶର ପ୍ରଥମ ଭାଷାଭିତ୍ତିକ ପ୍ରଦେଶର ମାନ୍ୟତା ପାଇଥିଲା । ଏହି ପରିପ୍ରେକ୍ଷୀରେ ମଧୁସୂଦନ ଦାସଙ୍କ ଜୀବନୀ ଓ କାର୍ଯ୍ୟାବଳୀର ପର୍ଯ୍ୟାଲୋଚନା ଅତ୍ୟନ୍ତ ପ୍ରାସଙ୍ଗିକ ମନେହୁଏ । ଏହି କ୍ଷେତ୍ରରେ ନବକିଶୋର ଦାସଙ୍କ 'ଉତ୍କଳ ଗୌରବ ମଧୁସୂଦନ' (୧୯୫୧), ଓଡ଼ିଆ ଜାତିର ମହାକାବ୍ୟ ରୂପେ ସୁରେନ୍ଦ୍ର ମହାନ୍ତିଙ୍କ 'ଶତାବ୍ଦୀର ସୂର୍ଯ୍ୟ' (୧୯୭୦) ଓ 'କୁଳବୃଦ୍ଧ' (୧୯୭୮), ସୂର୍ଯ୍ୟନାରାୟଣ ଦାସଙ୍କ 'ଦେଶପ୍ରାଣ ମଧୁସୂଦନ' (୧୯୭୧) ଓ ରାଉରକେଲା ପ୍ରଗତି ଉତ୍କଳ ସଂଘର ବିଭିନ୍ନ ପ୍ରକାଶନ ପ୍ରଣିଧାନଯୋଗ୍ୟ ।

ମଧୁସୂଦନ ଦାସଙ୍କର ଶତବାର୍ଷିକୀ ସମାରୋହ ୧୯୪୮ ସାଲରେ ପାଳନ କରିବାକୁ ଓଡ଼ିଆ ଜାତି ଭୁଲି ଯାଇଥିଲା । ତେଣୁ ତାଙ୍କର ଦେଢ଼ଶହ ବର୍ଷ ଜୟନ୍ତୀ ୧୯୯୮-୯୯ ସାଲରେ ପାଳନ କରିବାକୁ ତତ୍ପରତା ପ୍ରକାଶ ପାଇଲା । ସେତେବେଳକୁ ୧୯୧୩-୧୬ ସାଲ ମଧ୍ୟରେ କେନ୍ଦ୍ରୀୟ ଇମ୍ପେରିଆଲ କାଉନ୍‌ସିଲରେ, ଭାରତରେ ୟୁରୋପୀୟ ଉପନିବେଶବାଦ ବିରୋଧରେ ମଧୁସୂଦନ ଦେଇଥିବା ପ୍ରଚଣ୍ଡ ଓ ଅଗ୍ନିଗର୍ଭ ଭାଷଣ ପ୍ରକାଶ ପାଇସାରିଥିଲା । ପୁଣି ମହାତ୍ମାଗାନ୍ଧୀ ଯେପରି ମଧୁବାବୁଙ୍କୁ ତାଙ୍କର ଅନ୍ୟତମ ମାର୍ଗଦର୍ଶକ ରୂପେ ଉଚ୍ଛ୍ୱସିତ ଶ୍ରଦ୍ଧାଞ୍ଜଳି ଦେଇଥିଲେ, ଗାନ୍ଧୀ ରଚନାବଳୀର ସଂକଳନ ଫଳରେ ତାହା ମଧୁସୂଦନଙ୍କୁ ନୂତନ ଆଙ୍ଗିକ ବିଭବରେ ଉଦ୍‌ଭାସିତ କରିଥିଲା । ଏହା ମଧ୍ୟ ସ୍ମରଣୀୟ ଯେ ମହାତ୍ମାଗାନ୍ଧୀ ହେଉଛନ୍ତି ସମଗ୍ର ଭାରତର ଏକମାତ୍ର ନେତୃପୁରୁଷ- ଯେ ପରାଧୀନ ଭାରତରେ ମଧ୍ୟ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସ୍ଥାପନାକୁ ସ୍ୱୀକୃତି ପ୍ରଦାନ କରିଥିଲେ । ପୁଣି ମଧୁସୂଦନ ଯେଉଁ ସାମ୍ବିଧାନିକ ମାର୍ଗ ଓ ପନ୍ଥାରେ ୧୯୨୮ ସାଲରୁ ଓଡ଼ିଶା ପ୍ରଦେଶ ସ୍ଥାପନା ପାଇଁ ସଂଗ୍ରାମ ସଂଚାଳିତ କରିଥିଲେ, ଭାରତରତ୍ନ ଭୀମରାଓ ଆମ୍ବେଦକର ମଧ୍ୟ ୧୯୨୮ ସାଲରୁ ଦଳିତ ଜାତିର ସଂସ୍ଥାପନା ପାଇଁ ସେହି ସାମ୍ବିଧାନିକ ମାର୍ଗ ଓ ପନ୍ଥା ଗ୍ରହଣ କରିଥିଲେ । ଆମ୍ବେଦକରଙ୍କ ସହିତ ମହାତ୍ମାଗାନ୍ଧୀ ଓ ମଧୁସୂଦନ ଦଳିତ ଜାତିର ଉନ୍ନତି ପାଇଁ ସମର୍ପିତ ଥିଲେ ।

ଏହି ସମସ୍ତ ଦୃଷ୍ଟିକୋଣ ତଥା ମଧୁସୂଦନଙ୍କ ଜୀବନର କିଛି ଅନାଲୋଚିତ ଦିଗ ଉନ୍ମୀଳନ କରି ସ୍ୱତନ୍ତ୍ର ଲେଖାମାନ ପ୍ରକାଶ ଲାଗି ଆବଶ୍ୟକତା ଅନୁଭୂତ ହେଲା । ଏହି ପରିପ୍ରେକ୍ଷୀରେ ମୁଁ ୧୯୯୭ ସାଲରୁ କ୍ରମାଗତ ଭାବେ ମଧୁସୂଦନଙ୍କ ଉପରେ ସ୍ୱତନ୍ତ୍ର ଲେଖାମାନ 'ସମ୍ବାଦ'ରେ ପ୍ରକାଶ କରି ଆସୁଥିଲି ।

'ଆମ ଓଡ଼ିଶା'ର ଅଧ୍ୟକ୍ଷ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ ବେଶ୍ କିଛିବର୍ଷ ହେଲା ଏପ୍ରିଲ ୨୮ ତାରିଖ ମଧୁସୂଦନ ଦାସଙ୍କ ଜୟନ୍ତୀକୁ 'ସ୍ୱାଭିମାନ ଦିବସ' ରୂପେ ସମଗ୍ର ଓଡ଼ିଶାରେ ପାଳନ କରି ଆସୁଛନ୍ତି । ଏହି ପରିପ୍ରେକ୍ଷୀରେ ପ୍ରାୟ ଦୁଇବର୍ଷ ତଳେ, ମଧୁସୂଦନଙ୍କ ଜୀବନୀ ଓ ଉପଲବ୍ଧି ଆଧାରରେ ଏକ ପୁସ୍ତକ ରଚନା ପାଇଁ ସେ ମୋତେ ଅନୁରୋଧ କଲେ । ମାତ୍ର ଏଭଳି ଏକ ବିରାଟ ପୁସ୍ତକର ପରିକଳ୍ପନା ଓ ଉପସ୍ଥାପନା ମୋ ପକ୍ଷରେ ସମ୍ଭବ ନଥିଲା । ଅନ୍ୟ ପକ୍ଷରେ କେତେକ ସହୃଦୟ ପାଠକ ପାଠିକା ବିଭିନ୍ନ ସମୟରେ ମଧୁସୂଦନଙ୍କ ଉପରେ ଲେଖିଥିବା ପ୍ରବନ୍ଧଗୁଡ଼ିକୁ ସଂକଳିତ କରି ଏକ ପୁସ୍ତକ ପ୍ରସ୍ତୁତ କରିବାପାଇଁ ଅନୁରୋଧ କରୁଥିଲେ । ସେହି ପ୍ରସ୍ତାବ ଆମ ଓଡ଼ିଶାର ଅଧ୍ୟକ୍ଷ ସୌମ୍ୟରଂଜନ ପଟ୍ଟନାୟକଙ୍କ ସମ୍ମତି ପାଇବା ଫଳରେ ଆଜି ଏହି ପୁସ୍ତକଟି ସମ୍ଭବ ହୋଇଛି । ଏଥିପାଇଁ ମୁଁ ଶ୍ରଦ୍ଧେୟ ସୌମ୍ୟରଂଜନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ପୁସ୍ତକରେ ସଂକଳିତ ପ୍ରବନ୍ଧଗୁଡ଼ିକ ମୁଖ୍ୟତଃ 'ସମ୍ବାଦ'ରେ ପ୍ରକାଶ ପାଇଥିଲା । ଅନ୍ୟ କିଛି ପ୍ରକାଶ ପାଇଥିଲା 'ଅନୁପମ ଭାରତ', 'ସଚିତ୍ର ବିଜୟା', 'ପ୍ରଜାତନ୍ତ୍ର', 'ଉତ୍କଳ ପ୍ରସଙ୍ଗ', 'ଉତ୍କଳ ସମ୍ମିଳନୀ ସ୍ମରଣିକା' ଆଦିରେ । ବିଭିନ୍ନ ସମୟରେ ଓ ବିଭିନ୍ନ ପ୍ରସଙ୍ଗରେ, ବିକ୍ଷିପ୍ତ ଭାବେ ପ୍ରକାଶ ପାଇଥିବାରୁ ମଧୁସୂଦନଙ୍କ, ଜୀବନର ମୂଳଘଟଣା ଓ ବୃତ୍ତାନ୍ତଗୁଡ଼ିକର ପୁନରାବୃତ୍ତି ଲେଖାଗୁଡ଼ିକରେ ହେବା ଅନିବାର୍ଯ୍ୟ ଥିଲା । ତଥାପି ଯଥାସମ୍ଭବ ତାହାକୁ ଏଡାଇବାକୁ ଚେଷ୍ଟା କରିଛି । ଏହି ପୁସ୍ତକ ପ୍ରକାଶନ ସମୟରେ ମୁଁ ଅସୁସ୍ଥ ରହି ପ୍ରାୟ ଶଯ୍ୟାଶାୟୀ ଅବସ୍ଥାରେ ଥିବାରୁ ଯେତିକି ସକ୍ରିୟ ସହଯୋଗ କରିବା କଥା କରିପାରି ନାହିଁ । ତଥାପି ନିର୍ଦ୍ଧାରିତ ସମୟରେ ଏହାକୁ ପ୍ରକାଶ କରିବାରେ 'ଆମ ଓଡ଼ିଶା'ର ସମସ୍ତ ସହଯୋଗୀ ଯେଉଁ ନିଷ୍ଠା ଓ ଆନ୍ତରିକତା ପ୍ରଦର୍ଶନ କରିଛନ୍ତି, ତାହା ମୁଁ ଶ୍ରଦ୍ଧାର ସହ ସ୍ମରଣ କରୁଛି ।

ଆଶା, ସୁଧୀ ପାଠକପାଠିକା ପୁସ୍ତକଟିକୁ ମଧୁସୂଦନଙ୍କ ଉପରେ ଏକ ସମର୍ପିତ ଗ୍ରନ୍ଥ ରୂପରେ ସାଦର ଗ୍ରହଣ କରିବେ ।

**- ସୁରସିଂହ ପଟ୍ଟନାୟକ**

# ମାତୃ ଆରାଧନାରେ ଜନ୍ମଭୂମିର ଆବାହନ

ମୋତେ ସଭାପତି ମହାଶୟ ମା'ଙ୍କ ଆବାହନର କାର୍ଯ୍ୟ ଦେଇଛନ୍ତି । ଏ ମଣ୍ଡପ ମାତୃପୂଜାର ମଣ୍ଡପ । ଅନ୍ୟାନ୍ୟ ସ୍ଥାନମାନଙ୍କରେ ଯେଉଁ ସମ୍ମିଳନୀ ହୁଏ, ସେଠାରେ ମାତୃପୂଜା ହୁଏ ନାହିଁ । ସେସବୁ ଭାଇମାନେ ଏକତ୍ର ମିଳିତ ହୋଇଥାନ୍ତି, ପରସ୍ପରର ମନୋଭାବ ପ୍ରକାଶ କରିବାକୁ । ଏ ଉତ୍କଳବାସୀଙ୍କ ସମ୍ମିଳନୀ- ଜନନୀ ଜନ୍ମଭୂମିଙ୍କ ପୂଜାମଣ୍ଡପ । ପୂଜା କାର୍ଯ୍ୟ ଆରମ୍ଭ ପୂର୍ବରୁ ମାତାଙ୍କର ଆବାହନ ଆବଶ୍ୟକ। ଆବାହନ ବ୍ୟତିରେକେ ପୂଜା ହୋଇ ନ ପାରେ । ବର୍ତ୍ତମାନ ଏଠାରେ ଯେତେ ଭାଇ ଭଉଣୀ ଉପସ୍ଥିତ, ସମସ୍ତଙ୍କ ହୃଦୟରେ ଜନନୀ ଜନ୍ମଭୂମିଙ୍କ ପ୍ରତିମୂର୍ତ୍ତି ବା ପିତୁଳା ସ୍ଥାପନହେବା ଉଚିତ। ଭାଇମାନେ ! ସମସ୍ତେ ଥରେ ତାଙ୍କ ପୁଣ୍ୟ-ପିତୁଳା ହୃଦୟରେ ସ୍ଥାପନ କର । ଏହି କାର୍ଯ୍ୟପାଇଁ ମୁଁ ଆପଣମାନଙ୍କୁ ଅନୁନୟ ବିନୟ କରୁଅଛି, ମାତାଙ୍କ ନାମରେ ଆଜ୍ଞା ଦେଉଛି । ଆମ୍ଭେମାନେ ସମସ୍ତେ ବର୍ତ୍ତମାନ ମାତାଙ୍କ କ୍ରୋଡ଼ରେ ବସିଅଛେ। ଯଦି କେହି ପଚାରନ୍ତି, ମାତାଙ୍କ କ୍ରୋଡ଼ରେ ବସିଥିବା କିପରି ଅନୁଭବ କରାଯାଇପାରେ ? ତାଙ୍କର ପିତୁଳା ହୃଦୟରେ କିପରି ସ୍ଥାପନ କରାଯାଇପାରେ ? ତେବେ କେବଳ ଉପରେ ଲେଖାହୋଇଥିବା 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବି। ଏ ବାକ୍ୟଟି ବହୁକାଳରୁ ଶୁଣାଅଛି, କିନ୍ତୁ ତା'ର ଅର୍ଥ ବୁଝିବାକୁ ବୋଧହୁଏ କେହି ଚେଷ୍ଟା କରନ୍ତି ନାହିଁ । ଦେଖନ୍ତୁ, ପ୍ରଥମେ 'ଜନନୀ', ଦ୍ୱିତୀୟରେ 'ଜନ୍ମଭୂମି', ତୃତୀୟରେ 'ସ୍ୱର୍ଗ' । ପ୍ରତ୍ୟେକ ମନୁଷ୍ୟ ଜୀବନକୁ ଗୋଟିଏ ସ୍ରୋତ ମନେକଲେ ଦେଖିବେ,ଏହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି, ଶେଷରେ ସ୍ୱର୍ଗ; ପ୍ରତ୍ୟେକ ଆତ୍ମାର ଏହି ଗତି । ଜୀବନର ଆରମ୍ଭ ହୁଏ ଜନନୀଙ୍କଠାରୁ, କାର୍ଯ୍ୟ ରଚନା କରେ ଜନ୍ମଭୂମି ଉପରେ ଓ ଶେଷରେ ପୁରସ୍କାର ସ୍ୱରୂପ ଲାଭକରେ ମୁକ୍ତି ବା ସ୍ୱର୍ଗ । ଏଥିପାଇଁ ଜନନୀ ଜନ୍ମଭୂମି ସ୍ୱର୍ଗଠାରୁ ଗରୀୟସୀ ।

ପ୍ରତ୍ୟେକ ମନୁଷ୍ୟର ଗୋଟିଏ ଆତ୍ମା ଅଛି, ତାହା ଈଶ୍ୱରଙ୍କ ଅଂଶ । ଏହି ଆତ୍ମା ପୃଥିବୀରେ କାର୍ଯ୍ୟକରି ଈଶ୍ୱରଙ୍କଠାରେ ମିଶିଯିବ। ଏ ଆତ୍ମା କେଉଁଠାରେ କାର୍ଯ୍ୟକରୁଛି ? କିପରି ସ୍ୱର୍ଗଲାଭ କରୁଛି ? ଏ ଆତ୍ମା ଜନ୍ମଭୂମିରେ କାର୍ଯ୍ୟ କରେ। ଏ ପୃଥିବୀରେ ହିଁ ମନୁଷ୍ୟ ଦୟା, ଧର୍ମ, ପରୋପକାର ଆଦି ସାତ୍ତ୍ୱିକ କାର୍ଯ୍ୟ କରି ସ୍ୱର୍ଗପ୍ରାପ୍ତହୁଏ ।ଏଣୁ କହେ, 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ।

ପ୍ରଥମେ ମାତା ରକ୍ତ ଦେଇଥିଲେ । ସେହି ରକ୍ତ ବୃଦ୍ଧି କରିବାପାଇଁ ମୋ ଜନ୍ମଭୂମି ମୋତେ ଶସ୍ୟାଦି ଖାଦ୍ୟ ଦେଉଅଛି । ଅତଏବ ଶରୀରର ଆଦ୍ୟ ପଦାର୍ଥ ଦିଏ ମାତା, ତାହାର ରକ୍ଷକ ଓ ବର୍ଦ୍ଧକ ହୁଏ ଜନ୍ମଭୂମି। ପ୍ରଥମ ସୂର୍ଯ୍ୟାଲୋକ ଦେଖିବାବେଳେ, ଆମେ ଭୂମିଷ୍ଠ ହେଲୁ ବୋଲି କୁହାଯାଏ। ଅର୍ଥାତ୍ ଆମକୁ ମାତା ଜନ୍ମଭୂମି କ୍ରୋଡ଼ରେ ଅର୍ପଣ କରି ତାହାର ପୂଜା କରିବାକୁ ଆଦେଶ ଦିଅନ୍ତି । ଏହି କଥା ଥରେ ଅନ୍ତଃକରଣରେ ଭାବ, ଶେଷ ଅବସ୍ଥା ସ୍ମରଣ କର । ମା' ଯେଉଁ ରକ୍ତ ଦେଇଥିଲେ, ତାହା ନିଃଶେଷ ହେଲାଣି । କେବଳ ସେ ଶରୀର ଅଛି, ତାହା ମାତୃଭୂମିର ମାଟି ସହିତ ସମାନ । ମାତୃଭୂମି ଉତ୍କଳ କ୍ରୋଡ଼ରେ ଚକ୍ଷୁ ବୁଜି ଥରେ ପ୍ରାର୍ଥନା କର । ହୃଦୟରେ ଜନ୍ମଭୂମିର ପିତୁଳା ଆପେ ଜାଗ୍ରତ ହେବ । ଚକ୍ଷୁ ବନ୍ଦକର, ଦେଖିବ ତୁମ୍ଭ ଭିତରେ ମା' ଅଛନ୍ତି । ଏହି ତ ମାତୃଭୂମିର ପୂଜା ! ଭାଇମାନେ! ପୂଜା ନିମନ୍ତେ ଜନନୀ ଜନ୍ମଭୂମି ଉତ୍କଳ ମାତାଙ୍କର ଆହ୍ୱାନ କର । ସମସ୍ତେ କହ 'ବନ୍ଦଇ ଜନ୍ମଭୂମି' ।

୩୦.୩.୧୯୧୮

ଆମ୍ଭେମାନେ ସମସ୍ତଙ୍କୁ ଭାଇ ବୋଲି ସମ୍ବୋଧନ କରୁଅଛୁ । ତା'ର ମାନେ ଏହି ଯେ, ମୋ ଭାଇ ଯେଉଁ ମାତାଙ୍କ ରକ୍ତ ମାଂସରେ ଗଠିତ, ମୁଁ ସେହି ରକ୍ତ ମାଂସରେ ଗଠିତ । ସମସ୍ତେ ଭାରତ ମାତାର ସନ୍ତାନ । ସମସ୍ତେ ଏକ ରକ୍ତମାଂସ ସମ୍ଭୂତ । ଯେତେବେଳେ ଏ ଜ୍ଞାନ ହେବ, ସେତେବେଳେ ଜାତୀୟ ଜୀବନର ଅଭାବ ରହିବ ନାହିଁ । ଉତ୍କଳର ଅସ୍ତମିତ ଗୌରବ ବିଷୟ ଥରେ ଚିନ୍ତାକର । ଯେତେବେଳେ ଶିଶୁ ସ୍ତନ୍ୟପାନ କରୁଥାଏ, ବିଶ୍ୱାସପୂର୍ଣ୍ଣ ନୟନରେ ମାତାର ମୁଖ ପ୍ରତି ତା'ର ଦୃଷ୍ଟି ଥାଏ । ଏହିଠାରେ ଆମ୍ଭେମାନେ ଉତ୍କଳ-ଜନନୀ ତଥା ଭାରତ ଜନନୀର କ୍ରୋଡ଼ରେ ବସିଥାଇଁ ଭାବୁ । ସମସ୍ତେ ଏହି କଥା ଭାବ ଓ ପ୍ରତିଜ୍ଞା କର ଯେ ଯେଉଁ ଉତ୍କଳ ଜନନୀ ମୋତେ ଜନ୍ମ ଦେଇଛନ୍ତି, ତା' ସକାଶେ ଏହି ସଭାରେ ଦୃଢ଼ ପ୍ରତିଜ୍ଞା କରୁଛି ଯେ, ''ମୁଁ ପ୍ରତିଦିନ ମାତ୍ର ପାଞ୍ଚ ମିନିଟ୍ ସମୟ ଦେଶ କଥା ଭାବିବି ଏବଂ ସମ୍ମିଳନୀ ସକାଶେ, ଉତ୍କଳ ନିମନ୍ତେ ଓ ଭାରତ ନିମନ୍ତେ ଅନ୍ତତଃ ପାଞ୍ଚ ମିନିଟ୍ ସମୟ ବ୍ୟୟ କରିବି।''

ଏ ମନ୍ତ୍ର ସମସ୍ତେ ମୁହଁରେ ପାଟି କରି କହ । ଏହା ସମ୍ମିଳନୀର ବିଦ୍ୟାରମ୍ଭ।

ଉତ୍କଳ ଜନନୀ ଓ ଭାରତ ଜନନୀଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶରେ ପୀଡ଼ା ହେଲେ ସେହି ଅଂଶର ଚିକିତ୍ସା କରିବାକୁ ହେବ । କିନ୍ତୁ ଏହି ଅଂଶବିଶେଷର ଚିକିତ୍ସାଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳ ଚିକିତ୍ସାର ଉଦ୍ଦେଶ୍ୟ ଭାରତ ଭୂଖଣ୍ଡର ଉନ୍ନତି ।

୧୮.୪.୧୯୦୮

- ମଧୁସୂଦନ ଦାସ

# ସୂଚୀପତ୍ର

## ● ଜାତି ନନ୍ଦିଘୋଷର ପ୍ରମତ୍ତ ସାରଥି



## ● ସହସ୍ର ରୂପରେ ସହସ୍ର କ୍ଷେତ୍ରରେ ମଧୁସୂଦନ

## ● ସ୍ୱତନ୍ତ୍ର ଓଡ଼ିଶାର ସଂସ୍ଥାପକ



## ● ଗାନ୍ଧୀ ଓ ମଧୁସୂଦନ

## ● ସ୍ୱତନ୍ତ୍ର ବର୍ଷରେ ଓଡ଼ିଶା



## ● ସ୍ୱତନ୍ତ୍ର ଘଟଣା



## ● ସ୍ୱତନ୍ତ୍ର ବ୍ୟକ୍ତିତ୍ୱ



## ● ଅନ୍ତିମ ପର୍ବ



■ ■ ■



# ଜାତିନନ୍ଦିଘୋଷର ପ୍ରମତ୍ତ ସାରଥି

# ଶ୍ରୀଜଗନ୍ନାଥଙ୍କର ପ୍ରମତ୍ତ ଉଚ୍ଚାଟନରେ ମଧୁସୂଦନ

ବେଳେବେଳେ ବିଷାଦର ନିବିଡ଼ତମ ଶୋକାକୁଳ ମୁହୂର୍ତ୍ତରେ, ଅଥବା ହର୍ଷୋଲ୍ଲାସର ଉତ୍‌ଫୁଲ୍ଲ ବେଳାରେ ମଧୁସୂଦନ ପ୍ରଗଲ୍‌ଭ ଆଉ ବାଙ୍‌ମୟ ହୋଇଯାଆନ୍ତି, ଆଉ ତାହାଙ୍କର ଗଭୀର ଅନ୍ତଃସ୍ଥଳରୁ ଝରିଆସେ ଆଶୁ କବିତାର ଅଜସ୍ର ଉଦ୍‌ବେଳିତ ନିର୍ଝର ଅଥବା ସେକ୍ସପିଅରଙ୍କ ନାଟକର ଉଦ୍ଦାମ ସ୍ୱଗତୋକ୍ତି ।

ଓଡ଼ିଶା ଡିଭିଜନରେ ୧୬.୧୦.୧୯୦୫ରେ ପଶ୍ଚିମାଞ୍ଚଳ ଆଉ ଉତ୍ତରାଞ୍ଚଳ ସମ୍ମିଳିତ ହେବା ପରେ ଦକ୍ଷିଣାଞ୍ଚଳର ମିଶ୍ରଣପାଇଁ ମଧୁସୂଦନଙ୍କୁ ସୁଦୀର୍ଘ ତିରିଶିବର୍ଷ କାଳ ବିବଶ ଆଉ ଉଦ୍‌ବିଗ୍ନ ହୋଇ ଦୁର୍ବାର ସଂଗ୍ରାମ ଚଳାଇବାକୁ ପଡ଼ିଥିଲା, ଯାହା ଥିଲା ଅତ୍ୟନ୍ତ କ୍ଲେଶଦାୟକ ଆଉ ଅସହନୀୟ । ସେଦିନ ୧୦.୧୧.୧୯୨୮ରେ କଟକ ଟାଉନ ହଲ୍‌ଠାରେ ନିଘଞ୍ଚ ବିପୁଳ ଲୋକାରଣ୍ୟ ମଧ୍ୟରେ ମଧୁସୂଦନଙ୍କ ଦୁର୍ନିବାର ଆଉ ବଜ୍ର ନିର୍ଘୋଷ କଣ୍ଠରୁ ଲାଭାର ଉଦ୍ଗୀରଣ ପରି ଆଗ୍ନେୟ ବକ୍ତବ୍ୟ ବହିଚାଲିଥିଲା -

''ଉତ୍କଳର ଦେଶମିଶ୍ରଣ ଆନ୍ଦୋଳନପାଇଁ ବହୁକାଳରୁ ମୁଁ ବ୍ୟାକୁଳ ଓ ଉତ୍କଣ୍ଠିତ । ମୋର ଅବସ୍ଥାକୁ ଘେନି ମୁଁ ବିଦୁରର ଖୁଦ ଗଣ୍ଡିଏ ମାତ୍ର ଦେଇଛି । ପରଠାରୁ ମାଗି ଦେଶସେବା କାର୍ଯ୍ୟ ମୁଁ ଜାଣେ ନାହିଁ । ଆମର ପାପ ଦୂର ନହେଲେ ଉତ୍କଳ ମାତାଙ୍କର ଦୁର୍ଦ୍ଦଶା ଦୂର ହେବନାହିଁ ।'' ଟିକିଏ ନୀରବିଗଲେ ମଧୁସୂଦନ । ତା'ପରେ ତାଙ୍କର ଓଜସ୍ୱିନୀ ଆଉ ଉର୍ଜସ୍ୱଳ କଣ୍ଠରୁ ସ୍ୱତଃ ଉଚ୍ଚାରିତ ହେଲା ଆଶୁ କବିତାର ବିହ୍ୱଳିତ ନିର୍ଝର ।

''କୋଟିଏ ଓଡ଼ିଆ ଗୋଟିଏ ସ୍ୱରରେ
ଡାକ ତ୍ରାହି ଜଗନ୍ନାଥ,

ଅନ୍ଧାର ଘୁଞ୍ଚିବ ନିଶ୍ଚୟ ଦେଖିବ
ଜାତିର ଉନ୍ନତି ପଥ ।
ସୁଦର୍ଶନ ଚକ୍ର ଗରଜି ଉଠିବ
ବଳିୟାର ବାହୁ କରେ,
ମାତାଙ୍କ ଶ୍ରୀଅଙ୍ଗ ପୂର୍ବବତ ହେବ
ଶତ୍ରୁ ପଳାଇବେ ଡରେ ।''

ଆମ୍ଭେ ଜାଣୁନାହିଁ, ସେହି ପ୍ରାର୍ଥନାର ଗଭୀରତା କିପରି ଅତଳସ୍ପର୍ଶୀ ଆଉ ପ୍ରମତ୍ତ ଥିଲା । ମାତ୍ର ଠିକ୍ ଏହାର ଏକମାସ ପରେ ମଧୁସୂଦନଙ୍କ ପ୍ରେରିତ ଓଡ଼ିଆ ପ୍ରତିନିଧି ଦଳ ୧୨.୧୨.୧୯୨୮ରେ ପାଟନା ରେଳଷ୍ଟେସନ୍‌ଠାରେ ସାଇମନ୍ କମିଶନ୍‌ଙ୍କୁ କେବଳ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ ନାହିଁ, ୧୪.୧୨.୧୯୨୮ରେ ପାଟନା ସେକ୍ରେଟେରୀଏଟ୍‌ଠାରେ ଓଡ଼ିଆ ଜାତିର ଦାବିପତ୍ର ଉପସ୍ଥାପନ କଲେ । ଠିକ୍ ସେହି ମୁହୂର୍ତ୍ତ ପରଠାରୁ ଅଟଲି କମିଟି, ତିନିଗୋଟି ଗୋଲ୍‌ଟେବୁଲ୍ ବୈଠକ ଏବଂ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି ମାଧ୍ୟମରେ ୧୯୩୬ ସାଲରେ ଓଡ଼ିଶା ପ୍ରଦେଶ ସ୍ଥାପିତ ହେଲା ।

ହେ ପାଠକବର୍ଗ ! ଆପଣ ଜାଣନ୍ତି କି ? ନବଭାରତର ରେନେଁସା କାଳରେ ତିଳକ, ମହାରାଷ୍ଟ୍ରର ଜାଗରଣପାଇଁ ଗଣପତି ପୂଜାର ପ୍ରବର୍ତ୍ତନ କରିଥିଲେ । ଶ୍ରୀ ଅରବିନ୍ଦ ଓ ସୁରେନ୍ଦ୍ର ନାଥ ବାନାର୍ଜୀ ବଙ୍ଗ ଦେଶରେ ଭବାନୀ ପୂଜାର ଆବାହନ କରିଥିଲେ । ମାତ୍ର ମଧୁସୂଦନଙ୍କପାଇଁ ଏକ ମାତ୍ର ପରମ ଆରାଧ୍ୟ ଆଉ ଇଷ୍ଟଦେବତା ଥିଲେ ଶ୍ରୀ ଜଗନ୍ନାଥ । ତାଙ୍କର ବକ୍ତବ୍ୟ ଥିଲା,ଶ୍ରୀମନ୍ଦିରର ନିର୍ମାଣ ପରେ ଅନଙ୍ଗଭୀମ ଦେବ ସମସ୍ତ ଓଡ଼ିଶା ରାଜ୍ୟକୁ ଶ୍ରୀ ଜଗନ୍ନାଥଙ୍କୁ ସମର୍ପଣ କରି, ତାଙ୍କର ପ୍ରତିନିଧି ରୂପରେ ଦେଶର ଶାସନନିର୍ବାହ କରିଥିଲେ । ସାମ୍ୟ, ମୈତ୍ରୀ ଓ ପ୍ରୀତିର ପ୍ରତୀକ ରୂପେ ଜାତିଭେଦର ଧ୍ୱଂସାବଶେଷ ଉପରେ ଶ୍ରୀ ଜଗନ୍ନାଥଙ୍କର ମନ୍ଦିର ପ୍ରତିଷ୍ଠିତ ।

ଇଂଲଣ୍ଡ ପରିଦର୍ଶନ ବେଳେ ମଧୁସୂଦନ ଉଦ୍‌ବେଳିତ କଣ୍ଠରେ ଶ୍ରୀ ଜଗନ୍ନାଥଙ୍କ ଉଦାତ୍ତ ଓ ପ୍ରଗାଢ଼ ତତ୍ତ୍ୱର ମହନୀୟ ଅବତାରଣା କରି ଜନସମାଜକୁ ମନ୍ତ୍ରମୁଗ୍ଧ ଓ ସ୍ତମ୍ଭୀଭୂତ କରିଥିଲେ ।

ମଧୁସୂଦନଙ୍କର ବକ୍ତବ୍ୟର ଧାରା ବହିଚାଲିଥିଲା ଓଡ଼ିଶା-ସଂସ୍କୃତିର ଗହନ ଅନ୍ତରାଳକୁ- ''ପ୍ରତ୍ୟେକ ଓଡ଼ିଆ ଜନ୍ମ ମୁହୂର୍ତ୍ତରୁ ହିଁ ଶ୍ରୀ ଜଗନ୍ନାଥଙ୍କ ସହିତ ନିବିଡ଼ ଭାବରେ ସମ୍ବନ୍ଧିତ । ତାହାର ଜନ୍ମଜାତକରେ ଲିପିବଦ୍ଧ ରହେ ଶ୍ରୀ ଜଗନ୍ନାଥଙ୍କର ପ୍ରତିଭୂ ଗଜପତି ମହାରାଜାଙ୍କ ପ୍ରଶାସନର ଅଙ୍କ । ଏହି ଜାତକର ବେଳା ତାହାର ଭାଗ୍ୟ ନିର୍ଦ୍ଧାରଣ କରେ । ଏହି ଭଳି ବ୍ୟବସ୍ଥା ପୃଥିବୀର ଅନ୍ୟ କୌଣସି ପ୍ରାନ୍ତରେ ପରିଲକ୍ଷିତ ହୁଏ ନାହିଁ । ଏହା ଥିଲା ମଧୁସୂଦନଙ୍କ ମହିମାଦୀପ୍ତ ବକ୍ତବ୍ୟ, ଯେଉଁଥିପାଇଁ ଗଜପତି ବଂଶର ସୁରକ୍ଷା ଓ ସଂସ୍ଥାନ ସକାଶେ ଜୀବନର ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ସେ ସମର୍ପିତ ଥିଲେ । ଜଣେ ଓଡ଼ିଆ ନିଜର ଜାତକ ଲିଖନ ମାଧ୍ୟମରେ ଅଜାଣତରେ ଓ ଅଲଂଘ୍ୟ ଭାବରେ ସଂପର୍କିତ ହୋଇଯାଏ, ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ସହିତ ।

ହେ ପାଠକ ବର୍ଗ ! ଆପଣ ଜାଣନ୍ତି କି ? - ଓଡ଼ିଶା ପ୍ରଦେଶର ସ୍ଥାପନା ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରରୁ ଆରମ୍ଭ ହୋଇଥିଲା । ନଦୀବହୁଳ ଓଡ଼ିଶାର ଉପକୂଳରେ ରେଳଲାଇନ୍‌ର ସ୍ଥାପନା ବ୍ୟୟବହୁଳ ଓ ଦୁର୍ବହ ଥିଲା । ଏଣୁ ୧୮୭୫ ସାଲ ବେଳକୁ କଟକ ସହିତ କଲିକତା କେନାଲ ପଥରେ ସଂଯୁକ୍ତ ହୋଇଥିଲା । ମାତ୍ର ମଧୁସୂଦନ ଶ୍ରୀକ୍ଷେତ୍ର ସହିତ କଲିକତାକୁ ସଂଯୋଗ କରିବାପାଇଁ ଯେଉଁ ଅଦମ୍ୟ ପ୍ରଚେଷ୍ଟା କରିଥିଲେ, ତାହାରି ଫଳରେ ୧୮୯୫ଠାରୁ ୧୯୦୦ ସାଲ ମଧ୍ୟରେ ପୁରୀ ସହିତ କଲିକତା କେବଳ ନୁହେଁ, ମାଡ୍ରାସ ମଧ୍ୟ ସଂଯୁକ୍ତ ହେଲା ।ସେହି ସଂଯୁକ୍ତିର ପ୍ରଥମ ରେଳଯାତ୍ରାରେ ୧୬ଡିସେମ୍ବର, ୧୯୦୦ରେ ଭାରତର ବଡ଼ଲାଟ ଲର୍ଡ଼ କର୍ଜନ, ପୁରୀ ଓ ମନ୍ଦିରମାଳିନୀ ଭୁବନେଶ୍ୱରର ନଗରୀର ଅନବଦ୍ୟ କଳା ଓ ଭାସ୍କର୍ଯ୍ୟ ଦର୍ଶନକରି ଅଭିଭୂତ ହୋଇ ଯାଇଥିଲେ ।

ଲର୍ଡ଼ କର୍ଜନଙ୍କର ସ୍ୱତନ୍ତ୍ର ନିମନ୍ତ୍ରଣରେ ମଧୁସୂଦନ ୧୯୦୦ ସାଲ ଅକ୍ଟୋବର ତୃତୀୟ ସପ୍ତାହରେ ସିମିଲାଠାରେ ଲର୍ଡ଼ କର୍ଜନଙ୍କୁ ଭେଟି ଏହି ପରିଦର୍ଶନପାଇଁ ନିମନ୍ତ୍ରଣ ଜଣାଇଥିଲେ । ଲର୍ଡ଼ କର୍ଜନ ପୁରୀରେ ପହଞ୍ଚି ରାଧାବଲ୍ଲଭ ମଠ ଉପରୁ ଶ୍ରୀମନ୍ଦିର ପରିଦର୍ଶନ କରିସାରିବା ପରେ ରାଜଦ୍ୱାରରେ ମଧୁସୂଦନଙ୍କଦ୍ୱାରା ଆୟୋଜିତ ସମ୍ବର୍ଦ୍ଧନା ସଭାରେ ଅତ୍ୟନ୍ତ ମହିମାନ୍ୱିତ ଭାବରେ ସମ୍ବର୍ଦ୍ଧିତ ହେଲେ । ଏହାର କିଞ୍ଚିତ ମାତ୍ର ବିବରଣୀ ଉତ୍କଳଦୀପିକାରୁ ଉଦ୍ଧାର କରୁଛୁ ।

ତଳେ ବନାତ ବିଛଣା ହୋଇ ତହିଁ ଉପରେ ମହାମାନ୍ୟଙ୍କ ନିମନ୍ତେ ରୂପାର କୁରୁସି ପଡ଼ିଥିଲା । ସମ୍ମୁଖରେ ଗୋଟିଏ ମେଜ ଉପରେ ପଥରରେ ନିର୍ମିତ ଶ୍ରୀ ମନ୍ଦିରର ପ୍ରତିକୃତି, ଗୋଟିଏ ଅବିକଳ ସୁସଜ୍ଜିତ ରଥର ଆକୃତି ଏବଂ ଗୋଟିଏ ରୂପାର ଅଭିନନ୍ଦନ ପତ୍ରାଧାର ମହାତ୍ମାଙ୍କୁ ଉପଢ଼ୌକନ ଦେବା କାରଣ ରଖାଯାଇଥିଲା । ଏହା ମାନ୍ୟବର ମଧୁସୂଦନଙ୍କର ଶିଳ୍ପାଗାରରେ ନିର୍ମିତ ହୋଇ ବିଚକ୍ଷଣ ଉଦ୍‌ଭାବନା ଏବଂ ସୁରୁଚିର ପରିଚୟ ଦେଉଥିଲା । ସେହି ଆଧାରର ଦୁଇପାର୍ଶ୍ୱରେ ଦୁଇଟି ହାତୀଦାନ୍ତର ହାତୀ ବସି ଅଛନ୍ତି ଏବଂ ମଧ୍ୟରେ ସୁନାପତ୍ରରେ ଶ୍ରୀମନ୍ଦିରର ପ୍ରତିକୃତି ଅଙ୍କିତ ହୋଇଛି ଓ ମଧ୍ୟଭାଗରେ ସୁନାର ଏକ କାଳୀୟଦଳନ ମୂର୍ତ୍ତି ସ୍ଥାପିତ ହୋଇଛି । ଅଭିନନ୍ଦନ ପତ୍ରରେ ଯେଉଁ ସୁଦୀର୍ଘ ସଂସ୍କୃତ ଶ୍ଳୋକ ଖୋଦିତ ହୋଇଛି ତାହାର ପ୍ରଥମ ଦୁଇଧାଡ଼ି ଏହିପରି ଥିଲା ।

''ଦ୍ୱାରମୁତ୍କଳ ଦେଶସ୍ୟ ଜଗନ୍ନାଥସ୍ୟ ମନ୍ଦିରଂ
ଐତିହାସିକତତ୍ତ୍ୱସ୍ୟ ଜ୍ଞାପକଞ୍ଚ ବିଶେଷତଃ ।''

ଏହି ଯୁଗାନ୍ତକାରୀ ପରିଦର୍ଶନ ପରେ ଲର୍ଡ଼ କର୍ଜନ ଏକାନ୍ତ ଭାବେ ଅଭିଭୂତ ହୋଇପଡିଥିଲେ ଏବଂ ୩ଡିସେମ୍ବର, ୧୯୦୩ରେ ସମସ୍ତ ଓଡ଼ିଆଭାଷୀ ଅଂଚଳର ମିଶ୍ରଣଲାଗି ପ୍ରସାରିତ କରିଥିଲେ ରିସ୍‌ଲେ ସର୍କୁଲାର । ଏହାକୁ ଆଧାରକରି ଓଡ଼ିଶାର ବିଖଣ୍ଡିତ ପଶ୍ଚିମାଞ୍ଚଳ ଓ ଉତ୍ତରାଞ୍ଚଳ ୧୬ଅକ୍ଟୋବର, ୧୯୦୫ରେ ଓଡ଼ିଶା ଡିଭିଜନ ସହିତ ସମ୍ମିଳିତ ହେଲା

ପୁଣି ମୂଳ କଥାକୁ ଫେରିଆସିବା ।ତାହା ଥିଲା ୧୮୮୬ ସାଲ ଡିସେମ୍ବର ମାସର ମଧ୍ୟଭାଗ । ସେତେବେଳେ ପୁରୀର କଲେକ୍‌ଟର ଥିଲେ ମି଼ ସାଭାଜ୍ । ପୁରୀ ଶ୍ରୀମନ୍ଦିରକୁ ନିଜର ପ୍ରାଶାସନିକ ବ୍ୟବସ୍ଥା ମଧ୍ୟରେ ଗ୍ରହଣ ଲାଗି ପ୍ରାର୍ଥନାକରି କଟକ ଜିଲ୍ଲା କୋର୍ଟରେ ସେ ଏକ ମକଦ୍ଦମା ଦାଏର କରି ସଫଳ ହେଲେ ।ଏହା ପରେ କଲେକ୍ଟର ମହୋଦୟ, ଜଣେ ଡେପୁଟି କଲେକ୍ଟର ଓ ଚମଡ଼ା କଟିମେଖଳା ପିନ୍ଧିଥିବା କନ୍‌ଷ୍ଟେବଲ୍‌ମାନଙ୍କ ସାହାଯ୍ୟରେ ଶ୍ରୀମନ୍ଦିର ରତ୍ନଭଣ୍ଡାରର ଜଉମୁଦ ଭାଂଗି ସମ୍ପତ୍ତି ତାଲିକା ପ୍ରସ୍ତୁତ କରିବାକୁ ଲାଗିଲେ । ଏହା ସମଗ୍ର ଦେଶରେ ଘୋର ଉଦ୍‌ବେଗ ସୃଷ୍ଟି କରିଥିଲା ।

ଏହି ସମୟରେ ପୁରୀର ପର୍ଦାନସୀନ ରାଣୀ ସୂର୍ଯ୍ୟମଣି ପାଟ ମହାଦେଈ ମଧୁସୂଦନଙ୍କୁ ପୁରୀ ଶ୍ରୀନଅରକୁ ନିମନ୍ତ୍ରଣ କରି କହିଲେ, ହେ ପୁତ୍ର ! ସବୁ ଅବଗତ ହେଲ । ମୋର ଏହି ପରିଣତ ବୟସରେ ମୋର ହାତ ଦୁଇଟି ଦ୍ରୁତ ଅସୀ ଚାଳନାରେ ପାରଦର୍ଶୀ, ମୁଁ ମଧ୍ୟ ତଡ଼ିତ ବେଗରେ ଅଶ୍ୱଚାଳନାରେ ପାରଙ୍ଗମ । ତୁମେ ଯଦି କଲିକତା ହାଇକୋର୍ଟର ଅପିଲ୍ କେଶରେ ପରାଜିତ ହୁଅ, ମୁଁ ମୋର ବଂଶର ଐତିହ୍ୟ ଓ ପରଂପରା ରକ୍ଷା କରିବାପାଇଁ ବ୍ରିଟିଶ୍ ସରକାରଙ୍କ ବିରୋଧରେ ରଣାଂଗନରେ ଲମ୍ଫଦେବାକୁ ପ୍ରସ୍ତୁତ ଅଛି । ହତଚକିତ ଆଉ ସ୍ତମ୍ଭୀଭୂତ ମଧୁସୂଦନ ରାଣୀଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି କଟକ କୋର୍ଟଙ୍କ ଆଦେଶ ବିରୋଧରେ କଲିକତା ହାଇକୋର୍ଟରେ ବିଜୟ ଲାଭ କଲେ। ଏହା ଭାରତର ହିନ୍ଦୁ ସମାଜକୁ ସ୍ୱସ୍ତିରେ ନିଃଶ୍ୱାସ ମାରିବାକୁ ଅବକାଶ ଦେଲା । ମଧୁସୂଦନ ହାଇକୋର୍ଟର ଆଦେଶନାମା ଘେନି କଟକରୁ ପୁରୀ ପାଲିଙ୍କିରେ ପ୍ରତ୍ୟାବର୍ତ୍ତନ ପଥରେ ସାକ୍ଷୀ ଗୋପାଳଠାରେ ଓହ୍ଲାଇଲେ । ସେତେବେଳକୁ ଉଦ୍‌ବେଳିତ ଓ ଉତ୍ତାଳ ଜନତାର ସୁଅ ପୁରୀଠାରୁ ସାକ୍ଷୀଗୋପାଳ ପର୍ଯ୍ୟନ୍ତ ଲମ୍ବି ଆସିଥିଲା । ସାକ୍ଷୀଗୋପାଳଠାରେ ସହର୍ଷ ପରମ ପ୍ରୋତ୍ସାହିତ ଜନତା ମଧୁସୂଦନଙ୍କୁ ନିଜର ସ୍କନ୍ଧ ଦେଶକୁ ଉତ୍ତୋଳିତ କଲେ । ଆଉ ସେହି ବହମାନ ତରଂଗାୟିତ ଜନତାଙ୍କର ସ୍କନ୍ଧଦେଶରେ ବସି ଭାସିଭାସି ଆସି ମଧୁସୂଦନ ପହଞ୍ଚିଲେ ଶ୍ରୀମନ୍ଦିରର ଦ୍ୱାରଦେଶରେ ରାଣୀଙ୍କ ନଅର ସମ୍ମୁଖରେ । ଏହାଥିଲା ଯେପରି ଦିଗ୍‌ବିଜୟୀ ସମ୍ରାଟଙ୍କର ବିଜୟବାହୁଡ଼ା ।

ସୂର୍ଯ୍ୟମଣି ପାଟମହାଦେଈଙ୍କର ପୌତ୍ର ମୁକୁନ୍ଦଦେବ ସାବାଳକ ହୋଇ ରାଜ ସିଂହାସନ ଆରୋହଣ କଲେ । ମାତ୍ର ସେ ଥିଲେ ଅତ୍ୟନ୍ତ ବିଳାସୀ ଓ ଖର୍ଚ୍ଚପ୍ରିୟ । ପରିଣାମରେ ପୁରୀ ରାଜ ନଅର ଓ ରାଣୀହଂସପୁର ଦର୍ପଣୀ ରାଜାଙ୍କ ପାଖରେ ବନ୍ଧାପଡ଼ି ନିଲାମର ଦିନ ଧାର୍ଯ୍ୟ ହେଲା । ଗଜପତି ମହାରାଜା ଗୃହଶୂନ୍ୟହୋଇ ପଥଚାରୀ ହେବା ଅବସ୍ଥାକୁ ଆସିଯାଇଥିଲେ । ଜାତିର ଏହି ଚରମ ଦୁର୍ଦ୍ଦିନରେ ସେହି ସମ୍ପତ୍ତିକୁ ମଧୁସୂଦନ ନିଲାମଧରି କିଛିକାଳ ପରେ ସେତିକି ମାତ୍ର ଅର୍ଥ ବିନିମୟରେ ସେହି ସଂପତ୍ତିକୁ ଶ୍ରୀମନ୍ଦିରକୁ ଫେରାଇ ଦେଇଥିଲେ । ଫଳରେ ଓଡ଼ିଆ ଜାତି ଏକ ଚରମ ଦୁର୍ବିପାକ ଓ ଦୁର୍ଦ୍ଦଶାରୁ ରକ୍ଷାପାଇଲା ।

୧୯୧୩ ମସିହା ଫେବୃଆରି ମାସ ୯ ତାରିଖ ର ସେ ଥିଲା ଏକ ମୃଦୁ ରୌଦ୍ରତାପିତ ସକାଳ । ଓଡ଼ିଶାର ପ୍ରଥମ ନିର୍ବାଚିତ ସାଂସଦ ରୂପେ ମଧୁସୂଦନ ଫେରୁଥାନ୍ତି ଦିଲ୍ଲୀର ଇମ୍ପେରିୟାଲ୍ କାଉନ୍‌ସିଲ୍ ବୈଠକରୁ । କଟକ ଷ୍ଟେସନ୍‌ରେ ଲୋକାରଣ୍ୟ ଆଉ ପ୍ରବଳ ଛାତ୍ରଜନତାଙ୍କର ଭିଡ଼ ଜମିଥିଲା,

ମଧୁସୂଦନଙ୍କୁ ସ୍ୱାଗତ କରିବାପାଇଁ । ମଧୁସୂଦନ ରେଳରୁ ଅବତରଣ କଲେ । ବିପୁଳ ଜନତା ଉଚ୍ଛ୍ୱସିତ ଓ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜଣାଇ ତାଙ୍କୁ ଘେନିଗଲେ ଘୋଡ଼ାବିହୀନ ଅଶ୍ୱଯାନ ନିକଟକୁ । ସମ୍ବର୍ଦ୍ଧନାର ଏକ ପ୍ରତୀକ ରୂପରେ, ଏଥିରେ ତାଙ୍କୁ ନଗର ମଧ୍ୟକୁ ବାହିନେବା ଥିଲା ଉଦ୍ଦେଶ୍ୟ ।

ଠିକ୍ ଏହି ସମୟରେ ମଧୁସୂଦନଙ୍କ ତେଜୋଦୀପ୍ତ କଣ୍ଠରୁ ଉଚ୍ଚାରିତ ହେଲା ଏକ ଦୁର୍ନିବାର ଚେତାବନୀ, "ହେ ଶ୍ରୋତୃ ମଣ୍ଡଳି ! ଆପଣମାନେ ମହିମାମୟ ଶ୍ରୀଜଗନ୍ନାଥଙ୍କର ପୁଣ୍ୟ ରଥକୁ ବାହିନେବାପାଇଁ ଏକାନ୍ତ ଅଧିକାରୀ । ଏହା ଆପଣଙ୍କର ଜନ୍ମସିଦ୍ଧ ଅଧିକାର । ମାତ୍ର ସ୍ମରଣରଖ, କେବେ ହେଲେ ମନୁଷ୍ୟର ଦାସ ହେବାପାଇଁ ପ୍ରୟାସ କରନାହିଁ ।" ସମସ୍ତ ଜନତା ବିସ୍ମୟାଭିଭୂତ ହୋଇ ଚାହିଁ ରହିଥିଲେ ସତୃଷ୍ଣ ଆଉ ଅପଲକ ନୟନରେ ଏବଂ ସ୍ତମ୍ଭୀଭୂତ ହୋଇ ଶ୍ରବଣ କରୁଥିଲେ ମାନବବାଦର ଏହି ଉଦାତ୍ତ ଓ ମହନୀୟ ବ୍ୟାଖ୍ୟାକୁ ।

ବିଶ୍ୱନାଥ କରଙ୍କର ସ୍ତୁତିଚାରଣରେ, ଓଡ଼ିଆ ଜାତିର ଏହି ମହାନ ବ୍ୟାଖ୍ୟାକାର, ଏକ ହୋଇ ମଧ୍ୟ ଜାତୀୟ ଜୀବନର ସହସ୍ର କ୍ଷେତ୍ରରେ ସହସ୍ର ରୂପରେ ଅବତୀର୍ଣ୍ଣ ହୋଇଥିଲେ । ଗୌରୀଶଙ୍କର ରାୟ ଶ୍ରୀଜଗନ୍ନାଥ ମନ୍ଦିର ମାମଲାରେ ମଧୁସୂଦନଙ୍କ ଯୁଗାନ୍ତକାରୀ ବିଜୟ ପରେ ଓଡ଼ିଆ ଜାତିକୁ ଏକ ଅମୋଘ ମହନୀୟ ମନ୍ତ୍ର ପ୍ରଦାନ କରିଥିଲେ । ତାହାଥିଲା - ବିପତ୍ତୌ ମଧୁସୂଦନ ମନ୍ତ୍ର । ଓଡ଼ିଆ ଜାତିର ବିପତ୍ତିବେଳାରେ ମଧୁସୂଦନ ଦାସ ହିଁ ଏକମାତ୍ର ସହାୟ ଆଉ ଆଶ୍ରୟ । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି କଙ୍କାଳସାର ଓଡ଼ିଆଜାତି, ଏହି ତେଜୋଦୀପ୍ତ ମନ୍ତ୍ର ଉଚ୍ଚାରଣ କରିଚାଲିଥିଲା । ଶ୍ରୀ ଜଗନ୍ନାଥଙ୍କ ପ୍ରତି ଅଚଳା ଶ୍ରଦ୍ଧା ଓ ଭକ୍ତିନିବେଦନ ମାଧ୍ୟମରେ ମଧୁସୂଦନ ଓଡ଼ିଶାକୁ ସ୍ୱତନ୍ତ୍ର ପରିଚୟ, ଗାରିମା ଆଉ ଅସ୍ମିତା ପ୍ରଦାନ କରିଥିଲେ, ଅନ୍ୟଥା ଓଡ଼ିଶାର ସତ୍ତା କେଉଁ କାଳୁ ବିଲୁପ୍ତ ଆଉ ବିଲୀନ ହୋଇ ଯାଇଥାଆନ୍ତା ।



# ଓଡ଼ିଶାର ପ୍ରଥମ ରାଜନୈତିକ ପୁରୁଷ

ଜାତୀୟ ଗୌରବ ମଧୁସୂଦନ ହେଉଛନ୍ତି ଓଡ଼ିଶାର ସର୍ବପ୍ରଥମ ଓଡ଼ିଆ ରାଜନୈତିକ ପୁରୁଷ । ତାଙ୍କଠାରୁ ଆରମ୍ଭ ହୋଇଛି ଓଡ଼ିଆମାନଙ୍କର ରାଜନୈତିକ ପରଂପରା । ସେ ଓଡ଼ିଶାର ରାଜନୈତିକ ପଟ୍ଟଭୂମିରେ ଉନବିଂଶ ଶତାବ୍ଦୀ (୧୮୮୧)ରେ କେବଳ ପାଦଥାପି ନଥିଲେ, ସ୍ୱକୀୟ ପ୍ରତିଭା ବଳରେ ପ୍ରତିପକ୍ଷକୁ ପରାଜିତ କରି ବିସ୍ମୟାଭିଭୂତ ଓ ତଟସ୍ଥ କରିଦେଉଥିଲେ । ଓଡ଼ିଶାର ରାଜନୀତି କ୍ଷେତ୍ରରେ ତାଙ୍କର ଉତ୍ତରଣ ଥିଲା, ଗୋଟିଏ ଉତ୍‌କ୍ଷେପିତ ପ୍ରଚଣ୍ଡ ଉଲ୍‌କା ପରି, ଯାହା ଦିଗବିଦିଗକୁ ଉଦ୍‌ଭାସିତ କରି ଆପଣାର ମହିମାମୟ ଦୀପ୍ତିରେ ସମସ୍ତଙ୍କୁ ଚକିତ ଆଉ ଅନୁପ୍ରାଣିତ କରିଥିଲା, ଦେଶ ସେବାରେ ନିଜକୁ ଉତ୍ସର୍ଗ କରିବାପାଇଁ । ମଧୁସୂଦନଙ୍କଠାରୁ ପ୍ରଥମେ ଓଡ଼ିଆମାନଙ୍କୁ ମିଳିଥିଲା ରାଜନୀତି କ୍ଷେତ୍ରରେ ପ୍ରବେଶ କରିବାର ମୁକ୍ତ ଅଧିକାର । ମଧୁସୂଦନଙ୍କ ପୂର୍ବରୁ ଓଡ଼ିଶା ରାଜନୀତିକୁ ପରିଚାଳିତ କରୁଥିଲେ ବହିରାଗତ ବଂଗୀୟ ନୌକର ସାହି ପ୍ରଶାସକ ଗୋଷ୍ଠୀ ତଥା ଜମିଦାରଗଣ ସାଙ୍ଗକୁ ଦକ୍ଷିଣ ଓଡ଼ିଶାର ଉଗ୍ର ଦକ୍ଷିଣ- ଭାରତୀୟ ଅମଲାତାନ୍ତ୍ରିକ ତଥା ନ୍ୟସ୍ତ ସ୍ୱାର୍ଥଗୋଷ୍ଠୀ ।

ମଧୁସୂଦନଙ୍କ ଆବିର୍ଭାବ ଓଡ଼ିଆ ଜାତିର ମୁକ୍ତି ଲାଗି ଏକ ପରମ ଆବଶ୍ୟକତା ଥିଲା । ଓଡ଼ିଶାର ସ୍ୱତନ୍ତ୍ରତାର ଅବଲୁପ୍ତି (୧୫୬୮)ପରେ ମଧ୍ୟବର୍ତ୍ତୀ କାଳରେ ବକ୍ସି ଜଗବଂଧୁ, ସୁରେନ୍ଦ୍ର ସାଏ ଓ ଚକରା ବିଶୋୟୀଙ୍କ ପରି ବହୁ ଦେଶଭକ୍ତ ସଂଗ୍ରାମୀଙ୍କର ବଳିଦାନ ସତ୍ତ୍ୱେ ମଧୁସୂଦନଙ୍କ ପରି ସମ୍ଭାବନାମୟ ଯୁଗାନ୍ତକାରୀ ପୁରୁଷଙ୍କର ଆବିର୍ଭାବ ଲାଗି ଓଡ଼ିଆ ଜାତିକୁ ତିନିଶହ ବର୍ଷ ଧରି ଅପେକ୍ଷା କରିବାକୁ ପଡ଼ିଥିଲା । ତାଙ୍କର ଆବିର୍ଭାବ ଘଟିଥିଲା ଏକ ଯୁଗସନ୍ଧିରେ, ଯେତେବେଳେ ଅସ୍ତ୍ରର ରଣଝଂକାର ଅପେକ୍ଷା ଚେତନାର ଜାଗରଣ ଚରମ ଆବଶ୍ୟକତା ଥିଲା । ଏହାରି ମାଧ୍ୟମରେ ସେ ନଅଙ୍କ ଦୁର୍ଭିକ୍ଷର ପ୍ରାଣଶୋଷା ତାଡ଼ନାରେ ଅର୍ଦ୍ଧମୃତ କଙ୍କାଳସାର ଓଡ଼ିଆ ଜାତିକୁ ଉଦ୍ଧାରକରି, ଗୌରବୋଜ୍ୱଳ ଅସ୍ତିତ୍ୱ ଓ ସ୍ୱାଭିମାନର ପ୍ରଖର ଦିବାଲୋକକୁ ଆଣିପାରିଥିଲେ ଓ ଓଡ଼ିଆମାନେ ପାଦଥାପି ଛିଡ଼ାହେବାପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ସୃଷ୍ଟି କରିପାରିଥିଲେ । ନିର୍ବିବାଦରେ ମଧୁସୂଦନ ହେଉଛନ୍ତି ନବୀନ ଓଡ଼ିଶା

ପ୍ରଦେଶର ସ୍ରଷ୍ଟା । ଅବଶ୍ୟ ଓଡ଼ିଶା ପ୍ରଦେଶ ଗଠନର ପହିଲି ପର୍ଯ୍ୟାୟରେ ଚନ୍ଦ୍ରଶେଖର ବେହେରା, ଧରଣୀଧର ମିଶ୍ର, ଶ୍ରୀପତି ମିଶ୍ର ଆଉ ପ୍ରକୃତି କବି ଗଙ୍ଗାଧର ପ୍ରମୁଖ ଅକୁଣ୍ଠିତ ଯୋଗଦାନ କରିଥିଲେ । ପ୍ରଦେଶ ଗଠନର ଅନ୍ତିମ ପର୍ଯ୍ୟାୟରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଖଲ୍ଲିକୋଟ ରାଜା, ଭୁବନାନନ୍ଦ ଦାସ, ବ୍ରଜସୁନ୍ଦର ଦାସ ଓ ଶଶିଭୂଷଣ ରଥଙ୍କ ପରି ବହୁ ଜନନାୟକ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ।

ମଧୁସୂଦନ ଯେତେବେଳେ ରାଜନୀତିରେ ପ୍ରବେଶକଲେ, ଓଡ଼ିଶାର ରାଜନୈତିକ ପରିବେଶ ସଂପର୍କରେ ତାଙ୍କର ବକ୍ତବ୍ୟ ଥିଲା-

''ମୁଁ ଯେତେବେଳେ ଏ ଆନ୍ଦୋଳନ ଆରମ୍ଭ କଲି, ସେତେବେଳେ ଓଡ଼ିଆଜାତି ବୋଲି କିଛି ନଥିଲା । ମୁଁ କେବଳ କୁଢ଼କୁଢ଼ ଅସ୍ଥି ଦେଖିଥିଲି, ଚାରିଆଡ଼େ କେବଳ ଅସ୍ଥି, ଅସ୍ଥି, ଅସ୍ଥି । ଏହି ଅସ୍ଥିକଙ୍କାଳ ଭିତରେ ପ୍ରାଣ ସଞ୍ଚାର କରି ହସ୍ତପଦ ଓ ପେଶୀ ଯୋଗାଇବା ନିମନ୍ତେ ମୋତେ ବହୁତ କାର୍ଯ୍ୟ କରିବାକୁ ପଡ଼ିଛି । ମୋ ଜାତିକୁ ଯୁଦ୍ଧ ସରଂଜାମରେ ସଜ୍ଜିତ କରିବାପାଇଁ ମତେ ଏକାକୀ କାର୍ଯ୍ୟ କରିବାକୁ ହୋଇଛି ।''

ସେତେବେଳେ କଲିକତା ଥିଲା ଭାରତର ରାଜଧାନୀ ଆଉ କ୍ଷମତାର କେନ୍ଦ୍ରସ୍ଥଳୀ । ବଙ୍ଗ ପ୍ରଦେଶର ସୀମା ଥିଲା ବନାରସଠାରୁ ଆରମ୍ଭ କରି ପୂର୍ବରେ ସମଗ୍ର ଆସାମ, ମଣିପୁର ତେଇଁ ବର୍ମାଞ୍ଚଳ ପର୍ଯ୍ୟନ୍ତ । ଏହି ସୁବିସ୍ତୀର୍ଣ୍ଣ ଅଞ୍ଚଳ ଅନ୍ତର୍ଗତ ବ୍ରିଟିଶ ଶାସନର ଛତ୍ରଛାୟା ତଳେ ବର୍ଦ୍ଧିତ ହୋଇଥିଲା ବଙ୍ଗୀୟ ନୌକରୀ ସାହି ଶାସନ । ମଧୁସୂଦନଙ୍କ ପ୍ରଥମ ସଂଗ୍ରାମ ଥିଲା, ବଙ୍ଗୀୟ ନୌକରୀ ସାହି ଶାସନକୁ ଦୁର୍ବଳ ଓ କ୍ଷୁଣ୍ଣ କରିବାପାଇଁ ଓ ଏଥିରେ ସେ ଆଶାତୀତ ଭାବେ ସଫଳତା ହାସଲ କରିଥିଲେ । ୧୯୧୫ବେଳକୁ ମଧୁସୂଦନ ଏକ ସୁସଂସ୍ଥାପିତ ଓଡ଼ିଆ ପ୍ରଶାସକ (ଡେପୁଟି କଲେକ୍ଟର ପୁଲିସ୍ ସୁପରିଟେଣ୍ଡେଣ୍ଟ) ମୁନ୍‌ସଫ୍ ଆଉ ବଳିଷ୍ଠ ଆଇନ୍‌ଜୀବୀ ଗୋଷ୍ଠୀ ତିଆରି କରିବା ପରେ, ବଙ୍ଗୀୟ ନୌକରୀ ସାହି ଶାସନକୁ ବହୁ ପରିମାଣରେ ପ୍ରତିହତ କରିପାରିଥିଲେ । ୧୯୨୧ ସାଲରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ, କଂଗ୍ରେସ ନେତୃସ୍ଥାନୀୟ ବ୍ୟକ୍ତିମାନେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ସଂଗ୍ରାମ କରୁଥିବାବେଳେ, ୧୮୮୨ ସାଲରେ ମଧୁସୂଦନଙ୍କୁ ସଂଗ୍ରାମ ଜାରି ରଖିବାକୁ ପଡ଼ିଥିଲା, ଉଭୟ ନୌକରୀ ସାହି ଶାସନର ଉପନିବେଶବାଦ ଓ ବ୍ରିଟିଶ୍ ଶାସନର ସାମ୍ରାଜ୍ୟବାଦ ବିରୋଧରେ । ଏହାଛଡ଼ା ଥିଲା ଜମିଦାରୀ ଅତ୍ୟାଚାର ଓ ଗଡ଼ଜାତ ଶାସନର ଚକ୍ରାନ୍ତ ବିରୋଧରେ ସଂଗ୍ରାମ । ଏ ସବୁ ଭିତରେ ସବୁଠାରୁ ଅସହନୀୟ ଥିଲା ବଙ୍ଗୀୟ ନୈକରୀ ସାହି ଶାସନର ଦୁରଭିସନ୍ଧି । ଏଥିଯୋଗୁଁ ସୂର୍ଯ୍ୟାସ୍ତ ଆଇନ ଜାରି କରାଯାଇ ଓଡ଼ିଆଙ୍କ ଜମିଦାରୀ ଅପହୃତ ହେବା ସହିତ ଓଡ଼ିଆ ଭାଷା ଓ ସଂସ୍କୃତିକୁ ଲୋପ କରିବାଲାଗି କାନ୍ତି ଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ'ଭଳି ପ୍ରଚାର ଅଭିଯାନ ।

ମଧୁସୂଦନ ହେଉଛନ୍ତି ପରାଧୀନକାଳୀନ ଭାରତର ଶାସନ ବ୍ୟବସ୍ଥା ମଧ୍ୟରେ ଏକମାତ୍ର ଓଡ଼ିଆ, ଯାହାଙ୍କପାଇଁ ଶାସକୀୟ ପରିଧିର ଅଳିନ୍ଦ ସବୁ ଖୋଲା ରହିଥିଲା , ବ୍ରିଟେନ୍‌ର ପ୍ରଧାନମଂତ୍ରୀ ସାର୍ ରାମ୍‌ସେ ମ୍ୟାକ୍‌ଡୋନାଲଡ୍‌ଙ୍କଠାରୁ ଆରମ୍ଭ କରି ଭାରତ ସଚିବ, ବଡ଼ଲାଟ ଓ ପ୍ରାଦେଶିକ

ଗଭର୍ଣ୍ଣରଙ୍କ ପର୍ଯ୍ୟନ୍ତ । ଏସବୁଥିରେ ତାଙ୍କର ସ୍ୱଚ୍ଛନ୍ଦ ପ୍ରବେଶ ଥିଲା । ବ୍ରିଟେନ୍‌ର ପ୍ରଧାନମଂତ୍ରୀ ସାର୍ ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ଼ ମଧୁସୂଦନଙ୍କୁ ଓଡ଼ିଶାର ମୁକୁଟ ବିହୀନ ଅଧୀଶ୍ୱର ବୋଲି ଆଖ୍ୟାୟିତ କରୁଥିବାବେଳେ ବଙ୍ଗର ଗଭର୍ଣ୍ଣର ବୋର୍ଡ଼ଲୀନ ମଧୁସୁଦନଙ୍କୁ ବଙ୍ଗଳା ବିଧାନ ସଭାର ସର୍ବଶ୍ରେଷ୍ଠ ତାର୍କିକ ରୂପେ ରୋମର ପ୍ରସିଦ୍ଧ ସମାଲୋଚକ ସିନେଟର 'କେଟୋ' ନାମରେ ସମ୍ବର୍ଦ୍ଧିତ କରିଥିଲେ ।

ଏହାଛଡ଼ା ବିଶ୍ୱାସ ହରାଇଥିବା ନିର୍ବାଚିତ ପ୍ରତିନିଧିମାନଙ୍କର ପ୍ରତ୍ୟାହାର ବ୍ୟବସ୍ଥା ସମ୍ବଳିତ ସ୍ୱାୟତ୍ତଶାସନ ଆଇନ ପ୍ରଣୟନ ହେବାର ପ୍ରାୟ ୪ ବର୍ଷ ପରେ, ଲଣ୍ଡନର କେକ୍ସଟନ୍ ହଲ୍‌ରେ ୧୯୨୭ ସାଲରେ ଅତ୍ୟନ୍ତ ମାର୍ମିକ ଭାବରେ ପ୍ରକାଶ କରି ବିହାର ଲାଟ୍ ସାର୍ ହେନେରୀ ୱିଲର୍ କହିଥିଲେ, ମଧୁସୂଦନ ବିହାର ଓଡ଼ିଶାର ମନ୍ତ୍ରୀ ରୂପେ ଏପରି ନୂତନ ବ୍ୟବସ୍ଥାମାନ ଖଞ୍ଜି ଦେଇଛନ୍ତି, ଯାହାକୁ ହାସଲ କରିବାଲାଗି ଏ ଦେଶର ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କୁ ଆହୁରି କିଛିବର୍ଷ ଅପେକ୍ଷା କରିବାକୁ ପଡ଼ିବ ।'' ଆଶ୍ଚର୍ଯ୍ୟ ଲାଗେ ପାର୍ଲାମେଣ୍ଟୀୟ ଗଣତନ୍ତ୍ରର ମୂଳପୀଠ ଇଂଲଣ୍ଡର ଉଦାର ସାମ୍ବିଧାନିକ ଓ ଶାସକୀୟ ବ୍ୟବସ୍ଥା ମଧ୍ୟରେ ଯାହା ଚିନ୍ତା ତଥା ଉପସ୍ଥାପନା କରିବାକୁ ବ୍ରିଟିଶ୍ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ପକ୍ଷରେ ସମ୍ଭବପର ହୋଇନଥିଲା, ପରାଧୀନ ଭାରତର ସଂକୁଚିତ ବୈଧାନିକ ବ୍ୟବସ୍ଥା ମଧ୍ୟରେ ଏପରି ପ୍ରଗତିଶୀଳ ଆଇନର ସଂଯୋଜନ କରିପାରିଥିଲେ ମଧୁସୂଦନ । ଏଥିରୁ ସୂଚିତ ହୁଏ ତାଙ୍କର ଗଣତନ୍ତ୍ର ପ୍ରତି ଅକୁଣ୍ଠ ସମର୍ଥନ ଓ ପ୍ରତିବଦ୍ଧତା ଯାହା ମଧ୍ୟରେ ତାଙ୍କର ପ୍ରମୁଖ ବୁଦ୍ଧିମତ୍ତା ଓ ଶାଣିତ ଚିନ୍ତାଧାରାର ଝଲକ ଫୁଟିଉଠେ ।

ସାମ୍ବିଧାନିକ ବ୍ୟବସ୍ଥାର କ୍ରମବିକାଶ ମଧ୍ୟରେ ସ୍ୱାଧୀନ ଭାରତର ପରିକଳ୍ପନା କରୁଥିବା ମଧୁସୂଦନଙ୍କ ପ୍ରତି ଶ୍ରଦ୍ଧାଂଜଳି ଅର୍ପଣ କରି ବିହାରର ଆଉ ଜଣେ ଗଭର୍ଣ୍ଣର ମିଷ୍ଟର ଏମ୍. ଜି ହାଲେଟ୍ କହିଛନ୍ତି, 'ମିଷ୍ଟର ଦାସଙ୍କ ପରି ଜନନାୟକମାନେ ଶାସନର ଭାରତୀୟକରଣରେ ଯେଉଁ ଉଜ୍ଜ୍ୱଳ ପରଂପରା ସୃଷ୍ଟି କରିଛନ୍ତି, ତାହା ହିଁ ଭାରତରେ ରାଜନୈତିକ ପକ୍ରିୟାକୁ ତ୍ୱରାନ୍ୱିତ କରିବାରେ ସହାୟକ ହୋଇଛି ।'

ଅସାଧାରଣ ଧୀସମ୍ପନ୍ନ ମଧୁସୂଦନଙ୍କ ଚିନ୍ତା ଓ ଚେତନାର ଚକ୍ରବାଳକୁ ଛୁଇଁବାପାଇଁ ବହୁ ଭାରତୀୟ ଜନନାୟକ ମଧ୍ୟ ସମର୍ଥ ହୋଇପାରି ନଥିଲେ । ସେତେବେଳର ସମଗ୍ର ଭାରତରେ ଯେଉଁ ରାଜନୈତିକ ଶକ୍ତିଗୁଡ଼ିକ କାର୍ଯ୍ୟ କରୁଥିଲା, ତାହାକୁ ଗଭୀର ଭାବେ ଅନୁଧ୍ୟାନ କରି ଭାରତର ଶାସକୀୟ ଅଳିନ୍ଦ ମଧ୍ୟରେ, ଯେଉଁଠାରେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନିଆଯାଏ, ତାହାକୁ ଗଭୀର ଭାବେ ପ୍ରଭାବିତ କରି ମଧୁସୂଦନ ସ୍ୱତନ୍ତ୍ର ଓଡ଼ିଶା ଗଠନ କରିବାକୁ ସମର୍ଥ ହୋଇଥିଲେ । ତହିଁରେ ଜନ ଆନ୍ଦୋଳନର ଭୂମିକା ଅପେକ୍ଷାକୃତ ଗୌଣ ଥିଲା ।

୧୯୦୦ ସାଲରେ ମଧୁସୂଦନ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ପାଖରେ ଅତ୍ୟନ୍ତ ମାର୍ମିକ ଭାବରେ ଦାବି ଉପସ୍ଥାପନା କରିବା ପରେ ଲର୍ଡ଼ କର୍ଜନ ଏହାକୁ ଆଧାର କରି ଓଡ଼ିଆ ଭାଷାଭାଷୀ ଅଂଚଳର ମିଶ୍ରଣ ଦାବିକୁ ସ୍ୱୀକୃତି ପ୍ରଦାନ କରିଥିଲେ ୧୯୦୩ ସାଲ୍‌ର ଡିସେମ୍ବର ୩ ତାରିଖରେ, (ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେବାର ୨୭ ଦିନ ପୂର୍ବରୁ) ରିସ୍‌ଲେ ସର୍କୁଲାର

ମାଧ୍ୟମରେ । ରିସ୍‌ଲେ ସର୍କୁଲାର୍‌କୁ ଆଧାର କରି ୧୯୦୫ ସାଲ ଅକ୍ଟୋବର ୧୬ ତାରିଖରେ ମଧ୍ୟପ୍ରଦେଶରୁ ସମ୍ବଲପୁର ଜିଲ୍ଲା, କଳାହାଣ୍ଡି, ପାଟଣା, ସୋନପୁର, ବାମଣ୍ଡା, ରେଢ଼ାଖୋଲ ଗଡ଼ଜାତ ଏବଂ ବିହାରର ଛୋଟନାଗପୁର ଡିଭିଜନରୁ ଗାଙ୍ଗପୁର ଓ ବଣେଇର ମିଶ୍ରଣ ଘଟିଲା ଓଡ଼ିଶା ଡିଭିଜନ ସହିତ । ଏହି ମିଶ୍ରଣ ପରେ ଓଡ଼ିଶା ଡିଭିଜନର ପରିସର ପ୍ରସାରିତ ହୋଇଥିଲା (ଗଞ୍ଜାମ ଓ କୋରାପୁଟ ବ୍ୟତୀତ) ଅବିଭକ୍ତ ୧୧ଗୋଟି ଜିଲ୍ଲାକୁ ଘେନି । ଏହି ମିଶ୍ରଣର ସମସ୍ତ କୃତିତ୍ୱ ମଧୁସୂଦନ ନିର୍ବାହ କରିଥିଲେ, ଲର୍ଡ଼କର୍ଜନଙ୍କ ଅକୁଣ୍ଠ ସହଯୋଗରେ । ଏହା ପରେ ଦକ୍ଷିଣ ଓଡ଼ିଶା ଆସି ମିଳିତ ହେଲା ୧୯୩୬ ସାଲରେ । ସବୁଗୁଡିକ ସମ୍ପାଦିତ ହୋଇଥିଲା ମଧୁସୂଦନଙ୍କ ବୁଦ୍ଧିମତ୍ତାର ପ୍ରୟୋଗରେ ।

ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ କାଳରେ ସମାନ୍ତରରାଳ ଭାବରେ ଆନ୍ଧ୍ରପ୍ରଦେଶ ଗଠନପାଇଁ ତୀବ୍ର ଆନ୍ଦୋଳନ ଚାଲିଥିଲା । ପଟ୍ଟାଭି ସୀତାରାମାୟା, ପ୍ରକାଶମ ଆଦି ଭାରତୀୟ ରାଜନୀତିର ବହୁ ପ୍ରଚଣ୍ଡ କ୍ଷମତାଶାଳୀ ଆନ୍ଧ୍ରନେତାଙ୍କ ଦାବି ଉପସ୍ଥାପନ ସତ୍ତ୍ୱେ ଆନ୍ଧ୍ରପ୍ରଦେଶ ଗଠନ ହେବାକୁ ଓଡ଼ିଶା ଅପେକ୍ଷା ଆହୁରି ଷୋହଳ ବର୍ଷ ପ୍ରତୀକ୍ଷା କରିବାକୁ ପଡ଼ିଥିଲା । ଅନ୍ୟ ଦିଗରେ ମଧୁସୂଦନଙ୍କ ବଳିଷ୍ଠ ଅଧିନାୟକତ୍ୱରେ ଏବଂ ପାରଳା ମହାରାଜାଙ୍କ ସହଯୋଗରେ ହିଁ ଓଡ଼ିଶା ପ୍ରଦେଶ ଗଠନ ସମ୍ଭବ ହୋଇପାରିଲା । ଏକଥା ପ୍ରତିଷ୍ଠିତ ସତ୍ୟ ଯେ ୧୯୩୬ ସାଲରେ ଓଡ଼ିଶା ପ୍ରଦେଶର ଗଠନ ସମ୍ଭବ ହୋଇନଥିଲେ ପରବର୍ତ୍ତୀ କାଳରେ ଓଡ଼ିଶା ପ୍ରଦେଶ ଗଠନର ସମ୍ଭାବନା ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଥାନ୍ତା । ପଣ୍ଡିତ ନେହେରୁଙ୍କ ଭାଷାରେ, ଯେଉଁଠାରେ ଓଡ଼ିଶାର ନାମ ଉଚ୍ଚାରିତ ହୁଏ, ସେଠାରେ ମଧୁସୂଦନଙ୍କ ନାମ ସ୍ୱତଃ ଆସିଯାଏ । କ୍ଷମତାର ମୂଳକେନ୍ଦ୍ର ସହିତ ସଂପର୍କ ରଖୁଥିବା ମଧୁସୂଦନ ଥିଲେ, ଗଣତନ୍ତ୍ରଧାରାର ଜଣେ ଏକନିଷ୍ଠ ପ୍ରତିଶ୍ରୁତିବଦ୍ଧ ସଂରକ୍ଷକ । ତାଙ୍କର ଅଚ୍ଛେଦ୍ୟ ସଂପର୍କ ସ୍ଥାପିତ ହୋଇଥିଲା ଦେଶର ତଳ ସ୍ତରରେ ଅବସ୍ଥାନ କରୁଥିବା ଦଳିତ ଓ ଅବହେଳିତ ଜନଗୋଷ୍ଠୀ ସହିତ । ଉତ୍କଳ ଟ୍ୟାନେରିର ପ୍ରତିଷ୍ଠା ପରଠାରୁ ତାଙ୍କୁ ବହୁବାର ଦେଖିବାକୁ ମିଳୁଥିଲା ଟ୍ୟାନେରିର ପ୍ରାଙ୍ଗଣରେ ମୋଚି, ଚମାର, କେଳାମାନଙ୍କ ସହିତ ମଲାଗୋରୁ, ଗୋଧୀ, କୁମ୍ଭୀର ଆଦି ଜନ୍ତୁଙ୍କର ଚମଡ଼ା କାଟି, ଯୋତା ତିଆରି କରିବା ପ୍ରକ୍ରିୟା ମଧ୍ୟରେ ।

ତେଣୁ ୧୯୦୫ ସାଲରେ ରକ୍ଷଣଶୀଳ ଭାରତରେ ଗାନ୍ଧୀ ଓ ଆମ୍ବେଦକରଙ୍କ ଆବିର୍ଭାବର ବହୁବର୍ଷ ପୂର୍ବରୁ ମଧୁସୂଦନ କେବଳ ଅଛୁଆ ଓ ଦଳିତମାନଙ୍କୁ ସାମାଜିକ ମାନ୍ୟତା ଦେବାପାଇଁ ନୁହେଁ, ଅର୍ଥନୈତିକ କ୍ଷେତ୍ରରେ ଟ୍ୟାନେରି ଆଦି ଉଦ୍ୟୋଗ ମାଧ୍ୟମରେ ଥଇଥାନ ବ୍ୟବସ୍ଥା କରିଥିଲେ । ଏଥିପାଇଁ ୧୯୨୫ ସାଲରେ ମହାତ୍ମାଗାନ୍ଧୀ ମଧୁସୂଦନଙ୍କ ପ୍ରତିଷ୍ଠିତ ଉଦ୍ୟୋଗମାନଙ୍କୁ କେବଳ ଅନୁଧ୍ୟାନ କରି ନ ଥିଲେ, ମଧୁସୂଦନଙ୍କ ପ୍ରତି ହାର୍ଦ୍ଦିକ ପ୍ରଶଂସା ଅଜାଡ଼ିଦେଇ ଏ ସମସ୍ତ କ୍ଷେତ୍ରରେ ତାହାଙ୍କୁ ନିଜର ଅଗ୍ରଜ ଓ ମାର୍ଗଦର୍ଶକ ଭାବରେ ସ୍ୱୀକୃତି ପ୍ରଦାନ କରିଥିଲେ ।

ମହାତ୍ମାଗାନ୍ଧୀଙ୍କ ପରିକଳ୍ପିତ ଅର୍ଥନୈତିକ ଓ ସାମାଜିକ କାର୍ଯ୍ୟକ୍ରମଗୁଡ଼ିକ ଭାରତରେ କାର୍ଯ୍ୟକାରୀ ହେବାର ବହୁ ପୂର୍ବରୁ ମଧୁସୂଦନ ସେହି ବୈପ୍ଳବିକ କାର୍ଯ୍ୟକ୍ରମଗୁଡ଼ିକର ରୂପାୟନ କରିଥିଲେ ଓଡ଼ିଶା ମାଟିରେ । ସେଥି ମଧ୍ୟରୁ ପ୍ରଧାନ ହେଲା, ସ୍ୱଦେଶୀ ଓ ଗ୍ରାମ୍ୟ ଶିଳ୍ପ ଆନ୍ଦୋଳନ (୧୮୯୬-୧୯୨୩), ଲବଣ କରହ୍ରାସ ଓ ଉତ୍ପାଦନର ସଂରକ୍ଷଣ (୧୮୯୬), ଅସ୍ପୃଶ୍ୟତା ନିବାରଣ (୧୯୦୫), ହିନ୍ଦୁ-ମୁସଲମାନ ଏକତା (୧୮୮୮), ତନ୍ତଶିଳ୍ପର ଉନ୍ନୟନ (୧୯୦୫), ଚରଖା ପ୍ରଚଳନ (୧୯୦୦), ତାରକସି ଶିଳ୍ପ ପ୍ରତିଷ୍ଠାନ (୧୮୯୭), ତାଳଗୁଡ଼ ଉଦ୍ୟୋଗ (୧୯୦୪) ଆଦି ବହୁ ଆଗୁଆ କାର୍ଯ୍ୟକ୍ରମ । ଏ ସମସ୍ତ ଥିଲା ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୋଧରେ ଅଘୋଷିତ ନୀରବ ସଂଗ୍ରାମ ।

ସେ ସମୟରେ ସାର୍ ହ୍ୟାଗ୍ ମ୍ୟାକ୍‌ଫରସନ୍, ବିହାରର ପ୍ରାକ୍ତନ ଗଭର୍ଣ୍ଣରଙ୍କ ପରି ବହୁ ଇଂରେଜ ପ୍ରଶାସକ ଲେଖିଛନ୍ତି, କୃଷକମାନଙ୍କର ସ୍ୱାର୍ଥ ଓ ସ୍ୱତ୍ୱ ସୁରକ୍ଷିତ ରଖିବାଲାଗି ମଧୁସୂଦନ ଥିଲେ ଜଣେ ଅନମନୀୟ ସାଲିସ୍ ବିହୀନ ସଂଗ୍ରାମୀ । ଓଡ଼ିଶା ଭଳି କୃଷି ପ୍ରଧାନ କ୍ଷେତ୍ରରେ କୃଷକଙ୍କର ଅଧିକାର ଓ ସ୍ୱତ୍ୱ ସୁରକ୍ଷାଲାଗି ସେ ଗଢ଼ିଥିଲେ ପ୍ରଜା ପରିଷଦ (୧୯୦୯), ଯହିଁରେ ଉତ୍କଳମଣି ଗୋପବଂଧୁ ସଂପାଦକ ରୂପେ ଅବସ୍ଥାପିତ ହୋଇଥିଲେ । ଆଉ ୧୯୧୨ ସାଲରେ ବଙ୍ଗର ବ୍ୟବସ୍ଥାପକ ସଭାରେ ଉଗ୍ର ଶୋଷଣଭିତ୍ତିକ ପ୍ରଜାସ୍ୱତ୍ୱ ବିଲ୍‌ର ତୀବ୍ର ପ୍ରତିବାଦ ସହ କଲିକତାରେ ଓଡ଼ିଆ କୃଷକମାନଙ୍କ ବିପୁଳ ସମାବେଶରେ ସରକାରଙ୍କୁ ଦୃଢ଼ ଚେତାବନୀ ଦେବା ଫଳରେ, ବିଲ୍‌ଟି ବଡ଼ଲାଟ ଲର୍ଡ଼ହାର୍ଡ଼ିଞ୍ଜ୍‌ଙ୍କଦ୍ୱାରା ଅଗ୍ରାହ୍ୟ ହୋଇଯାଇଥିଲା । ଏହା ଭାରତୀୟ ସାମ୍ବିଧାନିକ ଇତିହାସରେ ଏକ ବଳିଷ୍ଠ ବ୍ୟତିକ୍ରମର ନଜିର ରୂପେ ପ୍ରତିଷ୍ଠା ଲାଭ କରିଛି ।

ମଧୁସୂଦନଙ୍କର ଜୀବନବ୍ୟାପୀ ସଂଗ୍ରାମ ଫଳରେ, ଓଡ଼ିଶା ପ୍ରଦେଶ ସୃଷ୍ଟି ହୋଇପାରିଲା । ଭାରତୀୟ ନାରୀମାନେ ପାଇଥିଲେ ଆଇନଜୀବୀ ବୃତ୍ତି ଗ୍ରହଣର ଯୁଗାନ୍ତକାରୀ ଅଧିକାର ୧୯୨୩ ସାଲରେ । ଓଡ଼ିଶାର ଆଧ୍ୟାତ୍ମିକତାର ମୂଳ ପାଠ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନାରେ ଇଂରେଜ ସରକାରଙ୍କର ଅଧିକାରକୁ ପ୍ରତିହତ କରିଥିଲେ ମଧୁସୂଦନ (୧୮୮୭) ଆଇନଗତ ସଂଗ୍ରାମରେ, ଯେଉଁଥିପାଇଁ ସମଗ୍ର ଓଡ଼ିଆ ଜାତି ତାଙ୍କ ନିକଟରେ କୃତଜ୍ଞ ରହିବ ।

ଏହାଛଡ଼ା ମଧୁସୂଦନ ଥିଲେ ସେ ଯୁଗର ଗଡ଼ଜାତ ଶାସନ ବ୍ୟବସ୍ଥାର ଦୃଢ଼ ସମାଲୋଚକ । ଗଡ଼ଜାତଗୁଡ଼ିକର ଜିଲ୍ଲା ପ୍ରଶାସନ ସହିତ ମିଶ୍ରଣ ଲାଗି ସେ ଦୃଢ଼ ମତ ପ୍ରକାଶ କରିଥିଲେ । ଓଡ଼ିଶାରେ ବନ୍ୟା ଦୁର୍ଗତ ତଥା ମରୁଡ଼ି ପ୍ରପୀଡ଼ିତ ଭୋକିଲା ଲୋକଙ୍କର ସେବାଲାଗି ମଧୁସୂଦନଙ୍କର ଭୂମିକା ଥିଲା ଅବିସ୍ମରଣୀୟ ।

ଓଡ଼ିଆ ଜାତିକୁ ସଂସ୍ଥାପିତ କରିବାପାଇଁ ତାଙ୍କର ମହନୀୟ ଅବଦାନର ପୂର୍ଣ୍ଣ ଆକଳନ କରିବା ସମ୍ଭବ ନୁହେଁ । କାରଣ ତାଙ୍କ କାର୍ଯ୍ୟର ପରିସର ପ୍ରସାରିତ ହୋଇଥିଲା ଜାତୀୟ ଜୀବନର ପ୍ରତ୍ୟେକ କ୍ଷେତ୍ରକୁ, ଯହିଁରେ ସେ ଉଦ୍‌ଭାସିତ ହୋଇ ଉଠିଥିଲେ ପ୍ରଖର ସୂର୍ଯ୍ୟର ଆଲୋକ ପରି । ତେଣୁ ସେ ଥିଲେ ଶତାବ୍ଦୀର ସୂର୍ଯ୍ୟ । ହେଲେ ପ୍ରତିଦାନରେ ଜାତି ତାଙ୍କୁ କଣ ବା ଦେଇଛି?

ଫ୍ରାନ୍ସର ଜୋନ୍ ଅଫ୍ ଆର୍କ ପରିଶ୍ରାନ୍ତ, କ୍ଳାନ୍ତ, ଭୀତତ୍ରସ୍ତ ଫରାସୀ ଜାତିର କାନେକାନେ ଗାରିମାମୟ ଐତିହ୍ୟ ଓ ପ୍ରଚଣ୍ଡ ସ୍ୱାଭିମାନର ବାର୍ତ୍ତା ଶୁଣାଇ ଜାଗ୍ରତ କଲା ପରି, ମଧୁସୂଦନ ପରିଚୟହୀନ ନିଷ୍ପ୍ରଭ କଙ୍କାଳସାର ଓଡ଼ିଆ ଜାତିର ଉତ୍ଥାନ କରାଇ ସ୍ୱତନ୍ତ୍ର ସ୍ଥିତି ଓ ସତ୍ତା ପ୍ରଦାନ କରିଥିଲେ । ହେଲେ କାର୍ଯ୍ୟ ସମ୍ପାଦନ ପରେ ଜୋନ୍ ଅଫ୍ ଆର୍କଙ୍କୁ ଅଗ୍ନିରେ ନିକ୍ଷେପ ଅଥବା ଯୀଶୁଙ୍କୁ କ୍ରୁଶରେ ଚଢ଼ାଇବା ପରି ଆମେ ତାହାଙ୍କୁ ଲାଞ୍ଛିତ ଓ ଅପମାନିତ କରି ବିସ୍ମୃତିର ଅତଳ ଗହ୍ୱରକୁ ଠେଲି ଦେଇଛୁ କି ନାହିଁ, ତାହାର ବିଚାର ଅନ୍ୟ କ୍ଷେତ୍ରରେ ।



# ମାତୃଭୂମିର ମନ୍ତ୍ରଦାତା ମଧୁସୂଦନ

ସ୍ୱାଧୀନତାର ବିଲୁପ୍ତି ପରେ ୧୫୬୮ ସାଲରୁ ପ୍ରାୟ ଚାରିଶହ ବର୍ଷଧରି ଦାସତ୍ୱର ଶୃଙ୍ଖଳରେ ନିଷ୍ପେଷିତ ଆଉ ବିଖଣ୍ଡିତ ଓଡ଼ିଆ ଜାତିକୁ ଏକତ୍ରିତ କରିବାର ପ୍ରୟାସ ମଧ୍ୟରେ, ମଧୁସୂଦନ ଜନ୍ମଭୂମିକୁ ମାତୃସ୍ୱରୂପା କରୁଣାଦାୟିନୀ ଜନନୀ ରୂପେ ଆବାହନ କରିଥିଲେ । ଆପଣାର ଆତ୍ମପରିଚୟ ଓ ସ୍ୱାଭିମାନକୁ ଫେରିପାଇବାପାଇଁ ଏହା ହିଁ ସମଗ୍ର ଓଡ଼ିଆ ଜାତି ମଧ୍ୟରେ ସୃଷ୍ଟି କରିଥିଲା ପ୍ରବଳ ଉଦ୍ଦୀପନା ଓ ଜାଗରଣ ।

ଜନନୀର ମହିମାଗାନରେ ମହିମାନ୍ୱିତ ମଧୁସୂଦନଙ୍କ କଣ୍ଠରେ ଉଚ୍ଛୁଳି ଉଠିଥିଲା, ମାତୃବନ୍ଦନାର ଅମରଗାନ, ଜନସମାଜକୁ ଦେଶମାତୃକାର ସେବାରେ ନିବେଦିତ କରିବାପାଇଁ-

''ଜନ୍ମ ହେଲାକ୍ଷଣି ସ୍ତନ୍ୟଦାନ କରି
ମାତା ମନ୍ତ୍ର ଦେଲେ ପରାର୍ଥେ ଜୀବନ
ଆଶାଥିଲା ମନେ ଦେଖିବି ଜୀବନେ
ଉତ୍କଳ ମାତାର ସହାସ୍ୟ ବଦନ
ସେ ଆଶା ତୁଟିଲା ସ୍ୱପନ ଭାଙ୍ଗିଲା
ନଦେଖି ଉତ୍କଳେ କରତବ୍ୟ ଜ୍ଞାନ ।''

୧୯୦୪ ସାଲରେ, ବ୍ରିଟିଶ ସରକାରଙ୍କ ପକ୍ଷରୁ ମଧୁସୂଦନଙ୍କୁ ସି.ଆଇ.ଇ ଭଳି ସର୍ବୋଚ୍ଚ ଉପାଧିରେ ସମ୍ମାନିତ କରାଯାଇଥିଲା । ଏହି ଉପଲକ୍ଷେ ବିଭିନ୍ନ ସଂପ୍ରଦାୟ ଓ ଗୋଷ୍ଠୀ ପକ୍ଷରୁ ତାଙ୍କୁ ଯେଉଁ ସମ୍ବର୍ଦ୍ଧନା ଦିଆଯାଇଥିଲା, ତାହାରି ଉତ୍ତରରେ ମଧୁସୂଦନ କହିଥିଲେ ''ଆପଣମାନେ ଶ୍ରଦ୍ଧାର ସହ ଯେଉଁ ଫୁଲମାଳାଟି ଅର୍ପଣ କରିଛନ୍ତି, ତାହାକୁ ମୁଁ ଉତ୍କଳ ଜନନୀଙ୍କର କଣ୍ଠଦେଶରେ ଲମ୍ବାଇ ଦେଉଛି । ଅପୂର୍ବ କୀର୍ତ୍ତିରାଜି ବିମଣ୍ଡିତା ପରମ ଐଶ୍ୱର୍ଯ୍ୟଶାଳିନୀ ଉତ୍କଳ ଜନନୀଙ୍କର ଦୁର୍ଦ୍ଦଶା ଦେଖି ଯୌବନକାଳରେ କାନ୍ଦିଥିଲି, ଆଉ ଜୀବନସାରା ଏଥିପାଇଁ କେତେ ଯେ କାନ୍ଦିଛି, ହେଲେ ଜାଣିପାରୁ ନାହିଁ ସେ ଦୁର୍ଦ୍ଦଶାର ଅନ୍ତ କେବେ ହେବ ।''

ସିମଳାଠାରେ ୧୯୦୦ ସାଲ ଅକ୍ଟୋବର ମାସରେ, ସେତେବେଳର ପ୍ରଚଣ୍ଡ ପ୍ରତାପଶାଳୀ ବଡ଼ଲାଟ କର୍ଜନଙ୍କର ସମକ୍ଷରେ ମଧୁସୂଦନ ଦେଶ ମିଶ୍ରଣର ଦାବି ଉପସ୍ଥାପନ କରିଥିଲେ । ଲର୍ଡ଼ କର୍ଜନ କହିଥିଲେ, 'ତାହା ସମ୍ଭବ ହୋଇ ନ ପାରେ' । ସେତେବେଳେ ମଧୁସୂଦନଙ୍କ ଆଖିରେ ଉଚ୍ଛୁଳି ପଡ଼ିଥିବା ଅଶ୍ରୁ ଆଉ ବାଧା ମାନି ନଥିଲା । ତାଙ୍କର ଆଖିରେ ଯେପରି ଆସିଥିଲା ଲୁହର ବନ୍ୟା । ଅଶ୍ରୁ ବିଗଳିତ ନୟନ ଓ ଭାବବିହ୍ୱଳ କଣ୍ଠରେ ମଧୁସୂଦନ କହିଲେ, ତାହେଲେ ଅତୃପ୍ତ ଆଉ ଆକୁଳ ନୟନରେ ମାତୃ କରୁଣାର ସ୍ପର୍ଶ ପାଇବାପାଇଁ ଚାହିଁ ବସିଥିବା ଝିଅମାନେ (ବିଚ୍ଛିନ୍ନାଞ୍ଚଳ)ଚିରକାଳ ମାତା (ଓଡ଼ିଶାର ମୂଳ ଭୂଖଣ୍ଡ)ଙ୍କଠାରୁ ବିଚ୍ଛିନ୍ନ ହୋଇ ରହିବେ ? ଝିଅମାନଙ୍କର କ'ଣ ମାତୃସ୍ନେହ ପାଇବାର ଅଧିକାର ନାହିଁ ? ଝିଅମାନଙ୍କୁ ସେହି ଅଧିକାରରୁ ବଂଚିତ କରାହୋଇଛି, ବ୍ରିଟିଶ୍ କାଳର କେଉଁ ଐତିହାସିକ ଘଟଣାବଳୀର ଦୁର୍ବିପାକ ମଧ୍ୟରେ । ତେଣୁ ଏହାର ସମାଧାନ ଆପଣଙ୍କର ପାଖେ ହିଁ ସମ୍ଭବ ହେବ । ମଧୁସୂଦନଙ୍କର ବାଷ୍ପାକୁଳ କଣ୍ଠରେ ଫୁଟିଉଠିଥିଲା ଦୃଢ଼ ଦମ୍ଭୋକ୍ତି ।

ମଧୁସୂଦନଙ୍କ ଅନୁପ୍ରେରିତ ଜାତୀୟତାରେ ସାମାନ୍ୟତମ ଉତ୍କଳୀୟତାର ସ୍ପର୍ଶ ନଥିଲା । ଏହାଥିଲା ଭାରତମାତାଙ୍କର ଯଶୋଗାନରେ ମହିମାନ୍ୱିତ । ତେଣୁ ସେ ଉତ୍କଳ ସମ୍ମିଳନୀର ଆରାଧନା ମଣ୍ଡପରେ ବରାଭୟଦାୟିନୀ ଭାରତମାତାଙ୍କର ମୂର୍ତ୍ତିସ୍ଥାପନାକରି ତାହାଙ୍କୁ ଅର୍ଚ୍ଚନା କରିଥିଲେ **ସର୍ବେଷାଂ ନୋ ଜନନୀ ଭାରତ** ମାଧ୍ୟମରେ । ଏହି ଦୃଷ୍ଟିରୁ ମଧୁସୂଦନ ପ୍ରଥମେ ଥିଲେ ଭାରତୀୟ । ତାପରେ ଥିଲେ ଉତ୍କଳୀୟ ।

୧୯୦୮ ସାଲରେ ପୁରୀଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ଜନସାଧାରଣଙ୍କ ମଧ୍ୟରେ ପ୍ରବଳ ଉଦ୍ଦୀପନା ଦେଖି, ସେମାନଙ୍କୁ ମାତୃମଂତ୍ରରେ ଅଭିମଂତ୍ରିତ କରି ନିମ୍ନ ପ୍ରକାରେ ଭାଷଣ ପ୍ରଦାନ କରିଥିଲେ-

''ବଡ଼ଦେଉଳ ବାଲିରେ ପୋତିହୋଇ ପଡ଼ିଥିଲା । ରାଜାଙ୍କର ଘୋଡ଼ାଟାପୁ ବାଜିବାରୁ ରାଜା ତା'ର ପୁନରୁଦ୍ଧାର କରିଥିଲେ । ଏହି ସ୍ଥାନରେ ବଡ଼ଦେଉଳକୁ ଚାହିଁ ଏ ଜାତିର ପୁନରୁଦ୍ଧାର କର । ଏହା ଆମ୍ଭମାନଙ୍କର ବୀଜମଂତ୍ର ହେବା ଆବଶ୍ୟକ । ଏହିଠାରେ ଆମ୍ଭେମାନେ ଉତ୍କଳ ଜନନୀ ତଥା ଭାରତ ଜନନୀର କ୍ରୋଡ଼ରେ ବସିଥାଉ । ସମସ୍ତେ ଏହିକଥା ଭାବ ଓ ପ୍ରତିଜ୍ଞା କର...... ମୁଁ ଏହି ସଭାରେ ଦୃଢ଼ ପ୍ରତିଜ୍ଞା କରୁଛି, ପ୍ରତିଦିନ ୫ ମିନିଟ୍ ଦେଶକଥା ଭାବିବି । ସମ୍ମିଳନୀ ସକାଶେ, ଉତ୍କଳ ନିମନ୍ତେ ଓ ଭାରତ ନିମନ୍ତେ ପାଞ୍ଚ ମିନିଟ୍ ସମୟ ବ୍ୟୟ କରିବି । ଏହାହିଁ ହେଉଛି ମଂତ୍ର । ଏହି ମଂତ୍ରରେ ଆଜି ସମ୍ମିଳନୀର ବିଦ୍ୟାରମ୍ଭ ।''

ମଧୁସୂଦନ ଏହି କଥାକୁ ବୁଝାଇବାକୁ ଯାଇ ବିଷୟଟିର ବିଶ୍ଳେଷଣ କରି କହିଛନ୍ତି, ''ଉତ୍କଳ ଜନନୀ ଓ ଭାରତ ଜନନୀଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶରେ ପୀଡ଼ା ହେଲେ, ସେହି ଅଂଶର ଚିକିତ୍ସା କରିବାକୁ ହେବ । ତେଣୁ ଏହି ଅଂଶବିଶେଷର ଚିକିତ୍ସାଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳରେ ଚିକିତ୍ସାର ଉଦ୍ଦେଶ୍ୟ, ଭାରତର ଉନ୍ନତି ।''

ଋଷି ଶ୍ରୀ ଅରବିନ୍ଦ କହିଛନ୍ତି ଯେ, ପ୍ରତ୍ୟେକ ଦେଶର ଅନ୍ତରାଳରେ ଗୋଟିଏ ସ୍ୱତନ୍ତ୍ର ମାତୃସତ୍ତା ବିଦ୍ୟମାନ । ଦେଶ ବିଖଣ୍ଡିତ ହେଲେ ଯେଉଁ ଅସ୍ୱାଭାବିକ ବିପର୍ଯ୍ୟସ୍ତ ଅବସ୍ଥାର ସୃଷ୍ଟିହୁଏ, ତାହା ହିଁ ଅନୁପ୍ରେରିତ କରେ ସମଗ୍ର ଦେଶକୁ ଏକତ୍ରିତ କରିବାପାଇଁ । ଏହିଭଳି ଅବସ୍ଥାର ସୃଷ୍ଟି ହୋଇଥିଲା ୧୯୦୫ ସାଲରେ । ବଙ୍ଗଳା ପ୍ରଦେଶର ବିଶାଳତା ଦୃଷ୍ଟିରୁ ଲର୍ଡ଼ କର୍ଜନ ବଂଗଳା ପ୍ରଦେଶକୁ ବିଖଣ୍ଡିତ କରି ପୂର୍ବ ବଙ୍ଗକୁ ଆସାମ ପ୍ରଦେଶ ସହିତ ମିଶାଇ ଦେଇଥିଲେ । ଏହି ବଙ୍ଗ ଭଂଗ ବିରୁଦ୍ଧରେ ଦେଶରେ ଯେଉଁ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥିଲା, ତାହା ସମକାଳୀନ ଭାରତର ସମସ୍ତ ରାଜନୈତିକ ପରିସ୍ଥିତିକୁ ପ୍ରଚଣ୍ଡ ଭାବେ ଦୋହଲାଇ ଦେଇଥିଲା । ଏହି ସମୟରେ ଶ୍ରୀ ଅରବିନ୍ଦ ତାଙ୍କ ସଂପାଦିତ 'ବନ୍ଦେ ମାତରମ୍' ପତ୍ରିକାରେ ୧୯୦୭ ଡିସେମ୍ବର ୧୩ ତାରିଖରେ ମଧୁସୂଦନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ ଲେଖିଥିଲେ- ଓଡ଼ିଶାରେ ବର୍ତ୍ତମାନ ଏକ ନବଚେତନା ଓ ନବଜାଗରଣର ସୂତ୍ରପାତ ହୋଇଛି । ଓଡ଼ିଶା ତା'ର ଅସ୍ତିତ୍ୱ ରକ୍ଷାଲାଗି ମଧୁସୂଦନଙ୍କ ପରି ଜଣେ ସୁଦକ୍ଷ ଶକ୍ତିଶାଳୀ ନେତାଙ୍କର ଅଧିନାୟକତ୍ୱରେ ଲାଗି ପଡ଼ିଥିବା ଦେଖାଯାଏ । ଏହା ସହିତ ଶ୍ରୀ ଅରବିନ୍ଦ, ଏହି ଆନ୍ଦୋଳନ ଆଂଚଳିକତାବାଦର ସୃଷ୍ଟି କରିପାରେ ବୋଲି ମଧ୍ୟ ଆଶଙ୍କା ପ୍ରକାଶ କରିଥିଲେ ।

ଏହାର ଉତ୍ତରରେ ମଧୁସୂଦନ କହିଥିଲେ, ''ଯଦି ବିଖଣ୍ଡିତ ବଂଗଳାର ମିଶ୍ରଣ ଲାଗି ଆହୂତ ଜନଜାଗରଣକୁ ଜାତୀୟ (ସର୍ବଭାରତୀୟ) ଆନ୍ଦୋଳନ ରୂପେ ଆଖ୍ୟା ପ୍ରଦାନ କରାଯାଏ, ତାହେଲେ ଚାରିଖଣ୍ଡ ରାଜ୍ୟରେ ବିଭାଜିତ ଓଡ଼ିଆଭାଷୀ ଅଂଚଳର ମିଶ୍ରଣକୁ କାହିଁକି ଆଂଚଳିକତାର ନାମରେ ସୂଚାଇ ଦିଆଯାଉଛି ? ବଂଗ ଭଂଗ ଆନ୍ଦୋଳନ ଯେଉଁ ଉଦ୍ଦେଶ୍ୟ ଘେନି କରାଯାଉଛି, ଠିକ୍ ସେହି ଲକ୍ଷ୍ୟରେ ଓଡ଼ିଆଭାଷୀ ଅଂଚଳର ମିଶ୍ରଣଲାଗି ପ୍ରଚେଷ୍ଟା ଜାରି ରହିଛି । ତେଣୁ ବଂଗ ଭଂଗ ଆନ୍ଦୋଳନରେ ସଂଶ୍ଳିଷ୍ଟ ସମସ୍ତ ବ୍ୟକ୍ତି ଓଡ଼ିଆମାନଙ୍କର ଏହି ଦାବି ଲାଗି ଅକୁଣ୍ଠ ସମର୍ଥନ ଜଣାଇବା ଉଚିତ ।''

ବହୁ ସର୍ବଭାରତୀୟ ନେତାଙ୍କର ଓଡ଼ିଶା ମିଶ୍ରଣର ଦାବିକୁ ଅବଜ୍ଞା ପରିପ୍ରେକ୍ଷୀରେ ମଧୁସୂଦନ ୧୯୧୫ ସାଲରେ ସେମାନଙ୍କୁ ପ୍ରତ୍ୟୁତ୍ତରରେ କହିଥିଲେ, ''ଆପଣମାନଙ୍କର ଏପରି ଜାଗରଣର ଆବଶ୍ୟକତା ପଡୁନାହିଁ, କାରଣ ହିନ୍ଦୀଭାଷୀମାନେ ବିରାଟ ଉତ୍ତର ଖଣ୍ଡକୁ ମାଡ଼ି ବସିଛନ୍ତି । ସେମାନଙ୍କର ସ୍ୱତନ୍ତ୍ର ପ୍ରଦେଶର ଆବଶ୍ୟକତା ନାହିଁ । ମହାରାଷ୍ଟ୍ରୀୟମାନେ ଶିବାଜୀଙ୍କର ସ୍ମୃତି ଧରି ଗୋଟିଏ ପ୍ରାଦେଶିକ ଗର୍ବ ଭାବ ଅକ୍ଷୁଣ୍ଣ ରଖିଛନ୍ତି । କର୍ଣ୍ଣାଟକବାସୀମାନେ ମହୀଶୂର ଭଳି ଏକ ଅର୍ଦ୍ଧ ସ୍ୱାଧୀନ ରାଜ୍ୟରେ ସୀମାବଦ୍ଧ । ବଙ୍ଗାଳୀମାନେ ଉତ୍ତର ଓଡ଼ିଶାରେ ଓ ତେଲୁଗୁମାନେ ଗଂଜାମ ଓ ଜୟପୁରରେ ମଧ୍ୟସ୍ତନ ଶାସକ ଭାବେ ଶାସନ କରୁଅଛନ୍ତି । ଏବେ ତେଲୁଗୁମାନେ ତାମିଲ୍‌ମାନଙ୍କ ମଧ୍ୟସ୍ତନ ଶାସନରେ ବିକ୍ଷୁବ୍ଧ ହୋଇ ସ୍ୱତନ୍ତ୍ର ଆନ୍ଧ୍ରପ୍ରଦେଶ ଦାବି କରୁଅଛନ୍ତି ।''

''ଅତଏବ ଅନ୍ୟାନ୍ୟ ଅଂଚଳରୁ ଓଡ଼ିଶାର ପରିସ୍ଥିତି ସ୍ୱତଂତ୍ର । ଆମେ ଓଡ଼ିଆମାନେ ଏକ ଶାସନାଧୀନ ନହେଲେ, ଅନ୍ୟ ପ୍ରଦେଶମାନଙ୍କ ସଙ୍ଗେ କାନ୍ଧମିଳାଇ ଚାଲିପାରିବୁ ନାହିଁ । ତାହା ନହେବା ପର୍ଯ୍ୟନ୍ତ ଭାରତୀୟ ସଂହତିର କ୍ଷେତ୍ର ସୁଗମ ହେବ ନାହିଁ । ଆମ୍ଭେ ଓଡ଼ିଆମାନେ ଭାରତୀୟ ଜାତୀୟତାର ବିରୁଦ୍ଧରେ ଯାଉଛୁ, ତାହା କଳ୍ପନା କରିହେବ ନାହିଁ । କିନ୍ତୁ ଯେପରି ବୃକ୍ଷର ସବୁଶାଖା

ବର୍ଦ୍ଧିତ ହେଲେ ବୃକ୍ଷ ବର୍ଦ୍ଧିତ ହେବ ଓ ସୌଷ୍ଠବପୂର୍ଣ୍ଣ ହେବ, ସେହିପରି ଭାରତର ପ୍ରତ୍ୟେକ ଅଂଚଳ, ତାର ନିଜ ଇତିହାସ, ପରଂପରା ଓ ସଂସ୍କୃତିକୁ ମୂଳକରି ଗଢ଼ି ଉଠିବ ଓ ପରେ ସମସ୍ତ ଅଂଚଳର ପରସ୍ପର ଭାବ ଆଦାନ ପ୍ରଦାନ ଓ ସହଯୋଗଦ୍ୱାରା ମହାଭାରତୀୟ ଜାତି ଦୃଢ଼ୀଭୂତ ହେବ ।

ଏହା ଥିଲା ମଧୁସୂଦନଙ୍କର ଯୁକ୍ତିସମ୍ବଳିତ ତାତ୍ତ୍ୱିକ ଉତ୍ତର, ଯହିଁରେ ଉତ୍କଳୀୟ ଜାଗରଣ, ଭାରତୀୟ ଉତ୍‌ଥାନ ଓ ସମୃଦ୍ଧିର ପରିପୂରକ ଥିଲା । ଏହି ପରିପ୍ରେକ୍ଷୀରେ ସୂଚାଇ ଦିଆଯାଉଛି ଯେ, ୧୯୨୮ ସାଲରେ ସମଗ୍ର ଭାରତର ରାଜନୈତିକ ନେତାମାନେ ସାଇମନ୍ କମିଶନକୁ ପ୍ରତ୍ୟାଖ୍ୟାନ କରିବା ସତ୍ତ୍ୱେ ମଧୁସୂଦନଙ୍କ ନିର୍ଦ୍ଦେଶରେ ଓଡ଼ିଆମାନଙ୍କଦ୍ୱାରା ପାଟନାଠାରେ କମିଶନଙ୍କୁ ସ୍ୱାଗତ କରାଯାଇ ଓଡ଼ିଶାର ଦାବି ଉପସ୍ଥାପିତ କରାଯାଇଥିଲା । କାରଣ ଭାରତର ବହୁ ନେତାଙ୍କର ନାଡ଼ି ଚିପିଥିବା ମଧୁସୂଦନ ନିଃସନ୍ଦେହ ଥିଲେ ଯେ, ସ୍ୱାଧୀନତା ପୂର୍ବରୁ ଓଡ଼ିଶା ପ୍ରଦେଶ ଗଠନ ନ ହେଲେ, ସ୍ୱାଧୀନତାର ପରବର୍ତ୍ତୀ ଯୁଗରେ ପଡ଼ୋଶୀ ରାଜ୍ୟର ନେତାଙ୍କ ଚକ୍ରାନ୍ତରେ ଓଡ଼ିଶା ପ୍ରଦେଶ ଗଠନର ଦାବି ସୁଦୂର ପରାହତ ହେବ । ଏହି ସାଇମନ କମିଶନଙ୍କର ସୁପାରିଶକ୍ରମେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସୃଷ୍ଟି ସମ୍ଭବ ହୋଇପାରିଲା ଓ ଓଡ଼ିଆମାନେ ନିଜର ପାଦଥାପି ଛିଡ଼ାହେବାର ସ୍ୱତନ୍ତ୍ର ଭୂମି ପାଇପାରିଲେ । ଅନ୍ୟଥା ଭାରତୀୟ ମାନଚିତ୍ରରେ ଓଡ଼ିଶାର ସ୍ଥାନ କେଉଁକାଳୁ ବିଲୁପ୍ତ ହୋଇସାରନ୍ତାଣି । ଏଥିପାଇଁ ମଧ୍ୟ ପାରଳା ମହାରାଜାଙ୍କର ଦାନ ଅବିସ୍ମରଣୀୟ ।

ବହୁ ଜନ- ଆନ୍ଦୋଳନ ଓ ବିପ୍ଳବର ପଶ୍ଚାତରେ ରହିଥାଏ ଚିନ୍ତାନାୟକଙ୍କର ପ୍ରେରଣା । ସେମାନଙ୍କର ଲେଖାବଳୀ ମାଧ୍ୟମରେ ସମାଜରେ ଜାଗରଣପାଇଁ ତାହା କ୍ଷେତ୍ର ପ୍ରସ୍ତୁତ କରିଥାଏ । ଯେପରି ରୁଷୋ, ଭଲ୍‌ଟେୟାର୍ ବା ମାର୍କସ୍ କିମ୍ବା ଏଞ୍ଜେଲେସ୍‌ଙ୍କର ଚିନ୍ତାଧାରାଦ୍ୱାରା ଫରାସୀ ଓ ରୁଷ୍‌ବିପ୍ଳବ ସଂଘଟିତ ହୋଇଥିଲା ନେପୋଲିୟନ୍ କିମ୍ବା ଲେନିନ୍‌ଙ୍କ ଭଳି ଅଧିନାୟକମାନଙ୍କ ନେତୃତ୍ୱରେ। ମାତ୍ର ଉତ୍କଳୀୟ ଜାଗରଣ କ୍ଷେତ୍ରରେ ମଧୁସୂଦନ ଥିଲେ ମନ୍ତ୍ରଦାତା, ଉତ୍କଳୀୟ ଜାତୀୟତାର ବ୍ୟାଖ୍ୟାକାର । ତାଙ୍କର ଲେଖା ଓ ଭାଷଣରେ ଥିଲା, ମନ୍ତ୍ରର ଉଦାତ୍ତ ଉଚ୍ଚାରଣ ଭଳି ବିଖଣ୍ଡିତ ଓଡ଼ିଆ ଜାତିର ଏକତ୍ରୀକରଣପାଇଁ ପ୍ରବଳ ଉଦ୍ଦୀପନାର ବାଣୀ, ଯାହାକୁ ଆଧାର କରି ମଧୁସୂଦନ ଆରମ୍ଭ କରିଥିଲେ ଓଡ଼ିଆ ଜାତି-ମୁକ୍ତିର ଦୁର୍ବାର ସଂଗ୍ରାମ ।

ମଧୁସୂଦନଙ୍କର ଆବିର୍ଭାବ, ଏ ଜାତିର ମୁକ୍ତିଲାଗି ଥିଲା ଚରମ ଆବଶ୍ୟକତା । ତାଙ୍କର ନିଜସ୍ୱ ବାଣୀରେ, ସେ ପ୍ରଦୀପର ଶିଖାଧରି ଜଳିଜଳି ନିଃଶେଷ ହୋଇ ଗଭୀର ଅନ୍ଧକାରରେ ଏ ଜାତିର ମାର୍ଗପ୍ରଦର୍ଶନ କରିଥିଲେ ।



# ଯାଉଥିଲା ଗୋଟା ଜାତିଟା ଭାସି

ଓଡ଼ିଆ ଜାତୀୟ ଜୀବନର ଅନ୍ୟତମ ବ୍ୟାଖ୍ୟାକାର ତଥା ପ୍ରଖ୍ୟାତ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତିଙ୍କ ଅର୍ଘ୍ୟଦାନରେ ମଧୁସୂଦନ ଏହିପରି ସମ୍ବୋଧିତ ହୋଇଛନ୍ତି -

''ମଧୁସୂଦନ କେବଳ ଓଡ଼ିଶାର ନୁହନ୍ତି, ତାଙ୍କର ପରିସ୍ଥିତି ଓ ପୃଷ୍ଠଭୂମିରେ ଭାରତୀୟ ଜାଗରଣର ଅନ୍ୟତମ ଆଦ୍ୟସ୍ୱର- ଜାତୀୟ ଗୌରବ ।''

ତାଙ୍କ କାର୍ଯ୍ୟଧାରାର ପରିସୀମା ଓ ପ୍ରଖର ଚେତନାର ବ୍ୟାପ୍ତି ପ୍ରଦେଶର ସୀମା ଅତିକ୍ରମ କରି ସମଗ୍ର ଦେଶର ବହୁ କ୍ଷେତ୍ରକୁ ବିଚ୍ଛୁରିତ ହୋଇଥିଲା । ମଧୁସୂଦନଙ୍କ ନାମ ସହିତ ଉତ୍କଳଗୌରବ ପଦର ସଂପୃକ୍ତି ତାହାଙ୍କର ପରିବ୍ୟାପକ, ପ୍ରତିଭାଦୀପ୍ତ, ମହନୀୟ ବ୍ୟକ୍ତିତ୍ୱକୁ ଏହି ପ୍ରଦେଶର ପରିଧି ମଧ୍ୟରେ ସୀମିତ କରାଯାଇଛି । କେଉଁ ମୁହୂର୍ତ୍ତରେ ଦେଶର ମହନୀୟ ବ୍ୟକ୍ତିତ୍ୱ ଗୋପବଂଧୁଙ୍କୁ ଜଣେ ପଡ଼ୋଶୀ ପ୍ରଦେଶର ଜନନାୟକ ଉତ୍କଳମଣି ବୋଲି ଆଖ୍ୟାୟିତ କରିଥିଲେ ବୋଲି ତାହାରି ଅନୁସରଣରେ ଓଡ଼ିଶାର ବହୁ ପ୍ରତିଭାଧର ପୁରୁଷମାନେ ନାମିତ ହୋଇଛନ୍ତି- ଉତ୍କଳଗୌରବ, ଉତ୍କଳଜ୍ୟୋତି ଓ ଉତ୍କଳକେଶରୀ ରୂପେ ଅଥଚ ପଡ଼ୋଶୀ ରାଜ୍ୟର ନେତୃପୁରୁଷମାନେ ଆଖ୍ୟାୟିତ ହୋଇଛନ୍ତି ଦେଶବଂଧୁ, ବିଦ୍ୟାସାଗର, ବିଦ୍ୟାବାରିଧି ଆଉ ବିଶ୍ୱକବି ଭାବରେ; ମାତ୍ର ସଂସ୍କୃତିପ୍ରେମୀ ବିଚ୍ଛନ୍ଦ ମଧୁବାବୁଙ୍କୁ ଉତ୍କଳମାର୍ତ୍ତଣ୍ଡ ବୋଲି ସମ୍ବୋଧିତ କରିଥିଲେ । ହେଲେ ସୁରେନ୍ଦ୍ର ମହାନ୍ତି ମଧୁସୂଦନଙ୍କର ବହୁଧା ପ୍ରସାରିତ ଜ୍ୱଳନ୍ତ ଦୀପ୍ତିରେ ସ୍ତବ୍ଧ ଆଉ ସମ୍ମୋହିତ ହୋଇ ଏହାଙ୍କୁ ଆବାହନ କରିଥିଲେ ଶତାବ୍ଦୀର ସୂର୍ଯ୍ୟ ରୂପରେ ।

ସଂଗ୍ରାମର ପ୍ରଥମ ପର୍ଯ୍ୟାୟରେ ମଧୁସୂଦନ ବିହାର ଓଡ଼ିଶାର ପୂର୍ତ୍ତ, ସ୍ୱାସ୍ଥ୍ୟ ଓ ସ୍ୱାୟତ୍ତ ଶାସନ ବିଭାଗର ମଂତ୍ରୀ ରୂପେ ପ୍ରଣୟନ କରିଥିଲେ ଏକ ପ୍ରଗତିଶୀଳ ସ୍ୱାୟତ୍ତଶାସନ ବିଲ୍, ଯହିଁରେ ଗଣତାନ୍ତ୍ରିକ ବ୍ୟବସ୍ଥାର ମୂଳ ପ୍ରାଣସତ୍ତାକୁ ଅଭିମଂତ୍ରିତ କରି, ଜନଗଣଙ୍କର ବିଶ୍ୱାସ ହରାଇଥିବା ନିର୍ବାଚିତ ପ୍ରତିନିଧିଙ୍କର ପ୍ରତ୍ୟାହାରର ବ୍ୟବସ୍ଥା ସନ୍ନିବେଶିତ କରାଯାଇଥିଲା । ଏହା ଥିଲା ସେ ଯୁଗରେ ଅଚିନ୍ତନୀୟ, ଆଉ ଓ ବର୍ଷ ପରେ ଏହିପରି ଏକ କ୍ରାନ୍ତିକାରୀ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାର ସାହସ ସଂଗ୍ରହ କରିପାରିନାହିଁ ଏ ଯୁଗର ଶାସନ ବ୍ୟବସ୍ଥା ।

ଏହି ଆଇନ ପ୍ରସ୍ତୁତିର ଇତିବୃତ୍ତ ସଂପର୍କରେ ସ୍ମୃତିଚାରଣ କରି ବିଭାଗୀୟ ଇଂରେଜୀ ସଚିବ ମିଷ୍ଟର ହାଲେଟ୍ କହନ୍ତି ଯେ, ''ମିଃ ଏମ୍. ଏସ୍. ଦାସ ମୋତେ ନର୍ଦ୍ଦେଶ ଦେଇଥିଲେ ଯେ ନିର୍ଦ୍ଦିଷ୍ଟ ତାରିଖରେ ବଛାବଛା ଆଠଜଣ ପାରଦର୍ଶୀ ଷ୍ଟେନୋ-ଟାଇପିଷ୍ଟଙ୍କ ସହିତ ଉପସ୍ଥିତ ରହିବାପାଇଁ । ମତେ ସେହି ଆଦର୍ଶ ରହସ୍ୟଜନକ ବୋଧ ହେଲା, ହେଲେ ନିର୍ଦ୍ଦିଷ୍ଟ ତାରିଖରେ ମୁଁ କିଛି ଷ୍ଟେନୋ-ଟାଇପିଷ୍ଟଙ୍କ ସହ ଉପସ୍ଥିତ ଥିଲି । ମତେ ପାଖ ଆସନରେ ବସିବାପାଇଁ ନିର୍ଦ୍ଦେଶ ଦେଇ ମଧୁସୂଦନ ଆରମ୍ଭ କରିଦେଲେ ତାଙ୍କର ବକ୍ତବ୍ୟ, ଶ୍ରୁତଲିଖନ ମାଧ୍ୟମରେ ଲିପିବଦ୍ଧ କରିବାପାଇଁ । ନିରବଛିନ୍ନ ଭାବରେ ଦଶଘଣ୍ଟା ଧରି ଅବାରିତ ଗତିରେ ତାଙ୍କର ବକ୍ତବ୍ୟର ଅଫୁରନ୍ତ ସ୍ରୋତ ବହିଚାଲିଥାଏ । ଆଉ ଷ୍ଟେନୋମାନେ ସେହି ଦ୍ରୁତଶୈଳୀରେ ବକ୍ତବ୍ୟ ଶ୍ରବଣକରି କ୍ଳାନ୍ତ ହୋଇଯାଇଥାନ୍ତି । ତାଙ୍କର ବକ୍ତବ୍ୟର ପରିସମାପ୍ତି ପରେ ସେ ମୋତେ ପଚାରିଲେ- ବିଷୟର ଉପସ୍ଥାପନାରେ କିଛି ଅସଂଗତି ରହିଯାଇଛି କି ? ମୁଁ କିଛି ଅସଂଗତି ନଥିବାର ଜଣାଇଲି । ଏହିପରି ଭାବରେ କାହାରି ସାହାଯ୍ୟ ନନେଇ ମଧୁସୂଦନ ନିଜେ ପ୍ରସ୍ତୁତ କରିଥିଲେ ଅଭିନବ ସ୍ୱାୟତ୍ତଶାସନ ବିଲ୍‌ଟି ।

ଏଭଳି ପ୍ରଖର ବ୍ୟକ୍ତିତ୍ୱ ଏ ଯୁଗରେ ଅପରିକଳ୍ପନୀୟ । ସେଇଥିପାଇଁ ମୁଖ୍ୟ ବିଚାରପତି ସାର୍ କୋରଟନେ ଟରେଲୋ ତାଙ୍କର ମହାନ ପ୍ରତିଭା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ କହିଛନ୍ତି- ''ମଧୁସୂଦନ ହେଉଛନ୍ତି, ଭାରତର ଚିନ୍ତା ଓ ଚେତନାର ଏକ ବିରଳ ପ୍ରତିଭା ।''

ହେଲେ ଏ ମନ୍ତ୍ରିପଦର ପରିସମାପ୍ତି ଘଟିଥିଲା ଅତ୍ୟନ୍ତ ରୋମାଞ୍ଚକର ଭାବେ । ଜଣେ ଦଳିତ ଓ ବୁଭୁକ୍ଷୁ ସମାଜର ପ୍ରତିନିଧି ଭାବେ ମାନବୀୟ ମୂଲ୍ୟବୋଧକୁ ପ୍ରାଧାନ୍ୟଦେଇ ସେ ମନ୍ତ୍ରୀପଦ ଅବୈତନିକ ହେବାର ଦାବିରେ ଅଟଳ ରହିଥିଲେ । ଏହା ଗୃହୀତ ନହେବାରୁ ସେ ଇସ୍ତଫା ପ୍ରଦାନକରି ଭାରତୀୟ ଶାସନବ୍ୟବସ୍ଥାରେ ଏକ ଉଜ୍ଜ୍ୱଳ ପରଂପରା ସୃଷ୍ଟି କରିଥିଲେ, ଯାହାଥିଲା ସମଗ୍ର ଭାରତବର୍ଷରେ ଅଭୂତପୂର୍ବ ।

ଭାଷା ହିଁ ଐକ୍ୟର ପ୍ରତୀକ, ମମତାର ସୁଦୃଢ଼ ବନ୍ଧନ । ଆଉ ଭାଷାର ଭିତ୍ତିଭୂମି ହେଉଛି ରାଜ୍ୟଗଠନର ସ୍ୱାଭାବିକ ନିୟାମକ । ୧୮୮୧ ସାଲରେ ମଧୁସୂଦନଙ୍କର ଓଡ଼ିଶାକୁ ଘରବାହୁଡ଼ା ଆରମ୍ଭ ହୋଇଥିଲା । ଏକଦା ଗଂଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପ୍ରସାରିତ ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ପ୍ରକ୍ରିୟା ସର୍ବପ୍ରଥମେ ମଧୁସୂଦନ ହିଁ ଆରମ୍ଭ କରିଥିଲେ ଉତ୍କଳସଭା ଆଉ ଉତ୍କଳ ସମ୍ମିଳନୀ ମାଧ୍ୟମରେ । ଏହାର ପରିଣତି ସ୍ୱରୂପ ସାରାଦେଶରେ ଓଡ଼ିଶା ହିଁ ପ୍ରଥମେ ଭାଷାଭିତ୍ତିକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇଲା, ଯଦିଓ ସେ ସମୟରେ ତେଲ୍‌ଗୁ, ତାମିଲ୍, ମାଲାୟଲମ୍, ମରାଠୀ, ଗୁଜୁରାଟୀ, ପଞ୍ଜାବୀ ପରି ଭାଷାର ପ୍ରଭାବଶାଳୀ ଗୋଷ୍ଠୀର ଜନନାୟକମାନେ ଭାରତର ରାଜନୀତିକୁ ନିୟନ୍ତ୍ରଣ କରୁଥିଲେ । ଏଥିପାଇଁ ସ୍ୱନାମଧନ୍ୟ ଭାଷାତତ୍ତ୍ୱବିତ୍ ଗୋପଳ ଚନ୍ଦ୍ର ପ୍ରହରାଜଙ୍କର ସ୍ମୃତି ତର୍ପଣରେ ମଧୁସୂଦନ ହେଉଛନ୍ତି ଓଡ଼ିଶାର ମାଦିନୀ, ଯାହାଙ୍କର ପ୍ରଚେଷ୍ଟାରେ ସମଗ୍ର ଇଟାଲୀର ଏକତ୍ରୀକରଣ ସଂଭବ ହୋଇଥିଲା ।

ସମଗ୍ର ଦେଶରେ ଭାଷାଭିତ୍ତିକ ପ୍ରଦେଶ ଗଠନରେ ମଧୁସୂଦନ ହିଁ ଥିଲେ ପଥପ୍ରଦର୍ଶକ । ଏହି ପ୍ରକ୍ରିୟା ହିଁ ଅବାରିତ ଭାବେ ପ୍ରବର୍ତ୍ତିତ ହୋଇଥିଲା ସାରା ଭାରତରେ , ସ୍ୱାଧୀନତାର ପରବର୍ତ୍ତୀ

ଯୁଗରେ । ଏହି ନିଶ୍ଚିତ ସଂଭାବନାର ବାଣୀ ମଧୁସୂଦନଙ୍କ ଦୃଢ଼ କଣ୍ଠରେ ଉଦ୍‌ଘୋଷିତ ହୋଇଥିଲା -**What Odisha thinks today, rest of India thinks tomorrow.** ବୋଲି ଏକ ବାକ୍ୟ ମଧ୍ୟରେ। କେବଳ ଭାଷା ସୂତ୍ରରେ ନୁହେଁ ଭାରତର ବହୁ କ୍ଷେତ୍ରରେ ମଧୁସୂଦନ ହିଁ ଛାଡ଼ିଯାଇଛନ୍ତି ଆଦ୍ୟ ସ୍ୱାକ୍ଷର, ନୂତନ ପରିବର୍ତ୍ତିତଧାରାର ଅୟମାରଂଭ କରି ।

ମଧୁସୂଦନଙ୍କ ଗୃହରେ ରହି ସୁଧାଂଶୁବାଳା ହାଜରା ୧୯୨୧ ସାଲରେ ହାସଲ କରିଥିଲେ ଆଇନରେ ଡିଗ୍ରୀ । ମାତ୍ର ଆଇନକୁ ବୃତ୍ତି ଭାବରେ ଗ୍ରହଣ କରିବା ଲାଗି ସେତେବେଳେ ମହିଳାମାନଙ୍କର ଅଧିକାର ନ ଥିଲା। ଏହା ବିରୁଦ୍ଧରେ ମଧୁବାବୁଙ୍କ ସଂଗ୍ରାମ ଫଳରେ ନାରୀମାନେ ପାଇଲେ ଯୁଗାନ୍ତକାରୀ ଅଧିକାର । ଏହା ଥିଲା ମଧୁସୂଦନଙ୍କର ନାରୀମୁକ୍ତିପାଇଁ ଏକ ଦୁର୍ବାର ଅଭିଯାନ ।

ମଧୁସୂଦନ ନିରବଚ୍ଛିନ୍ନ ଭାବରେ ୧୮୯୬ରୁ ୧୯୨୪ ପର୍ଯ୍ୟନ୍ତ ବଂଗ, ବିହାର ଓ ଓଡ଼ିଶା ବ୍ୟବସ୍ଥାପକ ସଭାର ସଦସ୍ୟ ଥିଲେ । ଏହା ଛଡ଼ା ମାଲବ୍ୟ, ଗୋଖଲେ, ସୁରେନ୍ଦ୍ର ବାନାର୍ଜି, ଜିନ୍ନାଙ୍କ ସହିତ ସେ ସଦସ୍ୟ ଥିଲେ ଇମ୍ପୀରିଆଲ୍ କାଉନ୍‌ସିଲ୍‌ରେ । ସୁଦୀର୍ଘ କାଳର ବ୍ୟବସ୍ଥାପକ ଜୀବନରେ ସମଗ୍ର ଦେଶରେ ରାଜନୈତିକ ପରିପ୍ରକାଶ, ଅର୍ଥନୈତିକ ବିକାଶ ସହିତ ଦେଶବାସୀ ତଥା ଓଡ଼ିଶାର ସ୍ୱାର୍ଥରକ୍ଷା ଲାଗି ସେ ଥିଲେ ବ୍ରିଟିଶ୍ ପ୍ରଶାସନର ଜଣେ ଦୁର୍ବାର ଆଉ ଅନମନୀୟ ସମାଲୋଚକ । ଦଳିତ ଜାତି ତଥା କୃଷିଜୀବୀଙ୍କର ଉନ୍ନତିଠାରୁ ଆରମ୍ଭକରି ରେଳବାଇ ପ୍ରସାର, ଦେଶୀୟ ଚିକିତ୍ସା ବ୍ୟବସ୍ଥା, ଶିଳ୍ପ ଲବଣକରର ସମାପ୍ତି, ପ୍ରଜାଙ୍କର ସ୍ୱତ୍ତ୍ୱ ରକ୍ଷା, ନ୍ୟାୟ ବ୍ୟବସ୍ଥାରୁ ପ୍ରଶାସନର ପୃଥକ୍କରଣ ବ୍ୟବସ୍ଥା ଥିଲା ତାହାଙ୍କ ବକ୍ତବ୍ୟର ବିଷୟବସ୍ତୁ । ତାହାଙ୍କ ପ୍ରଖର ବାଗ୍ମିତା ଆଉ ଯୁକ୍ତିସମ୍ବଳିତ ବିତର୍କ ବ୍ୟବସ୍ଥାପକ ସଭାରେ ସୃଷ୍ଟି କରୁଥିଲା ଉତ୍ତେଜନାର ଝଡ଼ । ତାହା ସହିତ ମଧ୍ୟେ ମଧ୍ୟେ ଉର୍ଦ୍ଦୁ ଆଉ ପାରସ୍ୟ ସାୟରୀରୁ ଶାଣିତ ଆବୃତ୍ତି ଏହି ବିତର୍କକୁ କରୁଥିଲା ଆହୁରି ପ୍ରଖର ଓ ଚମକପ୍ରଦ । ଏହା ଉପଭୋଗ୍ୟ ହେଉଥିଲେ ମଧ୍ୟ ଥିଲା ଜ୍ୱଳନଶୀଳ ଆଉ ଉଦ୍‌ଗୀରଣପ୍ରବଣ । ଏଣୁ ବଂଗର ଗଭର୍ଣ୍ଣର ବୋର୍ଡ଼ଲିନ୍ ମଧୁସୂଦନଙ୍କୁ ବଂଗ ବ୍ୟବସ୍ଥାପକ ସଭାର 'କେଟୋ' ବୋଲି ଆଖ୍ୟାୟିତ କରିଥିଲେ । 'କେଟୋ' ଥିଲେ ପ୍ରାଚୀନ ରୋମର ପ୍ରସିଦ୍ଧ ସମାଲୋଚକ ସିନେଟର, ଯିଏକି ଅବହେଳିତ ଆଉ ପରାଜିତ ବିଷୟବସ୍ତୁକୁ ଅଗ୍ରାଧିକାର ଭିତ୍ତିରେ ଆଲୋଚନାର ପରିସରକୁ ଆଣି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିପାରୁଥିଲେ । ମଧୁସୂଦନ ତାଙ୍କର ପ୍ରତ୍ୟୁତ୍ପନ୍ନମତିସଂପନ୍ନ ଚିନ୍ତାଧାରା ଓ ତୀକ୍ଷ୍ଣ ବିଚକ୍ଷଣତାଯୋଗୁଁ ୧୯୧୬ରୁ ୧୯୧୮ ସାଲ ପର୍ଯ୍ୟନ୍ତ ସର୍ବଭାରତୀୟ ଖ୍ରୀଷ୍ଟିଆନ ଏସୋସିଏସନ୍‌ର ଅଧ୍ୟକ୍ଷ ପଦ ଅଳଂକୃତ କରିଥିଲେ । ଏହା ସତ୍ତ୍ୱେ ସେ ଇଂରାଜୀ ପ୍ରଶାସନର ସ୍ତାବକ ନ ଥିଲେ । ଅତଏ ପାଟଣାର ୟୁରୋପୀୟ କ୍ଲବ୍‌ର ଜଣେ ତୁଙ୍ଗ ଅଫିସର୍ ମଧୁସୂଦନଙ୍କୁ କହିଲେ- ମିଃ ଦାସ ! ଆପଣ ଜାଣନ୍ତି କି ନାହିଁ ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ଯାଆନ୍ତି ନାହିଁ । ଏହି ଆକ୍ଷେପ ବିରୋଧରେ ମଧୁବାବୁଙ୍କର ଶାଣିତ ଉତ୍ତର ଥିଲା- ହଁ ଜାଣେ, କାରଣ ଅନ୍ଧକାରରେ ସୂର୍ଯ୍ୟଦେବ ଇଂରେଜମାନଙ୍କୁ ମଧ୍ୟ ବିଶ୍ୱାସ କରନ୍ତି ନାହିଁ ।

ଓଡ଼ିଶାର ମୂଳ ଅନ୍ତର୍ନିହିତ ସମସ୍ୟାର ସମାଧାନପାଇଁ ମଧୁସୂଦନ ୧୮୯୭ ଓ ୧୯୦୭ରେ ଇଂଲଣ୍ଡ ଯାଇଥିଲେ ମଧ୍ୟ ତାଙ୍କର ଆଲୋଚନାର ମୁଖ୍ୟ ବିଷୟବସ୍ତୁ ଥିଲା ଭାରତରେ ଶାସକୀୟ ଅବ୍ୟବସ୍ଥା, ଯାହା ଉପରେ 'ଭାରତର ଅଶାନ୍ତି' ନାମରେ ଏକ ପୁସ୍ତକ ରଚନାକରି ସେ ବିଦେଶରେ ବାଣ୍ଟିଥିଲେ ।

ଏ ସମସ୍ତ ଛଡ଼ା ମଧୁସୂଦନ ଭାରତରେ ସ୍ମରଣୀୟ ହୋଇ ରହିବେ, ସ୍ୱଦେଶୀ ଶିଳ୍ପର ଅଗ୍ରଦୂତ ଓ ପଥପ୍ରଦର୍ଶକ ରୂପେ । ମାତ୍ର ୧୯୦୫ରେ ବଂଗଭଂଗ ଆନ୍ଦୋଳନର ଅନୁପୂରକ କାର୍ଯ୍ୟକ୍ରମ ରୂପେ ଗଢ଼ି ଉଠିଥିଲା ସ୍ୱଦେଶୀ ଶିଳ୍ପ ଆନ୍ଦୋଳନ ୧୯୦୬ ସାଲରେ ସମଗ୍ର ଦେଶରେ ।

ମଧୁସୂଦନ ଏହାର ବହୁ ପୂର୍ବରୁ ତାଙ୍କର ଉତ୍ସର୍ଗୀକୃତ ପ୍ରୟାସ ବଳରେ ତାରକସି ଶିଳ୍ପର ପୁନଃ ପ୍ରତିଷ୍ଠା (୧୮୯୬), ଲଣ୍ଡନଠାରେ ସ୍ୱଦେଶୀ ଶିଳ୍ପ ପ୍ରଦର୍ଶନୀର ଆୟୋଜନ (୧୮୯୭), ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିବା ଉତ୍କଳଟ୍ୟାନେରିର ସ୍ଥାପନ (୧୯୦୫), ଆଉ ଜନତାଙ୍କ ମଧ୍ୟରେ ସ୍ୱଦେଶୀ ବସ୍ତୁର ସଂକଳ୍ପବଦ୍ଧ ବ୍ୟବହାରର ଡାକରାଦେଇ ମହାତ୍ମାଗାନ୍ଧୀଙ୍କ ଭାଷାରେ ସେ ନିଜକୁ ତିଳତିଳ ନିଃଶେଷ କରିଦେଇଥିଲେ । ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କର ଶ୍ରଦ୍ଧାଞ୍ଜଳିରେ ସେ ଶିଳ୍ପର ଉନ୍ନତି ଓ ଦେଶବାସୀଙ୍କର ଉତ୍‌ଥାନ ଲାଗି ଶହିଦର ମୃତ୍ୟୁକୁ ହିଁ ବରଣ କରିଥିଲେ ।

ତେଣୁ ମଧୁସୁଦନଙ୍କର କ୍ରାନ୍ତିକାରୀ ଚିନ୍ତା-ଚେତନା ଓ ତାହାର ପାରଦର୍ଶୀ ରୂପାୟନରେ ସମୃଦ୍ଧ ହୋଇଥିଲା ଏ ଦେଶର ବହୁକ୍ଷେତ୍ର । ହେଲେ ମଧୁସୂଦନ ବାଢ଼ିଥିଲେ ପୂଜାର ପ୍ରଥମ ଅର୍ଘ୍ୟ ଭାରତ ମାତାଙ୍କର ଚରଣ ପ୍ରାନ୍ତରେ- ''ସର୍ବେଷାଂ ନୋ ଜନନୀ ଭାରତ'' ବନ୍ଦନା ମାଧ୍ୟମରେ । ତେଣୁ ତାଙ୍କ ଚିନ୍ତାରେ ସ୍ଥାନ ପାଇଥିଲା ସମଗ୍ର ଭାରତବର୍ଷ, ସମଗ୍ର ଭାରତବର୍ଷର ବିକାଶଲାଗି ଏକ ଜନଜାଗରଣ ଏବଂ ଉନ୍ନୟନର ପରିକଳ୍ପନା ।

ଏହି ବକ୍ତବ୍ୟକୁ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ସେ ବାଢ଼ିଥିଲେ୧୯୧୨ ସାଲରେ ବିହାର ଛାତ୍ର ସମ୍ମିଳନୀରେ ତାଙ୍କର ଜ୍ୱାଳାମୟୀ ଭାଷଣରେ । ଏ ସଂପର୍କରେ ଭାରତର ପ୍ରାକ୍ତନ ରାଷ୍ଟ୍ରପତି ସେ କାଳର ଛାତ୍ରନେତା ରାଜେନ୍ଦ୍ର ପ୍ରସାଦ ସ୍ମୃତିଚାରଣ କରି କହନ୍ତି:

ମୋର ସ୍ମରଣରେ ଆସୁଛି ସେହି ଗୁରୁତ୍ୱପୂର୍ଣ୍ଣ ଦିନଟି ଯେତେବେଳେ ''ମଧୁସୂଦନ ୧୯୧୨ ସାଲରେ ମୋତିହାରୀକୁ ଆସିଥିଲେ ବିହାର ଛାତ୍ର ସମ୍ମିଳନୀକୁ ସମ୍ବୋଧିତ କରିବା ଅବସରରେ। ମତେ ତାଙ୍କ ସହିତ କେତେଘଣ୍ଟା ମିଶିବାଲାଗି ସୁଯୋଗ ମିଳିପାରିଥିଲା। ସେହି କେତେଘଣ୍ଟାର ସାନ୍ନିଧ୍ୟ ମଧ୍ୟରେ ସେ ତାଂକର ଅସାଧାରଣ ବ୍ୟକ୍ତିତ୍ୱ, ବିଚକ୍ଷଣତା, ଭୀତିହୀନତା ଆଉ ଦେଶମାତୃକା ପ୍ରତି ନିବେଦିତ ଭକ୍ତି ଓ ଶ୍ରଦ୍ଧାଭାବଦ୍ୱାରା ମୋ ମନରେ ଗୋଟିଏ ଅଲିଭା ଛାପ ଛାଡ଼ିଯାଇଛନ୍ତି ।''

ମଧୁସୂଦନଙ୍କର ଜ୍ୱାଳାମୟୀ ଭାଷଣର ଦୁର୍ବାର ଅଭିବ୍ୟକ୍ତିରେ ଜାତୀୟ ଜୀବନର ମୂଳସୂତ୍ରଟି ଜାଗରିତ ହୋଇଥିଲା ଏହିପରି ଭାବରେ:

''ବ୍ୟକ୍ତିଗତ ଜୀବନ ନଗଲେ ଜାତୀୟ ଜୀବନ ଉଠିବ ନାହିଁ । ଆମ୍ବଟାକୁଆ ପୋତିଲେ ଆଗେ ଆମ୍ବ ଟାକୁଆ ନପଚିବା ପର୍ଯ୍ୟନ୍ତ ଗଛ ଉଠିବ ନାହିଁ । ସେହପରି ଯହିଁରୁ ଜାତୀୟ ଜୀବନ ଉଠିବ ସେ ମରିବ, ସେ ପଚିବ ।''

ହଁ, ମଧୁସୂଦନ ଥିଲେ ଜାତୀୟ ଜୀବନ ବୃକ୍ଷର ମୂଳ ଟାକୁଆ ମନ୍ତ୍ର । ସେ ପଚିଥିଲେ, ସେ ସଢ଼ିଥିଲେ, ତିଳତିଳ କରି ନିଜ ଜୀବନକୁ କ୍ଷୟକରି ନିଃସ୍ୱ ହୋଇ ସେ ମରିଥିଲେ, ହେଲେ ତାଙ୍କଠାରୁ ଜାତୀୟ ଜୀବନର ସୂତ୍ରପାତ ହୋଇଥିଲା ।

ସେ ଥିଲେ ଏ ଜାତିର ଦଧିଚୀ । ତାହାଙ୍କର ବଳିଦାନରେ ସୃଷ୍ଟି ହୋଇଥିଲା ଏ ଜାତିର ସ୍ୱାଭିମାନର ବଜ୍ର ଶପଥ । ତାହାହିଁ ପ୍ରତିଧ୍ୱନିତ ହୋଇଛି ଫକୀରମୋହନଙ୍କର ସ୍ତୁତିଚାରଣରେ ଏହିପରି ଭାବରେ-

''ଯାଉଥିଲା ଗୋଟା ଜାତିଟା ଭାସି
ରକ୍ଷା କରିଅଛ ସ୍ୱର୍ଗରୁ ଆସି ।''



# ମାତୃଶକ୍ତି ଓ ମଧୁସୂଦନ

୧୯୨୧ ସାଲ ନଭେମ୍ବର ୨୩ ତାରିଖରେ ବିହାର ଓ ଓଡ଼ିଶା ବ୍ୟବସ୍ଥାପକ କାଉନ୍‌ସିଲ ମଞ୍ଚରେ ମଧୁସୂଦନ ଏକ ଜ୍ୱାଳାମୟୀ ଭାଷଣ ଦେଇ କହିଥିଲେ -

"ନାରୀତ୍ୱ କୌଣସି ଅକ୍ଷମତା ନୁହେଁ । ଏହା ଏକ ଗୌରବଶାଳୀ ମହିମାଦୀପ୍ତ ସମ୍ମାନର ଅଧିକାରୀ ।" ଏହି ଦୃଷ୍ଟିରୁ ନାରୀ ଜାତିକୁ ଯେଉଁଠାରେ ଅକ୍ଷମତାର ପରିଧି ମଧ୍ୟକୁ ଠେଲିଦେବାପାଇଁ ପ୍ରୟାସ ହୋଇଛି, ସେଠାରେ ମଧୁସୂଦନଙ୍କର ବଦ୍ଧମୁଷ୍ଟି ଉତ୍ତୋଳିତ ହୋଇଛି ସେହି ଅକ୍ଷମତାର କାରାଗାର ମଧ୍ୟରୁ ନାରୀଜାତିକୁ ଉଦ୍ଧାର କରିବାପାଇଁ ।

ଥରେ ପୂର୍ବାହ୍ନରେ ହାଇଦ୍ରାବାଦରେ ପହଞ୍ଚିବାର କିଛିଦିନ ପରେ ଟାଉନବସ୍‌ରେ ମୁଁ ଯାଉଥାଏ । ଟିକେ ଅନ୍ୟମନସ୍କ ହୋଇପଡ଼ିଥାଏ । ଏହି ସମୟରେ ହଠାତ୍ ଆବିଷ୍କାର କଲି, ବୁର୍ଖା ପରିହିତା କେତେଜଣ ମହିଳା ମୋର ଆଗ ସିଟ୍‌ରେ ବସିଛନ୍ତି । ସେଦିନ ବସ୍‌ଟିରେ ପ୍ରବଳ ଭିଡ଼ । କିଛି ସମୟ ପରେ ବସ୍‌ଷ୍ଟପ୍‌ରେ ଗାଡ଼ିଟି ଲାଗିଲା । ବସ୍‌ର ଆଗ ଦରଜା ଦେଇ ସେମାନେ ଓହ୍ଲାଇଗଲେ । ପାର୍ଶ୍ୱରେ ନ୍ୟାୟାଳୟର ସୁବିଶାଳ ସୌଧ । ସେହି ସୌଧର ପରିସରକୁ ପ୍ରବେଶ କଲେ ସେମାନେ । ହଠାତ୍ ଫେରି ବସ୍ ଆଡ଼କୁ ଚାହିଁଲେ । ନାଁ, ଏମାନେ ତ ବୁର୍ଖା ପରିହିତା ମହିଳା ନୁହନ୍ତି, ଅନ୍ୟ କିଏ ? ଏମାନେ ନାରୀ ଜାତିର ଅଧିକାରକୁ ସାବ୍ୟସ୍ତ କରିବାପାଇଁ ଉଭାହୋଇଥିବା ମହିଳା ଆଇନଜୀବୀଗଣ । ଗୃହର ଅଙ୍ଗନରେ ଆବଦ୍ଧ ବୁର୍ଖା ପରିହିତା ନାରୀଗଣଙ୍କର ଦେହରେ ଆଜି ଆଇନର ସୁରକ୍ଷା ପ୍ରଦାନପାଇଁ ଅବତୀର୍ଣ୍ଣ ହୋଇଥିବା ଆଇନଜୀବୀର ପରିଛଦ- କଳା ଗାଉନ । ମୁଁ ହତଚକିତ ହୋଇଗଲି, ପୁଣି ନିରେଖି ଚାହିଁଲି । ସେହି କଳା ଗାଉନ୍‌ର ପୃଷ୍ଠ ଉପରେ ଯେପରି ଝଲସି ଉଠୁଛି, କେଉଁ ପ୍ରଚଣ୍ଡ ପ୍ରତିଭାଶାଳୀ ମହାନାୟକଙ୍କର ଛବି- ଜାତୀୟଗୌରବ ମଧୁସୂଦନଙ୍କର । କେବଳ ହାଇଦ୍ରାବାଦ ନୁହେଁ, ଆଜି କାଶ୍ମିରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଭାରତର ପ୍ରତି କୋଣ-ଅନୁକୋଣରେ ଭାରତୀୟ ନାରୀମାନେ ଭାରତରେ ଆଇନ ଡିଗ୍ରୀ ହାସଲ କରିଥିବା ମହିଳାମାନଙ୍କପାଇଁ ଆଇନଜୀବୀ ବୃତ୍ତିଗ୍ରହଣ ନିଷିଦ୍ଧ ଥିଲା । ଏହା ବିରୋଧରେ

୧୯୨୧ ସାଲରୁ ମଧୁସୂଦନ ଚଳାଇ ଆସିଥିଲେ ଅବାରିତ ସଂଗ୍ରାମ । ଏହି ଦାବି ହାସଲପାଇଁ ଉପଲକ୍ଷ୍ୟ ମାତ୍ର ଥିଲେ, ମଧୁସୂଦନଙ୍କର ଏକମାତ୍ର ପାଳିତା କନ୍ୟା- ସୁଧାଂଶୁବାଳା ହାଜରା, ଯାହାକୁ ପ୍ରତୀକ କରି ମଧୁସୂଦନ ଚଳାଇଥିଲେ ଅବିରାମ ପ୍ରଚେଷ୍ଟା । ଏଥିପାଇଁ ତାଙ୍କର ଉଦ୍ୟମରେ ବିଭିନ୍ନ ହାଇକୋର୍ଟ, ପ୍ରିଭି କାଉନ୍‌ସିଲ୍ ତଥା ବ୍ୟବସ୍ଥାପକ ସଭାରେ ଦୃଢ଼ଦାବି ଉପସ୍ଥାପନ କରାଯାଇଥିଲା । ଅବଶେଷରେ ୧୯୨୩ ସାଲରେ ଭାରତୀୟ ଲିଗାଲ୍ ପ୍ରାକ୍ଟିସନର୍ସ ଆକ୍ଟରେ ନାରୀ ଜାତି ପ୍ରତି କରାଯାଇଥିବା ଅବିଚାର ଦୂର ହୋଇଥିଲା ଓ ଭାରତୀୟ ନାରୀ ପାଇଥିଲା ଐତିହାସିକ ଅଧିକାର । ଏଥିପାଇଁ ମଧୁସୂଦନଙ୍କର ଅବଦାନ ଅବିସ୍ମରଣୀୟ । କିନ୍ତୁ ମଧୁସୂଦନଙ୍କର ଏହି ମହନୀୟ ଅବଦାନ ଆଜି ଭାରତୀୟ ମହିଳା ଆଇନଜୀବୀଙ୍କପାଇଁ ସତେ ଯେପରି ଗୋଟାଏ ଅଜ୍ଞାତ ଅଧ୍ୟାୟ !

ଅନ୍ୟ ଗୋଟିଏ ଘଟଣା । ମଧୁସୂଦନ, ବିହାର ଓଡ଼ିଶା ସରକାରଙ୍କ ମନ୍ତ୍ରିତ୍ୱ ଗ୍ରହଣ କରିବାର କିଛି ମାସ ବିତିଯାଇଥାଏ । ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦିବସରେ ଗଭର୍ଣ୍ଣରଙ୍କ ସାନ୍ଧ୍ୟଭୋଜି ନିମନ୍ତ୍ରଣର ବିଧିବ୍ୟବସ୍ଥା ପ୍ରସଙ୍ଗରେ ତୁମୁଳ ହଟ୍ଟଗୋଳ ସୃଷ୍ଟି ହୋଇଥାଏ । ମଧୁସୂଦନଙ୍କର ଦାବିଥିଲା, ଭାରତୀୟ ପୋଷାକରେ ସେ ଏହି ଭୋଜି ସଭାରେ ଯୋଗଦେବେ । ଏ ସଂପର୍କରେ ମଧୁସୂଦନ ଗଭର୍ଣ୍ଣରଙ୍କୁ ଲେଖିଥିବା ଏକ ଚିଠିର କିଛି ଅଂଶ -

''ମୁଁ ଏହି ସମସ୍ତ ନିମନ୍ତ୍ରଣ ତଥା ଭୋଜି ସଭାରେ ଯୋଗଦେବାପାଇଁ ଗୁରୁତ୍ୱ ଆରୋପ କରେନାହିଁ । ଉଚ୍ଚସ୍ଥାନ ଅଧିଷ୍ଠିତ ବ୍ୟକ୍ତିଙ୍କର ସଂସ୍ପର୍ଶରେ ଆସି କୌଣସି ଅଯଥା ଗୌରବର ଅଧିକାରୀ ନହେବାପାଇଁ ମୋର ମା ମୋତେ ଉପଦେଶ ଦେଇଛନ୍ତି । ସେ କହିଛନ୍ତି, ଗୋଲାପ ଗଛର ଚାରିପାଖେ ବଢ଼ିଥିବା ଘାସ, ଗୋଲାପର ରଂଗ ଓ ସୁବାସର ଅଧିକାରୀ ହୋଇପାରେ ନାହିଁ । ସେହିପରି କେବଳ ଉଚ୍ଚବ୍ୟକ୍ତିଙ୍କ ସାନ୍ନିଧ୍ୟର କୌଣସି ପ୍ରଭାବ ନାହିଁ ।''

ବହୁ ସ୍ମରଣୀୟ ବ୍ୟକ୍ତିଙ୍କ ଚରିତ୍ରଗଠନରେ, ସେମାନଙ୍କର ମାତାଙ୍କର ସର୍ବୋତ୍ତମ ଅବଦାନ ରହିଥାଏ । ଆଉ ମଧୁସୂଦନଙ୍କ ଜୀବନରେ ଯେଉଁ ଦୁଇଜଣ ନାରୀ ସର୍ବଦା ପ୍ରଭାବ ବିସ୍ତାର କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ତାଙ୍କର ଅତ୍ୟନ୍ତ ପ୍ରଭାବଶାଳୀ ପ୍ରପିତାମହୀ । ସେହି ପରମ ଐଶ୍ୱର୍ଯ୍ୟଶାଳିନୀ ପ୍ରପିତାମହୀ, ନିଜ ପତିଙ୍କ ଚିତାଗ୍ନିରେ ନିଜକୁ ସମର୍ପିଦେବାର ଜ୍ୱାଳାମୟ ଦୃଶ୍ୟ ତାଙ୍କର ମାନସପଟକୁ ସଦା ଆଚ୍ଛନ୍ନ କରି ରଖିଥାଏ । ତାଙ୍କର ମାତାଥିଲେ; ପରମ କରୁଣାମୟୀ, ସମ୍ବେଦନଶୀଳା ମହିୟସୀ ନାରୀ, ଯେ କି ନିଜକୁ ବିତରଣ କରିଦେବାର ପ୍ରୟାସରେ ସର୍ବଦା ନିମଗ୍ନ ଥିଲେ ।

ମଧୁସୂଦନଙ୍କ ଦୃଷ୍ଟିରେ ନାରୀମାନଙ୍କ ମଧ୍ୟରେ, ସେହିମାନେ ହିଁ ପରମ ଗୌରବର ଅଧିକାରୀ ଯେଉଁମାନେ ସୃଷ୍ଟିର ସହାୟକ ହେବାପାଇଁ କରୁଣାମୟୀ ମାତୃତ୍ୱର ଅଧିକାରୀହୋଇ ନିଜକୁ ନିଃଶେଷ କରିଦେଇଛନ୍ତି । ସେହି ମହନୀୟ ମାତୃତ୍ୱରେ ଥାଏ କେବଳ ଦାନ ଆଉ ଦାନ, ନଥାଏ ପ୍ରତିଦାନ ବା ଫେରିପାଇବାର ପ୍ରତ୍ୟାଶା ।

ତେଣୁ ତାଙ୍କ କଂଠରୁ ନିର୍ଝର ପରି ଅନାୟାସରେ ଝରିପଡ଼ିଛି ମାତୃମଂତ୍ରରେ ଅଭିମଂତ୍ରିତ ହୋଇ ଦେଶ ଜାଗୃତିର ଗୀତିକା ।

କାନ ଦେଇ ଶୁଣ, ମାତା କହୁଛନ୍ତି

ଆସ ଆସ ବତ୍ସ ନୀର ପାନକର

ଏଇ ନୀର ସେହି, ବୀର ମୋ ସନ୍ତାନେ

ବୀର ପ୍ରସବିନୀ କ୍ଷୀର ଏହି ନୀର

ଛାଡ଼ରେ ଆଳସ୍ୟ ବଢ଼ାଅ ସାହସ

ଜାତି ନନ୍ଦିଘୋଷ କର ଅଗ୍ରସର ।

ନାରୀ କାହାର କରୁଣା ଅଥବା ସହାନୁଭୂତିର ପାତ୍ର ନୁହେଁ । ସେମାନେ ସମାଜର ଅବହେଳିତ ଅଂଗ ନୁହଁନ୍ତି । ସେମାନେ ନିଜେ ହିଁ ସମସ୍ତ ସ୍ଥିତିର ଅଧିକାରୀ ।

ଏହା ଥିଲା ନାରୀଜାତି ପ୍ରତି ତାଙ୍କର ସନ୍ଦେଶ । ଅନ୍ୟ ଏକ ଘଟଣା-

୧୯୩୧ ସାଲର ଅଗଷ୍ଟ ୩୧ ତାରିଖ । ବାଲେଶ୍ୱରରେ ଗୋଟିଏ ନାରୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ । ଏହି ସମ୍ମିଳନୀ ଉପଲକ୍ଷ୍ୟେ ତାଙ୍କର ସନ୍ଦେଶ, ଭାବନାର ପ୍ରଖରତାରେ କିପିରି ଶିହରଣକାରୀ ଥିଲା, ଅନୁଧ୍ୟାନ କଲେ ତାହା ଏବେ ଉପଲବ୍ଧ ହୁଏ ।

"ଓଡ଼ିଶାର ପୁରୁଷମାନେ ନାରୀମାନଙ୍କୁ ସେମାନଙ୍କର ସେବାପ୍ରଦାନକାରୀ ଅଂଗ ରୂପେ ବ୍ୟବହାର କରିଅଛନ୍ତି ଓ ଭଗବତ ସୃଷ୍ଟିରେ ସେମାନଙ୍କର ଅନ୍ୟ କୌଣସି ଭୂମିକା ଅଛି ବୋଲି ସେମାନେ ସ୍ୱୀକାର କରନ୍ତି ନାହିଁ । ଏବେ କେତେକ ନାରୀ ରାଜନୈତିକ ଆନ୍ଦୋଳନରେ ଯୋଗଦାନ କରିଅଛନ୍ତି । ଗୃହର ଅଭ୍ୟନ୍ତରରେ ହେଉ ଅଥବା ରାଜନୈତିକ ଆନ୍ଦୋଳନରେ ହେଉ, ନାରୀ କେବଳ ପୁରୁଷର ସହାୟକ ଭୂମିକାରେ ଅଧସ୍ତନ ସ୍ଥାନରେ ରହିଅଛି । ଏହି ଉଭୟ କ୍ଷେତ୍ରରେ ଭଗବତ ଉଦ୍ଦେଶ୍ୟ ପ୍ରତି କେବଳ ଅବଜ୍ଞା ପ୍ରଦର୍ଶନ କରାଯାଇଛି । ଆପଣମାନେ ଅନୁଧ୍ୟାନ କରନ୍ତୁ, କିଏ ୟୁରେପୀୟ ଜାତିକୁ ମହନୀୟ କରିଛି, ପିତା ବା ମାତା ଏବଂ ଏହା ପରେ ଆପଣଙ୍କ କର୍ତ୍ତବ୍ୟ ଓ କାର୍ଯ୍ୟର ଧାରା ସ୍ଥିର କରନ୍ତୁ ।"

ଏହାର ପ୍ରାୟ ପାଞ୍ଚ ଛଅ ବର୍ଷ ପୂର୍ବର ଘଟଣା । ପ୍ରାୟ ୧୯୨୪-୨୫ ସାଲର ସମୟ । ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇସାରିଥାଏ । ମଧୁସୂଦନଙ୍କ ଉଦ୍ୟମରେ ପ୍ରାୟ ଦଶବର୍ଷ ତଳୁ, ବିହାର- ଓଡ଼ିଶାର ପ୍ରଥମ ମହିଳା କଲେଜ କଟକରେ ସ୍ଥାପିତ ହୋଇଥାଏ ।

ଏହି ସମୟରେ ପ୍ରଖ୍ୟାତ ସମାଜବାଦୀ ଡକ୍ଟର ଜ୍ୟୋତ୍ସ୍ନାଦେଈ ଓ ବୀଣାଦେଈ କଟକ ମହିଳା ରେଭେନ୍ସା କଲେଜରେ ଆଇ.ଏ ପଢୁଥାନ୍ତି, ମୁଖ୍ୟତଃ ପରବର୍ତ୍ତୀ କାଳରେ ଡାକ୍ତର ଭୂମିକାରେ ଅବତୀର୍ଣ୍ଣ ହେବାପାଇଁ । ସେମାନଙ୍କ ସ୍ମୃତିଚାରଣ -

- ଆମେମାନେ ମହିଳା କଲେଜରେ ଯୋଗଦେଇଥିଲେ ମଧ୍ୟ ଆମମାନଙ୍କପାଇଁ ବଟାନିକୁ ଛାଡ଼ିଦେଲେ ଅନ୍ୟ ସମସ୍ତ କ୍ଲାସ୍ ମହିଳା କଲେଜର ପରିସରରେ ହିଁ ସ୍ୱତନ୍ତ୍ର ଭାବେ ଅନୁଷ୍ଠିତ ହେଉଥାଏ । ମାତ୍ର ବଟାନି, ଥିଓରି ଆଉ ପ୍ରାକ୍ଟିକାଲ୍‌ର ସମସ୍ତ-କ୍ଲାସ୍‌ରେ ଯୋଗଦେବାପାଇଁ

ଆମେମାନେ ଗୋଟେ ଆବଦ୍ଧ ଘୋଡ଼ାଗାଡ଼ିରେ ଜଣେ ଶିକ୍ଷୟିତ୍ରୀଙ୍କର ତତ୍ତ୍ୱାବଧାନରେ ରେଭେନ୍‌ସା କଲେଜକୁ ଲୋକଲୋଚନର ଅନ୍ତରାଳରେ ଯାଉ ଆଉ ଫେରୁ ।''- ଏହା ଥିଲା ଓଡ଼ିଶାର ସାଂସ୍କୃତିକ ରାଜଧାନୀ କଟକରେ, ରକ୍ଷଣଶୀଳତାର ତତ୍କାଳୀନ ସ୍ଥିତି ।ଏବେ ଚିନ୍ତାକଲେ ଆତଙ୍କରେ ଶିହରିତ ହେବାକୁ ପଡ଼େ ।

ଓଡ଼ିଶାର ଏହିପରି ରକ୍ଷଣଶୀଳ ସମାଜରେ ମଧୁସୂଦନଙ୍କ ବ୍ୟତୀତ ଅନ୍ୟ କୌଣସି ଅଗ୍ରଗାମୀ ଚିନ୍ତାଧାରାର ପ୍ରଚଣ୍ଡ ପ୍ରତିଭାଶାଳୀ ପୁରୁଷ ନଥିଲେ, ଯିଏ କି ନାରୀଶିକ୍ଷାକୁ ଦୟନୀୟ ସ୍ଥିତାବସ୍ଥାରୁ ମୁକ୍ତ କରି, ୧୯୧୦ ବେଳକୁ ପ୍ରଥମ ପୂର୍ଣ୍ଣାଙ୍ଗ ବାଳିକା ବିଦ୍ୟାଳୟ ଓ ୧୯୧୫ ବେଳକୁ ପ୍ରଥମ ମହିଳା କଲେଜ ସ୍ଥାପନା କରିପାରିଥିଲେ ।ପ୍ରାୟ ୧୯୨୬ ବେଳକୁ ଜ୍ୟୋତ୍ସ୍ନା ଦେଈ ଓ ବୀଣାଦେଈ ରେଭେନ୍‌ସା ମହିଳା କଲେଜରୁ ଆଇ.ଏ ପାଶ୍ କରିସାରିଥିଲେ । ସେମାନଙ୍କର ଡାକ୍ତରୀ ପାଠ (ଏମ୍.ବି.ବି.ଏସ୍) ପଢ଼ିବାପାଇଁ ପ୍ରବଳ ଇଚ୍ଛାଥିଲା । ମାତ୍ର ଅର୍ଥ ଓ ସୁଯୋଗ ଅଭାବରୁ ତାହା ସମ୍ଭବପର ହୋଇ ନଥିଲା । ସେମାନେ ନିଜ ପିତାଙ୍କ ସହିତ ମଧୁସୂଦନଙ୍କୁ କଟକସ୍ଥିତ ତାଙ୍କ ବାସଭବନରେ ଭେଟି ଦୁଃଖ ଜଣାଇଲେ ।ସେତେବେଳକୁ ପାଟଣାରୁ ବିହାର-ଓଡ଼ିଶାର ଶିକ୍ଷାମନ୍ତ୍ରୀ କଟକ ଆସି ମଧୁସୂଦନଙ୍କର ଅତିଥି ହୋଇଥାଆନ୍ତି । ମଧୁସୂଦନଙ୍କର ସ୍ୱତନ୍ତ୍ର ଅନୁରୋଧ କ୍ରମେ ଶିକ୍ଷାମନ୍ତ୍ରୀ ସେମାନଙ୍କୁ ଦିଲ୍ଲୀର ପ୍ରଖ୍ୟାତ ମହିଳା ମେଡ଼ିକାଲ୍ କଲେଜରେ ଅଧ୍ୟୟନ କରିବାପାଇଁ ଉଚ୍ଚହାରରେ ଶିକ୍ଷା ବୃତ୍ତି ମଞ୍ଜୁର କରିଥିଲେ ।ଫଳରେ ବୀଣା ଦେଈ ଓ ଜ୍ୟୋତ୍ସ୍ନାଦେଈ ଓଡ଼ିଶାର ପ୍ରଥମ ସ୍ନାତକୋତ୍ତର ମହିଳା ଡାକ୍ତର ରୂପେ ଅଧିଷ୍ଠିତ ହୋଇ ପ୍ରଚୁର ଖ୍ୟାତିର ଅଧିକାରୀ ହୋଇଥିଲେ ।

ଏ ସମସ୍ତ ଥିଲା ନାରୀ ଜାତିର ଅଭ୍ୟୁତ୍‌ଥାନ ପାଇଁ ମଧୁସୂଦନଙ୍କର ଅକଳ୍ପନୀୟ ଅବଦାନ ।



# ଆଦ୍ୟ ସମାଜବାଦୀ ଅଗ୍ରନାୟକ

ଦେଶର ନବଜାଗରଣରେ ମହାନ ଜାତୀୟତାବାଦୀ ନେତାରୂପେ ପ୍ରତିଷ୍ଠା ଲାଭକରିଥିବା ମଧୁସୂଦନ ଦାସ ହେଉଛନ୍ତି, ଭାରତର ଜଣେ ଆଦ୍ୟ ସମାଜବାଦୀ ଅଗ୍ରନାୟକ । ତାଙ୍କର ଜନ୍ମ ହୋଇଥିଲା, ବିଶ୍ୱ ଘଟଣାପ୍ରବାହର ଏକ ସ୍ମରଣୀୟ ବର୍ଷ ୧୮୪୮ ସାଲରେ, ଯେଉଁବର୍ଷ ସମାଜବାଦୀ ଚିନ୍ତାଧାରାର ଆଦ୍ୟସ୍ଫୁରଣ ରୂପରେ ରଚିତ ହୋଇଥିଲା କମ୍ୟୁନିଷ୍ଟ ମେନିଫେଷ୍ଟୋ ଓ ତିରୋଧାନ ଘଟିଥିଲା ଏହାର ଛୟାଅଶୀ ବର୍ଷ ପରେ, ଅନ୍ୟ ଏକ ତାତ୍ପର୍ଯ୍ୟ ପୂର୍ଣ୍ଣ ବର୍ଷ ୧୯୩୪ ସାଲ୍‌ରେ । ଏହି ବର୍ଷ, ଭାରତ ଭୂମିରେ କଂଗ୍ରେସ ସମାଜବାଦୀ ଦଳର ଅଭ୍ୟୁଦୟ ଘଟିଲା । ଆଶ୍ଚର୍ଯ୍ୟ ଲାଗେ ଏହି ମଧ୍ୟବର୍ତ୍ତୀ ୮୬ବର୍ଷ କାଳ ଭାରତରେ ସମାଜବାଦୀ ଚିନ୍ତାଧାରା ଏକ ପ୍ରକାର ଅଜ୍ଞାତ ଥିବାବେଳେ, ଦେଶର ଏକ ନିଭୃତ କୋଣରେ ଓଡ଼ିଶାର ମଧୁସୂଦନ ଦାସଙ୍କ ମଧ୍ୟରେ ଏହାର ପରିପ୍ରକାଶ ଥିଲା କେତେ ସ୍ୱତଃସ୍ଫୂର୍ତ୍ତ, ଅବାରିତ ଆଉ ପ୍ରତିଶ୍ରୁତିବଦ୍ଧ ! ପଣ୍ଡିତ ନେହେରୁଙ୍କ ଭାଷାରେ, ମଧୁସୂଦନ ଭାରତର ସାମାଜିକ ଆଉ ଅର୍ଥନୈତିକ ଉତ୍‌ଥାନଲାଗି ମାର୍ଗଦର୍ଶୀ ପ୍ରକଳ୍ପମାନ ସ୍ଥାପନ କରିଥିଲେ ।

ମହାତ୍ମାଗାନ୍ଧୀ ୨୫/୩/୧୯୩୮ରେ ମଧୁସୂଦନ ଦାସଙ୍କର ଗୂଢ଼ ସମାଜତାତ୍ତ୍ୱିକ ଦର୍ଶନ ଉପରେ ଆଲୋକପାତ କରିବାକୁ ଯାଇ ଡେଲାଙ୍ଗଠାରେ କହିଥିଲେ, "ମଧୁସୂଦନ ଦାସଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ଅଭିବ୍ୟକ୍ତି ହେଲା- ମଣିଷ ଓ ପଶୁମାନଙ୍କ ମଧ୍ୟରେ ମୁଖ୍ୟ ବିଭେଦ ହେଉଛି ଶାରୀରିକ ଗଠନପ୍ରଣାଳୀ । ମଣିଷ ତାର ହସ୍ତ ଓ ପାଦରେ ରହିଥିବା ଅଙ୍ଗୁଳିଗୁଡ଼ିକୁ ବିଚକ୍ଷଣ ବୁଦ୍ଧିର ପ୍ରୟୋଗ ମଧ୍ୟରେ ଅତ୍ୟନ୍ତ କଳାତ୍ମକ ଭାବରେ ବ୍ୟବହାର କରିପାରେ ।"

ହଁ, ଏହିଠାରେ ହିଁ ରହିଛି ସମାଜବାଦୀ ଅଥବା ମାର୍କ୍ସବାଦୀ ଦର୍ଶନର ମୂଳ ଭିତ୍ତି ।

ସମଗ୍ର ବିଶ୍ୱରେ ମଣିଷ ହେଉଛି ଏକମାତ୍ର ପ୍ରାଣୀ, ଯାହା ମଧ୍ୟରେ ସନ୍ନିବେଶିତ ହୋଇ ରହିଛି ଅନ୍ତର୍ନିହିତ ସର୍ଜ୍ଜନାତ୍ମକ ସୃଷ୍ଟି ଶକ୍ତି । ସେ ଏହାକୁ ତାହାର ହାତ ଆଉ ପାଦର ବିଚକ୍ଷଣ ପ୍ରୟୋଗ ମଧ୍ୟରେ ବିଶ୍ୱରେ ସୃଷ୍ଟ ପଦାର୍ଥମାନଙ୍କ ଉପରେ ଆରୋପିତ କରି, ସମାଜପାଇଁ ଆବଶ୍ୟକ

ଥିବା ପ୍ରୟୋଜନୀୟ ବସ୍ତୁମାନ ସୃଷ୍ଟିକରେ । ମନୁଷ୍ୟ ସମାଜର ଏକ ଅଂଶରୂପେ, ଜଣେ ମଣିଷକୁ ତାହାର ଆବଶ୍ୟକତା ଅନୁଯାୟୀ ଏହି ବସ୍ତୁମାନ ଲଭ୍ୟହେବା ଆବଶ୍ୟକ । ମାତ୍ର ସଭ୍ୟତାର ଅଗ୍ରଗତି ମଧ୍ୟରେ ପୁଞ୍ଜିବାଦୀ ଶୋଷଣ ପ୍ରକ୍ରିୟାରେ ଜଣେ ଉତ୍ପାଦକ ମଣିଷଠାରୁ ତାର ଉତ୍ପାଦିତ ବସ୍ତୁ ସବୁ ବିଚ୍ୟୁତ ଅଥବା ବର୍ଜିତ ହୋଇଥାଏ । ଫଳରେ ସେ ଶୋଷିତ ହୋଇ ବସ୍ତୁରେ ପରିଣତ ହୋଇଯାଏ ।

ମଧୁସୂଦନ ଦାସଙ୍କର ଅବିଚ୍ଛେଦ୍ୟ ସଂପର୍କ ରହିଥିଲା ମଣିଷର ଏହି ଶୋଷଣବିହୀନ ସର୍ଜନାତ୍ମକ ପ୍ରକ୍ରିୟା ସହିତ । ମହାତ୍ମାଗାନ୍ଧୀ ୨୧.୧.୧୯୩୭ରେ ସେବାଶ୍ରମଠାରେ ଆହୂତ ଶିକ୍ଷା ସମ୍ମିଳନୀରେ ପ୍ରକାଶ କରିଥିଲେ, "ମଧୁସୂଦନ ଦାସଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ଆମମାନଙ୍କର ହସ୍ତ ଓ ପଦଗୁଡ଼ିକ ବିଧିବଦ୍ଧଭାବେ ଯଦି ସଂଚାଳିତ ଆଉ ନିୟୋଜିତ ନହୁଏ, ତାହେଲେ ମଣିଷର ମସ୍ତିଷ୍କ ସ୍ଥାଣୁ ଅଥବା ନିର୍ବେଦ ପାଲଟିଯିବ । ରୁଷ୍‌ର ଟଲଷ୍ଟୟ ତାଙ୍କର ବହୁ କାହାଣୀ ମାଧ୍ୟମରେ ଏହି ତଥ୍ୟକୁ ହିଁ ଉଦ୍‌ଭାସିତ କରିଛନ୍ତି ।

ଏଥିରେ ରହିଛି ହସ୍ତ ଆଉ ପଦର ସଂଯୋଗରେ ସର୍ଜନାତ୍ମକ କ୍ରିୟା ମାଧ୍ୟମରେ ମଣିଷର ସର୍ବାଙ୍ଗୀନ ବିକାଶର ସ୍ୱରୂପ ଯାହା ହେଉଛି ସମାଜବାଦ ଅଥବା ସର୍ବୋଦୟର ଆଧାର ଶିଳା । ବହୁ ବିଚିତ୍ରତା ଓ ବିବିଧତା ମଧ୍ୟରେ ଏହି ସବୁ କାର୍ଯ୍ୟକ୍ରମ ରୂପାୟିତ ହୋଇଥିଲା ମଧୁସୂଦନଙ୍କ କର୍ମଶାଳାରେ ।

ସାଗର ବକ୍ଷରେ ଭାସମାନ ବରଫ ଖଣ୍ଡର ନିମଜ୍ଜିତ ବୃହଦଂଶ ଲୁକ୍କାୟିତ ହୋଇ ରହିଥିଲା ପରି, ମଧୁସୂଦନଙ୍କର ସବୁଦିଗକୁ ପ୍ରସାରିତ, ପରିବ୍ୟାପ୍ତ ବ୍ୟକ୍ତିତ୍ୱର ଏହିସବୁ ଉପଲବ୍ଧି ହେଉଛି ଏକ ଅନାଲୋଚିତ ଦିଗ । ସୂର୍ଯ୍ୟାସ୍ତ ଆଇନ ବଳରେ ଜମିଦାରୀ ଉଚ୍ଛେଦ ହୋଇଯାଇଥିବା ଗୋଟିଏ କୁଳୀନ ପରିବାରରେ ଗ୍ରାମ ଗହଳରେ ମଧୁସୂଦନ ଦାସ ଜନ୍ମଗ୍ରହଣ କରିଥିଲେ । ଜନ୍ମବେଳକୁ ତାଙ୍କର ଅସ୍ତାବଳରେ କିଛି ଘୋଡା ପ୍ରତିପାଳିତ ହେଉଥିଲେ ମଧ୍ୟ ଅଶ୍ୱର ପୃଷ୍ଠରେ ନୁହେଁ, ତାଙ୍କର ପଦ ପ୍ରୋତ୍‌ଥିତ ହୋଇଯାଇଥିଲା, ଗ୍ରାମ ଗହଳର ଉତ୍ପାଦନସର୍ବସ୍ୱ ମାଟିରେ । ସେହି ମାଟି ସମଗ୍ର ଭାରତରେ ଗ୍ରାମ ଗହଳକୁ ହିଁ ସୂଚିତ କରୁଥିଲା । ଆବାଲ୍ୟରୁ ସହରରେ ପ୍ରତିପାଳିତ ମହାତ୍ମାଗାନ୍ଧୀ ଅଥବା ପଣ୍ଡିତ ନେହେରୁଙ୍କ ପରି ଜନନାୟକଗଣ ପରିଦର୍ଶକ ଅଥବା ପରିବ୍ରାଜକ ପରି ଗ୍ରାମଗହଳକୁ ଅଧ୍ୟୟନର କ୍ଷେତ୍ର ରୂପେ ବାଛିନେଲା ପରି ନୁହେଁ, ମଧୁସୂଦନ ଦାସ ଆବାଲ୍ୟରୁ ସିଧାସଳଖ ମୁହାଁମୁହିଁ ଭାବେ ଗ୍ରାମ ଗହଳର ସ୍ଥିତି ସଂପର୍କରେ କେବଳ ପରିଚିତ ନଥିଲେ, ସେ ଏହା ସହିତ ଅଂଗାଗୀ ଭାବେ ଜଡ଼ିତ ହୋଇ ରହିଥିଲେ । ଅର୍ଥନୈତିକ ଦୃଷ୍ଟିରୁ ଅନ୍ତଃସାରଶୂନ୍ୟ ଦୁର୍ଭିକ୍ଷର କରାଳ ଗ୍ରାସରେ କଙ୍କାଳସାର ଓଡ଼ିଶାର ଜନଗୋଷ୍ଠୀ ମଧ୍ୟକୁ ୧୮୮୧ରେ ମଧୁସୂଦନ ଫେରିଲା ପରେ, ଏ ରାଜ୍ୟର ଦାରୁଣ ଦୁର୍ଗତି ତଥା ମର୍ମନ୍ତୁଦ ଅବସ୍ଥା ତାଙ୍କୁ ଆକ୍ରାନ୍ତ ଆଉ ଆଚ୍ଛନ୍ନ କରିରଖିଥିଲା ।

୧୧.୨.୧୮୮୮ରେ ଲବଣକର ବୃଦ୍ଧି ବିରୋଧରେ କଟକର ବିରାଟ ଜନସଭାରେ ତାଙ୍କର ଜ୍ୱାଳାମୟୀ ଭାଷଣ, ବ୍ରିଟିଶ୍ ଉପନିବେଶବାଦର ତୀବ୍ର ନିଷ୍ପେଷଣକୁ ସୂଚିତ କରୁଥିଲା, ଯାହାର

ପ୍ରଚଣ୍ଡ ଆଘାତରେ ସମସ୍ତ ଗ୍ରାମ୍ୟ ଶିଳ୍ପ ବିଧ୍ୱସ୍ତ ହୋଇଯାଇଥିଲା । କିଛିବର୍ଷ ଗଭୀର ଅନ୍ତର୍ଦାହର ତୀବ୍ର ଜ୍ୱାଳାରେ ଜର୍ଜରିତ ହୋଇ ୧୮୯୨ରେ ମଧୁସ୍ମୃତିକୁ ଆସିଲା ପରେ, ତାଙ୍କ ସମ୍ମୁଖରେ ସୀମାହୀନ ଦିଗନ୍ତ ଉନ୍ମୋଚିତ ହୋଇଯାଇଥିଲା । ହଁ, ସେହି ସମାଧାନର ଚକ୍ରବାଳରେ ଉଦିତ ହୋଇଥିଲେ ସ୍ୱଦେଶୀ ଶିଳ୍ପାୟନରୂପୀ ମୁକ୍ତି ଶିଳ୍ପର ସୂର୍ଯ୍ୟ । ସ୍ୱଦେଶୀ ଶିଳ୍ପାୟନ ଓ ସ୍ୱାବଲମ୍ବନ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ପରି । ସମସ୍ତ ସମାଜକୁ ଏହି ମୁକ୍ତିମଂତ୍ରରେ ଦୀକ୍ଷିତ କରିବା ପୂର୍ବରୁ ଏହାର ପରୀକ୍ଷା ଓ ନିରୀକ୍ଷା ନିଜଠାରୁ ହିଁ ସେ ଆରଂଭ କରିଥିଲେ । ତାଙ୍କର ସମସ୍ତ ବସ୍ତୁ ସ୍ୱଦେଶୀ ହେବା ପଛରେ, ପ୍ରଥମେ ପାଦରେ ପିନ୍ଧୁଥିବା ଜୋତାକୁ ହିଁ ସେ ଚିହ୍ନିତ କରିଥିଲେ । ଏହାର ସର୍ବୋତ୍ତମ ଉତ୍ପାଦନର ସୂତ୍ର-ଅନ୍ୱେଷଣରେ ସେ ପରିବ୍ରାଜକ ରୂପେ ଘୂରିବୁଲିଥିଲେ ଚର୍ମକାର ଅଧ୍ୟୁଷିତ ବସ୍ତିସବୁ । ଆଉ ଚାରିଜଣ ଚର୍ମକାରଙ୍କୁ ନିଜ ପରିବାରର ଅଂଗୀଭୂତକରି, ମଧୁସ୍ମୃତିରେ ବସତି ପ୍ରଦାନ କରିଥିଲେ । ୧୮୯୨ରୁ ଆରମ୍ଭ ହୋଇଥିବା ତାଙ୍କର ଏହି ଅବାରିତ ଯାତ୍ରା ଲମ୍ବିଯାଇଥିଲା ୧୯୦୨ ସାଲ ଯାଏଁ, ଯେଉଁ ବର୍ଷ ତାଙ୍କର ବ୍ୟବହୃତ ସମସ୍ତ ବସ୍ତୁ ସ୍ୱଦେଶୀରେ ପରିଣତ ହୋଇଥିଲା । କ୍ରାନ୍ତିକାରୀ ଏହି ଯାତ୍ରା ପଥରେ ୧୯୦୦ ସାଲରେ ଉନ୍ନତ ଚରଖାର ଉଦ୍‌ଭାବନ ଆଉ ୧୯୦୫ରେ ଫ୍ଲାଇ ସଟଲ୍ ତନ୍ତ ସାହାଯ୍ୟରେ ତ୍ୱରିତ ବୟନ ପ୍ରଣାଳୀର ଉପସ୍ଥାପନ ମାଧ୍ୟମରେ ନିଜର ଅଭିଳାଷକୁ ସେ ପୂର୍ଣ୍ଣ କରିପାରିଥିଲେ । ବ୍ୟବହାରପାଇଁ ଗ୍ରାମୀଣ କାରିଗରଙ୍କ ମାଧ୍ୟମରେ ସମସ୍ତ ସ୍ୱଦେଶୀ ବସ୍ତୁ ଉପଲବ୍‌ଧ ପରେ ବିଦେଶୀ ବର୍ଜନ ଆଉ ସ୍ୱଦେଶୀ ଉତ୍ପାଦନ ଓ ବ୍ୟବହାରର ସଂକଳ୍ପବଦ୍ଧ ଶପଥପାଇଁ ସେ ଗ୍ରାମ ଆଉ ଜନପଦରେ ଘୂରିବୁଲିଥିଲେ । ଏ ସମସ୍ତ ଥିଲା ବ୍ରିଟିଶ୍ ନିଷ୍ପେଷଣ ବିରୋଧରେ ଏକ ଅଘୋଷିତ ମୁକ୍ତି ସଂଗ୍ରାମ । ସ୍ୱାବଲମ୍ବନ ଥିଲା ଏହାର ମୂଳଭିତ୍ତି । ମଧୁସୂଦନଙ୍କ ଭାଷାରେ 'ଯେଉଁ ହାତରେ ଜଣେ ରୁଟି ଖାଏ, ସେହି ହାତରେ ହିଁ ତାହାକୁ ରୁଟିର ଉପାର୍ଜନ କରିବାକୁ ପଡ଼ିବ' (୧୯୨୪ରେ ପାଟନାଠାରେ ପ୍ରଦତ୍ତ ଭାଷଣ) ।

ମଧୁସୂଦନ ଦାସ ୧୮୯୭ରେ ସୁଦୀର୍ଘ ନଅମାସ ଧରି ଇଂଲଣ୍ଡ ସମେତ ୟୁରୋପର ପ୍ରମୁଖ ଦେଶଗୁଡ଼ିକ ଜଣେ ଅନୁସନ୍ଧିତ୍ସୁର ଜିଜ୍ଞାସା ନେଇ ପରିଭ୍ରମଣ କରିଥିଲେ । ସେହି ଦେଶ ସମୂହର ସଂବିଧାନ, ଲୋକତଂତ୍ର ଶାସନ, କ୍ରାନ୍ତିକାରୀ ଉଦ୍ୟୋଗ ଭଳି ସ୍ୱୟଂଶାସିତ ସଂସ୍ଥା ଆଉ ପ୍ରଗତିଶୀଳ ଜନଜାଗରଣର ବିଭିନ୍ନ ପର୍ଯ୍ୟାୟ (ସମାଜବାଦ ମଧ୍ୟ) ଅଧ୍ୟୟନ କରିଥିଲେ, ଯାହା ତାଙ୍କ ଚେତନାର ଦିଗନ୍ତକୁ ପ୍ରସାରିତ କରିଥିଲା । ସମାଜବାଦର ପ୍ରାରମ୍ଭିକ ପଦକ୍ଷେପ ରୂପେ ଚିହ୍ନିତ ଓୟେନଙ୍କ ସମବାୟ ଜନସଂପ୍ରଦାୟର ଆଧାରରେ, ୧୮୯୮ ସାଲରେ କଟକ କୋ ଅପରେଟିଭ୍ ଭଂଡ଼ାର (ଯାହା ସମଗ୍ର ଭାରତରେ ପ୍ରଥମ ବହୁମୁଖୀ ସମବାୟଭିତ୍ତିକ ଉଦ୍ୟୋଗ) ସ୍ଥାପନକରି କ୍ଷୁଦ୍ର କୃଷିଜୀବୀଙ୍କୁ ଋଣଦାନ ମାଧ୍ୟମରେ ସେମାନଙ୍କଠାରୁ ଯୁକ୍ତିଯୁକ୍ତ ମୂଲ୍ୟର ପଣ୍ୟ ସଂଗ୍ରହ ତଥା କଟକର ନିମ୍ନବର୍ଗ ବ୍ୟକ୍ତିଙ୍କ ମଧ୍ୟରେ ସୁଲଭ ମୂଲ୍ୟରେ ବିକ୍ରୟର ବ୍ୟବସ୍ଥା କରିଥିଲେ ।

ଆଲୋଚନାକୁ ଏହିଠାରେ ଅସମାପ୍ତ ରଖି, ଚାଲନ୍ତୁ ଯିବା ୧୯୩୪ ସାଲରେ ଭାରତର ଦୃଶ୍ୟପଟକୁ । ସେହିବର୍ଷ ନାସିକ୍ ଜେଲ୍‌ରେ ଆବଦ୍ଧ ଜୟପ୍ରକାଶ ନାରାୟଣ, ଅଶୋକ ମେହେଟ୍ଟା, ଅଚ୍ୟୁତ ପଟ୍ଟବର୍ଦ୍ଧନ ଆଦି ତରୁଣ ଦେଶବତ୍ସଳ ଯୁବ ନେତୃବୃନ୍ଦ, ବନାରସର ଆଚାର୍ଯ୍ୟ ନରେନ୍ଦ୍ର

ଦେବ ପ୍ରମୁଖଙ୍କ ସହିତ ମିଳିତ ହୋଇ ପାଟନାଠାରେ କଂଗ୍ରେସ ସମାଜବାଦୀ ଦଳ ଗଠନ କରିଥିଲେ । ଅକ୍ଟୋବର ମାସରେ ବମ୍ବେଠାରେ ସ୍ୱରାଜ ପ୍ରାପ୍ତିଲାଗି ଯେଉଁ ସମାଜବାଦୀ କାର୍ଯ୍ୟକ୍ରମର ଚିଠା ପ୍ରସ୍ତୁତ ହୋଇଥିଲା, ତାହା ମଧ୍ୟରେ ଥିଲା - ଜମିଦାରି ଓ ଗଡ଼ଜାତ ପ୍ରଥାର ଉଚ୍ଛେଦ; କୃଷକକୁ ଭୂମି ଉପରେ ଅଧିକାର ପ୍ରଦାନ; ସମବାୟ ମାଧ୍ୟମରେ କୃଷି, ଉତ୍ପାଦନ ଓ ବଣ୍ଟନ; ପ୍ରତ୍ୟେକ ବ୍ୟକ୍ତିଙ୍କୁ କର୍ମସଂସ୍ଥାନ ଏବଂ ନାରୀଜାତିକୁ ଅଧିକାର ପ୍ରଦାନ । ସମାଜବାଦୀ ଯୁବନେତୃବୃନ୍ଦ ଏ ସମସ୍ତକୁ ଜନଜାଗରଣ ଓ ଗଣ ଆନ୍ଦୋଳନ ମଧ୍ୟରେ ହାସଲ କରିବାକୁ ଲକ୍ଷ୍ୟ ରଖିଥିଲେ । ମାତ୍ର ଆଶ୍ଚର୍ଯ୍ୟ ଲାଗେ, ମଧୁସୂଦନ ଦାସ ପ୍ରାୟ ୧୯୧୫ ସାଲ ବେଳକୁ ଏହି ସମସ୍ତ କାର୍ଯ୍ୟକ୍ରମରେ କେବଳ ସକ୍ରିୟ ଅଂଶଗ୍ରହଣ କରିନଥିଲେ, ଏଗୁଡିକର ମୁଖ୍ୟ ପ୍ରକ୍ରିୟାରେ ନିମଜ୍ଜିତ ରହିଥିଲେ । ଜଣେ ନିପୁଣା ନୃତ୍ୟାଙ୍ଗନା ପରି  ସେ ବିନା କାଳାତିପାତରେ ତତ୍କ୍ଷଣାତ୍ ଓହ୍ଲାଇ ପଡୁଥିଲେ ପ୍ରକଳ୍ପ ସବୁର ଆଶୁ ଆଉ ସଫଳ ରୂପାୟନପାଇଁ ।  ଯାହା ଚିନ୍ତା କରୁଥିଲେ, ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ କରୁଥିଲେ ।

ମଧୁସୂଦନଙ୍କର ସମାଜବାଦୀ କାର୍ଯ୍ୟକ୍ରମ ମଧ୍ୟରେ ଅତ୍ୟନ୍ତ ଉଲ୍ଲେଖନୀୟ ଥିଲା ପ୍ରଜା ପରିଷଦ (୧୯୦୯) ଗଠନ, ଯାହାର ଛତ୍ରଛାୟା ତଳେ ହଜାର ହଜାର କୃଷିଜୀବୀ ସମ୍ମିଳିତ ହୋଇ ସେମାନଙ୍କର ଭୂମି ଉପରେ ସ୍ୱତ୍ୱ ଲାଭ କରିବାପାଇଁ ସଂଗ୍ରାମ କରିଥିଲେ । ୧୯୧୨ସାଲରେ ସେ ଯେଉଁ ମେମୋରାଣ୍ଡମ୍ ପ୍ରଜାମାନଙ୍କ ପକ୍ଷରୁ ଦାଖଲ କରିଥିଲେ, ତାହା ପ୍ରଜାମାନଙ୍କର ଅଧିକାର ପ୍ରଦାନ କ୍ଷେତ୍ରରେ ସର୍ବୋତ୍ତମ ଦଲିଲ୍ ଥିଲା, ଯାହା ବିନା କ୍ଷତିପୂରଣରେ ଜମିଦାରି ପ୍ରଥା ଉଚ୍ଛେଦ ଲାଗି ଅଭିପ୍ରେତ ଥିଲା । ମଧୁସୂଦନଙ୍କର ସମସ୍ତ ପ୍ରତିବାଦ ସତ୍ତ୍ୱେ,ବଙ୍ଗ  କାଉନ୍‌ସିଲ୍‌ରେ ଓଡ଼ିଶା ପ୍ରଜାସ୍ୱତ୍ତ୍ୱ ବିଲ୍ ପ୍ରଣୀତ ହେବା ପରେ, ଏହା ଓଡିଶାର ପ୍ରଜାମାନଙ୍କର ଶୋଷଣପାଇଁ ଉଦ୍ଦିଷ୍ଟ ବୋଲି ମଧୁସୂଦନଙ୍କ ଚେତାବନୀ ଯୋଗୁଁ, ବଡ଼ଲାଟ ଲର୍ଡ଼ ହାର୍ଡିଞ୍ଜ୍ ଏହି ବିଲ୍‌କୁ ମଂଜୁରୀ ପ୍ରଦାନ କରିନଥିଲେ । ଏହା ଥିଲା ପାର୍ଲାମେଣ୍ଟାରୀ ଇତିହାସରେ ଏକ ବିରଳ ବ୍ୟତିକ୍ରମ । ୧୯୧୫ରେ ମଧୁସୂଦନ ଗଡ଼ଜାତ ଉଚ୍ଛେଦ ଲାଗି ତାଙ୍କର ଦୃଢ଼ଦାବି ଉପସ୍ଥାପନ କରିଥିଲେ ।

କଲିକତାରେ ପ୍ରଥମ ଶ୍ରମିକ ୟୁନିଅନ ୧୮୭୦ରେ ପ୍ରତିଷ୍ଠିତ ହୋଇଥିଲା । ଏହାର ମାତ୍ର ୫ବର୍ଷ ପରେ ମଧୁସୂଦନ ମାଟିଆବରଜୁରେ ଶ୍ରମିକଙ୍କ ଲାଗି ଏକ ନୈଶ୍ୟ ବିଦ୍ୟାଳୟ ଓ ୟୁନିୟନର ସ୍ଥାପନା କରିଥିଲେ । କଲିକତାରେ ପରବର୍ତ୍ତୀ କାଳରେ ବୃହତ ଶ୍ରମିକ ୟୁନିୟନର ସ୍ଥାପନା ସହିତ ୧୯୨୯ରୁ ୧୯୩୧ ମଧ୍ୟରେ ମଧୁସୂଦନ ନେତାଜୀ ସୁବାଷ ବୋଷଙ୍କର ସାହଚର୍ଯ୍ୟରେ ଜାମସେଦପୁରଠାରେ ଶ୍ରମିକମାନଙ୍କୁ ୟୁନିୟନ୍ ଗଠନ ମାଧ୍ୟମରେ ସମ୍ମିଳିତ କରିଥିଲେ । ଦଳିତମାନଙ୍କୁ ଅର୍ଥନୈତିକ କ୍ଷେତ୍ରରେ ଥଇଥାନ କରିବାପାଇଁ ଉତ୍କଳ ଟ୍ୟାନେରି ସ୍ଥାପନ କରିଥିଲେ, ଯାହାର ମାନବୀୟ ମୂଲ୍ୟବୋଧ ମହାତ୍ମାଗାନ୍ଧୀଙ୍କର ଭାଷାରେ, "ସମାଜର ଗୋଟିଏ ଅଂଶ ଉପରେ ଆମେ ଯେଉଁ ଅପରାଧ କରିଚାଲିଛେ ମଧୁସୂଦନ ଦାସ ସେ ସଂପର୍କରେ ମୋର ଆଖି ଖୋଲିଦେଇଥିଲେ ।" ମଧୁସୂଦନଙ୍କ ପ୍ରଣୀତ ଆଇନ (୧୯୨୩)ରେ ସ୍ୱାୟତ୍ତଶାସନ ସଂସ୍ଥାମାନଙ୍କରେ ଦଳିତମାନଙ୍କପାଇଁ ସ୍ଥାନ ସଂରକ୍ଷିତ ଥିଲା ।

ଏ ସମସ୍ତ ଉପଲବ୍ଧି ସମାଜବାଦୀ କାର୍ଯ୍ୟକ୍ରମର ଉଜ୍ଜ୍ୱଳ କୀର୍ତ୍ତିସ୍ତମ୍ଭ ରୂପେ ବିବେଚିତ, ଯାହା ନିଷ୍ପେଷିତଙ୍କୁ ପ୍ରଦାନ କରିଥିଲା ସ୍ୱାଭିମାନ ସହକାରେ ବଂଚି ରହିବାପାଇଁ ସର୍ବନିମ୍ନ ପ୍ରତିଶ୍ରୁତି । ପ୍ରାୟ ଏକଶହ ବର୍ଷ ପୂର୍ବେ ଓଡ଼ିଶାର ପ୍ରଥମ ସାଂସଦ (୧୯୧୩-୧୯୧୬)ରୂପେ ଭାରତୀୟ ଇମ୍ପେରିଆଲ୍ କାଉନ୍‌ସିଲ୍‌ରେ ବ୍ରିଟିଶ୍ ଉପନିବେଶବାଦ ତଥା ୟୁରୋପୀୟ କ୍ରମପ୍ରସାରିତ ଶୋଷଣଭିତ୍ତିକ ଶିଳ୍ପ ସାମ୍ରାଜ୍ୟବାଦ ବିରୋଧରେ ମଧୁସୂଦନ ଦାସ ସେମାନଙ୍କୁ 'ରକ୍ତଶୋଷକ ଦଳ' ବୋଲି ଆଖ୍ୟାୟିତ କରି ଯେଉଁ ସାଲିସ୍‌ବିହୀନ ସଂଗ୍ରାମର ଡାକରା ଦେଇଥିଲେ, ତାହା ଆଜିର ଜଗତୀକରଣ ତଥା ବିଶ୍ୱ ଅର୍ଥାୟନ ଯୁଗରେ କାଳର କଷଟିରେ ପରୀକ୍ଷିତହୋଇ ନିଜସ୍ୱ ଦୀପ୍ତିରେ ଜାଜ୍ଜ୍ୱଲ୍ୟମାନ । ଘାତ, ପ୍ରତିଘାତ ଆଉ ସମନ୍ୱୟର କ୍ରମବିକାଶର ଧାରାରେ, ମଣିଷ ସହିତ ପ୍ରକୃତିର ସଂଘାତ ସୃଷ୍ଟିହୁଏ । ମାତ୍ର ଏ କ୍ଷେତ୍ରରେ ମଧୁସୂଦନଙ୍କ ଶାଣିତ ବକ୍ତବ୍ୟ ଥିଲା - କଲ୍ୟାଣମୟୀ ପ୍ରକୃତିର ନିଷ୍ପେଷଣ ନୁହେଁ, ସୌହାର୍ଦ୍ଦ୍ୟପୂର୍ଣ୍ଣ ସହାବସ୍ଥାନ ମଧ୍ୟରେ ଭାରସାମ୍ୟ ରକ୍ଷା, ଯାହା ଆଜିର ପରିବେଶବିତ୍‌ମାନଙ୍କ ଆଧାରରୂପେ ଗୃହୀତ । ତେଣୁ ଆଜି ବିସ୍ମୟାଭିଭୂତ ହେବାକୁ ପଡେ ଯେ,ସେହି ଊନବିଂଶ ଶତାବ୍ଦୀର ମଧୁସୂଦନ ଆଜି ଏକବିଂଶ ଶତାବ୍ଦୀର ପ୍ରେକ୍ଷାପଟରେ କିଭଳି ତାତ୍ପର୍ଯ୍ୟପୂର୍ଣ୍ଣ ଆଉ ପ୍ରାସଙ୍ଗିକ ।

ଓଡ଼ିଆମାନଙ୍କପାଇଁ ଏହା ଏକାନ୍ତ ଗୌରବର ବିଷୟ ଯେ, ମଧୁସୂଦନ ଦାସ ତାଙ୍କର ପରିବ୍ୟାପ୍ତ ସମାଜବାଦ କାର୍ଯ୍ୟକ୍ରମକୁ, ଓଡ଼ିଆ ଭାଷା-ସଂସ୍କୃତି- ମୁକ୍ତି -ସଂଗ୍ରାମର ଏକ ଅବିଚ୍ଛେଦ୍ୟ ଅଂଗ ରୂପେ ଗଢ଼ି ତୋଳିଥିଲେ ।

ହଁ, ସେ ଥିଲେ ଅଗ୍ରନାୟକ

ଅଥଚ ଆମେ ସତେ ରହିଯାଇଛୁ କେଡ଼େ ନିର୍ବେଦ ।



# ମଧୁସୂଦନଙ୍କ ବିଶ୍ୱଦୃଷ୍ଟି

'ମଧୁସୂଦନ ଦାସ ଥିଲେ ଭାରତୀୟ ଜାତୀୟ ଜାଗରଣର ଜଣେ ଉତ୍ତୁଙ୍ଗ ନେତୃପୁରୁଷ ।' (ଶ୍ୟାମା ପ୍ରସାଦ ମୁଖାର୍ଜୀ) । ସେ ଥିଲେ ସ୍ୱଦେଶୀ ଶିଳ୍ପାୟନର ଆଦ୍ୟ ଉଦ୍‌ଗାତା ଏବଂ ଦଳିତ ଜାତିର ଅର୍ଥନୈତିକ ଅଗ୍ର ସଂସ୍ଥାପକ । ତାଙ୍କଯୋଗୁଁ ଭାରତୀୟ ନାରୀ ପାଇଥିଲା ଆଇନଜୀବୀ ବୃତ୍ତି ଗ୍ରହଣର ଅଧିକାର । ସେ ଥିଲେ ଭାରତର ପ୍ରଥମ ଭାଷାଭିତ୍ତିକ ପ୍ରଦେଶର ମୁଖ୍ୟ ବିନ୍ଧାଣୀ । ଏହିସବୁ ଦୃଷ୍ଟିରୁ,ତାଙ୍କୁ ଉତ୍କଳଗୌରବ ପଦରେ ଆଖ୍ୟାୟିତକରି, ଆମେ କ'ଣ ତାଙ୍କର ସ୍ମୃତି ପ୍ରତି ଯାଥାର୍ଥତା ପ୍ରତିପାଦନ କରିଛେ ?

ପ୍ରକୃତରେ ମଧୁସୂଦନ ଦାସଙ୍କର ଚିନ୍ତନ, ମହାସାଗର ପରି ସୁବିଶାଳ ଓ ବିଶ୍ୱାଭିମୁଖୀ ଥିଲା । ତାଙ୍କର ଚିନ୍ତାଧାରା ସମଗ୍ର ବିଶ୍ୱକୁ ଆଶ୍ଳେଷରେ ନେଇଥିଲା । ତତ୍କାଳୀନ ଭାରତର ରାଜଧାନୀ କଲିକତାକୁ ୧୮୬୬ସାଲରେ ଯାତ୍ରାକରି ୧୯୩୪ ସାଲରେ ତାଙ୍କର ମହାପ୍ରୟାଣ ପର୍ଯ୍ୟନ୍ତ ସେ ତାଙ୍କ ଜୀବନର ଅର୍ଦ୍ଧାଧିକ କାଳ ଓଡ଼ିଶାର ବାହାରେ ହିଁ ବିତାଇଛନ୍ତି ଏବଂ ସର୍ବ ଭାରତୀୟ କ୍ଷେତ୍ରରେ ଅତ୍ୟନ୍ତ ନିବିଷ୍ଟ ଭାବେ କାଯ୍ୟ କରିଛନ୍ତି । ସେ ୧୮୯୭ ସାଲରୁ ୧୯୧୨ ସାଲ ପର୍ଯ୍ୟନ୍ତ ବଂଗ ବିଧାନ କାଉନ୍‌ସିଲ୍‌ରେ ପ୍ରଭାବଶାଳୀ ସଦସ୍ୟ ହେବା( ଅଳ୍ପ କିଛିକାଳ ପାଇଁ ଥିଲେ) ସହିତ ୧୯୨୧ ସାଲରେ ବିହାର ଓ ଓଡ଼ିଶାର ମଂତ୍ରୀପଦରେ ରହି ଅଳ୍ପ କାଳ ଭିତରେ ଅଶେଷ ଖ୍ୟାତିର ଅଧିକାରୀ ହୋଇଥିଲେ । ଏହାଛଡ଼ା ୧୯୧୩ରୁ ୧୯୧୭ ସାଲ ପର୍ଯ୍ୟନ୍ତ ଇମ୍ପେରିଆଲ୍ କାଉନ୍‌ସିଲ୍‌ରେ ସାମ୍ରାଜ୍ୟବାଦ ବିରୁଦ୍ଧରେ ତାଙ୍କର ପ୍ରଦତ୍ତ ଭାଷଣ ମାଧ୍ୟମରେ ଜଣେ ଅନମନୀୟ ସମାଲୋଚକ ରୂପେ ବିପୁଳ ପ୍ରତିଷ୍ଠା ଅର୍ଜନ କରିଯାଇଛନ୍ତି । ଆହୁରି ମଧ୍ୟ ୧୮୯୭ ସାଲରେ ସୁଦୀର୍ଘ ଆଠମାସ ଧରି ଇଂଲଣ୍ଡ ସମେତ ୟୁରୋପ ଓ ମଧ୍ୟପ୍ରାଚ୍ୟ ପରିଭ୍ରମଣ କଲା ପରେ ସେ ୧୯୦୭ ସାଲ୍‌ରେ ଇଂଲଣ୍ଡରେ କିଛିକାଳ ଅବସ୍ଥାନକରି ଇଉରୋପର ସମସ୍ତ ଗଣତାନ୍ତ୍ରିକ, ରାଜନୈତିକ ଓ ସମାଜବାଦୀ ଚିନ୍ତାଧାରା ଓ କାର୍ଯ୍ୟକାରିତା ସିଧାସଳଖ ଭାବେ ଇଉରୋପର ପଛଭୂମିରୁ ଅଧ୍ୟୟନ ଓ

ଅନୁଧ୍ୟାନ କରିଥିଲେ । ତେଣୁ ଏ କ୍ଷେତ୍ରରେ ସର୍ବଭାରତୀୟ ସ୍ତରରେ ସେ ଥିଲେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ, ପ୍ରଗତିଶୀଳ ଚିନ୍ତାନାୟକ । କେବଳ ସେତିକି ନୁହେଁ, ସେ ମଧ୍ୟ ଥିଲେ, ମହାତ୍ମାଗାନ୍ଧୀଙ୍କର ଅନ୍ୟତମ ମାର୍ଗଦର୍ଶକ ।

ମଦୁସୂଦନ ଦାସ ସର୍ବପ୍ରଥମେ ବଂଗ କାଉନ୍‌ସିଲ୍‌ରେ ୧୯୧୨ ସାଲରେ ବିନା କ୍ଷତିପୂରଣରେ ଜମିଦାରି ପ୍ରଥାକୁ ଉଚ୍ଛେଦ କରିବାପାଇଁ ଆହ୍ୱାନ ଦେବା ଅବକାଶରେ ସେହିବର୍ଷ ଓଡ଼ିଶାର ସମସ୍ତ ନ୍ୟସ୍ତସ୍ୱାର୍ଥଗୋଷ୍ଠୀ (ଜମିଦାର, ମହାଜନ, ସାହୁକାର ଓ ବ୍ୟବସାୟୀ)ମାନଙ୍କୁ ବର୍ଜନକରି କୃଷକ, ଭୂମିହୀନ ଏବଂ କୃଷିଜୀବୀଙ୍କୁ ଘେନି ଯେଉଁ ପ୍ରଜାପରିଷଦ ସଭା ଗଠନ କରିଥିଲେ ତାହା ସମଗ୍ର ରାଜନୈତିକ ଦୃଶ୍ୟପଟ୍ଟରେ ଅଦ୍ୱିତୀୟ ଓ ଅନନ୍ୟ ଥିଲା । ଏପରିକି ସେ ୧୯୧୫ ସାଲରେ ଓଡ଼ିଶାର ଗଡ଼ଜାତ ମାହାଲର ଆଶୁ ସମାପ୍ତି ଘଟାଇ ସେଗୁଡ଼ିକୁ ନିକଟସ୍ଥ ଜିଲ୍ଲାମାନଙ୍କରେ ସଂଯୁକ୍ତ କରିବାପାଇଁ ଆହ୍ୱାନ ଦେଇଥିଲେ ।

ମଧୁସୂଦନ ୧୮୯୭ ସାଲରେ ଇଂଲଣ୍ଡ ସମେତ ସମଗ୍ର ୟୁରୋପ ପରିଦର୍ଶନ ପରେ ସମାଜବାଦୀ ଚିନ୍ତାନାୟକ ରବର୍ଟ୍ ଓୟେନ୍‌ଙ୍କ ଦର୍ଶନରେ ପ୍ରଭାବିତ ହୋଇ ୧୮୯୮ ସାଲ୍‌ରେ ଜଣେ ଆଦ୍ୟ ପ୍ରବର୍ତ୍ତକ ଭାବରେ କଟକରେ କଟକ-କୋ-ଅପରେଟିଭ୍ ଷ୍ଟୋର୍ ସ୍ଥାପନ କରିଥିଲେ ଏବଂ ପରବର୍ତ୍ତୀକାଳରେ କୃଷିଭିତ୍ତିକ ସମବାୟ ସମିତିମାନ ସ୍ଥାପନାରେ ଏହା ସାହାଯ୍ୟ କରିଥିଲା ।

ମଧୁସୂଦନଙ୍କ ପରିକଳ୍ପିତ ଭାରତଥିଲା ଇଉରୋପ ଭଳି ଏକ ମହାଦେଶ । ଏହା ମଧ୍ୟରେ ପ୍ରତିଟି ପ୍ରଦେଶର ଭାଷା ଓ ସଂସ୍କୃତିକୁ ଘେନି ନିର୍ଦ୍ଦିଷ୍ଟ ଜାତି ଓ ସମଗ୍ର ମହାଦେଶକୁ ଘେନି ମହାଭାରତ ଜାତି ଏବଂ ଅବଶେଷରେ ସମଗ୍ର ବିଶ୍ୱକୁ ପରିବ୍ୟାପ୍ତ କରିଥିବା ବିଶ୍ୱମାନବୀୟ ଜାତିକଥା ସେ ପରିକଳ୍ପନା କରିଥିଲେ । ଏଥିରେ ସଂକୀର୍ଣ୍ଣତାର ସାମାନ୍ୟ ମାତ୍ର ସ୍ଥାନ ନ ଥିଲା । ଆଜି ଭାରତୀୟ ସମ୍ବିଧାନରେ ମଧ୍ୟ ଏଭଳି ବିଶ୍ୱମୁଖୀ ଚିନ୍ତାଧାରା ପ୍ରତିଫଳିତ ହୋଇଛି ।

ମଧୁସୂଦନ ୧୯୦୩ ସାଲରେ ଉତ୍କଳ ସମ୍ମିଳନୀର ଆଦ୍ୟ ପ୍ରସ୍ତୁତି ବୈଠକରେ ଜାତୀୟ ଜୀବନ ସଂପର୍କରେ କହିଥିଲେ-

'ଇଉରୋପରେ **ନେସନ୍** ଅର୍ଥାତ୍ ଜାତି ଶବ୍ଦ ଗୋଟାଏ ଦେଶର ଲୋକ ସମୂହକୁ ବୁଝାଏ । ଇଉରୋପୀୟ ଜାତି ସମୂହ ପରସ୍ପରଠାରୁ, ଯେଉଁ ପରିମାଣରେ ଭିନ୍ନ,ଭାରତବର୍ଷରେ ପ୍ରାଦେଶିକ ଲୋକସମୂହ ସେହିପରି ଭାବେ ପରସ୍ପରଠାରୁ ଭିନ୍ନ ।'

ପ୍ରାୟ ୧୮୭୦ ବେଳକୁ ବିଖଣ୍ଡିତ ଜର୍ମାନୀ ଭାଷୀ ଓ ଇଟାଲି ଭାଷୀ ଅଂଚଳର ସମ୍ମିଶ୍ରଣରେ ନୂତନ ଜର୍ମାନୀ ଓ ଇଟାଲି ରାଷ୍ଟ୍ର ଗଠିତ ହୋଇଥିଲା । ୧୮୯୭ ସାଲରେ ଇଉରୋପ ଭ୍ରମଣ ବେଳେ ମଧୁସୂଦନ ଏଇ ଦୁଇଟି ଦେଶକୁ ପରିଦର୍ଶନ କରି ସବିଶେଷ ଭାବେ ଅନୁଧ୍ୟାନ କରିଥିଲେ ଓ ଏହି ଦୁଇ-ଦେଶର ସ୍ଥାପନା ଓ କାର୍ଯ୍ୟକାରିତା ସଂପର୍କରେ ଅବଗତ ହୋଇଥିଲେ ।

ପ୍ରକୃତରେ ୧୯୩୩ ସାଲରେ ଓଡ଼ିଶାର ପ୍ରାଶାସନିକ କମିଟିର ସଦସ୍ୟ ରୂପେ ବ୍ରହ୍ମପୁର ପରିଦର୍ଶନବେଳେ ଶଶିଭୂଷଣ ରଥଙ୍କଦ୍ୱାରା ଆହୂତ ଏକ ସଭାରେ

ଅଧ୍ୟକ୍ଷତାକରି ମଧୁସୂଦନ କହିଥିଲେ- ''ମୋର ପ୍ରିୟ ଓଡ଼ିଆମାନେ ଋଷି ଓ ମୁନିର ସର୍ବତ୍ୟାଗୀ ଜୀବନ ଯାପନ କରନ୍ତୁ ବୋଲି ମୁଁ ଚାହେଁ ନାହିଁ । ମୁଁ ଚାହେଁ ପ୍ରତ୍ୟେକ ଓଡ଼ିଆ ନିଜ ପ୍ରାସାଦରେ ବାସକରୁ ଯହିଁରେ ଉଦ୍ୟୋଗଶୀଳତା ଓ କଳାପ୍ରାଣତାର ଭରପୂର ସମାହାର ରହିଥିବ ।''

ଇଉରୋପୀୟ ଜାତିମାନଙ୍କ ମଧ୍ୟରେ ଫ୍ରାନ୍‌ସ ତାଙ୍କୁ ଅଧିକ ରୋମାଞ୍ଚିତ ଆଉ ଆକର୍ଷିତ କରିଥିଲା । ମଧୁସୂଦନଙ୍କ ଅନୁସାରେ ଫ୍ରାନ୍‌ସ ସମସ୍ତ ସଭ୍ୟ ପୃଥିବୀକୁ ମନଛୁଆଁ ରଂଗ, କଳାପ୍ରାଣ ଆକୃତି ଓ ରୁଚିପୂର୍ଣ୍ଣ ସାମଗ୍ରୀ ଯୋଗାଇଥିଲା । କେବଳ ସେତିକି ନୁହେଁ, ଫରାସୀମାନଙ୍କର କଣ୍ଠସ୍ୱରରୁ ସୁମଧୁର ଭାଷା ଉଦ୍‌ଗତ ହେଉଥିଲାବେଳେ ଜିହ୍ୱାପାଇଁ ଅତ୍ୟନ୍ତ ସୁସ୍ୱାଦୁ ରସଯୁକ୍ତ ଖାଦ୍ୟ ବା ବ୍ୟଞ୍ଜନ ଫରାସୀ ପାଚକମାନେ ପ୍ରସ୍ତୁତ କରୁଥିଲେ । ଜର୍ମାନୀ, ଉଦ୍ୟୋଗର ଏକ ସଫଳ କ୍ଷେତ୍ର ଥିଲା । ପ୍ରକୃତରେ ମଧୁସୂଦନ ଉତ୍କଳ ଟ୍ୟାନେରି ପ୍ରସ୍ତୁତିର କିଛି ପ୍ରୟୋଗାତ୍ମକ ଶୈଳୀ ଜର୍ମାନୀରୁ ହିଁ ଗ୍ରହଣ କରିଥିଲେ । ସେହିଭଳି ଜର୍ମାନୀ କର୍ଣ୍ଣକୁ ସମ୍ମୋହିତ କଲାଭଳି କିଛି ସୂକ୍ଷ୍ମ ତାନଯୁକ୍ତ ସଂଗୀତ ପ୍ରାଣ ବାଦ୍ୟମାନ ସମଗ୍ର ବିଶ୍ୱକୁ ଆକର୍ଷିତ କରିଥିଲା । ମଧୁସୂଦନ ଚାହିଁଥିଲେ ଗୌରବାନ୍ୱିତ ଓଡ଼ିଆ ଜାତି ତାହାର ନିଜସ୍ୱ ସଂସ୍କୃତିକୁ ଅକ୍ଷୁଣ୍ଣ ରଖି ଏହି ମହାନ ଇଉରୋପୀୟ ଜାତିମାନଙ୍କର କିଛି ଗୁଣକୁ ନିଜ ସାଥେ ସଂଶ୍ଳିଷ୍ଟ କରିବାର ଆବଶ୍ୟକବୋଧକୁ ଗ୍ରହଣଶୀଳତାର ସହ ପର୍ଯ୍ୟାଲୋଚନା କରୁ । ଏହା ଫଳରେ ପୃଥିବୀ ପୃଷ୍ଠରେ ଓଡ଼ିଆ ଜାତି ତାହାର ନିଜସ୍ୱ ମହାନ ଐତିହ୍ୟ ସହିତ କିଛି ଯୁଗୋପଯୋଗୀ ବିକାଶ ପ୍ରକ୍ରିୟା ସଂଗେ ସଂଯୁକ୍ତ ହୋଇ ଏକ ମହାନ କଳାପ୍ରାଣ ଉଦ୍ୟୋଗଶୀଳ ଜାତିରେ ପରିଣତ ହୋଇପାରିବ ।

ମଧୁସୂଦନ ଦାସ ଭାରତୀୟ ତଥା ଓଡ଼ିଶାର ସଂସ୍କୃତି ଓ ଗ୍ରାମ୍ୟ ଅର୍ଥନୀତି ସହିତ ଆବାଲ୍ୟ ପରିଚିତ ଥିଲେ । ଏବଂ ଇଉରୋପୀୟ ତଥା ବ୍ରିଟିଶ୍ ସାମ୍ରାଜ୍ୟବାଦ ତଥା ଉପନିବେଶବାଦ ଏହି ବ୍ୟବସ୍ଥାକୁ କିପରି ନିଷ୍ପେଷିତ ଓ ଭୂଲୁଣ୍ଠିତ କରିଥିଲା, ତାହା ମଧ୍ୟ ଅଧ୍ୟୟନ କରିଥିଲେ । ଆଜିର ବିଶ୍ୱାୟନ ବା ଜଗତୀକରଣ ଯୁଗରେ ସେହି ଉପନିବେଶବାଦର ଯେଉଁ ପୁନରାବୃତ୍ତି ଘଟୁଛି, ସେ ସଂପର୍କରେ ମଧୁସୂଦନଙ୍କ ଲିଖିତ 'ଭାରତରେ ଜର୍ମାନୀ' ନାମକ ନିବନ୍ଧର କିଛି ଅଂଶ ପ୍ରଣିଧାନଯୋଗ୍ୟ । ତାହା ନିମ୍ନରେ ପ୍ରଦତ୍ତ ହେଲା ।

''ମୁଁ ଯେତେବେଳେ ଜର୍ମାନୀର ସର୍ବବୃହତ କଳକାରଖାନାଗୁଡ଼ିକୁ ପରିଦର୍ଶନ କଲି, ମୁଁ ଦେଖିଲି କିପରି ସେହି କଳକାରଖାନାମାନଙ୍କର ସୁବିଶାଳ ଚକ୍ରଗୁଡ଼ିକ ଭାରତର ବହୁ ହଜାର ମାଇଲ ଦୂରରେ ଘୂର୍ଣ୍ଣାୟମାନ ହୋଇ ସୁଦ୍ଧା ଭାରତରେ ବ୍ୟାବସାୟିକ ସାମ୍ରାଜ୍ୟର ଭିତ୍ତିଭୂମି ପ୍ରତିଷ୍ଠା କରିଚାଲିଛନ୍ତି । କିପରି ଜର୍ମାନୀ ସମସ୍ତଙ୍କର ଅଜାଣତରେ ଭାରତର ଜନତାଠାରୁ କର ଆଦାୟ କରି ଚାଲିଛି । ଏପରିକି ଭାରତର ଛୋଟ ଶିଶୁଟାଏ ଯେ ଜର୍ମାନୀ ତିଆରି ଖେଳଣା ଖେଳୁଛି; ଅଥବା ଜଣେ ସମ୍ଭ୍ରାନ୍ତ ମହିଳା ଯେ ପିଆନୋ ଯନ୍ତ୍ର ସାହାଯ୍ୟରେ ତାହାର ଅତିଥିମାନଙ୍କ ମନୋରଂଜନ କରୁଛି; ସେମାନଙ୍କଠାରୁ ମଧ୍ୟ କର ଆଦାୟ କରିଚାଲିଛି । ଭାରତର ପ୍ରତିଦିନର ଜୀବନକୁ ହଜାର ହଜାର ମାଇଲ୍ ଦୂରରେ ଥିବା ଜର୍ମାନୀ କମ୍ପାନିର ପରିଚାଳକ ବର୍ଗ ନିୟନ୍ତ୍ରଣ କରିଚାଲିଛନ୍ତି ।''

ଏ ସମସ୍ତ ବିରୋଧରେ ମଧୁସୂଦନ ଦାସଙ୍କର ଏକମାତ୍ର ପ୍ରତ୍ୟୁତ୍ତର ଥିଲା, ବୋଧହୁଏ ସ୍ୱଦେଶୀ ଶିଳ୍ପାୟନ । ଏବେ ଏକବିଂଶ ଶତାବ୍ଦୀରେ ପରିବେଶ ସଂରକ୍ଷଣ ବିଷୟରେ ଅଧିକ ଚିନ୍ତନ କରାଯାଉଛି ସିନା ହେଲେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ମଧୁସୂଦନଙ୍କ ଚିତ୍ତ ଆଲୋଡ଼ନକାରୀ ବକ୍ତବ୍ୟ ଥିଲା- ପ୍ରାଚ୍ୟ ବା ଭାରତୀୟ ପ୍ରକୃତି ଅତ୍ୟନ୍ତ ସମ୍ବେଦନଶୀଳା ଓ କଲ୍ୟାଣମୟୀ । ଏଣୁ ଏହା ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ଅବସ୍ଥାନ ଅତ୍ୟନ୍ତ ଆବଶ୍ୟକ ।

ଏହି ସମସ୍ତ ଦୃଷ୍ଟିରୁ ଆଜିର ଏହି ଏକବିଂଶ ଶତାବ୍ଦୀର ଦୁନିଆରେ ମଧ୍ୟ ମଧୁସୂଦନଙ୍କର ପ୍ରଖର ଓ ଯୁଗାନ୍ତକାରୀ ଚିନ୍ତାଧାରା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ପ୍ରାସଙ୍ଗିକ ବୋଧହୁଏ ।



# ବ୍ରିଟିଶ ଉପନିବେଶବାଦ ଏବଂ ଓଡ଼ିଆ ଜାତୀୟତା

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବଂଗ ପ୍ରେସିଡେନ୍‌ସିର ଆୟତନ ଥିଲା ପଶ୍ଚିମରେ ଆଗ୍ରାଠାରୁ ପୂର୍ବରେ ବର୍ମା ସୀମାନ୍ତ ଏବଂ ଦକ୍ଷିଣରେ ଚିଲିକାର ଶେଷପ୍ରାନ୍ତ । ଆଉ ୧୮୬୩ରେ ଆଗ୍ରା ଓ ୧୮୭୪ରେ ଆସାମ ବିଚ୍ଛିନ୍ନ ହେବା ପରେ ଦଶଗୋଟି ଡିଭିଜନ ବିଶିଷ୍ଟ ବିଶାଳ ବଙ୍ଗ ପ୍ରେସିଡେନ୍‌ସିର ଦଶମ କ୍ଷୁଦ୍ର ଓଡ଼ିଶା ଡିଭିଜନ (୧୯୧୨ରେ ବିହାର ଓଡ଼ିଶାର ପଞ୍ଚମ ଅବହେଳିତ ଡିଭିଜନ)ରେ ସେ ବେଳରେ ଓଡ଼ିଆ ନାମରେ ଏକ ଅପାଙ୍‌କ୍ତେୟ ଭାଷା ପ୍ରଚଳିତ ଥିଲା । ଭୌଗୋଳିକ ଦୃଷ୍ଟିରୁ ଅତ୍ୟନ୍ତ ନଗଣ୍ୟ ଏହି ଓଡ଼ିଶା ଭୂଖଣ୍ଡ ଉପରେ ବ୍ରିଟିଶ୍ ଉପନିବେଶବାଦର କ୍ରୂରତମ ଆୟୁଧ ସବୁ ପ୍ରୟୋଗ ହୋଇଥିବା ସତ୍ତ୍ୱେ ୧୯୩୫ ସାଲ୍‌ର ଭାରତ ଆଇନ ପ୍ରଣୟନ ମାଧ୍ୟମରେ ଓଡ଼ିଶା ଭାରତର ସର୍ବପ୍ରଥମ ଭାଷାଭିତ୍ତିକ ପ୍ରଦେଶର ମାନ୍ୟତା ଲାଭ କରିବା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବୀର ସୁରେନ୍ଦ୍ରସାଏ, ବକ୍ସି ଜଗବଂଧୁ, ଚକରା ବିଶୋୟୀ ପ୍ରମୁଖ ବିପ୍ଳବର ଅଗ୍ନିଶିଖା ରୂପେ ବିଚ୍ଛିନ୍ନ ଭାବେ ଓଡ଼ିଶାର ବିଭିନ୍ନ କୋଣରେ ଯେଉଁ ଦୁରନ୍ତ ସଂଗ୍ରାମର ଆହ୍ୱାନ ଦେଇଥିଲେ, ତାହା ବ୍ରିଟିଶ୍ ପ୍ରସାଶନପାଇଁ ଆତଙ୍କର କାରଣ ହୋଇଥିଲେ ମଧ୍ୟ ୧୮୫୭ ସାଲର ସିପାହୀ ବିଦ୍ରୋହର ଅବସାନ ପରେ ନିରସ୍ତ୍ର ଓଡ଼ିଆ ଜାତି ନଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସରେ ପଡ଼ି ଏକ କଂକାଳସାର ଜାତିରେ ପରିଣତ ହୋଇଥିଲା ।

ନଅଙ୍କ ଦୁର୍ଭିକ୍ଷର ଧ୍ୱଂସସ୍ତୂପ ଉପରେ ଠିଆହୋଇଥିବା ଓଡ଼ିଆ ଜାତି ପ୍ରତି ବ୍ରିଟିଶ୍ ଉପନିବେଶବାଦର ଚରମ ଅସ୍ତ୍ରପ୍ରୟୋଗ କରାଯାଇଥିଲା, ଓଡ଼ିଶାର ଭାଷା ଓ ସଂସ୍କୃତିକୁ ବିଲୁପ୍ତ କରିଦେବାପାଇଁ । ଏଠାରେ ବ୍ରିଟିଶ ଉପନିବେଶବାଦର ପ୍ରତିଭୂ ରୂପେ ଇଂରେଜ ପ୍ରଶାସକ ଗୋଷ୍ଠୀଙ୍କୁ କେବଳ ସୂଚିତ କରାଯାଉନାହିଁ । ସେମାନଙ୍କ ଅଧୀନରେ କାର୍ଯ୍ୟରତ ବଶମ୍ବଦ ଦେଶୀୟ

କର୍ମଚାରୀ ଗୋଷ୍ଠୀ, ଯେଉଁମାନଙ୍କର ଦଂଶନର ଜ୍ୱାଳା ସେମାନଙ୍କ ପ୍ରଭୁଙ୍କର ଆଘାତ ଅପେକ୍ଷା ଅଧିକ ପ୍ରାଣଘାତୀ ଥିଲା, ସେମାନଙ୍କୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଛି । ୧୮୬୭ ସାଲରୁ ୧୮୭୭ ସାଲ ମଧ୍ୟରେ ରାଜେନ୍ଦ୍ର ଲାଲ ମିତ୍ର, କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଆଦି ବ୍ରିଟିଶ ଉପନିବେଶବାଦର ପ୍ରତିଭୂ ରୂପେ ଓଡ଼ିଆ ଭାଷା ସଂସ୍କୃତି ଉପରେ ଯେଉଁ ଆକ୍ରମଣ କରିଥିଲେ, ତାହାର ପ୍ରତିରୋଧରେ ଗୌରୀଶଙ୍କର ରାୟ, ଫକୀରମୋହନ ପ୍ରମୁଖ ଯେଉଁ ବ୍ୟୂହ ରଚନା କରିଥିଲେ, ତାହା ଭାଷା ସୁରକ୍ଷା ଆନ୍ଦୋଳନର ଏକ ଚର୍ଚ୍ଚିତ ଅଧ୍ୟାୟ ।

ଉପନିବେଶ ବାଦ ପକ୍ଷରୁ ଆୟୋଜିତ ଆକ୍ରମଣର ମୂଳ ତାତ୍ପର୍ଯ୍ୟ ବ୍ରିଟିଶପାଇଁ ଆଫ୍ରିକୀୟ ମୁକ୍ତିସଂଗ୍ରାମୀମାନଙ୍କ ବକ୍ତବ୍ୟର ମହତ୍ତ୍ୱ ପ୍ରଣିଧାନଯୋଗ୍ୟ । ଦକ୍ଷିଣ ଆଫ୍ରିକାର ବିଶାରଦ ଆଲୋକ୍ସ ଗୁମ୍ମା ତାଙ୍କର ଗବେଷଣା ପ୍ରସୂତ ଗ୍ରନ୍ଥ **ସଂସ୍କୃତି ଓ ମୁକ୍ତି** ଗ୍ରନ୍ଥରେ ୧୯୭୭ରେ ଲେଖିଛନ୍ତି ଯେ, "ଉପନିବେଶବାଦର ମୁଖ୍ୟ ଚାରିତ୍ରିକ ପ୍ରକୃତି ହେଲା, ଗୋଟିଏ ଜାତିର ନିଜସ୍ୱ ପରିଚୟକୁ ଧ୍ୱଂସ କରିବା ପରେ ଗୋଟିଏ ଜାତି ଅନ୍ୟ ଏକ ଜାତିକୁ ଅଧିକାର କରିବା । ବିଜିତ ବା ପରାଜିତ ଜାତିର ମୂଳ ସଂସ୍କୃତି ବା ପରମ୍ପରାଗତ ଜୀବନଧାରଣର ଶୈଳୀକୁ ବିଲୁପ୍ତ କରି ବହିରାଗତ ବା ବିଦେଶୀୟ ଚିନ୍ତାଧାରା ଓ ମୂଲ୍ୟବୋଧକୁ ଆରୋପିତ କରିବା ହେଉଛି ଉପନିବେଶବାଦର ମୂଳ ଆଭିମୁଖ୍ୟ ।"

ଏହି ନିଦାରୁଣ ସ୍ଥିତିରୁ ରକ୍ଷାପାଇବା ସଂପର୍କରେ ଅନ୍ୟତମ ଦକ୍ଷିଣ ଆଫ୍ରିକୀୟ ବିଶାରଦ ଆକ୍ସିଲାନ୍ କବ୍ରାଲ୍ ୧୯୭୬ରେ ୟୁନେସ୍କୋକୁ ପ୍ରଦାନ କରିଥିବା ତାଙ୍କର ଗବେଷଣା ପ୍ରସୁତ ଗ୍ରନ୍ଥରେ କହିଛନ୍ତି ଯେ ଗୋଟିଏ ସାମ୍ରାଜ୍ୟବାଦୀ ମତ ପ୍ରଶାସନର ଉପସ୍ଥାପନାପାଇଁ ମୂଳ ଆୟୁଧ ହେଉଛି ସାଂସ୍କୃତିକ ନିକ୍ଷେପଣ । ମାତ୍ର ପରାଧୀନ ନିରସ୍ତ୍ର ଜନଗୋଷ୍ଠୀ, ସାମରିକ ଶକ୍ତିବିହୀନ ହୋଇ ସାଂସ୍କୃତିକ ସଂରକ୍ଷଣ ଓ ପୁନଃଜାଗରଣ ମାଧ୍ୟମରେ ମୁକ୍ତି ସଂଗ୍ରାମକୁ ବଂଚାଇ ରଖେ ଓ ସାଂସ୍କୃତିକ ନିକ୍ଷେପଣକୁ ପ୍ରତିରୋଧ କରେ ।"

ଏହି ଦୃଷ୍ଟିରୁ ଓଡ଼ିଆ ଆନ୍ଦୋଳନର ଇତିହାସ ତଥା ମଧୁସୂଦନ ଦାସ, ଗୌରୀ ଶଙ୍କର ରାୟ ଆଦି ବରପୁତ୍ରମାନଙ୍କର ଅବଦାନ ସଂପର୍କରେ ସମ୍ୟକ ଆଲୋଚନା କରିବାର ଆବଶ୍ୟକତା ରହିଛି ।

କେବଳ ଭାଷା ଓ ସାହିତ୍ୟ ଗୋଟିଏ ଜାତିର ଏକାନ୍ତ ପରିଚୟ ନୁହେଁ । ଯେଉଁ ଭୌଗୋଳିକ ପରିବେଶରେ ଗୋଟିଏ ଭାଷାଭାଷୀ ଜନସଂପ୍ରଦାୟ ବା ଜାତି ବାସକରନ୍ତି, ସେହି ସମାଜ ମଧ୍ୟରେ ଉନ୍ମେଷିତ ବିବିଧ ସାଂସ୍କୃତିକ ବିଭବ ମଧ୍ୟ ଜାତିର ଅନ୍ୟତମ ପରିଚୟ । ଏଥିରେ ଲୋକନୃତ୍ୟ ସଂଗୀତ, ବାଦ୍ୟ ପରଂପରାଠାରୁ ଆରମ୍ଭ କରି ଜୀବନଧାରଣ ଶୈଳୀ, ଦିନଚର୍ଯ୍ୟା, କଳାସ୍ଥାପତ୍ୟ, କ୍ରୀଡ଼ା-କସରତ, କୁଟୀରଶିଳ୍ପ, ବସ୍ତ୍ର ପରିଧାନର ପ୍ରସ୍ତୁତି, କୃଷି ପରଂପରା ତଥା କୃଷକ ଓ ନାଗରିକଙ୍କର ପ୍ରୟୋଗ ବିଧି ଆଦି ଅନ୍ତର୍ଭୁକ୍ତ କରାଯାଇପାରେ ।

ଏଠାରେ ସୂଚାଇ ଦିଆଯାଇପାରେ ଯେ ବ୍ରିଟିଶ୍ ଉପନିବେଶବାଦର ଚରମ ଦୁର୍ଦ୍ଧର୍ଷ ଆକ୍ରମଣର ଆୟୁଧ ଏହି ସମସ୍ତ ବିଭବମାନଙ୍କ ପ୍ରତି ଏଭଳି ପ୍ରୟୋଗ କରାଯାଉଥିଲା ଯେ, ତାହା ମଧ୍ୟରୁ ବହୁଭାଗ ବିନଷ୍ଟ ହୋଇଯାଇଥିଲା । ଫଳରେ ମଧୁସୂଦନଙ୍କ ଭାଷାରେ କୃଷିକର୍ମ ସଂପାଦନପାଇଁ ଗ୍ରାମବାସୀମାନେ ଯେଉଁ ପଶୁମାନଙ୍କ ସହ ଦୀର୍ଘକାଳ ସହାବସ୍ଥାନ କରୁଥିଲେ; ସାଂସ୍କୃତିକ ପରଂପରା,

ଶିଳ୍ପ ଆଦି ଅବଲୁପ୍ତ ହେବା ପରେ ଗ୍ରାମବାସୀମାନେ ସେହି ପଶୁତ୍ୱର ପର୍ଯ୍ୟାୟରୁ ଖସିପଡୁଥିଲେ । ମଧୁସୂଦନଙ୍କ ସେହି ମହାନ ବକ୍ତବ୍ୟକୁ ମହାତ୍ମାଗାନ୍ଧୀ ଅକୁଣ୍ଠ ଚିତ୍ତରେ ସମର୍ଥନ କରିଥିଲେ ।

ମଧୁସୂଦନ ୧୮୮୧ରେ କଟକ ଫେରିଲା ପରେ ଓଡ଼ିଆ ଜାତିର ଯେଉଁ ପୁନର୍ଜାଗରଣ ପର୍ବ ଆରମ୍ଭ କରିଥିଲେ, ସେଥିରେ ଉଚ୍ଚାଙ୍ଗ ଭାଷା ଓ ସାହିତ୍ୟ ବିକାଶର ଦାୟିତ୍ୱ ଉତ୍କଳ ସାହିତ୍ୟ ସମାଜ ପରି ଅନୁଷ୍ଠାନ ସବୁ (ଯହିଁରେ ରାଧାନାଥ,ଫକୀରମୋହନ, ଗଂଗାଧର, ମୃତ୍ୟୁଞ୍ଜୟ, ନନ୍ଦକିଶୋର, ଗୋପୀନାଥ ନନ୍ଦ ପ୍ରମୁଖ ଅଧିଷ୍ଠିତ ଥିଲେ) ଉପରେ ନ୍ୟସ୍ତ କରିଥିଲେ । ଅବଶ୍ୟ ବହୁ ଦ୍ୱନ୍ଦ୍ୱମୂଳକ ସମସ୍ୟାର ସମାଧାନସୂତ୍ର ନିଜେ ପ୍ରଦାନ କରୁଥିଲେ । ମାତ୍ର ମଧୁସୂଦନ, ଗୌରୀଶଙ୍କର ରାୟ ଆଦି ସହଯୋଗୀଙ୍କ ସହାୟତାରେ ଓଡ଼ିଆ ଜାତିର ସାଂସ୍କୃତିକ ପୁନର୍ବିନ୍ୟାସ କ୍ଷେତ୍ରରେ ଏକାନ୍ତ ଭାବେ ମନୋନିବେଶ କରିଥିଲେ । ଏହାର ଦିଗନ୍ତ ଏଭଳି ସୁଦୂରପ୍ରସାରୀ ଥିଲା ଯେ, ତାହା ଓଡ଼ିଆ ସଂସ୍କୃତିର ପ୍ରତିଟି ଦିଗକୁ ଆବୃତ କରିଥିଲା । ଏହାର କିଛି ସୂଚନା ଦିଆଗଲା । ଯେପରିକି ସାପ୍ତାହିକ ନୃତ୍ୟସଂଗୀତ ସମାରୋହ (୧୮୮୨ଠାରୁ), ସ୍ଥାୟୀ ରଂଗମଂଚର ସ୍ଥାପନ (୧୮୮୭), ଶ୍ରୀମନ୍ଦିର ତଥା ଗଜପତି ପରଂପରାର ସଂରକ୍ଷଣ (୧୮୮୭), ଚଉପାଢ଼ି ପୁନଃସଂସ୍ଥାପନ (୧୯୦୦), ଓଡ଼ିଶା ଶିଳ୍ପାଗାର ସ୍ଥାପନ (୧୮୯୭), ବିଦେଶୀ ବର୍ଜନ ଓ ଓଡ଼ିଶୀ ଏବଂ ସ୍ୱଦେଶୀ ବସ୍ତୁର ବ୍ୟବହାର (୧୯୦୩), ତନ୍ତଶିଳ୍ପର ପୁନର୍ବିନ୍ୟାସ (୧୯୦୩), ଆର୍ଟ ସ୍କୁଲ୍‌ର ସ୍ଥାପନା ଓ ବସ୍ତ୍ରରେ ନୂତନ ନକ୍‌ସାର ପ୍ରୟୋଗ (୧୯୦୧) କୋଣାର୍କ ଓ ଭୁବନେଶ୍ୱର ମନ୍ଦିରର ସଂରକ୍ଷଣ, ଦଳିତ ଜାତିର ଉତ୍‌ଥାନ ଓ ଅର୍ଥନୈତିକ କ୍ଷେତ୍ରରେ ସଂସ୍ଥାପନ (୧୮୯୪ଠାରୁ) ଉତ୍କଳ ସମ୍ମିଳନୀ (୧୯୦୩), ଓଡ଼ିଶା ସ୍ପୋର୍ଟସ ଆସୋସିଏସନ୍ (୧୯୦୪), ନାରୀ ଶିକ୍ଷାର ଉନ୍ନତି (୧୯୦୮), ପ୍ରଜାପରିଷଦ ଗଠନ (୧୯୦୯), ଉତ୍କଳ ଟ୍ୟାନେରି (୧୯୦୫) ଆଦି ବହୁ କ୍ଷେତ୍ରକୁ ମଧୁବାବୁଙ୍କର ଉଦ୍ୟମ ପରିବ୍ୟାପ୍ତ ହୋଇଥିଲା । କୁହାଯାଏ ଯେ କେନ୍ଦୁଝର ଆଦି ବହୁ ଗଡ଼ଜାତ ଗସ୍ତ କଲାବେଳେ ମଧୁବାବୁ ଘୋଡ଼ାରେ ଚଢ଼ି କାରିଗର ପଲ୍ଲୀମାନଙ୍କରେ ତାଙ୍କର ସମୟ ବିତାଉ ଥିଲେ ଓ ସେହି କାରିଗରମାନଙ୍କୁ ମାର୍ଗଦର୍ଶନ ଦେଉଥିଲେ ।

ସାରା ବିଶ୍ୱରେ କ୍ଷୁଦ୍ର ରାଷ୍ଟ୍ର ଓ ଭାଷାମାନଙ୍କୁ ସୁରକ୍ଷା ପ୍ରଦାନପାଇଁ ପ୍ରତିଶ୍ରୁତିବଦ୍ଧ ବୋଲି ବ୍ରିଟିଶ ପ୍ରଶାସନ ଡିଣ୍ଡିମ ପିଟୁଥିଲାବେଳେ, ବିଭିନ୍ନ ପ୍ରାନ୍ତରେ ଓଡ଼ିଆମାନଙ୍କୁ ବିଭାଜିତ କରି ରଖିବା ବ୍ରିଟିଶ ଉପନିବେଶବାଦର ଏକ ଚକ୍ରାନ୍ତ ବୋଲି ୧୯୧୮ ସାଲରେ ମୁଦ୍ରିତ ଓଡ଼ିଆ ପତ୍ରିକାରେ ମଧୁବାବୁ ପ୍ରକାଶ କରିଥିଲେ । ବିସ୍ତୀର୍ଣ୍ଣ ଓଡ଼ିଆ ଭାଷୀ ଅଞ୍ଚଳ ସମୂହକୁ ଗଡ଼ଜାତର ପରିସର ମଧ୍ୟରେ ଆବଦ୍ଧ ରଖି, ଓଡ଼ିଆତ୍ମକ ଭୂଖଣ୍ଡରୁ ତାହାକୁ ବିଛିନ୍ନ କରି ରଖିବା ବ୍ରିଟିଶ ସାମ୍ରାଜ୍ୟବାଦର ନିଷ୍ଠୁର ଚକ୍ରାନ୍ତ ବୋଲି ଆଖ୍ୟାୟିତ କରି, ୧୯୧୫ ସାଲ ଜାନୁଆରି ପହିଲାରେ ଏହି ଗଡ଼ଜାତ ପ୍ରଥାକୁ ଉଚ୍ଛେଦ କରି ସେମାନଙ୍କୁ ନିକଟବର୍ତ୍ତୀ ଜିଲ୍ଲାମାନଙ୍କରେ ସଂଲଗ୍ନ କରିଦେବାପାଇଁ ମଧୁବାବୁ ଆହ୍ୱାନ ଦେଇଥିଲେ । ଉଦ୍ଦେଶ୍ୟହୀନ ଭାବେ ତିଷ୍ଠି ରହିଥିବା ଏହି ଗଡ଼ଜାତମାନଙ୍କୁ, ଉତ୍କଳ ସମ୍ମିଳନୀ ପରିସର ମଧ୍ୟକୁ ଆଣି ମଧୁବାବୁ ସେମାନଙ୍କପାଇଁ କିଛି

ଲକ୍ଷ୍ୟ ଓ ଆଦର୍ଶ ଉପସ୍ଥାପନ କରିଥିଲେ । ଶ୍ରୀ ଜଗନ୍ନାଥ ଓ ଗଜପତି ପରଂପରା ମାଧ୍ୟମରେ ଗଡ଼ଜାତର ରାଜାମାନଙ୍କୁ ଓଡ଼ିଆ ଆନ୍ଦୋଳନର କେନ୍ଦ୍ରବିନ୍ଦୁକୁ ଆକର୍ଷିତ କରିଥିଲେ ଓ ମୟୂରଭଂଜରେ ଉତ୍ତରଦାୟୀ କାଉନ୍‌ସିଲ୍ ବ୍ୟବସ୍ଥା ମାଧ୍ୟମରେ ପ୍ରଶାସନକୁ ସଂଚାଳିତ କରିଥିଲେ ।

ଓଡ଼ିଆ ଜାତିର ଅନ୍ୟତମ ପରିଚୟ ହେଉଛି ଜଗନ୍ନାଥ ସଂସ୍କୃତି, ଯାହା ସହିତ ପ୍ରତ୍ୟେକ ଓଡ଼ିଆ ଅଂଗାଗୀଭାବେ ଜଡ଼ିତ । ଏଣୁ ବ୍ରିଟିଶ୍ ଉପନିବେଶବାଦର ଶ୍ରୀମନ୍ଦିର ଅଧିକାର କରିବା ଚକ୍ରାନ୍ତକୁ ମଧୁସୂଦନ ମାଧ୍ୟମରେ କେବଳ ପ୍ରତିହତ କରିପାରି ନଥିଲେ, ତାହାଙ୍କର ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଶ୍ରୀ ମନ୍ଦିର ସୁପରିଚାଳନା ଓ ଗଜପତି ପରଂପରାକୁ ଅକ୍ଷୁଣ୍ଣ ରଖିବାପାଇଁ ପ୍ରତିଶ୍ରୁତିବଦ୍ଧ ଥିଲେ । ଏହି କ୍ଷେତ୍ରରେ ସୁଦୀର୍ଘ ସତୁରୀ ବର୍ଷ ଧରି ଚାଲିଥିବା ଅବିରାମ ସଂଗ୍ରାମରେ ନିର୍ଣ୍ଣାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ସୋନପୁର ରାଜବଂଶ ପ୍ରସୂତ ପୁରୀ ଗଜପତି ବଂଶର ମର୍ଯ୍ୟାଦା ତିଳକ ସ୍ୱରୂପା ଶ୍ରୀମତୀ ସୂର୍ଯ୍ୟମଣି ପାଟମହାଦେଈଙ୍କର ଗୌରବୋଜ୍ଜ୍ୱଳ ଭୂମିକା ସ୍ମରଣୀୟ ।

ଓଡ଼ିଆ ଭାଷା ତଥା ଜଗନ୍ନାଥ ସଂସ୍କୃତି ଉପରେ ବ୍ରିଟିଶ ଉପନିବେଶବାଦଦ୍ୱାରା କ୍ରୂରତମ ପ୍ରହାର କରାଯାଇଥିଲା, ୧୮୯୫ରେ ମଧ୍ୟପ୍ରଦେଶ ସରକାରଙ୍କର ଓଡ଼ିଆ ଭାଷା ଉଚ୍ଛେଦ ସଂପର୍କୀୟ ନିର୍ଦ୍ଦେଶନାମାରେ । ଏହାର ପ୍ରଥମ ଅନୁଚ୍ଛେଦରେ ଉଲ୍ଲିଖିତ ରହିଥିଲା ଯେ ସମ୍ବଲପୁରର ବିଭିନ୍ନ ଜାତି ଓ ଗୋଷ୍ଠୀ ମଧ୍ୟରେ ମହାପ୍ରସାଦ ବସିବା ପରଂପରା ଯୋଗେ ମୈତ୍ରୀପୂର୍ଣ୍ଣ ବନ୍ଧୁତ୍ୱ ଗଢ଼ିଉଠିଥିଲେ ମଧ୍ୟ ଏହା ଅପରାଧର ସୂତ୍ର ସଂଧାନ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁଛି । ଓଡ଼ିଆ ଭାଷା ସହିତ ଏହି ମହାପ୍ରସାଦ ବସିବା ପରଂପରା ଅଚ୍ଛେଦ୍ୟ ଭାବେ ଜଡ଼ିତ ଥିବାରୁ, ଓଡ଼ିଆ ଭାଷାର ଉଚ୍ଛେଦ କରାଯିବା ଅବଶ୍ୟମ୍ଭାବୀ ହୋଇପଡ଼ିଛି । ଏହି ନିର୍ଦ୍ଦେଶନାମା ବିରୋଧରେ ଯେଉଁ ସ୍ୱତଃସ୍ଫୂର୍ତ୍ତ ଜନ ଆନ୍ଦୋଳନ ସଂଘଟିତ ହୋଇଥିଲା, ତାର ତୁଳନା ନାହିଁ ।

ଏହି ସଂଗ୍ରାମ ପ୍ରତି ଅକୁଣ୍ଠ ସମର୍ଥନ ପ୍ରଦାନକରି ମଧୁସୂଦନ ଉତ୍କଳ ସଭା ପକ୍ଷରୁ ଯେଉଁ ପ୍ରତିବାଦ ପତ୍ର ବଡ଼ଲାଟଙ୍କୁ ପ୍ରେରଣ କରିଥିଲେ ସେଥିରେ ଏହିଭଳି ଉଲ୍ଲେଖ ରହିଥିଲା- ମାତୃଭାଷାର କଣ୍ଠରୋଧ କରିବାଭଳି ବୀଭତ୍ସତମ ପ୍ରକ୍ରିୟା ବିଶ୍ୱର ନିଷ୍ଠୁରତମ ପ୍ରଶାସନରେ ମଧ୍ୟ ଦୃଷ୍ଟି ଗୋଚର ହୁଏ ନାହିଁ ।

ମଧୁସୂଦନ ତାଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଓଡ଼ିଆ ଭାଷା ସଂରକ୍ଷଣ ଲାଗି ନିରବଚ୍ଛିନ୍ନ ପ୍ରଚେଷ୍ଟା କରିଆସିଛନ୍ତି । ପ୍ରଖ୍ୟାତ ସ୍ଥପତି ବିପ୍ରଚରଣ ମହାନ୍ତିଙ୍କ ଭାଷାରେ- ମଧୁସୂଦନ ତାଙ୍କ ଜୀବନର ଅନ୍ତିମ ବର୍ଷ (୧୯୩୨-୩୩)ରେ ଉତ୍କଳୀୟ ସ୍ଥାପତ୍ୟ ଏବଂ ବିଦେଶୀୟ ମୂର୍ତ୍ତିକଳା ମଧ୍ୟରେ ସମନ୍ୱୟ ଆଣିବାପାଇଁ ମଧୁସ୍ମୃତିଠାରେ କଳା ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ସେତେବେଳେ ସେହି ଅତିକ୍ରାନ୍ତ ବୟସରେ ମଧୁବାବୁଙ୍କର ଧମନୀରେ କେବଳ ନୁହେଁ ତନ୍ତ୍ର ତନ୍ତ୍ରରେ ମଧ୍ୟ କଳା ସଂସ୍କୃତିର ଅବିରାମ ପ୍ରବାହ ଛୁଟିଚାଲିଥିଲା ।

ପ୍ରକୃତରେ ଏହି ମଧୁସ୍ମୃତି, ଯାହା ଓଡ଼ିଆ ଜାତିର ମହାତୀର୍ଥ, ଯେଉଁଠାରେ କଳାସଂସ୍କୃତି ସଂରକ୍ଷଣ ଲାଗି ସଂଗ୍ରାମର ମହାନ ଅଧ୍ୟାୟମାନ ରୂପ ନେଇଥିଲା, ତାହାକୁ ସ୍ମାରକୀ ରୂପେ ପରିଣତ କରିବାର ସରକାରୀ ଘୋଷିତ ପ୍ରସ୍ତାବନା ଶୀଘ୍ର କାର୍ଯ୍ୟକାରୀ ହେବାର ଆବଶ୍ୟକତା ରହିଛି ।

ମଧୁସୂଦନ ଦାସ ଆଉ ତାଙ୍କର ସହଯୋଗୀମାନେ ବ୍ରିଟିଶ ଉପନିବେଶବାଦର ଓଡ଼ିଆ ଭାଷା ଓ ସଂସ୍କୃତି ଉପରେ ଆରୋପିତ ହୋଇଥିବା ଚରମ ନିଷ୍ପେଷଣ ବିରୋଧରେ ଓଡ଼ିଆ ଜାତି ମଧ୍ୟରେ ସାଂସ୍କୃତିକ ଅଭ୍ୟୁଦୟ ପୁନର୍ବିନ୍ୟାସ ଓ ଜନଜାଗରଣ ମାଧ୍ୟମରେ ଯେଉଁ ମୁକ୍ତି ସଂଗ୍ରାମର ଯାତ୍ରା ଅବ୍ୟାହତ ରଖିଥିଲେ, ତାହା ଅବଲୁପ୍ତ ପ୍ରାୟ ଓଡ଼ିଆ ଜାତିକୁ ସ୍ୱାଭିମାନ କେବଳ ପ୍ରଦାନ କରିନଥିଲା, ନିଜର ଭାଗ୍ୟ ନିର୍ଦ୍ଧାରଣପାଇଁ ନିଜସ୍ୱ ରାଜ୍ୟ ଓ ପ୍ରଶାସନ ମଧ୍ୟ ପ୍ରଦାନ କରିଥିଲା ।

ଏହି ଦୃଷ୍ଟିରୁ ମଧୁସୂଦନ ଦାସ ହେଉଛନ୍ତି ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ମୁକ୍ତି ସଂଗ୍ରାମୀ ।



# ଦୁର୍ଗତଙ୍କର ସେବାରେ ମଧୁସୂଦନ

ସେ ଯୁଗରେ ଭାରତୀୟ ରାଜନୈତିକ ବାତାବରଣ ସଂପର୍କରେ ଏକ ମହତ୍ତ୍ୱପୂର୍ଣ୍ଣ ତଥା ପ୍ରାମାଣିକ ଗ୍ରନ୍ଥ ରଚିତ ହୋଇଥିଲା ୧୯୦୮ ସାଲରେ ଇଂଲଣ୍ଡର ପ୍ରଖ୍ୟାତ ସମ୍ବାଦପତ୍ର ଗ୍ଲାସ୍‌ଗୋ ହେରାଲଡ୍ ପତ୍ରିକାର ସାମ୍ବାଦିକ ନେଭିସନଙ୍କଦ୍ୱାରା । ଗ୍ରନ୍ଥର ନାମ ଥିଲା **ନିଉ ସ୍ପିରିଟ୍ ଇନ୍ ଇଣ୍ଡିଆ** ।

ଗ୍ରନ୍ଥଟିର ଆରମ୍ଭ ହୋଇଛି ୧୯୦୭ ସାଲର ସେପ୍ଟେମ୍ବର ମାସରେ, ଏହାର ପ୍ରଥମ ଭାଗଟି ରଚିତ ହୋଇଥିଲା, ଜାତୀୟ ଗୌରବ ମଧୁସୂଦନଙ୍କ ଓଡ଼ିଶାର ବନ୍ୟାବିପନ୍ନ ତଥା ମରୁଡ଼ିପ୍ରପୀଡ଼ିତ ବୁଭୁକ୍ଷୁ ଜନତାର ସେବାରେ ସମର୍ପିତ ତାଙ୍କ ଜୀବନର ସେହି ତାତ୍ପର୍ଯ୍ୟପୂର୍ଣ୍ଣ ଅଧ୍ୟାୟ ବିଷୟରେ; ଆଉ ଅନ୍ତିମ ପର୍ଯ୍ୟାୟଟିରେ ବର୍ଣ୍ଣିତ ହୋଇଥିଲା ୧୯୦୭ ସାଲର ଡିସେମ୍ବର ମାସରେ ସୁରାଟଠାରେ ଅନୁଷ୍ଠିତ ସେହି ବୈପ୍ଳବିକ ଅଗ୍ନିଗର୍ଭା କଂଗ୍ରେସର ଅଧିବେଶନ ସଂପର୍କରେ, ଯେଉଁଠାରେ ଶ୍ରୀ ଅରବିନ୍ଦଙ୍କ ଆହ୍ୱାନରେ ବିପିନ ବିହାରୀ ପାଲ ପ୍ରମୁଖ ନରମପନ୍ଥୀଙ୍କ ହସ୍ତରୁ କଂଗ୍ରେସର ଅଧିକାରକୁ ଛିନ୍ନ କରି ଅଣାଯାଇଥିଲା । ତେଣୁ ନେଭିନ୍‌ସନ୍‌ଙ୍କର ରଚିତ ସେହି ପୁସ୍ତକଟି ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟଭିତ୍ତିକ ଗ୍ରନ୍ଥ ରୂପେ ଖ୍ୟାତି ଅର୍ଜନ କରିପାରିଛି ।

୧୯୦୭ସାଲର ଜୁନ୍‌ମାସରେ ମଧୁସୂଦନ ଦ୍ୱିତୀୟବାର ଇଂଲଣ୍ଡ ଯାତ୍ରା କରିଥିଲେ ଓଡ଼ିଶାର ଭାଗ୍ୟ ନିର୍ଦ୍ଧାରଣ କରିବା ସହିତ ୟୁରୋପୀୟ ରାଜନୈତିକ ପରିବେଶକୁ ଅନୁଧ୍ୟାନ କରିବାପାଇଁ । ମାତ୍ର ମଧୁସୂଦନଙ୍କର ଇଂଲଣ୍ଡ ଯାତ୍ରାର ଅବ୍ୟବହିତ ପରେ ସେହି ବର୍ଷା ଋତୁରେ ମହାନଦୀ, ବ୍ରାହ୍ମଣୀ ଓ ବୈତରଣୀରେ ଅଭୂତପୂର୍ବ ବନ୍ୟା ଆସି ତାର କରାଳ ଗ୍ରାସରେ ଓଡ଼ିଶାର ଉପକୂଳକୁ ବିଧ୍ୱସ୍ତ କଲା ପରେ ଦୀର୍ଘକାଳ ଧରି ଲାଗିରହିଲା ଧ୍ୱଂସକାରୀ ଅନାବୃଷ୍ଟି, ଯାହା ୧୮୬୬ର ନଅଙ୍କ ଦୁର୍ଭିକ୍ଷର ପୁନରାବୃତ୍ତିର ସୂଚନା ପ୍ରକଟ କଲା । ଅନାହାର ମୃତ୍ୟୁସଂଖ୍ୟା ବଢ଼ିଚାଲିଲା । ଖବର ପାଇବା ପରେ ଇଂଲଣ୍ଡରେ ପରବର୍ତ୍ତୀ କାର୍ଯ୍ୟକ୍ରମକୁ ସ୍ଥଗିତ ରଖି ଗ୍ଲାସ୍‌ଗୋ ହେରାଲଡ୍ ପତ୍ରିକାର ପ୍ରତିନିଧି ନାଭିନସନ୍‌ଙ୍କ ସହ ମଧୁସୂଦନ ଓଡ଼ିଶା ଫେରିଆସିଲେ ।

ଦୀର୍ଘଦିନ ଧରି ମଧୁସୂଦନ ଓ ନାଭିନ୍‌ସନ୍ ଏକ ହାତୀ ପିଠିରେ ବସି ପରିବ୍ୟାପ୍ତ, ବିସ୍ତୀର୍ଣ୍ଣ ଓ ବିପର୍ଯ୍ୟସ୍ତ ବନ୍ୟାଞ୍ଚଳ ଭ୍ରମଣ କରି ବିପନ୍ନଙ୍କର ସେବା ସଙ୍ଗେ ସତ୍ୟାନାଶୀ ମରୁଡ଼ିର ଆକଳନ ସହିତ ମୃତ୍ୟୁସଂଖ୍ୟା ନିର୍ଦ୍ଧାରଣ କରିଥିଲେ । ନାଭିନ୍‌ସନ୍‌ଙ୍କ ବିବରଣୀରେ ମଧୁସୂଦନ ଥିଲେ ଏକ ମଧ୍ୟଯୁଗୀୟ ସନ୍ଥ ଯେ କି ତାଙ୍କର ଅଙ୍ଗୁଳିର ସ୍ପର୍ଶ ଓ ବାର୍ତ୍ତାଳାପରେ ବୁଭୁକ୍ଷୁ ଓ ପ୍ରପୀଡ଼ିତ ଜନତାଙ୍କ ମଧ୍ୟରେ ଏକ ଆଶ୍ୱାସନାର ପରିବେଶ ସୃଷ୍ଟି କରିପାରିଥିଲେ । ଅନେକ ସମୟ ସେମାନେ ବନ୍ୟାଞ୍ଚଳରେ ଆଶ୍ରୟହୀନ ହୋଇ ହାତୀ ପିଠିରେ ଉଜାଗରରେ ରାତି ବିତାଇ ଦେଉଥିଲେ । ମଧୁସୂଦନ ରେଭିନ୍ୟୁ ଅଫିସରଙ୍କ ମୁକାବିଲା କରି ମୃତ୍ୟୁହାର ସଂପର୍କରେ ସଠିକ୍ ବିବରଣୀ ପ୍ରଦାନପାଇଁ ପରିସ୍ଥିତି ସୃଷ୍ଟି କରିଥିଲେ ।

ବନ୍ୟାଞ୍ଚଳରୁ ଫେରି ଉଭୟ ମଧୁସୂଦନ ଓ ନାଭିନ୍‌ସନ ଭାରତ ତଥା ବିଦେଶର ବିଭିନ୍ନ ପତ୍ରିକାରେ ଘଟଣାବଳୀର ଭୟାବହ ଓ ମର୍ମନ୍ତୁଦ ଚିତ୍ର ଉପସ୍ଥାପନ କଲେ, ଯାହା ଭାରତ ସରକାରଙ୍କ ଦୃଷ୍ଟିକୁ ଆଲୋଡ଼ିତ କରିଥିଲା । ଫଳରେ ବଂଗଳାର ଗଭର୍ଣ୍ଣର ଏଣ୍ଡୁ ଫେଜର ଓଡ଼ିଶାର ବନ୍ୟାଞ୍ଚଳ ଗସ୍ତରେ ଆସିଥିଲେ ଓ ମଧୁସୂଦନ କିପରି ବିପନ୍ନ ଲୋକଙ୍କର ସମାବେଶରେ ଧର୍ମଶାଳା ଓ ଜେନାପୁରରେ ଗଭର୍ଣ୍ଣରଙ୍କୁ ଭେଟି ପରିସ୍ଥିତିର ମାର୍ମିକ ଚିତ୍ର ପ୍ରଦାନ କରିଥିଲେ, ତାହାର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଉତ୍କଳଦୀପିକାର ପୃଷ୍ଠାମାନଙ୍କରେ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ଭାବେ ବର୍ଣ୍ଣିତ ହୋଇଛି । ଏହାର ଅବ୍ୟବହିତ ପରେ ଗଭର୍ଣ୍ଣରଙ୍କ ଅଧ୍ୟକ୍ଷତାରେ କଟକଠାରେ ଏକ ଅଧିବେଶନରେ ମଧୁସୂଦନଙ୍କର ସାକ୍ଷ୍ୟ ପ୍ରଦାନ ପରେ ସରକାରୀ ସାହାଯ୍ୟ ଓ ପୁନର୍ବାସର ବିସ୍ତୃତ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥିଲା । ଏହା ଛଡ଼ା ମଧୁସୂଦନଙ୍କ ଅଧ୍ୟକ୍ଷତାରେ ବିପନ୍ନଙ୍କପାଇଁ ସାହାଯ୍ୟ କମିଟି ଗଠିତ ହୋଇଥିଲା ଓ ଜିଲ୍ଲାର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଘେନି ବେସରକାରୀ ସ୍ତରରେ ବ୍ୟାପକ ଭାବରେ ସାହାଯ୍ୟ ପ୍ରଦାନ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇ କାର୍ଯ୍ୟାନୁଷ୍ଠାନ ମାଧ୍ୟମରେ ତାହା ରୂପାୟିତ ହୋଇଥିଲା ।

୧୯୦୭ ସାଲ ଡିସେମ୍ବର ମାସ ୧୭ ତାରିଖରେ ପ୍ରକାଶିତ ବନ୍ଦେ ମାତରମ୍ ପତ୍ରିକାରେ ଶ୍ରୀ ଅରବିନ୍ଦ ମଧୁସୂଦନଙ୍କୁ ଓଡ଼ିଶା ତଥା ଭାରତର ଜାଗରଣ କ୍ଷେତ୍ରରେ ଜଣେ ଶକ୍ତିଧର ପ୍ରତିଭାଶାଳୀ ନେତା ରୂପେ ଚିହ୍ନିତ କରି ଉଚ୍ଛ୍ୱସିତ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ପଣ୍ଡିତ ନୀଳକଣ୍ଠଙ୍କର ଆତ୍ମଚରିତରୁ ଜଣାଯାଏ ଯେ, ଓଡ଼ିଶାର ପ୍ରଖ୍ୟାତ ଜନସେବୀ ଉତ୍କଳମଣି ଗୋପବଂଧୁ ବନ୍ୟା ବିପତ୍ତି ବେଳେ ପ୍ରଥମେ ୧୯୦୭ ସାଲରେ ତାଙ୍କର ଉତ୍ସର୍ଗୀକୃତ ଜୀବନର ଆରମ୍ଭ କରିଥିଲେ ।

ସୂର୍ଯ୍ୟନାରାୟଣ ଦାସଙ୍କ ସଂକଳିତ ତଥ୍ୟଭିତ୍ତିକ ଜୀବନୀ ଗ୍ରନ୍ଥ ଦେଶପ୍ରାଣ ମଧୁସୂଦନ ପୁସ୍ତକରୁ ଜଣାଯାଏ, ଏହି କ୍ଷେତ୍ରରେ ମଧୁସୂଦନ ୧୮୮୭ସାଲରୁ ଅବତୀର୍ଣ୍ଣ ହୋଇ ସାରାଜୀବନ ନିରବଚ୍ଛିନ୍ନ ଭାବରେ ବିପନ୍ନଙ୍କ ସେବାରେ ତାଙ୍କ ଜୀବନକୁ ସମର୍ପିତ କରିଥିଲେ । ସେହି ପୁସ୍ତକର ଉଦ୍ଧୃତାଂଶ ଏଠାରେ ପ୍ରଦାନ କରାଗଲା । (ପୃଷ୍ଠା/୮୨)

୧୮୮୭ ସାଲରେ ମଧୁବାବୁ କଟକ ଜିଲ୍ଲାର ପ୍ରଥମ ବେସରକାରୀ ଭାଇସ୍ ଚେୟାର୍‌ମ୍ୟାନ୍ ପଦବୀରେ ଅଧିଷ୍ଠିତ ହୋଇଥିଲେ ।

"ତାଙ୍କ ଅମଳରେ ପୁରୀ ରଥଯାତ୍ରା ସମୟରେ ହଇଜାର ପ୍ରତିକାର ଓ ନିବାରଣ ନିମନ୍ତେ ଜଗନ୍ନାଥ ରୋଡ୍‌ର ସ୍ଥାନେସ୍ଥାନେ ଚିକିତ୍ସା ଓ ପ୍ରତିଷେଧକ କେନ୍ଦ୍ରମାନ ସ୍ଥାପିତ ହୋଇଥିଲା । ବନ୍ୟା ସାହାଯ୍ୟ କ୍ଷେତ୍ରରେ ସେ ବିଶେଷ ରୂପେ କାର୍ଯ୍ୟ କରିଥିଲେ । ସମଗ୍ର ବନ୍ୟାଞ୍ଚଳ ବୁଲିବୁଲି ଲୋକଙ୍କର ସେବା କରିଥିଲେ । ଅତି ରୁଗ୍ଣ ଶରୀରରେ ସେ ପାଲିଙ୍କି ଓ ବଳଦ ଗାଡ଼ିରେ ଯାଇଥିଲେ; କେତେକ ସ୍ଥାନକୁ ଚାଲିଚାଲି ମଧ୍ୟ ଯାଇଥିଲେ ।" ଉତ୍କଳଦୀପିକାର ପ୍ରକାଶିତ ବିବରଣୀରେ ମଧୁବାବୁ ବହୁ ବର୍ଷ ଧରି ବନ୍ୟା, ବାତ୍ୟା ତଥା ମରୁଡ଼ି ପ୍ରପୀଡ଼ିତ ଲୋକଙ୍କର ସେବାରେ ସମର୍ପିତ ରହି ଅତ୍ୟନ୍ତ ସମ୍ବେଦନଶୀଳ ତଥା ସହାନୁଭୂତିପୂର୍ଣ୍ଣ ହୃଦୟରେ ଜନତାଙ୍କୁ ସାହାଯ୍ୟ ପ୍ରଦାନ କରିଥିବା ବିଷୟ ଉଲ୍ଲେଖ ରହିଛି । ବହୁ ଜନସେବୀଙ୍କର ଜୀବନ ଚରିତ ତଥା ସ୍ମୃତିରେ ଏହି ସଂପର୍କୀୟ ଘଟଣାବଳୀ ସ୍ଥାନପାଇଛି । ୧୯୧୯ ସାଲର ଅଠାନ୍ତର ଘାଇ ଭାଂଗିବାଯୋଗୁଁ ପୁରୀ ଜିଲ୍ଲାରେ ବନ୍ୟାଜନିତ ଯେଉଁ ଭୀଷଣ ପରିସ୍ଥିତି ଉପୁଜିଥିଲା ଓ ତାହା ପଛେପଛେ ସେ ଅଂଚଳରେ ଅନାବୃଷ୍ଟି ଓ ଅନ୍ୟାନ୍ୟ ଘଟଣା ଫଳରେ ଯେଉଁ ଅନାଟନ ଦେଖା ଦେଇଥିଲା, ମଧୁସୂଦନ ଏହି ଅଂଚଳ ବୁଲି ସେସବୁର ପ୍ରତିକାର କରିଥିଲେ । ଏହି ବର୍ଷ ହିନ୍ଦ୍ ସମାଜ ସେବକ ପକ୍ଷରୁ ଅମୃତଲାଲ୍ ଭିଠଲଭାଇ ଠକ୍‌କର ମଧ୍ୟ ଓଡ଼ିଶା ଆସି ସେବାକାର୍ଯ୍ୟ ଆରମ୍ଭ କରିଥିଲେ । ସେହିପରି ୧୯୨୦ ସାଲରେ ବ୍ରାହ୍ମଣୀ ବନ୍ୟାବେଳେ ମଧୁସୂଦନ ଜେନାପୁର ଅଂଚଳକୁ ଯାଇ ବନ୍ୟାକ୍ଲିଷ୍ଟ ଲୋକଙ୍କର ସେବା ଓ ସାହାଯ୍ୟରେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ବନ୍ୟା, ବାତ୍ୟା ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କର ସେବାରୁ ହିଁ ଓଡ଼ିଶାର ବହୁ ନେତୃବର୍ଗଙ୍କର ରାଜନୈତିକ ଜୀବନର ଖଡ଼ିପାଠ ଆରମ୍ଭ ହୋଇଥିଲା । ଏବେ ତାହା ଇତିହାସର ଗର୍ଭରେ ବିସ୍ମୃତ ।

ମଧୁସୂଦନଙ୍କର ଅଙ୍ଗୁଳିରେ ଯେପରି ଥିଲା ଯାଦୁକରୀ ସ୍ପର୍ଶର ସମ୍ମୋହନ ଓ ସାନ୍ତ୍ୱନାଦାୟକ ପ୍ରଲେପର ଆଶ୍ୱାସ । ଏହି କଥା ଭାରତର ପୂର୍ବତନ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ତାଙ୍କର ପ୍ରାରମ୍ଭିକ ରାଜନୈତିକ ଜୀବନର ସ୍ମୃତିଚାରଣରେ ଉଲ୍ଲେଖ କରିଛନ୍ତି ।

"ମଧୁସୂଦନ ଦାସ ମନ୍ତ୍ରୀ ଥିବା ସମୟରେ ସରକାରୀ ଗସ୍ତରେ ଆସିଥିବା ବେଳେ ମୁଁ ଅସୁସ୍ଥ ଥିବା ଜାଣି ମୋ ପାଖକୁ ଆସିଥିଲେ । ସେ ମୋ ଶଯ୍ୟାପାଖକୁ ଆସି ତାଙ୍କ ହସ୍ତର ଅଙ୍ଗୁଳ ସ୍ପର୍ଶରେ ଏଭଳି ଭାବରେ ଆଉଁସି ଦେଇଥିଲେ ଯେ, ମୁଁ ପରମ ଆଶ୍ୱସ୍ତି ଲାଭ କରିଥିଲି ।"

ତାଙ୍କର ଉଦ୍ୟମ ଓ ପ୍ରଚେଷ୍ଟାରେ ପ୍ରଥମ କୁଷ୍ଠାଶ୍ରମ କଟକରେ ପ୍ରତିଷ୍ଠିତ ହୋଇଥିଲା, ଯାହା ମହାତ୍ମାଗାନ୍ଧୀ କଟକ ଅବସ୍ଥାନ କାଳରେ ପରିଦର୍ଶନ କରିଥିଲେ । କଟକରେ ସ୍ତ୍ରୀ ଲୋକଙ୍କ ପାଇଁ ଲେଡ଼ି ଟମ୍‌ସନ୍ ଡିସ୍‌ପେନ୍‌ସରୀ, ମଧୁସୂଦନଙ୍କ ତତ୍ତ୍ୱାବଧାନ ଏବଂ ସହଯୋଗରେ ପ୍ରତିଷ୍ଠିତ ହୋଇଥିଲା । ଏହା ନାରୀମାନଙ୍କ ପାଇଁ ସୁଲଭ ଚିକିତ୍ସା ପ୍ରଦାନ କ୍ଷେତ୍ରରେ ଏକ ଉଲ୍ଲେଖନୀୟ ପଦକ୍ଷେପ ଥିଲା ।

ମଧୁସୂଦନଙ୍କ ସହିତ ତାଙ୍କର ନିଜସ୍ୱ ମହତ୍ତର ଦାନର କୌଣସି ତୁଳନା ନଥାଏ । ତାଙ୍କର ସଂପୂର୍ଣ୍ଣ ଦାନ ଗୋପନୀୟ ବିଧିରେ ହିଁ ସଂଚାଳିତ ହୋଇଥାଏ । ଏହା ଯେପରି ଉତ୍ସର୍ଗୀକୃତ ଥିଲା, ସେହିପରି ନିଜସ୍ୱ ଅହଂକାର ବିବର୍ଜିତ ମଧ୍ୟ ଥିଲା । ତାହା ନିମ୍ନରେ ପ୍ରଦତ୍ତ ଏହି ଆପ୍ତ ବାକ୍ୟରୁ ହିଁ ସତତ ପ୍ରମାଣିତ ।

ଡାହାଣ ହାତରେ ଦେଇଥିବା ଦାନ ବାମ ହାତକୁ ଅଗୋଚର ଥିଲା । ଆଉ ବାମ ହାତରେ ପ୍ରଦତ୍ତ ଦାନ ଡାହାଣ ହାତପାଇଁ ମଧ୍ୟ ଅପ୍ରକାଶ୍ୟ ଥିଲା ।

ଓଡ଼ିଶାର କଙ୍କାଳସାର ଜନଜୀବନର ଅବସ୍ଥା ଏହିପରି ଦୁର୍ଗତି ଆଉ ଦୁଃସ୍ଥିତି ମଧ୍ୟରେ ଗତିକରୁଥିଲା ଯେ ବନ୍ୟା, ବାତ୍ୟା କିମ୍ବା ଗୃହଦାହ କ୍ଷେତ୍ରରେ ତ୍ୱରିତ ଦାନର ଆବଶ୍ୟକତା ଅପରିହାର୍ଯ୍ୟ ରହିଥିଲା, କାରଣ ସରକାରୀ କଳର ଚରମ ନିଷ୍କ୍ରିୟତା ଆଉ ନିର୍ବେଦତା, ଦୁର୍ଦ୍ଦଶାକୁ ଅଧିକ ଗମ୍ଭୀର, ଯନ୍ତ୍ରଣାଦାୟକ ଓ ଦୟନୀୟ ସ୍ଥିତିରେ ପହଞ୍ଚାଇ ଦେଇଥିଲା । ଏହି ଦୁରନ୍ତ ପରିସ୍ଥିତିରେ ଆଶୁ ସହାୟତା ଆଉ ସାହାଯ୍ୟ ଦାନ ସଂପର୍କରେ ଉତ୍କଳ ଦୀପିକାରେ ପ୍ରକାଶିତ ସମ୍ବାଦର ଏକ ସଂକ୍ଷିପ୍ତ ସାର ପ୍ରଦାନ କରାଗଲା ।

ଅଫିସ୍ ଫେରନ୍ତା ସାୟଂକାଳ, ହାଟ ସଉଦାର ବେଳା, ଜନଗହଳିର ବିପୁଳ ସମାଗମ । ବିପର୍ଯ୍ୟୟର ସମ୍ମୁଖୀନ ହେବାପାଇଁ ଆଶୁ ଦାନଗ୍ରହଣର ସମୟ ଓ ସ୍ଥାନ ସୂଚିତ ହୋଇଥାଏ । ଚାନ୍ଦିନିଚୌକ କିମ୍ବା ବକ୍ସିବଜାର ଛକ । ସ୍ୱେଚ୍ଛାସେବୀ ଦଳ ଉପସ୍ଥିତ ଥାଆନ୍ତି । ବିପୁଳ ଜନସମାଗମରେ କୋଳାହଳ ଅବ୍ୟାହତ ରହିଥାଏ । ଜନଗହଳି ମଧ୍ୟକୁ ଅଚାନକ ଆସିଯାଆନ୍ତି ପ୍ରଖର ଆଉ ଉଜ୍ଜ୍ୱଳ ମୂର୍ତ୍ତି ବହନ କରିଥିବା ମଧୁସୂଦନ ଦାସ । ସମସ୍ତ କୋଳାହଳ ନୀରବି ଯାଏ । ମଧୁସୂଦନ ଏହି ଦୁରନ୍ତ ପରିସ୍ଥିତିର ଆଶୁ ସହାୟତା ତଥା ସାହାଯ୍ୟଦାନ ସଂପର୍କରେ ଏକ ଯୋଜନାବଦ୍ଧ ବ୍ୟବସ୍ଥା ଓ ପରିକଳ୍ପନାର ରୂପରେଖ ପ୍ରଦାନକରି ସହାୟତାର ବିଧାନ ବିଷୟରେ ପର୍ଯ୍ୟାଲୋଚନା କରନ୍ତି । ମଧୁସୂଦନ ଏହି ସଶ୍ରଦ୍ଧ ସୂଚନା ଜଣାଇବା ପରେ ଗୋଟିଏ ଫିତାଲଗା ଲମ୍ବାଥଳି ଯହିଁରେ ତାହାଙ୍କର ପ୍ରଦତ୍ତ ଦାନ ଗଚ୍ଛିତ ଥାଏ ଅପ୍ରକାଶ ରୀତିରେ ତାହାକୁ ବଢ଼ାଇ ଦିଅନ୍ତି । ସ୍ୱେଚ୍ଛାସେବକଙ୍କର ସହଯୋଗରେ ଥଳିଟି ବୁଲିଯାଏ ହାତକୁ ହାତ । କିଛିକାଳ ପରେ ଦାନ ସଂଗ୍ରହ ସମାପ୍ତ ହୁଏ । ମାତ୍ର ସେତେବେଳକୁ ମଧୁସୂଦନ ଅନ୍ତର୍ହିତ ହୋଇଯାଆନ୍ତି ଏକ ଜରୁରୀ କାମର ଆହ୍ୱାନରେ । ସକଳ ଦାନର ଗଣନା ତତ୍କ୍ଷଣାତ୍ ହୁଏ ସମସ୍ତଙ୍କ ଉପସ୍ଥିତିରେ । ମାତ୍ର ଅପ୍ରକାଶ୍ୟ ଭାବେ ଉପଲବ୍ଧି ହୁଏ ଯେ ସମସ୍ତ ଦାନର ଦୁଇତୃତୀୟାଂଶ କିମ୍ବା ତିନି ଚତୁର୍ଥାଂଶ ହିଁ ଥିଲା ମଧୁସୂଦନଙ୍କର ପ୍ରଦତ୍ତ ନିଜସ୍ୱ ଦାନ । ଅତୀବ ବିସ୍ମୟାଭିଭୂତ ଆଉ ସ୍ତମ୍ଭୀଭୂତ ହୋଇ ଚାହିଁ ରହିଥାନ୍ତି ଉପସ୍ଥିତ ଶ୍ରଦ୍ଧାନ୍ୱିତ ବିପୁଳ ଜନତା ।

ମାତ୍ର ମାନବିକତାର ଉଦାତ୍ତ ଆଉ ଅପରିମେୟ ଆହ୍ୱାନରେ ଏହି ମହିମାନ୍ୱିତ ବିରଳ ଦାନ ରହିଯାଏ ଅପ୍ରକାଶ୍ୟ ଆଉ ସଂଗୋପିତ ।



# ଲଣ୍ଡନର ପୃଷ୍ଠଭୂମିରେ ମଧୁସୂଦନ

ଓଡ଼ିଶାର ସୀମାତୀତ କ୍ଷେତ୍ରରେ ମଧୁସୂଦନ ରହିଯାଇଛନ୍ତି ଅନତିକ୍ରମ୍ୟ । ଉନବିଂଶ ଶତାବ୍ଦୀର ଶେଷ ପାଦରେ ମଧ୍ୟ ଓଡ଼ିଆଙ୍କପାଇଁ କଲିକତା ଦୁର୍ଗମ ରହିଥିଲା ବେଳେ, ମଧୁସୂଦନ କଲିକତା ଓ କ୍ଷମତାର କେନ୍ଦ୍ରସ୍ଥଳୀ ସିମ୍ଲା ଅତିକ୍ରମ କରି ପହଞ୍ଚି ପାରିଥିଲେ ଲଣ୍ଡନଠାରେ, ୧୮୯୭ ସାଲରେ । ଏହା ଥିଲା ଗଣତନ୍ତ୍ରର ଜନ୍ମଭୂମି ଓ ସାମ୍ରାଜ୍ୟବାଦର ଅବଦମିତ ଆଧାର । ମଧୁସୂଦନ ପହଞ୍ଚିଲେ ମଇମାସର ଶେଷ ସପ୍ତାହରେ । ପ୍ରତ୍ୟାବର୍ତ୍ତନର ତାରିଖ ଥିଲା ୧୦.୯.୧୮୯୭ । ମାତ୍ର ୪ମାସରୁ କମ୍ ସମୟର ରହଣିକାଳ ମଧ୍ୟରେ ମଧୁସୂଦନ ସେଠାକାର ବୁଦ୍ଧିଜୀବୀ, ସାମ୍ବାଦିକ ଗୋଷ୍ଠୀ ଓ ପାର୍ଲାମେଣ୍ଟ ସଦସ୍ୟଙ୍କ ଗହଣରେ ଭାରତ ତଥା ଓଡ଼ିଶାର ସ୍ୱାର୍ଥରକ୍ଷା ଲାଗି ଆଲୋଚନାଚକ୍ର, ବିତର୍କ, ସାମ୍ବାଦିକ ସମ୍ମିଳନୀ ଓ ଆବେଦନର ଆସରରେ ଯେଉଁ ପ୍ରଚଣ୍ଡ ପ୍ରଭାବ ବିସ୍ତାର କରିଥିଲେ, ଆଜି ସୁଦ୍ଧା ତାହା ରହିଯାଇଛି ଅନତିକ୍ରମ୍ୟ ।

ସେ ସମୟରେ କେତେକ ଭାରତୀୟ ଛାତ୍ର ଓ ନାଗରିକଙ୍କର ଅପକୀର୍ତ୍ତି ସ୍ଥାନୀୟ ପାର୍ଲାମେଣ୍ଟରେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟିଥିଲା । ମାତ୍ର ମଧୁସୂଦନଙ୍କୁ ପ୍ରଥମେ ଜଣେ ବୁଦ୍ଧିଦୀପ୍ତ ଭାରତୀୟ ଭାବରେ ଦେଖିବାକୁ ମିଳିଥିଲା ହାଇଡ୍ ପାର୍କଠାରୁ ଆରମ୍ଭକରି ଟାଉନ୍ ହଲ୍, ଆଲୋଚନା ସଭା, ପାର୍ଲାମେଣ୍ଟର ଲବି ଓ ତାହାର ଭୋଜନାଳୟରେ ,କୌଳିନ୍ୟ ଇଂରାଜୀ ଭାଷାରେ, ଚାତୁର୍ଯ୍ୟପୂର୍ଣ୍ଣ ବାର୍ତ୍ତାଳାପରେ ଆଉ ଶାଣିତ ତେଜୋଦୀପ୍ତ ଆଲୋଚନାରେ ନିବିଷ୍ଟ ରହିବା ଅବସ୍ଥାରେ । ସେ ମଧ୍ୟ ଭେଟିଥିଲେ 'ମହିଳା ଲିବରାଲ ଫେଡ଼ରେସନ୍' ପ୍ରତିନିଧି ଯୋସେଫାଇନ୍ ବଟଲାର୍, ଲେଡ଼ି କାର୍ଲାଇଲ୍ ପ୍ରମୁଖଙ୍କୁ ଯେଉଁମାନେ ଭାରତର ସ୍ୱାର୍ଥରକ୍ଷା ଲାଗି ଆଗ୍ରହୀ ଥିଲେ । ଏହି ସମସ୍ତ ବିବରଣୀ କ୍ରମଶଃ ଲଣ୍ଡନର ଦୈନିକ ସମ୍ବାଦପତ୍ରର ପୃଷ୍ଠାସବୁ ଅଧିକାର କରି ଚାଲିଥିଲା । ପ୍ରକୃତରେ ଏ ସମସ୍ତ କ୍ଷେତ୍ରରେ ସେ ପ୍ରଥମେ ଥିଲେ ଜଣେ ପ୍ରଗାଢ଼ ଭାରତୀୟ ଆଉ ପରେ ଜଣେ ନିଛକ ଓଡ଼ିଆ । ଏହି ସମୟରେ ଲଣ୍ଡନର କେନ୍ଦ୍ରସ୍ଥଳୀରେ ମଧୁସୂଦନ ଆୟୋଜନ କରିଥିଲେ ଓଡ଼ିଶାର ଅନନ୍ୟ ଚାରୁକଳା

ସମ୍ବଳିତ ସୂକ୍ଷ୍ମ ତାରକସି ଓ ଉତ୍କଳୀୟ ହସ୍ତଶିଳ୍ପର ଏକ ମନୋଜ୍ଞ ପ୍ରଦର୍ଶନୀ । ଏହାର ବିବରଣୀ ମଧୁସୂଦନଙ୍କ ବକ୍ତବ୍ୟ ସହିତ ଇଂଲଣ୍ଡର ବହୁ ପତ୍ର ପତ୍ରିକାରେ ସ୍ଥାନ ପାଇଥିଲା ।

ଏହି ସମସ୍ତ କ୍ଷେତ୍ରରେ ମଧୁସୂଦନଙ୍କୁ ଅକୁଣ୍ଠ ସହଯୋଗ ପ୍ରଦାନ କରିଥିଲେ ବଂଗର ପୂର୍ବତନ ଗଭର୍ଣ୍ଣର ସାର୍ ଚାର୍ଲସ ଆଲ୍‌ଫ୍ରେଡ୍ ଇଲିଅଟ୍; ଆଉ ଭାରତୀୟ କଂଗ୍ରେସ ଅଧିବେଶନର ୧୮୮୯-୯୦ ସାଲରେ ଅଧ୍ୟକ୍ଷତା କରିଥିବା ତଥା ବ୍ରିଟିଶ କଂଗ୍ରେସ କମିଟିର ମୁଖ୍ୟ କର୍ଣ୍ଣଧାର ସାର୍ ୱିଲିୟମ୍ ୱେଡ଼ର୍‌ବର୍ଣ୍ଣ । ପୂର୍ବ ସଂପର୍କ ଦୃଷ୍ଟିରୁ ଉଭୟେ ମଧୁସୂଦନଙ୍କୁ ଅତ୍ୟନ୍ତ ମର୍ଯ୍ୟାଦାସଂପନ୍ନ ଭାବେ ଉପସ୍ଥାପିତ କରିଥିଲେ, ସେକ୍ରେଟାରୀ ଅଫ୍ ଷ୍ଟେଟସ୍ ଲର୍ଡ଼ ଜର୍ଜ ହାମିଲ୍‌ଟନ୍ ଓ ତାଙ୍କର ସେକ୍ରେଟାରୀ ଚାର୍ଲସ୍ ଡିଲକିଙ୍କ ନିକଟରେ । ମଧୁସୂଦନ ସେମାନଙ୍କୁ ପ୍ରଦାନ କରିଥିଲେ ନିଜ ରଚିତ ଏକ ପୁସ୍ତିକା 'ବ୍ରିଟିଶ ପ୍ରଶାସନରେ ଓଡ଼ିଶା ଅବସ୍ଥା' । ବିଭାଜିତ ଓଡ଼ିଆଭାଷୀ ଅଂଚଳ ମିଶ୍ରଣର ଦାବି ସାଙ୍ଗକୁ ସମ୍ବଲପୁର ଅଂଚଳରେ ଓଡ଼ିଆ ଭାଷା ଉଚ୍ଛେଦର ପ୍ରତିବାଦପତ୍ର ସହିତ ତାରକସି କାମର ଉପହାର ସେ ପ୍ରଦାନ କରିଥିଲେ । ଏହି ଉପହାରର ଐନ୍ଦ୍ରଜାଲିକ ପ୍ରଭାବ ଉଭୟଙ୍କୁ ସମ୍ମୋହିତ କରିଥିଲା । ଏହାର ଫଳ ସ୍ୱରୂପ ଲର୍ଡ଼ ଜର୍ଜ ହାମିଲ୍‌ଟନ୍ ମଧୁସୂଦନଙ୍କୁ ପାର୍ଲାମେଣ୍ଟରେ ଭାରତ ବଜେଟ ଉପସ୍ଥାପନର ଅଧିବେଶନରେ ଯୋଗଦେବାପାଇଁ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ କରିଥିଲେ । (ଶୈଳବାଳାଙ୍କ କାଗଜ ପତ୍ର )

ପରବର୍ତ୍ତୀ କାଳରେ ଏହି ସମସ୍ତ କାର୍ଯ୍ୟଧାରାର ଫଳଶ୍ରୁତି ମିଳିଥିଲା ୧୯୦୩ରେ । ଲର୍ଡ଼ କର୍ଜନଙ୍କର ସେହିବର୍ଷ ଡିସେମ୍ବର ୩ ତାରିଖରେ ପ୍ରସାରିତ ରିସ୍‌ଲେ ସର୍କୁଲାର ମାଧ୍ୟମରେ ଓଡ଼ିଶା ପ୍ରଦେଶ ଗଠନର ଦାବି ଅଧିଗ୍ରହଣ ଆଉ ତାହାରି ଆଧାରରେ ୧୯୦୫ ଅକ୍ଟୋବର ୧୬ରେ ସମଗ୍ର ପଶ୍ଚିମାଞ୍ଚଳ ଓଡ଼ିଶା ଡିଭିଜନ ସହ ମିଶ୍ରଣ ହେଲା ।

ଇଂଲଣ୍ଡରେ ଅବସ୍ଥାନ କାଳରେ ମଧୁସୂଦନ ଗଣତାନ୍ତ୍ରିକ ପାର୍ଲାମେଣ୍ଟାରୀ ପରଂପରା, ସମାଜବାଦଭିତ୍ତିକ ସାମ୍ୟବାଦୀ ଚିନ୍ତାଧାରା ଆଉ ସମବାୟଭିତ୍ତିକ କାର୍ଯ୍ୟକ୍ରମର ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ ଓ ପର୍ଯ୍ୟାଲୋଚନା କରି ଏହି ସମସ୍ତ କାର୍ଯ୍ୟଧାରାର ଦର୍ଶନ, ବିଭବ ଆଉ ଏହାର ମୁଖ୍ୟ କେନ୍ଦ୍ରୀୟ ସଂଗଠନ ପ୍ରତି ଆକର୍ଷିତ ହୋଇଥିଲେ ।

ଏହି ପ୍ରଥମ ଲଣ୍ଡନ ଯାତ୍ରାର ବାହୁଡ଼ା ପଥରେ ମଧୁସୂଦନ ପ୍ରାୟ ସମଗ୍ର ୟୁରୋପ ପରିଭ୍ରମଣ କରିଥିଲେ । ଏହି ଅଭିଜ୍ଞତାର ଆଧାରରେ ୧୮୯୮ରେ ଭାରତର ପ୍ରଥମ ବହୁମୁଖୀ ସମବାୟ ପ୍ରତିଷ୍ଠାନ 'କଟକ କୋ-ଅପରେଟିଭ୍ ଷ୍ଟୋର୍'ର ସଂଯୋଜନା, ଜର୍ମାନୀରେ ପ୍ରଚଳିତ ଯାନ୍ତ୍ରିକ ତଥା ରାସାୟନିକ କୌଶଳ ବିନ୍ୟାସରେ ୧୯୦୫ରେ ଉତ୍କଳ ଟ୍ୟାନେରି ସ୍ଥାପନା ଓ ସର୍ବୋପରି ୟୁରୋପରେ ପ୍ରଚଳିତ ସାମ୍ୟବାଦୀ ଚିନ୍ତାଧାରାର ଆଧାରରେ ଓଡ଼ିଶାରେ ଜମିଦାରି ପ୍ରଥାର ଉଚ୍ଛେଦପାଇଁ ଉଦ୍ଦିଷ୍ଟ ଥିବା 'ପ୍ରଜା ପରିଷଦ'ର ପ୍ରତିଷ୍ଠା ସମ୍ଭବପର ହୋଇଥିଲା । ଏହାଥିଲା ସମଗ୍ର ଭାରତର ପ୍ରଥମ ସାମ୍ୟବାଦୀ ପ୍ରତିଷ୍ଠାନ ।

ଲଣ୍ଡନ ମେୟରଙ୍କ ଅଧ୍ୟକ୍ଷତାରେ 'ଇଷ୍ଟ ଇଣ୍ଡିଆ ଆସୋସିଏସନ୍' ପକ୍ଷରୁ ଲଣ୍ଡନର ଟାଉନ୍ ହଲ୍‌ଠାରେ ବହୁ ବୁଦ୍ଧିଜୀବୀଙ୍କ ସମାବେଶରେ ଆହୂତ ହୋଇଥିବା ସଭାରେ ମଧୁସୂଦନ 'ଭାରତର ପାରମ୍ପରିକ ଶିଳ୍ପ' ଉପରେ ତାଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ଅନୁଶୀଳନ ପ୍ରଦାନ କରିଥିଲେ । ଏହି ଅବସରରେ ସେ ଜଗନ୍ନାଥ ମନ୍ଦିରରେ ଜାତିଭେଦର ଅବସାନରେ ଓଡ଼ିଆ ସଂସ୍କୃତି କିପରି ସାର୍ବଜନୀନତା ଲାଭକରି ମହିମାନ୍ୱିତ ହୋଇଛି, ତାହା ଉପରେ ଗୁରୁତ୍ୱାରୋପ କରିଥିଲେ । ସାର୍ ଓ୍ୱିଲିୟମ୍ ଓ୍ୱେଡରବର୍ଣ୍ଣଙ୍କଦ୍ୱାରା ଆହୂତ ପାର୍ଲାମେଣ୍ଟର 'ହାଉସ୍ ଅଫ୍ କମନସ୍'ରେ ଭାରତ ବ୍ୟାପାର ସଂପର୍କିତ ସଦସ୍ୟମାନଙ୍କର ସ୍ୱତନ୍ତ୍ର ସମ୍ମେଳନରେ ମୁଖ୍ୟ ବକ୍ତାରୂପେ ମଧୁସୂଦନଙ୍କ ବିଦ୍‌ବତ୍ତାସଂପନ୍ନ ଭାଷଣ, ସମ୍ବାଦ ପତ୍ରରେ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା ।

ଲଣ୍ଡନରେ ପ୍ରକାଶିତ ଟ୍ରିବୁନ୍ ପତ୍ରିକାରେ ମଧୁସୂଦନ ଦାସଙ୍କୁ ଏକ କୋଟି ଓଡ଼ିଆ ଜନତାର ପ୍ରତିନିଧି ରୂପରେ ଆଖ୍ୟାୟିତ କରି, ତାହାଙ୍କୁ ଦାଦାଭାଇ ନାରୋଜୀଙ୍କ ଭଳି ଜଣେ ପ୍ରଚଣ୍ଡ ଭାରତୀୟ ପ୍ରତିନିଧି ଭାବରେ ଉପସ୍ଥାପିତ କରାଯାଇଥିଲା । ଏହି ଅବସରରେ ଓଡ଼ିଶାରେ ପ୍ରତି ତିରିଶି ବର୍ଷରେ ବର୍ଦ୍ଧିତ କର ହାରରେ ପ୍ରପୀଡ଼ିତ ଚାଷୀଙ୍କର କଷଣ ଉପରେ ମଧୁସୂଦନଙ୍କ ବକ୍ତବ୍ୟକୁ ଅଗ୍ରାଧିକାର ଭିତ୍ତିରେ ପ୍ରକାଶ କରାଯାଇଥିଲା । ଅନ୍ୟ ଏକ ସଭାରେ ମଧୁସୂଦନ ଓଡ଼ିଶାର ମଧ୍ୟବର୍ତ୍ତୀ ଶାସକ ଓ ଅମଲାତନ୍ତ୍ରିକ ଗୋଷ୍ଠୀଙ୍କର ଚକ୍ରାନ୍ତମୂଳକ ନିଷ୍ପେଷଣକୁ ଉପସ୍ଥାପିତ କରିଥିଲେ । ଡେଲି କ୍ରନିକାଲ୍, ଲଣ୍ଡନ ଟାଇମସ୍, ଇଂଲିଶ୍ ମ୍ୟାନ୍, ଗ୍ଲାସ୍‌ଗୋ ହେରାଲ୍‌ଡ଼, ଟ୍ରିବୁନ୍ ଷ୍ଟାଣ୍ଡ୍ ଆଦି ପତ୍ରିକାରେ ମଧୁସୂଦନଙ୍କ ସଂପର୍କୀୟ ବିବରଣୀକୁ ଗୁରୁତ୍ୱ ଦିଆଯାଇ ପ୍ରକାଶ ପାଉଥିଲା । ଏ ସମସ୍ତ ମଧ୍ୟରେ ମଧୁସୂଦନଙ୍କର ମୁଖ୍ୟ କାର୍ଯ୍ୟକ୍ରମ ଥିଲା ଲଣ୍ଡନରେ 'ସେକ୍ରେଟାରୀ ଅଫ୍ ଷ୍ଟେଟସ୍' ଲର୍ଡ଼ ମୋରେଲ୍‌ଙ୍କ ସହିତ ତାତ୍ପର୍ଯ୍ୟପୂର୍ଣ୍ଣ ସାକ୍ଷାତକାର, ଯାହା କିଞ୍ଚିତ ବିରୋଧାଭାସ ଓ ଶାଣିତ ବାକ୍ୟ ବିନିମୟ ମାଧ୍ୟମରେ ଆରମ୍ଭ ହୋଇଥିଲେ ହେଁ, ମଧୁସୂଦନ ତାହାଙ୍କର ପ୍ରଖର ବୁଦ୍ଧିମତ୍ତା ଓ ହାର୍ଦ୍ଦିକ ବାର୍ତ୍ତାଳାପ ଭିତରେ ବ୍ରିଟିଶ ପ୍ରଶାସକ ଗୋଷ୍ଠୀ କିଭଳି ସମ୍ବେଦନଶୀଳ ହେବା ଆବଶ୍ୟକ, ତାହା ସୂଚାଇ ଥିଲେ । ଏହି ସମସ୍ତର ଊର୍ଦ୍ଧ୍ୱରେ ମଧୁସୂଦନ ସେକ୍ରେଟାରୀ ଅଫ୍ ଷ୍ଟେଟସ୍ କାର୍ଯ୍ୟାଳୟ ଆଉ ଇଣ୍ଡିଆ ଅଫିସ୍‌ଠାରେ ଅବସ୍ଥାପିତ ଅଧିକାରୀବୃନ୍ଦଙ୍କ ସହିତ ଅନନ୍ୟ ତାରକସି କାରୁକାର୍ଯ୍ୟର ଉପଢ଼ୌକନ ପ୍ରଦାନ ଭିତରେ ଯେଉଁ ନିବିଡ଼ ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ସ୍ଥାପନକରି ଓଡ଼ିଶା ପ୍ରଦେଶ ଗଠନ ବିଷୟକ ନଥିପତ୍ର ସଜାଡ଼ି ରଖିଥିଲେ, ତାହା ପରବର୍ତ୍ତୀ ପର୍ଯ୍ୟାୟରେ ୧୯୩୧ରୁ ୧୯୩୫ସାଲ ପର୍ଯ୍ୟନ୍ତ ଲଣ୍ଡନଠାରେ ସଂଚାଳିତ ହୋଇଥିବା ତାତ୍ପର୍ଯ୍ୟପୂର୍ଣ୍ଣ ଓଡ଼ିଶା ପ୍ରଦେଶ ଗଠନର ଦୁର୍ବାର ସଂଗ୍ରାମରେ ଅତୀବ ସହାୟକ ହୋଇଥିଲା ।

ଓଡ଼ିଶାରେ ପ୍ରବଳ ବନ୍ୟାଜନିତ କରାଳ ଦୁର୍ଭିକ୍ଷ ପରିସ୍ଥିତି ଉପୁଜି ଥିବାରୁ ମଧୁସୂଦନ ସେହି ବର୍ଷ ସେପ୍ଟେମ୍ବର ମାସର ଶେଷଭାଗରେ ଗ୍ଲାସ୍‌ଗୋ ହେରାଲ୍‌ଡ଼ ପତ୍ରିକାର ପ୍ରତିନିଧି ହେନେରୀ ଡବ୍ଲୁ ନେଭିନ୍‌ସନ୍‌ଙ୍କ ସହ ଓଡ଼ିଶା ଫେରିଆସିଥିଲେ । ସେହି କାଳରେ ଲଣ୍ଡନଠାରେ ଅବସ୍ଥାପିତ ବରିଷ୍ଠ ସାମ୍ବାଦିକ ହେମନ୍ତ କୁମାର ବୋଷ ୧୮୯୭ ଓ ୧୯୦୭ସାଲର ମଧୁସୂଦନଙ୍କର ଐତିହାସିକ

ଲଣ୍ଡନ ଯାତ୍ରାର ସମସ୍ତ ବିବରଣୀ ଆଉ ବୃତ୍ତାନ୍ତ ଲଣ୍ଡନର ପତ୍ର ପତ୍ରିକାରୁ ଅତୀବ ଯତ୍ନ ସହକାରେ ସଂଗ୍ରହ କରି କଲିକତାଠାରେ ପ୍ରଦାନ କରିଥିଲେ । ଆଜି ସେ ସମସ୍ତ ପ୍ରାମାଣିକ ତଥ୍ୟରାଜି ପ୍ରକାଶିତ ନହୋଇ ବୋଧହୁଏ ଅବଲୁପ୍ତ । ସେ ଯାହାହେଉ ମଧୁସୂଦନଙ୍କର ଏହି ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ ଲଣ୍ଡନ ଯାତ୍ରାର ଆଲେଖ୍ୟ ଆଜି ନିଶ୍ଚିତରେ ଓଡ଼ିଆମାନଙ୍କର ଜାତୀୟ ସଂପତ୍ତିରେ ପରିଣତ ହୋଇଛି, ଯହିଁରେ ସ୍ୱତନ୍ତ୍ର ଓଡ଼ିଶାର ସ୍ଥାପନା କ୍ଷେତ୍ରରେ ମଧୁସୂଦନଙ୍କର ଏହି ଅବିସ୍ମରଣୀୟ ଅବଦାନ ଜାତିକୁ କାଳକାଳ ଲାଗି ଅନୁପ୍ରେରଣା ଯୋଗାଇ ଆସୁଥିବ ।



# ସ୍ମୃତିର ବିସ୍ମୃତିରେ ମଧୁସୂଦନ

**(ପଣ୍ଡିତ ନୀଳକଣ୍ଠଙ୍କ ଲେଖାବଳୀରୁ ସଂଗୃହୀତ)**

ମୁଁ କେବେ ପ୍ରଥମେ ମଧୁସୂଦନ ଦାସଙ୍କୁ ଜାଣିଲି ଏହା କହିବା ମୋ ପକ୍ଷରେ ଏକ କଠିନ ବ୍ୟାପାର । କାରଣ ମୁଁ ଯେତେବେଳେ ଶିଶୁ ଥିଲି,ସେତେବେଳେ ମଧୁସୂଦନ ଦାସଙ୍କ ନାମ ଓଡ଼ିଶାର ଘରେଘରେ ସମ୍ଭ୍ରମର ସହ ଉଚ୍ଚାରିତ ହେଉଥିଲା । ସେତେବେଳେ ଓଡ଼ିଶାର ଜନମାନସକୁ ତାଙ୍କର ବ୍ୟକ୍ତିତ୍ୱର ଛାୟା ଆଚ୍ଛନ୍ନ କରି ରଖିଥିଲା, ଆଉ ଜନସମାଜ ତାର ଅସହାୟ ଅବସ୍ଥାରେ ଏବଂ ବିପଦାଚ୍ଛନ୍ନ ମୁହୂର୍ତ୍ତରେ, ତାଙ୍କର ସହାୟତାକୁ ଚାହିଁ ବସିଥିଲା । ହଁ, ଠିକ୍ ଏହି ଭାବରେ ଜନସମାଜକୁ ମାର୍ଗଦର୍ଶନ ପ୍ରଦାନ କରିଥିବା ମହାନ ବ୍ୟକ୍ତିଗଣ ତାଙ୍କ ଜୀବନର ଆରମ୍ଭ କରିଥାନ୍ତି ।

ଉତ୍କଳ ସମ୍ମିଳନୀ, ଯାହାର ସେ ପିତା ଓ ସ୍ରଷ୍ଟା ଥିଲେ, ତାହା ପ୍ରଥମେ ୧୯୦୩ ସାଲରେ କଟକଠାରେ ଅନୁଷ୍ଠିତ ହୋଇଥିଲା । ସେତେବେଳର ଭାରତୀୟ କଂଗ୍ରେସର ସଭାପତି ମିଃ. ସୁରେନ୍ଦ୍ରନାଥ ବାନାର୍ଜୀ ବଂଗ ପ୍ରାଦେଶିକ ସଭାର ଏକ ଅଧିବେଶନ କଟକଠାରେ ଅନୁଷ୍ଠିତ କରାଇବାପାଇଁ ମଧୁସୂଦନଙ୍କୁ ଭେଟି ଅନୁରୋଧ ଜଣାଇଥିଲେ । ମାତ୍ର ସେହି ଅଧିବେଶନରେ ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ଲାଗି ଏକ ପ୍ରସ୍ତାବ ଗ୍ରହଣ କରିବାପାଇଁ ମିଃ. ବାନାର୍ଜୀ ରାଜି ହୋଇ ନଥିଲେ । ପରିଣାମରେ ସେହି ନିର୍ଦ୍ଦିଷ୍ଟ ସମୟରେ ବଂଗ ପ୍ରାଦେଶିକ ସଭା ପରିବର୍ତ୍ତେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକଠାରେ ଅନୁଷ୍ଠିତ ହୋଇଥିଲା । ମୁଁ ବସ୍ତୁତଃ ମଧୁସୂଦନ ଦାସଙ୍କୁ ପ୍ରଥମେ ୧୯୦୧ ସାଲରେ ଏବଂ ପରେ ୧୯୦୩ ସାଲରେ ଉତ୍କଳ ସମ୍ମିଳନୀର ମଣ୍ଡପରେ ଦେଖିଥିଲି । ମାତ୍ର ତାଙ୍କ ସହିତ ପ୍ରଥମ ସାକ୍ଷାତକାର ବା ଭେଟ ଘଟିଥିଲା ୧୯୦୪ ସାଲରେ, ଯେତେବେଳେ ପୁରୀ ହାଇସ୍କୁଲ୍‌ରେ ଅଧ୍ୟୟନ କରୁଥିଲି । ସେହି ସମୟରେ ପୁରୀ ଜଗନ୍ନାଥବଲ୍ଲଭ ମଠରେ ଅନୁଷ୍ଠିତ ଏକ ସଭାରେ ବହୁ ଭଦ୍ରବ୍ୟକ୍ତି ଓ ସ୍କୁଲ୍ ଛାତ୍ର ଉପସ୍ଥିତ ଥିଲେ । ସ୍ୱଦେଶୀ ସଂପର୍କରେ ଏକ ଆବେଗମୟ ଭାଷଣରେ ମଧୁବାବୁ ସମସ୍ତଙ୍କୁ ତନ୍ମୟ କରି ରଖିଥିଲେ । ସେ ଏହି ସଭାରେ ଏକ ଶପଥ ପାଠ କରାଇଥିଲେ - 'ମୁଁ ପ୍ରାଣପଣେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବି ଓ ସ୍ୱଦେଶୀ ଲୁଗା ଛଡ଼ା ଆଉ କିଛି ପିନ୍ଧିବି ନାହିଁ ।' ଏହି ଶପଥପାଠକୁ ଯେଉଁମାନେ ସ୍ୱୀକୃତି ପ୍ରଦାନ କରୁଥିଲେ,

ସେମାନେ ଗୋଟିଏ ଖାତାରେ ଦସ୍ତଖତ କରୁଥିଲେ । ଏହା ବ୍ରିଟିଶ ଶାସନର ଦଣ୍ଡା ଲର୍ଡ଼ କର୍ଜନଙ୍କର ବେଳ । ସଭାରେ ପୁଲିସ୍ ଜଗିରହିଛି । କିଏ ବା ଦସ୍ତଖତ କରୁଛି ? ସେ ଖାତାରେ ପ୍ରଥମେ ଦସ୍ତଖତ କଲେ ନରେନ୍ଦ୍ର ନାଥ ରକ୍ଷିତ ଓ ତାହା ପରେ ମୁଁ । ବିଦେଶୀ ବର୍ଜନ ଓ ସ୍ୱଦେଶୀ ବ୍ୟବହାର ସେହିଦିନୁ ମୁଁ ଆରମ୍ଭ କରିଥିଲି । ଏହି ଆରମ୍ଭ ମୂଳରେ ଥିଲା ଗୋଟିଏ ସଂକଳ୍ପ ଆଉ ଏହି ସଂକଳ୍ପକୁ ଘେନି ଏକ ପ୍ରତିଜ୍ଞାପତ୍ରରେ ସ୍ୱାକ୍ଷର ।

୧୯୧୧ରେ ଏମ.ଏ. ପାଶ୍ ପରେ ମୁଁ ସତ୍ୟବାଦୀ ବିଦ୍ୟାଳୟ ପ୍ରତିଷ୍ଠା କଲାପରେ, ମିଷ୍ଟର ଏମ୍. ଏସ୍. ଦାସ ମୋ ପାଖକୁ ଏକ ପ୍ରଶଂସାପତ୍ର ପଠାଇଥିଲେ । ସେ ଖାଲି ମୋତେ ଧନ୍ୟବାଦ ଦେଇ ନ ଥିଲେ, ଆଶ୍ଚର୍ଯ୍ୟାନ୍ୱିତ ବି ହୋଇଥିଲେ । ସେ ନିଜେ ଯେଭଳି ସ୍ୱାର୍ଥତ୍ୟାଗ କରିଥିଲେ, ମୁଁ ସେହିଭଳି କରିଥିବାରୁ ସେ ମୋତେ ଉତ୍ସାହିତ କରିଥିଲେ ।

ନିଜ ଲୋକମାନେ କେଉଁଠି କିଛି ପ୍ରଶଂସନୀୟ କାର୍ଯ୍ୟ କରୁଛନ୍ତି, ତା'ର ସେ ଖବର ରଖୁଥିଲେ ଓ ସେମାନଙ୍କୁ ଉତ୍ସାହିତ କରିବା ଭଳି ତାଙ୍କ ପରି ଲୋକଟିଏ ମୁଁ ଦେଖି ନାହିଁ । ମଣିଷ ଭିତରର ଏଭଳି ବିକାଶର ଉଦ୍ରେକ କରାନ୍ତି କେବଳ ତାଙ୍କ ଭଳି ମହାନ ଜନନେତା ।

ଗୋପବନ୍ଧୁ ଦାସ ଯେ କିଛି ସମୟ ତାଙ୍କ ଜୁନିଅର ଭାବରେ ଓକିଲାତି ତାଲିମ ପାଇଥିଲେ, ତାଙ୍କୁ ବିହାର ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ପ୍ରବେଶ କରାଇବା କାଳରେ ମୁଁ ତାଙ୍କଠାରେ ଏଭଳି ମହନୀୟ ଗୁଣ ଦେଖିବାକୁ ପାଇଥିଲି । ଅବଶ୍ୟ ମିଷ୍ଟର ଏମ୍.ଏସ୍. ଦାସଙ୍କ ବହୁ ଉଲ୍ଲେଖନୀୟ ଘଟଣାବହୁଳ ଜୀବନରେ ଏଇଟି ଅତି ଛୋଟିଆ ଘଟଣା । କିନ୍ତୁ ବହୁତ ଛୋଟଛୋଟ ଘଟଣାରୁ ମହାନ ବ୍ୟକ୍ତିମାନଙ୍କର ମହତ୍ତ୍ୱ ଜଣାପଡ଼ିଥାଏ । ପଣ୍ଡିତ ଗୋପବନ୍ଧୁ ସେଠାକୁ ନ ଯାଆନ୍ତୁ ବୋଲି ବହୁ ଉଦ୍ୟମ ହେଉଥିଲା । କିନ୍ତୁ ସେ ସେସବୁକୁ କାନ ଦେଇ ନ ଥିଲେ । ତାଙ୍କ ଭଳି ଜାତିର ସର୍ବୋଚ୍ଚ ସ୍ୱାର୍ଥ ସୁରକ୍ଷାକାରୀ ସେଭଳି ଉଦ୍ୟମକୁ ହୀନ ଓ ଘୃଣ୍ୟ ବୋଲି କହୁଥିଲେ । ଜାତିର ମଙ୍ଗଳଲାଗି ସେ କିଭଳି ଭାବୁଥିଲେ ଓ ଅନୁଭବ କରୁଥିଲେ ଏଥିରୁ ତା'ର ପ୍ରମାଣ ମିଳେ । ଏହା ଦେଖାଇ ଦିଏ ଯେ, ସେ କିଭଳି ମଣିଷ ବାଛିବା ଦିଗରେ ଗୁଣିଆ । ମଜାର କଥା ଯେ, ୧୯୦୪ ମସିହାରେ ଯେତେବେଳେ ସମ୍ବଲପୁର ସମେତ ଅନ୍ୟାନ୍ୟ ଓଡ଼ିଆ ଭାଷାଭାଷୀ ଅଂଚଳ ବଂଗଳା ପ୍ରଦେଶ ସହିତ ରହିବ ବା କେନ୍ଦ୍ର ପ୍ରଦେଶ (ପରବର୍ତ୍ତୀ କାଳରେ ମଧ୍ୟ ପ୍ରଦେଶ) ସହିତ ରହିବ ବୋଲି ଦୁଇଟି ମତ ଚାଲିଥାଏ, ସେତେବେଳେ ମଧୁବାବୁଙ୍କ ମତକୁ ବିରୋଧ କରିବା ଜରିଆରେ ହିଁ ଗୋପବନ୍ଧୁ ସାଧାରଣ କ୍ଷେତ୍ରରେ କାମ କରିବା ଦିଗରେ ପ୍ରଥମେ ସ୍ୱୀକୃତି ଲାଭ କରିଥିଲେ । ୧୯୦୪ ମସିହାରେ କଟକରେ ଉତ୍କଳ ସମ୍ମିଳନୀ ଅଧିବେଶନ ଚାଲିଥାଏ । ସେହି ସମୟରେ ପୂର୍ବୋକ୍ତ ବିବାଦ ତୁଙ୍ଗରେ ପହଞ୍ଚି ଥାଏ । ସମ୍ମିଳନୀର ଶିବିରରେ ଗୋପବନ୍ଧୁଙ୍କର 'ପ୍ରାର୍ଥନା' ଶୀର୍ଷକ ଏକ ପ୍ରଚାର ପତ୍ର ବଣ୍ଟାଯାଇଥିଲା ଓ ତାକୁ ପ୍ରତିନିଧିମାନେ ଆଗ୍ରହର ସହିତ ପଢ଼ିଥିଲେ ଓ ପସନ୍ଦ କରିଥିଲେ ବୋଲି ମୋର ବେଶ୍ ମନେଅଛି । ମିଷ୍ଟର ଏମ୍. ଏସ୍. ଦାସ ଗୋପବନ୍ଧୁଙ୍କର ଏଭଳି କାର୍ଯ୍ୟକୁ ପସନ୍ଦ କରି ନ ଥିଲେ । ଆଉ ତାଙ୍କ ଆଦର୍ଶ ଓ କାମକରିବାର ଶୈଳୀ ଥିଲା ଭିନ୍ନ । କିନ୍ତୁ ସେ ନ ଥିଲେ ସ୍ୱାର୍ଥପର । ଗୋପବନ୍ଧୁଙ୍କ ମଧ୍ୟରେ ମୌଳିକତା ଓ ମହାନତାର ବୀଜ ସେ ସେହି ସମୟରୁ ହିଁ ଲକ୍ଷ୍ୟ କରିଥିଲେ । ଗୋପବନ୍ଧୁଙ୍କ

ପ୍ରତି ତାଙ୍କର ପସନ୍ଦ ବଢ଼ି ଚାଲିଲା ଓ ପରବର୍ତ୍ତୀ କାଳରେ ସେହି ଉଦୀୟମାନ ଦେଶଭକ୍ତଙ୍କ ପ୍ରତି ତାଙ୍କ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ବି ରହିଗଲା ।

ମିଃ.ଦାସ ୧୯୧୨ ସାଲରେ ବିହାର ଓ ଓଡ଼ିଶା କାଉନ୍‌ସିଲ୍‌ରେ ଆଗତ ଓଡ଼ିଶା ପ୍ରଜାସ୍ୱତ୍ତ୍ୱ ବିଲ୍ ଉପରେ ପ୍ରଜାମାନଙ୍କର ଜମିରେ ସ୍ୱତ୍ତ୍ୱରକ୍ଷା ଲାଗି ଅନମନୀୟ ସଂଗ୍ରାମ ଜାରି ରଖିଥିଲେ । ପ୍ରଜାମାନଙ୍କର ସର୍ବୋତ୍ତମ ସ୍ୱତ୍ତ୍ୱରକ୍ଷା ଲାଗି ସେ ଏକ ମେମୋରାଣ୍ଡମ୍ ପ୍ରସ୍ତୁତ କରିଥିଲେ ।

ଏହା ପ୍ରଜାମାନଙ୍କ ଜମି ଉପରେ ଅଧିକାର ସାବ୍ୟସ୍ତ କରିବାଲାଗି ଯୁଗାନ୍ତକାରୀ ଦଲିଲ୍ ଥିଲା, ଯାହା ପ୍ରଜାମାନଙ୍କ ଜମି ଉପରେ ଅଶେଷ ଯତ୍ନଗ୍ରହଣ ଓ ସର୍ବାଧିକ ଉତ୍ପାଦନ ଲାଗି ପ୍ରତିଶ୍ରୁତିବଦ୍ଧ ଥିଲା । ତାଙ୍କର ଏହି ସାଲିସ୍ ବିହୀନ ଉପସ୍ଥାପନାରୁ କେତେ ଅଂଶ ଆଇନରେ ପରିଣତ ହେଲା, ତାହା ଅଲଗା କଥା । ଏହା ବିରୋଧରେ ଥିଲେ ସରକାରୀ ସମର୍ଥନପ୍ରାପ୍ତ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ, ଯେଉଁମାନେ ଆୟ ଓ ସଂପତ୍ତିର ସୁଷମ ବଣ୍ଟନ ବିରୋଧରେ କେବଳ ସଂଗ୍ରାମରତ ନଥିଲେ ବରଂ ଥିଲେ ବିଦେଶୀ ଢାଞ୍ଚାରେ ପ୍ରଜାମାନଙ୍କୁ ହୀନବୀର୍ଯ୍ୟ ଓ ଶୋଷଣ କରିବାପାଇଁ ସଂକଳ୍ପବଦ୍ଧ । ପ୍ରକୃତରେ ଏହି ଦାବିପତ୍ରରେ ମଧୁସୂଦନ ସର୍ବଭାରତୀୟ ସ୍ତରରେ ବିନା କ୍ଷତି ପୂରଣରେ ଜମିଦାରି ପ୍ରଥା ଉଚ୍ଛେଦ କଥା ସର୍ବପ୍ରଥମେ ଉତ୍‌ଥାପନ କରିଥିଲେ ।

ସମାଜର ନିମ୍ନସ୍ତରରେ ଥିବା ପ୍ରଜାମାନଙ୍କର ଦାବିକୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଶକ୍ତିଶାଳୀ କରିବାପାଇଁ ମଧୁସୂଦନ ପ୍ରଜାମାନଙ୍କର ନିଜସ୍ୱ ସଂସ୍ଥା ପ୍ରଜା ପ୍ରତିନିଧି ସଭା ସ୍ଥାପନା କରି ନିଜେ ଏହାର ସଭାପତି ରହି ଗୋପବଂଧୁଙ୍କୁ ଓ ମୋତେ ସଂପାଦକ ରୂପେ ନିର୍ବାଚିତ କରାଇଥିଲେ । ମୋର ମନେପଡୁଛି, କିଭଳି ପ୍ରବଳ ଉତ୍ସାହ ଓ ଉଦ୍ଦୀପନାରେ ପୁରୀ, କଟକ ଆଉ ବାଲେଶ୍ୱରରେ ହଜାର ହଜାର ଚାଷୀ ମଧୁସୂଦନଙ୍କ ସାମାନ୍ୟ ଆହ୍ୱାନରେ ସମ୍ମିଳିତ ହେଉଥିଲେ । ଜନସାଧାରଣଙ୍କ ଉପରେ ତାଙ୍କର ଆକର୍ଷଣୀୟ ଆଉ ଚୁମ୍ବକୀୟ ପ୍ରଭାବ ବିସ୍ତାର ହେଉଥିଲା, ଯେଉଁମାନଙ୍କୁ ସୁରକ୍ଷା ଓ ନେତୃତ୍ୱ ପ୍ରଦାନପାଇଁ ସେ ବିଧିନିର୍ଦ୍ଦିଷ୍ଟ ଥିଲେ ।

ମଧୁସୂଦନ ତାଙ୍କର ଜୀବନକାଳ ମଧ୍ୟରେ ଯେଉଁ ପ୍ରାଚୁର୍ଯ୍ୟର ଅଧିକାରୀ ହୋଇଥିଲେ, ତାହାକୁ ସମସ୍ତ ଜାତୀୟ କାର୍ଯ୍ୟରେ ବିନିଯୋଗ କରିଥିଲେ । ଓଡ଼ିଆ ଜାତିର ଶିଳ୍ପୀ ଓ ଜାତିର ଉନ୍ନୟନପାଇଁ ଶିଳ୍ପରେ ବିନିଯୁକ୍ତ ରହିବା ଥିଲା ତାଙ୍କ ଉଦ୍ଦୀପନାର ସର୍ବବ୍ୟାପୀ ନିଶା । ତାଙ୍କର ଏକକ ପ୍ରଚେଷ୍ଟାରେ ସେ ଓଡ଼ିଶାକୁ ପୃଥିବୀ ବିଖ୍ୟାତ କରିପାରିଥିଲେ । ତାଙ୍କର କଳାବିନ୍ୟାସରେ ସଂଯୋଜିତ ତାରକସି କାର୍ଯ୍ୟ ଆଉ ବୈଚିତ୍ର୍ୟମୟ ନକ୍ସା ରୂପାୟିତ ଚମଡ଼ା ବସ୍ତୁର ଉତ୍ପାଦନ ମାଧ୍ୟମରେ । ମାତ୍ର ଏହିସବୁ ଉଦ୍ୟୋଗ ଶିଳ୍ପୀକୁଳର ସହଯୋଗରେ ସମବାୟ ଭିତ୍ତିରେ ଗଢ଼ିଉଠିଥିଲା, ଯାହା ସେ ଯୁଗରେ ଅତ୍ୟନ୍ତ ଅଗ୍ରଗାମୀ ରୋମାଞ୍ଚକର ସାହସିକ ପଦକ୍ଷେପ ଥିଲା, ଯେଉଁଥିପାଇଁ ଓଡ଼ିଶାର ରକ୍ଷଣଶୀଳ ବାତାବରଣ ପ୍ରସ୍ତୁତ ନଥିଲା । ଏଥିପାଇଁ ତାଙ୍କୁ ବିଫଳତାର ସ୍ୱାଦ ଚାଖିବାକୁ ପଡ଼ିଥିଲେ ମଧ୍ୟ ଏହା ତାରକସି ଶିଳ୍ପୀ ଓ ଚର୍ମକାରମାନଙ୍କୁ ଅତ୍ୟନ୍ତ କୁଶଳୀ କଳାପ୍ରବଣ କାରିଗର ରୂପେ ପରିଣତ କରିଥିଲା । ମଧୁବାବୁଙ୍କ ଏହି ଉଦ୍ୟୋଗଶୀଳତା ୮୩ ବର୍ଷ ବୟସରେ ମଧ୍ୟ ଏକ ଦୀପ୍ତିମନ୍ତ ଦୀପଶିଖା ପରି ତାଙ୍କୁ ଉଦ୍ଦୀପ୍ତ ଆଉ କର୍ମପ୍ରବଣ ରଖିଥିଲା । ଏ ସମସ୍ତ ସତ୍ତ୍ୱେ କିଛି ତରୁଣ ଗୋଷ୍ଠୀ

ତାଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରି ତାଙ୍କୁ ଚକ୍ରାନ୍ତ ମଧ୍ୟକୁ ଟାଣି ନେଇଥିଲେ । ହେଲେ ସେମାନଙ୍କ ପ୍ରତି ମଧୁସୂଦନଙ୍କ ମନରେ ସାମାନ୍ୟ ମାତ୍ର ଅସୂୟା ନଥିଲା । ମଧୁସୂଦନ ଥିଲେ କ୍ଷମାଶୀଳତାର ମୂର୍ତ୍ତିମନ୍ତ ଅବତାର । ସେ ଆମ୍ଭମାନଙ୍କୁ ପଥଭ୍ରଷ୍ଟ ଯୁବକ ଦଳ ବୋଲି ଆଖ୍ୟାୟିତ କରି ସର୍ବାନ୍ତଃକରଣରେ ସଦାକ୍ଷମା ପ୍ରଦାନ କରିଚାଲିଥିଲେ ।

୧୯୩୪ ସାଲ, ଜାନୁଆରି ମାସର ଶେଷ ଭାଗରେ ମଧୁସୂଦନ ଦାସଙ୍କର ଗୁରୁତର ଅସୁସ୍ଥତା ସଂପର୍କରେ ଖବରକାଗଜରୁ ଅବଗତ ହୋଇ କଟକରେ ତାଙ୍କର ଶଯ୍ୟାଧାରରେ ଯାଇ ପହଞ୍ଚିଲି । ତାଙ୍କର ଚକ୍ଷୁଯୁଗଳରେ ସେହି ପ୍ରଖର ଦ୍ୟୁତି ଝଲମଲ କରୁଥାଏ । ମୋର ଏକ ପ୍ରଶ୍ନର ଉତ୍ତର ଦେଇ ସେ କହିଲେ- ଜୟପୁର ନିଶ୍ଚୟ ଓଡ଼ିଶାରେ ସମ୍ମିଳିତ ହେବ, ଏଥିରେ ସନ୍ଦେହ ନାହିଁ । ଏହା ପରେ ମୁଁ ନିବେଦନ କଲି, ଦେଶବାସୀଙ୍କୁ କିଛି ସନ୍ଦେଶ ପ୍ରଦାନ କରିବାପାଇଁ । ତତ୍‌କ୍ଷଣାତ୍ ସେ କହିଲେ, ଦେଶବାସୀଙ୍କୁ କୁହ, ସେମାନେ ସେମାନଙ୍କର ଅନ୍ତଃକରଣକୁ ଶୁଦ୍ଧ ଆଉ ନିର୍ମଳ ରଖନ୍ତୁ । କ୍ରମେ ସେ ଅଧିକ ଅସୁସ୍ଥ ହୋଇପଡୁଥିଲେ । ମୁଁ ତାଙ୍କ ଶୟନାଗାରର ବାରଣ୍ଡାରେ ବିଶ୍ରାମ ନେଉଥାଏ । କିଛି ସ୍କୁଲ୍ ଛାତ୍ର ତାଙ୍କ ଶଯ୍ୟାଧାରରେ ପହଞ୍ଚି ପ୍ରଣିପାତ କଲେ । ଏହାର ଉତ୍ତରରେ ତାଙ୍କର କଣ୍ଠରେ ସେହି ବଜ୍ର ନିନାଦ ଫେରିଆସିଥିଲା । ସେ ଉତ୍ତାଳ ଆଉ ଉଦାର ସ୍ୱରରେ କହିଲେ, ''ମନେରଖିଥିବ ଜଣେ ଓଡ଼ିଆ ଥିଲା, ଯେକି ପ୍ରଶାସନର ବଳିଷ୍ଠ ଶକ୍ତିକୁ ଆଦୌ ଭୟ କରିନଥିଲା ଆଉ ନିର୍ଦ୍ଧାରିତ ସଠିକ୍ ମାର୍ଗରୁ ତିଳେ ମାତ୍ର ବିଚ୍ୟୁତ ହୋଇନଥିଲା । କେବଳ ଏକାକୀ ନୀରବରେ ଭଗବାନଙ୍କର ସହାୟତାପାଇଁ ପ୍ରାର୍ଥନା କରିଥିଲା ।'' ତାଙ୍କର ସେହି ଦୃଢ଼ କଣ୍ଠର ବଜ୍ର ନିର୍ଘୋଷ ଶୁଣି ଆମ୍ଭେମାନେ ହତଚକିତ ହୋଇଯାଇଥିଲୁ । ଏହାଥିଲା ମୋର ତାଙ୍କ ସହିତ ଶେଷ ସାକ୍ଷାତକାର । ସେ ଥିଲେ ଗୋଟିଏ ଯୁଗଧରି ଓଡ଼ିଶା ଇତିହାସର ମୂର୍ତ୍ତିମନ୍ତ ବିଗ୍ରହ । ମଧୁସୂଦନ ଦାସ ଥିଲେ ଓଡ଼ିଶାର ମହାନ ସନ୍ତାନ ଆଉ ତାଙ୍କ ଯୁଗର ସର୍ବୋତ୍ତମ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ, ଯେ କି ଏକ ବିରାଟ ଶୂନ୍ୟତା ସୃଷ୍ଟି କରିଚାଲିଗଲେ । ତାଙ୍କ ସ୍ଥାନ ଚିରକାଳ ଲାଗି ଅପୂରଣୀୟ ରହିଗଲା ।





# ସହସ୍ର ରୂପରେ ସହସ୍ର କ୍ଷେତ୍ରରେ

# ମଧୁସୂଦନ



ଉତ୍କଳ ସମ୍ମିଳନୀର ନେତା ମଧୁସୂଦନ-୧୯୦୩



ଚିନ୍ତାନାୟକ ମଧୁସୂଦନ



ଉତ୍କଳ ସମ୍ମିଳନୀ, ରମ୍ଭା-୧୯୦୨ (ଫକୀରମୋହନ, ଗୋପବନ୍ଧୁ ଓ କର୍ମବୀର ଗୌରୀଶଙ୍କରଙ୍କ ସହିତ ମଧୁସୂଦନ

ମଧୁସୂଦନ ଓ ତାଙ୍କର କେତେକ ବନ୍ଧୁ, (ବାମରୁ ଡାହାଣକୁ) ଦେବାନ ବାହାଦୂର ଲକ୍ଷ୍ମୀଧର ମହାନ୍ତି, ଉତ୍କଳ ଗୌରବ ମଧୁସୂଦନ, ସର୍କିଟ୍ କୋର୍ଟର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ମୌଲବୀ ଅବଦୁଲ୍ ହାଫିଜ୍, ଓ ସତୀନ୍ଦ୍ର ନାରାୟଣ ରାୟ ମହାଶୟ

(୨ୟଧାଡ଼ି) (ମୌଲବୀ ଅବଦୁଲ୍ ଶୋଭାନ୍ ଖାଁ, ଚିନ୍ତାମଣି ଆଚାର୍ଯ୍ୟ, ମୌଲବୀ କମରୁଦ୍ଦିନ୍ ଖାଁ)



ମଧୁସ୍ମୃତି



ସି.ଆଇ.ଇ ଉପାଧିପ୍ରାପ୍ତ ମଧୁସୂଦନ-୧୯୦୪

# ସହସ୍ର ରୂପରେ ସହସ୍ର କ୍ଷେତ୍ରରେ ମଧୁସୂଦନ

ମଧୁସୂଦନଙ୍କ ତିରୋଧାନ ପରେ, ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ତାଙ୍କର କାର୍ଯ୍ୟଧାରାକୁ ମୂଲ୍ୟାୟନର କଷଟି ପଥରରେ ପରଖିଥିବା, ଏ ଯୁଗର ଓଡ଼ିଆ ଜାତିର ଅନମନୀୟ ବ୍ୟାଖ୍ୟାକାର ବିଶ୍ୱନାଥ କରଙ୍କ କଣ୍ଠରେ ସ୍ୱତଃ ଉଚ୍ଚାରିତ ହୋଇଥିଲା - ''ଏକା ମଧୁସୂଦନ ଯେପରି ସହସ୍ର ରୂପ ଧରି, ସମସ୍ତ ଜାତିଟାର ସହସ୍ର କ୍ଷେତ୍ରରେ ବିଚରଣ କରି ଆପଣାକୁ ଖେଳାଇ ଆଉ ମିଶାଇ ଦେଇଥିଲେ ।'' ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ, ଅଗ୍ରପୁରୁଷଙ୍କ ପ୍ରତି ଏହାଥିଲା ତାଙ୍କ ଅନ୍ତରର ପରିପ୍ରକାଶ ।

କଲିକତାରେ ପନ୍ଦରବର୍ଷ ଓ ପରବର୍ତ୍ତୀ କାଳରେ ୧୮୯୭ ରେ ଦୀର୍ଘ ଆଠମାସ କାଳ ସମଗ୍ର ୟୁରୋପ ପରିଭ୍ରମଣ କରି ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ ମଧୁବାବୁ । ଫଳରେ ତାଙ୍କର ଦୃଷ୍ଟିକୋଣ ପ୍ରସାରିତ ହୋଇଥିଲା । ସେତେବେଳକୁ ଅବଲୁପ୍ତିର ଚରମ ପର୍ଯ୍ୟାୟରେ ପହଞ୍ଚିଥିଲା ଓଡିଆ ଜାତି । କଙ୍କାଳ ସାର ଏ ଜାତିର ପ୍ରତିଟି କ୍ଷେତ୍ରକୁ ସେ ଯେଭଳି ପୁନରୁଜ୍ଜୀବିତ, ପୁନରୁତ୍‌ଥିତ ଓ ସଂସ୍ଥାପିତ କରିଥିଲେ, ତାହାର ପଟ୍ଟାନ୍ତର ନାହିଁ । ଏହାର ବିସ୍ତୃତ ବିବରଣୀ ଉତ୍କଳଦୀପିକାର ସହସ୍ରାଧିକ ପୃଷ୍ଠାରେ ଅତ୍ୟନ୍ତ ହୃଦୟଗ୍ରାହୀ ଭାବରେ ଉପସ୍ଥାପିତ ହୋଇଛି ।

ନୃତ୍ୟ, ସଂଗୀତ, ବାଦ୍ୟ, ପାଶ୍ଚାତ୍ୟ କନ୍‌ସର୍ଟ, ରଂଗମଂଚ, ରୋଶନାଇ, ନାଟ୍ୟ ପର୍ଯ୍ୟାଲୋଚନାଠାରୁ ଆରମ୍ଭ କରି ବୈଦେଶିକ କ୍ରୀଡ଼ା ପ୍ରଶିକ୍ଷଣ ଓ ପ୍ରତିଯୋଗିତା, ଅରଟରେ ସୂତାକଟା, ରାସାୟନିକ ରଂଗର ପ୍ରୟୋଗ, ଫ୍ଲାଇ ସଟଲ୍ ତନ୍ତର ସଂଯୋଜନା, ବିଭିନ୍ନ ଅଳଂକାର, ଉପହାର- ଯୋଗ୍ୟ ଆଳଂକାରିକ ବସ୍ତୁନିର୍ମାଣ, ସର୍ବାଧୁନିକ ଯାନ୍ତ୍ରିକ କୌଶଳ ପ୍ରୟୋଗରେ ସୋଲ ଓ ପ୍ରସ୍ତରଠାରୁ ଆରମ୍ଭ କରି ଶିଂଗ, ପିତ୍ତଳ, କଂସା, ତମ୍ବା, ଆଲୁମିନିୟମ୍, ଲୁହା, ସୁନା, ରୂପା ଆଦି ବିଭିନ୍ନ ଧାତବ ବସ୍ତୁ ପ୍ରସ୍ତୁତି ବ୍ୟତୀତ ଆହୁରି ଅନେକ ଦିଗରେ ମଧୁବାବୁଙ୍କ ଆଗ୍ରହ ପରିବ୍ୟାପ୍ତ

ଥିଲା । ଜୀବନର ଶେଷ ବର୍ଷରେ ପ୍ଲାଷ୍ଟର ଅଫ୍ ପ୍ୟାରିସ୍ ଓ ବ୍ରୋଞ୍ଜ ନିର୍ମାଣ କୌଶଳର ପ୍ରଶିକ୍ଷଣ ଲାଗି ପ୍ରତିଷ୍ଠାନ ପ୍ରତିଷ୍ଠା ଆଦି ତାଙ୍କ ବ୍ୟକ୍ତିତ୍ୱର ବ୍ୟାପକତା ସଂପର୍କରେ ଧାରଣା ଦିଏ । ସେହିପରି ତାଙ୍କ ଉର୍ଜ୍ଜସ୍ୱଳ ବ୍ୟକ୍ତିତ୍ୱର ସର୍ବଭାରତୀୟ ପ୍ରକାଶ ଭାବେ ମନକୁ ଆସେ ଦଳିତ ଜାତିର ସଂସ୍ଥାପନା, ପ୍ରଥମ ସମବାୟ ଉଦ୍ୟୋଗର ସ୍ଥାପନା, ସ୍ୱଦେଶୀ ଶିଳ୍ପାୟନ ଓ ସଂସଦୀୟ ଜୀବନର ଉଚ୍ଛ୍ୱସିତ ଦିଗ । ଏହାଛଡ଼ା ମହାତ୍ମାଗାନ୍ଧୀଙ୍କ ଅନ୍ୟତମ ମାର୍ଗଦର୍ଶକର ଭୂମିକା ଓ ଭାଷା-ଭିତ୍ତିକ ରାଜ୍ୟ ଗଠନର ପ୍ରଥମ ପ୍ରବକ୍ତା ଭାବରେ ତାଙ୍କର ବହୁ କାର୍ଯ୍ୟ ତାଙ୍କ ବ୍ୟକ୍ତିତ୍ୱକୁ ଏକ ମହିମାନ୍ୱିତ ସୋପାନରେ ଉପନୀତ କରାଏ । ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱରେ ଏଭଳି ଅପରିମେୟ ବ୍ୟାପ୍ତି ଅକଳନୀୟ । ସେ ଯଥାର୍ଥରେ ଥିଲେ ସମଗ୍ର ଓଡ଼ିଆ ଜାତିର ମର୍ଯ୍ୟାଦାବନ୍ତ ଅଗ୍ରପୁରୁଷ । ଏବେ ମଧ୍ୟ ତାଙ୍କ ଉଦ୍ୟମର ବଳିଷ୍ଠ ସ୍ୱାକ୍ଷରକୁ ଆମେ ଆମର ସାମାଜିକ, ରାଜନୈତିକ, ବୌଦ୍ଧିକ ତଥା ବ୍ୟକ୍ତିଗତ ଜୀବନରେ ଅନୁଭବ କରୁ ।

ମଧୁସୂଦନଙ୍କ ଜୀବନର ଯେଉଁସବୁ ଅନାଲୋଚିତ ଦିଗମାନ ରହିଛି, ତାହା ମଧ୍ୟରେ ଭାରତର ମୁକ୍ତି ସଂଗ୍ରାମରେ ଉଗ୍ରବାଦର ସମର୍ଥନ ହେଉଛି ଅନ୍ୟତମ । ଏ ପ୍ରକାର ଏକ ଦୃଷ୍ଟିଭଙ୍ଗୀର ଆଦ୍ୟ ପ୍ରବର୍ତ୍ତକ ଭାବରେ ତାଙ୍କର ବଳିଷ୍ଠ ଭୂମିକା ଅତ୍ୟନ୍ତ ରୋମାଞ୍ଚକର ଓ ତାତ୍ପର୍ଯ୍ୟପୂର୍ଣ୍ଣ । ଅନେକଙ୍କ ମୂଲ୍ୟାୟନରେ ନରମପନ୍ଥୀ ରୂପେ ବିବେଚିତ ମଧୁସୂଦନ, ୧୯୧୫ ଜାନୁଆରି ପହିଲାରେ କଟକଠାରେ ସାର୍ ସୁରେନ୍ଦ୍ର ନାଥ ବାନାର୍ଜୀଙ୍କପାଇଁ ଉଦ୍ଦିଷ୍ଟ ସମ୍ବର୍ଦ୍ଧନା ସଭାରେ, ଭାରତର ମୁକ୍ତି ସଂଗ୍ରାମରେ ଉଗ୍ରବାଦକୁ ଅକୁଣ୍ଠ ସମର୍ଥନ ଜଣାଇ ଯେଉଁ ଉଦାତ୍ତ ଐତିହାସିକ ଭାଷଣ ସେ ପ୍ରଦାନ କରିଥିଲେ, ତାହାର ଉଦ୍ଧୃତାଂଶ ଏଠାରେ ପ୍ରଦତ୍ତ- 'ଉଗ୍ରପନ୍ଥୀମାନେ ଭାରତର ଆଶୁ ସ୍ୱାଧୀନତା ଦାବି କରୁଛନ୍ତି । କେତେକ ସଂତ୍ରାସବାଦର ଦୁଆ ଧରି ବୈପ୍ଳବିକ ପରିବର୍ତ୍ତନ ଚାହାନ୍ତି । ଯେଉଁ ଉଗ୍ରପନ୍ଥୀମାନେ ଯାତନା ଓ ତାଡ଼ନା ସହି କାରାବରଣ କରୁଛନ୍ତି,ସେମାନଙ୍କ ଉଦ୍ଦେଶ୍ୟ ମହତ ।'

ବଙ୍ଗଦେଶରୁ ଆଗତ ବହୁ ଉଗ୍ରବାଦୀ ନେତୃବର୍ଗ ମଧୁସୂଦନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଓଡ଼ିଶାର ଗୋପନୀୟ ଅଂଚଳରେ ଆଶ୍ରୟ ଗ୍ରହଣ କରୁଥିଲେ । ଏ ଦେଶରେ ବଂଗଦେଶ ସହିତ ଘନିଷ୍ଠ ସଂପର୍କ ରଖିଥିବା ବ୍ରଜସୁନ୍ଦର ଦାସ ଓ ବିଶ୍ୱନାଥ କରଙ୍କର ଭୂମିକା ଅତ୍ୟନ୍ତ ଉଲ୍ଲେଖନୀୟ ଥିଲା । ଏପରିକି ବିପ୍ଳବୀ ସହିଦ ଖୁଦିରାମ, ମୁଜାଫରପୁରରେ ତାଙ୍କର ସଂତ୍ରାସବାଦୀ କାର୍ଯ୍ୟର ଅବ୍ୟବହିତ ପୂର୍ବରୁ କଟକର ବ୍ରଜସୁନ୍ଦର ଦାସଙ୍କର ଆଶ୍ରୟରେ କିଛି ଦିନ ଅତିବାହିତ କରିଥିଲେ ।

ବିଂଶ ଶତାବ୍ଦୀର ଆଦ୍ୟଭାଗରେ ଦେଶର ମୁକ୍ତିସଂଗ୍ରାମ କାଳରେ ଉଗ୍ରବାଦ ସହିତ ମଧୁସୂଦନଙ୍କ ସଂପର୍କକୁ ନେଇ ସରଳା ଦେବୀ ଚୌଧୁରୀ ତାଙ୍କ ଆତ୍ମଚରିତରେ ଯାହା ଲେଖିଛନ୍ତି ତାହା ପ୍ରଣିଧାନଯୋଗ୍ୟ ।

'ମଧୁସୂଦନ ବଂଗର ସାଂସ୍କୃତିକ ପରିବେଶକୁ ଗଭୀର ଭାବେ ଆଲୋକିତ ଆଉ ପ୍ରଭାବିତ କରିବା ସହିତ ଦେଶର ମୁକ୍ତି ସଂଗ୍ରାମରେ ଉଗ୍ରବାଦର ଏକ ନୂତନ ଦିଗନ୍ତ ସୃଷ୍ଟି କରିଥିଲେ । ଦେଶବତ୍ସଳତାର ଉଦାତ୍ତ ଆହ୍ୱାନ ପରିପ୍ରେକ୍ଷୀରେ, ମଧୁସୂଦନଙ୍କ ଅପରିମେୟ ଉତ୍ସର୍ଗୀକୃତ ଅବଦାନର ବାସ୍ତବିକ କୌଣସ ପଟାନ୍ତର ନାହିଁ ।'

ମଧୁସୂଦନଙ୍କର ଜୀବନର ମୂଲ୍ୟାୟନ କରି ଭାରତର ତତ୍କାଳୀନ ଇସ୍‌ପାତ ଓ ଖଣି ମଂତ୍ରୀ ତଥା ରାଜ୍ୟର ବରପୁତ୍ର ବିଜୁ ପଟ୍ଟନାୟକ ୧୯୭୮ରେ ଶ୍ରଦ୍ଧାଂଜଳି ଅର୍ପଣ କରି କହିଥିଲେ- 'ଦେଶର ମୁକ୍ତି ସଂଗ୍ରାମରେ ମଧୁସୂଦନ ଦାସଙ୍କର ଅବିସ୍ମରଣୀୟ ଅବଦାନ ଏଭଳି ଭାବେ ସ୍ୱୀକୃତ ଯେ ତାହାର ପୁନରାବୃତ୍ତି ଅନାବଶ୍ୟକ । ସେ ସମଗ୍ର ଭାରତର ଜଣେ ସର୍ବଶ୍ରେଷ୍ଠ ସନ୍ତାନ ଏବଂ ଆଧୁନିକ ଓଡ଼ିଶା ଓ ତାହାର ସମସ୍ତ ଉପଲବ୍ଧିପାଇଁ ଆମେ ଏକାନ୍ତ ଭାବେ ତାଙ୍କ ପାଖେ ହିଁ ଋଣୀ ।'

ଏହି ରାଜ୍ୟର ବିରାଟ ବିରୋଧାଭାସ ହେଉଛି ଯେ ମଧୁସୂଦନଙ୍କ ଅକଳନୀୟ ଅବଦାନ ସତ୍ତ୍ୱେ ତାଙ୍କର ସ୍ମୃତି ଭୂଲୁଣ୍ଠିତ ଓ ବିପର୍ଯ୍ୟସ୍ତ । ମଧୁସ୍ମୃତିରେ ସ୍ମାରକୀ ସ୍ଥାପନାର ପରିକଳ୍ପନା ଆକାଶ କୁସୁମର ଦଶା ଭଜିଛି । ଯାବତୀୟ ଜଂଜାଳରେ ମଜ୍ଜିରହି ଆମେ ମଧୁବାବୁଙ୍କୁ ଭୁଲିଯାଇଛୁ ବୋଲି ଯଦି କହିବା, ତେବେ ମଧ୍ୟ ଆମେ କ୍ଷମଣୀୟ ହେବା ନାହିଁ । ହେଲେ, ନିଃସନ୍ଦେହରେ ଏତିକି କୁହାଯାଇ ପାରିବ ଯେ ଏଭଳି ବିସ୍ମୃତି, ଆମ ରାଜ୍ୟପାଇଁ ଏକ ଦୁର୍ଭାଗ୍ୟର ସଙ୍କେତ ।



# ଗୋତ୍ରର ନାମ ମଧୁସୂଦନ

ସ୍ମରଣାତୀତ କାଳରୁ ଅଖଣ୍ଡ ଥିଲା ଉତ୍କଳ । ସୁବିଶାଳ ସାଙ୍ଗକୁ ଏହା ପ୍ରଚଣ୍ଡ କ୍ଷମତାଶାଳୀ ଓ ଐଶ୍ୱର୍ଯ୍ୟଶାଳୀ ମଧ୍ୟ ଥିଲା । ମାତ୍ର କେଉଁ ଏକ କ୍ରୂର ଅଭିଶାପର ଜ୍ୱାଳାରେ ଆକ୍ରାନ୍ତ ହୋଇ ଖସିପଡ଼ିଥିଲା ପରାଧୀନତାର ଅତଳ ଗହ୍ୱରକୁ, ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ । ଏହାର ତିନିଶହ ବର୍ଷ ପରେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ, ବ୍ରିଟିଶ ଶାସନର ବିଭିନ୍ନ ପ୍ରାନ୍ତୀୟ ପରିଧି ମଧ୍ୟରେ ବିଭାଜିତ ହୋଇ ଖଣ୍ଡ ଖଣ୍ଡ ହୋଇଗଲା । ଏହି ଖଣ୍ଡସବୁ ଛତିଶଗଡ଼, ବିହାରର ଛୋଟନାଗପୁର, ବଙ୍ଗଳାର ବର୍ଦ୍ଧମାନ ଆଉ ମାନ୍ଦ୍ରାଜର ଆନ୍ଧ୍ରଭାଷୀ ଅଂଚଳ ସହିତ ଲାଖି ରହି ଅତ୍ୟନ୍ତ ଦୟନୀୟ ଭାବେ ଆପଣାର ସଂସ୍କୃତି ଓ ସ୍ଥିତିକୁ ହରାଇ ବସିଥିଲା । ପରାଧୀନତାର ତିନିଶହ ବର୍ଷର ଉଗ୍ର ଶୋଷଣ ଓ ସାମନ୍ତ ସାହି ଶାସନର ଦାରୁଣ ଲାଂଛନା ମଧ୍ୟରେ ଆପଣାର ମୌଳିକତା ଓ ପରାକ୍ରମ ହରାଇ ଓଡ଼ିଆ ଜାତି ପରିଣତ ହୋଇଯାଇଥିଲା ଗୋଟିଏ ଅବସାଦଗ୍ରସ୍ତ, କ୍ଷୟିଷ୍ଣୁ ଓ ହୀନପ୍ରଭ ଜନଗୋଷ୍ଠୀରେ ।

କେଉଁ ବେଳା ଓ ନକ୍ଷତ୍ରର ସଂଯୋଗରେ ଗୋଟିଏ ଶୁକ୍ତିରୁ ମୁକ୍ତାର ଜନ୍ମ ପରି ପରାଧୀନତାର ଦାରୁଣ ଅନ୍ତର୍ଦାହରେ ପୀଡ଼ିତ ଓଡ଼ିଆ ଜାତିର ପ୍ରାଣସ୍ପନ୍ଦନ ଜନ୍ମ ଦେଇଥିଲା ମଧୁସୂଦନଙ୍କ ପରି ଏକ ପ୍ରଚଣ୍ଡ ପ୍ରତିଭାଶାଳୀ ଯୁଗପୁରୁଷଙ୍କୁ ; ଜର୍ମାନୀ ଜାତିର ବିସ୍‌ମାର୍କଙ୍କ ଭଳି ବିଭାଜିତ ଓଡ଼ିଆ ଜାତିର ଏକତ୍ରୀ-କରଣପାଇଁ, ନଅଙ୍କ ଦୁର୍ଭିକ୍ଷର ବୁଭୁକ୍ଷାଗ୍ନିରେ ବିଧ୍ୱସ୍ତ ଏ ଜାତିର ଉଦ୍ଧାରପାଇଁ । ମଧୁସୂଦନଙ୍କର ଆବିର୍ଭାବ କେବଳ ଏକ ଐତିହାସିକ ଆବଶ୍ୟକତା ନଥିଲା, ନିଶ୍ଚିହ୍ନ ହେବାର ଶେଷ ପର୍ଯ୍ୟାୟ ପୂର୍ବରୁ ଏହା ଥିଲା ଅବଦମିତ ଏ ଜାତିର ତିଷ୍ଠି ରହିବାର ଅନ୍ତିମ ପ୍ରଚେଷ୍ଟା, ଯହିଁରେ ସେ ଆଶାତୀତ ଭାବେ ସଫଳ ହେଲା ।

ଓଡ଼ିଆ ଜାତିକୁ ଚରମ ବିପର୍ଯ୍ୟୟରୁ ରକ୍ଷା କରିଥିବା ମଧୁସୂଦନ ନିଜର ମହତ୍ତର ଅବଦାନ ସଂପର୍କରେ ତାଙ୍କର ନିଜସ୍ୱ ମୂଲ୍ୟାୟନ ପ୍ରଦାନ କରିଥିଲେ, ଜାତି ପ୍ରତି ପ୍ରଦତ୍ତ ଅନ୍ତିମ ଅଭିଭାଷଣରେ (୧୨.୨.୧୯୩୩) ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବରେ-

'ମୁଁ ଯେତେବେଳେ ଏ ଆନ୍ଦୋଳନ ଆରମ୍ଭ କଲି, ସେତେବେଳେ ଓଡ଼ିଆଜାତି ବୋଲି କିଛି ନ ଥିଲା । ମୁଁ କେବଳ କୁଡ଼କୁଡ଼ ଅସ୍ଥି ଦେଖୁଥିଲି । ଚାରିଆଡ଼େ କେବଳ ଅସ୍ଥି, ଅସ୍ଥି, ଅସ୍ଥି । ଏହି ଅସ୍ଥି କଂକାଳ ଭିତରେ ପ୍ରାଣ ସଂଚାର କରି ହସ୍ତପଦ ଓ ପେଶୀ ଯୋଗାଇବା ନିମନ୍ତେ ମୋତେ ବହୁତ କାର୍ଯ୍ୟ କରିବାକୁ ପଡ଼ିଛି । ମୋ ଜାତିକୁ ଯୁଦ୍ଧ ସଂଗ୍ରାମରେ ସଜ୍ଜିତ କରିବାପାଇଁ ମତେ ଏକାକୀ କାର୍ଯ୍ୟ କରିବାକୁ ହୋଇଛି । ଏଥିରେ ମୋତେ ଭଗବାନଙ୍କ ବ୍ୟତୀତ ଆଉ କେହି ସାହାଯ୍ୟ କରିନାହାନ୍ତି ।'

ମୃତ୍ୟୁକାଳୀନ ଜମାନବନ୍ଦୀ ପରି କେଉଁ ଦୁରନ୍ତ ସତ୍ୟର ପ୍ରଚଣ୍ଡ ଅଭିବ୍ୟକ୍ତିରେ ଅନ୍ୱିତ ହୋଇଛି ଏହି ଉଦ୍ଧୃତିର ପ୍ରତିଟି ଶବ୍ଦ । ଏହାର ଅନ୍ତରାଳରେ ଯେପରି ସେତେବେଳର ଓଡ଼ିଆମାନଙ୍କ ନୈରାଶ୍ୟ, ଦୈନ୍ୟ, ଅସହାୟବୋଧ ଓ ଆକୁଳ ଆର୍ତ୍ତନାଦ ପ୍ରତିଧ୍ୱନିତ ହୋଇଉଠୁଥିଲା । ଦିବସର ସୂର୍ଯ୍ୟାଲୋକପରି କେଡ଼େ ସ୍ୱଚ୍ଛ ଓ ସତ୍ୟ ଏହି ଉକ୍ତି । ଇଂରାଜୀ ଜାତିର ଅନ୍ତନାଡ଼ୀକୁ ଚିହ୍ନିଥିବା ମଧୁସୂଦନ ୧୯୦୦ ସାଲରେ, ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସମକ୍ଷରେ ଓଡ଼ିଆ ଜାତିର ମର୍ମବେଦନାକୁ ଯେପରି ଉପସ୍ଥାପନ କରିଥିଲେ ତାହାରି ମଧ୍ୟରେ ଗଭୀର ସୁଷୁପ୍ତିରେ ଭୂଇଁ ସାଉଁଟୁଥିବା ଓଡ଼ିଆ ଜାତିର ଇତିହାସ କଡ଼ ଲେଉଟାଇ ଜାଗରିତ ହେଲା ।

ବଡ଼ଲାଟ ଲର୍ଡ଼ କର୍ଜନଙ୍କର ପ୍ରସାରିତ ରିସ୍‌ଲେ ସର୍କୁଲାର ଅଧୀନରେ ୧୯୦୫ ସାଲର ଅକ୍ଟୋବର ମାସରେ ସମ୍ବଲପୁର ସମେତ ପଶ୍ଚିମାଞ୍ଚଳର ଗଡ଼ଜାତ ସମୂହ ମଧ୍ୟପ୍ରଦେଶରୁ ଆଉ ତାହାର ସୀମାନ୍ତରୁ ଗଡ଼ଜାତ ସମୂହ ବିହାରର ଛୋଟନାଗପୁରରୁ ଆସି ଓଡ଼ିଶା ସହିତ ସାମିଲ୍ ହେଲା । ସମସ୍ତ ରାଜନୈତିକ ନେତାଙ୍କର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ମଧୁସୂଦନଙ୍କ ନିର୍ଦ୍ଦେଶ କ୍ରମେ ପାଟନାଠାରେ ସାଇମନ୍ କମିଶନରଙ୍କୁ ସ୍ୱାଗତ (୧୯୨୮) ଜଣାଇବା ପରେ ଦକ୍ଷିଣ ଓଡ଼ିଶାର ମିଶ୍ରଣ ପ୍ରକ୍ରିୟାଟି ତ୍ୱରାନ୍ୱିତ ହୋଇଥିଲା, ଯହିଁରେ ପାରଳା ମହାରାଜାଙ୍କର ସମର୍ଥ ସହଯୋଗ ଦେଶ ମିଶ୍ରଣ ପ୍ରକ୍ରିୟାକୁ ଚୂଡ଼ାନ୍ତ ପର୍ଯ୍ୟାୟରେ ନେଇ ପହଞ୍ଚାଇ ଦେଇଥିଲା ।

ଏହି ମହନୀୟ ଅବଦାନଯୋଗୁଁ ସ୍ଥିତିବିହୀନ ପର୍ଯ୍ୟାୟରୁ ବିସ୍ମୃତ ଓଡ଼ିଆ ଜାତି କେବଳ ନିଜର ସତ୍ତା ଓ ପରିଚୟକୁ ଫେରିପାଇ ନଥିଲା, ଇହୁଦୀ ଜାତି ନିଜର ଜନ୍ମଭୂମି ଇସ୍ରାଏଲ୍‌କୁ ପୁନର୍ବାର ପାଇପାରିଲା ପରି ଅସୁରକ୍ଷାର ବଳୟରୁ ଆପଣାର ଜନ୍ମଦାତ୍ରୀ ଦେଶମାତୃକାର ବକ୍ଷରେ ନିର୍ଭୟରେ ଆପଣାର ପାଦଥାପି ଛିଡ଼ାହେବାର ଦାମ୍ଭିକତାପୂର୍ଣ୍ଣ ଆସ୍ଥାନଟି ପାଇପାରିଲା । ବରାଭୟଦାୟିନୀ ଦେଶମାତୃକାର ଛତ୍ରଛାୟା ତଳେ ଓଡ଼ିଆ ଜାତିକୁ ଅବସ୍ଥାପିତ କରିବାର ଦୁର୍ଲଭ ଅବଦାନ ଲାଗି ମଧୁସୂଦନ ଆଧୁନିକ ଉତ୍କଳର ଜନକ ରୂପେ କେବଳ ମାନ୍ୟତା ପାଇ ନାହାନ୍ତି, ସେ ପରିଣତ ହୋଇଯାଇଛନ୍ତି ଏ ଜାତିର ଗୋତ୍ର ପୁରୁଷରେ ।

ହେଲେ ଏତିକି ମାତ୍ର କଣ ତାଙ୍କର ଅବଦାନ ଥିଲା ? ଅନ୍ୟ କୌଣସି ଜାତିର ସଂସ୍ଥାପକ ପୁରୁଷଙ୍କ ପରି ସେ ଥିଲେ ତାହାଠାରୁ ବହୁ ଉର୍ଦ୍ଧ୍ୱରେ । ବିସ୍ମୃତ ଓଡ଼ିଆ ଜାତିକୁ ପୃଥିବୀ ପୃଷ୍ଠରେ ସଂସ୍ଥାପିତ କରିବାପାଇଁ ଆତ୍ମୋତ୍ସର୍ଗ କରିଦେଇ ସେ ଯେଉଁ ପ୍ରଚେଷ୍ଟା ଜାରି ରଖିଥିଲେ, ସେହି ଅବଦାନର କଳ୍ପନା କରିବା ସଂଭବ ନୁହେଁ । କେବଳ ରାଜନୀତି ଆଉ ଦେଶସେବା ନୁହେଁ ; ନିଜର ଐତିହ୍ୟ ଓ ପରଂପରାକୁ ଭୁଲିଯାଇଥିବା ଏ ଜାତିର ଜୀବନର ପ୍ରତିଟି କ୍ଷେତ୍ରରେ ସେ

ଉଦ୍‌ଭାସିତ ହୋଇଥିଲେ ସୂର୍ଯ୍ୟାଲୋକର ପ୍ରଥମ କିରଣ ପରି । ତେଣୁ ସେ ଥିଲେ ଶତାବ୍ଦୀର ସୂର୍ଯ୍ୟ । ଦେଶସେବାଠାରୁ ଶିଳ୍ପାୟନ, ମନ୍ତ୍ରୀପଦଠାରୁ ଅବୈତନିକ କର୍ମୀ, ଯୁବଶକ୍ତିର ଅଭ୍ୟୁଦୟଠାରୁ ନାରୀ ଜାଗରଣର ଆହ୍ୱାନ, କୃଷକର ସ୍ୱତ୍ୱରକ୍ଷାର ଦୁର୍ନିବାର ସଂଗ୍ରାମଠାରୁ ଭାଷାର ସୁରକ୍ଷା ଓ ଦେଶ ମିଶ୍ରଣ ଅଭିଯାନ, ଅଚ୍ଛୁଚ୍ଚ ଓ ଦଳିତଙ୍କ ମୁକ୍ତିଠାରୁ ବନ୍ୟା ଦୁର୍ଗତ ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ବୁଭୁକ୍ଷୁଙ୍କର ସେବା, କ୍ରୀଡ଼ାଠାରୁ ରଂଗମଂଚ ଓ ସଂଗୀତ ସାଧନା ଆଦି ପ୍ରତିଟି କ୍ଷେତ୍ରରେ ସେ ଥିଲେ ଅନନ୍ୟ, ଅତୁଳନୀୟ ଓ ଅପ୍ରତିଦ୍ୱନ୍ଦ୍ୱୀ ।

ଉତ୍କଳ ଛାତ୍ର ସମ୍ମିଳନୀର ଅଧିବେଶନକୁ ୧୯୨୭ରେ ବାର୍ତ୍ତା ପ୍ରଦାନ କରି ମଧୁସୂଦନ ଲେଖିଥିଲେ,'' ମୁଁ ଏ ଜାତିର ପ୍ରଥମ ଏମ୍.ଏ., ପ୍ରଥମ ଓଡ଼ିଆ ଓକିଲ, ପ୍ରଥମ ଓଡ଼ିଆ ଆଡ୍‌ଭୋକେଟ୍, ୟୁରୋପ ପରିଦର୍ଶନରେ ପ୍ରଥମ ଓଡ଼ିଆ, ପ୍ରାଥମିକ ତଥା କେନ୍ଦ୍ରୀୟ ବ୍ୟବସ୍ଥାପକ ସଭାର ପ୍ରଥମ ଓଡ଼ିଆ ସଦସ୍ୟ, ପ୍ରଥମ ଓଡ଼ିଆ ମଂତ୍ରୀ ଓ ମଂତ୍ରିତ୍ୱ ତ୍ୟାଗ କରିବାରେ ପ୍ରଥମ ଭାରତୀୟ ।'' ହେଲେ ସେ ଥିଲେ ଆହୁରି ଅଗଣିତ କ୍ଷେତ୍ରରେ ପ୍ରଥମ ଓଡ଼ିଆ ।

ସେ ଥିଲେ ସ୍ୱଦେଶୀ ଶିଳ୍ପ ଆନ୍ଦୋଳନର ପ୍ରଥମ ପ୍ରବର୍ତ୍ତକ । ମହାତ୍ମାଗାନ୍ଧୀଙ୍କ ଭାରତୀୟ ରାଜନୀତିରେ ଆବିର୍ଭାବର ବହୁ ପୂର୍ବରୁ ତାଙ୍କର ପରିକଳ୍ପିତ ଆର୍ଥିକ ଓ ସାମାଜିକ ବିକାଶର କାର୍ଯ୍ୟକ୍ରମକୁ ଦେଶର ଜଣେ କ୍ରାନ୍ତିକାରୀ ଅଗ୍ରଦୂତ ରୂପେ ମଧୁସୂଦନ ରୂପାୟିତ କରିଥିଲେ ଓଡ଼ିଶା ମାଟିରେ, ଯେପରିକି ଲବଣ ଶିଳ୍ପ ସଂରକ୍ଷଣ (୧୮୯୬), ସ୍ୱଦେଶୀ ଶିଳ୍ପ ଜାଗରଣ (୧୮୯୬), ଗ୍ରାମ୍ୟଶିଳ୍ପର ବିକାଶ (୧୯୦୫), ଅସ୍ପୃଶ୍ୟତା ନିବାରଣ (୧୯୦୦), ଉନ୍ନତ ଚରଖାର ପ୍ରବର୍ତ୍ତନ ଓ ପ୍ରସାର (୧୯୦୨) ଆଦି କାର୍ଯ୍ୟକ୍ରମ ମାଧ୍ୟମରେ ।

ଏହି ସମସ୍ତ ପରିପ୍ରେକ୍ଷୀରେ ଓଡ଼ିଶାର ଦ୍ୱିତୀୟ ପ୍ରଧାନମଂତ୍ରୀ ବିଶ୍ୱନାଥ ଦାସ ମଧୁସୂଦନଙ୍କ କାଳଜୟୀ ସ୍ମୃତି ପ୍ରତି ଶ୍ରଦ୍ଧାଂଜଳି ପ୍ରଦାନକରି କହିଛନ୍ତି- ସ୍ୱର୍ଗତଃ ମଧୁସୂଦନ ଦାସ ଇତିହାସରେ କାଳକାଳ ଲାଗି ନୂତନ ଓଡ଼ିଶାର ସ୍ରଷ୍ଟା ଓ ଉଦ୍ଧାରକର୍ତ୍ତା ରୂପେ ପରିଚିତ ହେବେ । ତାଙ୍କ ଜୀବନର ଶେଷ ଅର୍ଦ୍ଧ ଶତାବ୍ଦୀରେ ଓଡ଼ିଶାରେ ଯେତେ ଅନୁଷ୍ଠାନ ଗଢ଼ି ଉଠିଥିଲା, ସମସ୍ତ ହିଁ ଥିଲା ତାଙ୍କର ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରଚେଷ୍ଟାର ଫଳ, ଯାହା ଓଡ଼ିଶାର ସମୃଦ୍ଧି ଓ ମର୍ଯ୍ୟାଦା ବୃଦ୍ଧିଲାଗି ଅଭିପ୍ରେତ ଥିଲା ।

ମଧୁସୂଦନ ଯେଉଁ ଅନୁଷ୍ଠାନଗୁଡିକର ପ୍ରତିଷ୍ଠାତା ଥିଲେ, ତାହାର ସୁଦୀର୍ଘ ତାଲିକାରେ ପ୍ରଥମ ହେଉଛି ଉତ୍କଳ ସମ୍ମିଳନୀ (୧୯୦୩) । ଅନ୍ୟଗୁଡିକ ହେଲେଃ ଓଡ଼ିଆ ସାହିତ୍ୟ ମଂଚ, ଉତ୍କଳ ସାହିତ୍ୟ ସମାଜ (୧୯୦୩), ନିଖିଳ ଉତ୍କଳ ଛାତ୍ର ସଂଗଠନ (୧୯୦୩), କୃଷକମାନଙ୍କ ସୁରକ୍ଷାର ପ୍ରଥମ ଅନୁଷ୍ଠାନ ପ୍ରଜାପରିଷଦ (୧୯୦୯ଃ ସଂପାଦକ - ଉତ୍କଳମଣି ଗୋପବଂଧୁ), ଉତ୍କଳ ଟ୍ୟାନେରି (୧୯୦୫), ତାଳଗୁଡ଼ ସଂସ୍ଥା (୧୯୦୪), ନାରୀ ଜାଗରଣପାଇଁ ବାଳିକା ଉଚ୍ଚ ବିଦ୍ୟାଳୟ (୧୯୦୮), ତନ୍ତଶିଳ୍ପ ପ୍ରଶିକ୍ଷଣ କେନ୍ଦ୍ର (୧୯୦୫), ତାରକସି ଶିଳ୍ପର ଉନ୍ନୟନପାଇଁ ଓଡ଼ିଶା ଆର୍ଟୱାରସ୍ ପ୍ରତିଷ୍ଠାନ (୧୮୯୭), ପ୍ରାଦେଶିକ ସ୍ତରରେ କ୍ରୀଡ଼ାର ଉନ୍ନୟନ ଓ ସଂଗଠନ ପାଇଁ ଓଡ଼ିଶା ସ୍ପୋଟର୍ସ ଆସୋସିଏସନ୍ (୧୯୦୪), କଟକର ପ୍ରଥମ ସ୍ଥାୟୀ ରଂଗମଂଚ (୧୮୮୭), ବିହାରୀବାଗରେ ପ୍ରଥମ ଶାସ୍ତ୍ରୀୟ ଓଡ଼ିଶୀ ସଂଗୀତ ଆସର (୧୮୮୨), ପ୍ରସିଦ୍ଧ ସଂଗୀତଜ୍ଞ ଖାନୁ ମିଆଁ ଆଉ ଗୋକୁଳ ବିହାରୀ ଶ୍ରୀଚନ୍ଦନଙ୍କ ସହଯୋଗରେ ଜାତୀୟ ଉନ୍ମେଷର ବାର୍ତ୍ତାବହ ଅଗଣିତ

ଅନୁଷ୍ଠାନ । ହେଲେ ସେହି ଅନୁଷ୍ଠାନଗୁଡିକର ଉତ୍ତରପିଢ଼ି, ଯେଉଁ ଭଳି ଭାବରେ ମଧୁସୂଦନଙ୍କର ନାମ ବିସ୍ମୃତ ହୋଇଯାଇଛନ୍ତି, ତାହା ଚିନ୍ତାକଲେ ଗଭୀର ଅବସାଦରେ ପଡ଼ିବାକୁ ହୁଏ । ପ୍ରକୃତରେ ମଧୁସୂଦନ ଥିଲେ ଓଡ଼ିଶାର ପ୍ରତିଟି କ୍ଷେତ୍ରରେ ଆଦ୍ୟ ପୁରୁଷ, ଯାହାର ମର୍ମବାଣୀ ନେହେରୁଙ୍କର ପ୍ରଦତ୍ତ ଶ୍ରଦ୍ଧାଂଜଳିରେ ଅତ୍ୟନ୍ତ ମାର୍ମିକ ଭାବରେ ପ୍ରକାଶିତ ହୋଇଛି- 'ମଧୁସୂଦନ କେବଳ ଓଡ଼ିଶାର ବିଶାଳ ବ୍ୟକ୍ତିତ୍ୱ ନଥିଲେ, ଥିଲେ ସମଗ୍ର ଭାରତବର୍ଷର । ହେଲେ ଯେଉଁଠାରେ ଓଡ଼ିଶାର କୌଣସି ସମସ୍ୟା ସଂପର୍କରେ ଆଲୋଚନା ହୁଏ ସେଠାକୁ ମଧୁସୂଦନଙ୍କ ନାମ ସ୍ୱତଃ ଚାଲିଆସେ ।'

ଜାତିପାଇଁ ଅକାତରେ ଅର୍ଥ ବ୍ୟୟକରି ଦେବାଳିଆ ହେବା ପରେ ମଧୁସୂଦନଙ୍କର ବାସଭବନଟି ନିଲାମରେ ବିକ୍ରିହେବାପାଇଁ ଆଉ ମାତ୍ର ଦୁଇ ଦିନ ବାକି ଥାଏ । ଦୁର୍ଭାଗ୍ୟ ଆଉ ଅବସାଦର କରାଳ ଛାୟା ତାଙ୍କୁ ଘେରି ରଖିଥାଏ । ହେଲେ ଜୀବନର ଦାରୁଣ ବିପର୍ଯ୍ୟୟର ମୁହୂର୍ତ୍ତରେ ସେ ଥିଲେ ଅତି ଅଦ୍‌ଭୂତ ଭାବେ ସ୍ଥିତପ୍ରଜ୍ଞ ଓ ନିରୁଦ୍‌ବିଗ୍ନ । ଏହି ସମୟରେ ଭାରତୀୟ ଜାତୀୟତାର ଜନକ ଓ ତାଙ୍କର ମିତ୍ର ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ବିୟୋଗବାର୍ତ୍ତା ପହଂଚିଲା । ସେ ଟିକିଏ ମର୍ମାହତ ହେଲେ । ସେଦିନ ସଂଧ୍ୟାରେ ମଧୁସୂଦନଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଶୋକସଭାରେ ସୁଦୀର୍ଘ ପ୍ରସ୍ତାବଟିଏ ଗୃହୀତ ହୋଇ ଶୋକସନ୍ତପ୍ତ ପରିବାରବର୍ଗଙ୍କ ପାଖକୁ ତାହା ପଠାଇବାପାଇଁ ସ୍ଥିର କରାଗଲା ଟେଲିଗ୍ରାମ ଜରିଆରେ । ଏହା ପରର ଘଟଣା, ମଧୁସୂଦନଙ୍କଦ୍ୱାରା ପ୍ରତିପାଳିତ ମେଦିନୀପୁରର ପ୍ରତିଷ୍ଠିତ ବାରିଷ୍ଟର ଚନ୍ଦ୍ରମୋହନ ହାଜରାଙ୍କ ସ୍ମୃତିଚାରଣରେ ନିମ୍ନ ଭାବରେ ବର୍ଣ୍ଣିତ -

'ପରଦିନ ସକାଳେ ମୁଁ ମିଃ ଦାସଙ୍କ ପାଖରେ ବସିଥାଏ । ସେହି ସୁଦୀର୍ଘ ଶୋକ ପ୍ରସ୍ତାବଟି ଆସି ପହଁଚିଲା କପର୍ଦ୍ଦକଶୂନ୍ୟ ମିଃ ଦାସଙ୍କ ପାଖରେ । ଆଉ ଏହା ସହିତ ଲିଖିତ ଅନୁରୋଧ କରାଯାଇଥିଲା, ସେହି ଶୋକ ପ୍ରସ୍ତାବଟି ଟେଲିଗ୍ରାମ ଜରିଆରେ ପଠାଇବାପାଇଁ । ମୁଁ ଏହା ଦେଖି ହତଚକିତ ହୋଇଗଲି । ଆଉ କ୍ଷଣେ ମାତ୍ର ନୀରବ ରହି ନପାରି ମିଃ ଦାସଙ୍କୁ ପଚାରିଲି, ''ହେ ଦାଦା ! ଏହା କଣ ବଂଗଳାରେ ସଂଭବ ହୋଇଥାନ୍ତା ? ଯେତେବେଳେ ଦେଶବାସୀ ଭଲଭାବରେ ଜାଣନ୍ତି ଯେ, ମାତ୍ର ଦିନକ ପରେ ତାଙ୍କର ବାସଭବନଟି ନିଲାମ ହୋଇଯିବ ଓ ନିଜର ପିନ୍ଧିଥିବା ଲୁଗା ବ୍ୟତୀତ ଆଉ କିଛି ରହିବ ନାହିଁ...' । ପ୍ରତ୍ୟୁତ୍ତରରେ ମଧୁସୂଦନ କହିଲେ, 'ଚନ୍ଦ୍ରମୋହନ !, ବଂଗ ପ୍ରଦେଶର ନୂତନ ଅଭ୍ୟୁଦୟର ତୃତୀୟପୁରୁଷମାନେ ଅଧିଷ୍ଠିତ ଅଛନ୍ତି । ମାତ୍ର ଓଡ଼ିଆ ଜାଗରଣର ମୁଁ ହେଉଛି ପ୍ରଥମ ପୁରୁଷ ଓ ଉଦ୍ୟୋକ୍ତା । ସମଗ୍ର ଓଡ଼ିଆ ଜାତିର ଆଶା ଓ ଆକାଙ୍‌କ୍ଷା ମୋ ଉପରେ ହିଁ ନ୍ୟସ୍ତ । ଏହାକୁ ମୋର ସମସ୍ତ ସ୍ଥିତି ମଧ୍ୟରେ ସମାହିତ କରିବାକୁ ପଡ଼ିବ ।'

ମଧୁସୂଦନଙ୍କର ଦୃଢ଼କଣ୍ଠରେ ଯେପରି ପ୍ରତିଧ୍ୱନିତ ହେଉଥିଲା ଉଦ୍ଦାମ ସ୍ୱାଭିମାନର ବଜ୍ର ନିର୍ଘୋଷ । ଓଡ଼ିଆ ଜାତିର ସାମାନ୍ୟତମ ଲାଂଛନା ତାଙ୍କପାଇଁ ଥିଲା ଶଲ୍ୟାଘାତ ସଦୃଶ ଓ ଏହାହିଁ ଥିଲା ତାଙ୍କ ଅକଳ୍ପନୀୟ ଚେତନାର ମହିମାମଣ୍ଡିତ ପରିପ୍ରକାଶ ।



# ଓଡ଼ିଶାର ସାଂସ୍କୃତିକ ଜାଗରଣରେ ଜାତିପ୍ରାଣ ମଧୁସୂଦନ

ଓଡ଼ିଶା ପ୍ରଦେଶର ପ୍ରାଣ ପ୍ରତିଷ୍ଠାତା ଓ ଜନକ, ଜାତୀୟ ଗୌରବ ମଧୁସୂଦନଙ୍କର ଜୀବନବ୍ୟାପୀ ନିରବଚ୍ଛିନ୍ନ ସଂଗ୍ରାମର ଫଳଶ୍ରୁତି ହେଉଛି- ଆଧୁନିକ ଓଡ଼ିଶା ପ୍ରଦେଶ । ତାଙ୍କ ଆବିର୍ଭାବ ହୋଇଥିଲା ଓଡ଼ିଶାର ଅତ୍ୟନ୍ତ ସଂକଟପୂର୍ଣ୍ଣ ପରିସ୍ଥିତିରେ, ଯେତେବେଳେ ବିଦେଶୀ ଶାସନର ଗୋଟିଏ ଅବିବେକୀ କଳମଗାରରେ ଓଡ଼ିଶାର ସଂସ୍କୃତି ଓ ଐତିହ୍ୟ ଲୋପ ପାଇଯାଇଥାଆନ୍ତା । ନଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସରେ ମୁମୂର୍ଷୁ ଓଡ଼ିଆ ଜାତି ମୃତ୍ୟୁ ସହିତ ସଂଗ୍ରାମ କରୁଥାଏ, ତାର ସଂସ୍କୃତି ଓ ସାହିତ୍ୟ ଅବଲୟପ୍ରାପ୍ତ ହେବାକୁ ବସିଥାଏ । ସେହିଭଳି ଏକ ସମୟରେ ୧୮୮୧ ସାଲରେ ମଧୁସୂଦନ ଓଡ଼ିଶାକୁ ଫେରିଆସିଥିଲେ । ସେତେବେଳକୁ ଓଡ଼ିଆ ପ୍ରାଣ ରେଭେନ୍‌ସା ଓ ବିମସ୍ ସାହେବ ଓଡ଼ିଶାରୁ ବିଦାୟ ନେଇ ସାରିଥାନ୍ତି । ଓଡ଼ିଶାର ସ୍ୱାର୍ଥକୁ ଶାସନର ପରିଧି ମଧ୍ୟରେ ରକ୍ଷା କରୁଥିବା ଆଦିନେତା ବିଚିତ୍ରାନନ୍ଦଙ୍କର ମୃତ୍ୟୁ ଘଟିଥାଏ । ଓଡ଼ିଶା ହୋଇଯାଇଥାଏ ନିରାଶ୍ରୟ, ଅଭିଭାବକଶୂନ୍ୟ । ଏତିକିବେଳେ ମଧ୍ୟପ୍ରଦେଶର ଚିଫ୍ କମିଶନର ଉଡ୍‌ବର୍ଣ୍ଣଙ୍କ ପରି ଜଣେ ସ୍ୱେଚ୍ଛାଚାରୀ ପ୍ରଶାସକଙ୍କଦ୍ୱାରା ସମ୍ବଲପୁର ସମେତ ମଧ୍ୟପ୍ରଦେଶରୁ ଓଡ଼ିଆ ଭାଷାର ବିଲୋପ ସାଧିତ ହୋଇଥାଏ । ଓଡ଼ିଶା ଡିଭିଜନର କମିଶନର ଯଦି ବଂଗଳା ଗଭର୍ଣ୍ଣରଙ୍କ ସ୍ୱୀକୃତି ଆଣି ଓଡ଼ିଆ ପରିବର୍ତ୍ତେ ବଂଗଳାଭାଷା କୋର୍ଟ କଚେରି ତଥା ଶିକ୍ଷାୟତନରେ ପ୍ରଚଳନ ଲାଗି ସେତେବେଳେ ନିର୍ଦ୍ଦେଶ ଦେଇଥାନ୍ତେ, ଏତେବେଳକୁ ଓଡ଼ିଆ ସଂସ୍କୃତିର ମୂଳପିଣ୍ଡ ରୂପେ ପରିଚିତ ଥିବା ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲା ବଂଗଳାଭାଷୀ ଅଂଚଳରେ ପରିଣତ ହୋଇ ଆପଣାର ସ୍ଥିତି ଓ ସତ୍ତାକୁ ସଂପୂର୍ଣ୍ଣରୂପେ ହରାଇ ବସିଥାନ୍ତା । ବିହାରୀମାନଙ୍କର ସ୍ୱେଚ୍ଛାଚାରିତାରେ ମୈଥିଳୀ ଭଳି ଉନ୍ନତ ସଂସ୍କୃତିସଂପନ୍ନ ଭାଷା ନିଶ୍ଚିହ୍ନ ହେଲା ପରି ଓଡ଼ିଆ ଭାଷା ଅବଲୁପ୍ତ ହୋଇଯାଇଥାନ୍ତା । ମାତ୍ର ଓଡିଶା ଫେରିବା ପରେ ୧୮୮୧ ପରଠାରୁ ଦୀର୍ଘ ପଚାଶ ବର୍ଷ ଧରି ମଧୁସୂଦନ ଥିଲେ ଓଡ଼ିଶାର ରକ୍ଷାକବଚ ।

ମଧୁସୂଦନ ଓଡିଶା ଫେରିବା ବେଳକୁ ଓଡ଼ିଶାର ସାଂସ୍କୃତିକ, ଅର୍ଥନୈତିକ ତଥା ରାଜନୈତିକ କ୍ଷେତ୍ରରେ ବିରାଟ ଶୂନ୍ୟତା ହିଁ ରାଜୁତି କରୁଥାଏ । ସବୁ କ୍ଷେତ୍ରରେ ବହିରାଗତ ଜମିଦାର ଓ କର୍ମଚାରୀ ତଥା ଦେଶୀୟ ବଂଗାଳୀମାନଙ୍କର ରାଜତ୍ୱ । ଭାଇ ବୋଲି ଡାକ ଦେଲେ ପ୍ରତି ଉତ୍ତର ଦେବାପାଇଁ ଜଣେ ମାତ୍ର ଓଡ଼ିଆ ନଥିଲେ । ସବୁଆଡ଼େ ଖାଁ ଖାଁ ନୀରବତା ଓ ଶୂନ୍ୟତା । ତାହାହିଁ ପ୍ରତିଧ୍ୱନିତ ହୋଇଥିଲା ମଧୁସୂଦନଙ୍କ କବିତାରେ-

"ମାଆ ମାଆ ବୋଲି　　　କେତେମୁଁ ଖୋଜିଲି
ମାଆକୁ ପାଇଲି ନାହିଁ
ଭାଇ ଭାଇ ବୋଲି　　　କେତେ ମୁଁ ଡାକିଲି
ନଦେଲେ ଉତ୍ତର କେହି ।"

ଗଭୀର ପ୍ରାଣର ଆକୂତିରେ ଉତ୍ସରିତ ହୋଇଛି ଏହି କେତୋଟି ପଦ ।

୧୮୮୨-୮୩ ସାଲ ବେଳକୁ ଓଡ଼ିଶାର ପାରମ୍ପରିକ ତଥା ଶାସ୍ତ୍ରୀୟ ସଂଗୀତର ଧାରା ସଂପୂର୍ଣ୍ଣ ଭାବେ ବିପର୍ଯ୍ୟସ୍ତ । ପୁରୀ ତଥା କେତୋଟି ରାଜଦରବାରକୁ ଛାଡ଼ିଦେଲେ ଓଡ଼ିଶାରେ ସଂଗୀତର ଧାରା ଅଶାଳୀନତାର ପରିଧି ମଧ୍ୟକୁ ଖସି ପଡ଼ିଥିଲା । ଏହାର ପୁନରୁଦ୍ଧାର ପାଇଁ ବ୍ରତୀ ହେଲେ ମଧୁସୂଦନ । ସେ ଆବାଲ୍ୟରୁ ସଂଗୀତ ପ୍ରିୟ ଥିଲେ । କଲିକତାରେ ଷୋହଳ ବର୍ଷ ରହଣି ମଧ୍ୟରେ ସେ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଂଗୀତ ତଥା ପାଶ୍ଚାତ୍ୟ ସଂଗୀତ ସହିତ ନିବିଡ଼ ଭାବେ ପରିଚିତ ଥିଲେ । କଟକ ଆସିବା ପରେ, କଟକର ପ୍ରବୀଣ ସଂଗୀତ ଓସ୍ତାଦ୍ ଖାନୁ ମିଆଁଙ୍କୁ ଠାବ କରିଥିଲେ । ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ଧାରାରେ ଆଧ୍ୟାତ୍ମିକ ସଂଗୀତ ଗାନରେ ପ୍ରବୀଣ ଥିଲେ ଖାନୁ ମିଆଁ । ତାଙ୍କ ମୁହଁରେ ଫୁଟି ଉଠୁଥିଲା ସାତ୍ତ୍ୱିକତାର ଉଜ୍ଜ୍ୱଳ ଆଭା ଓ ପ୍ରାଣରୁ ଉତ୍ସରିତ ହେଉଥିଲା ଆଧ୍ୟାତ୍ମିକ ସଂଗୀତର ସୁରଝଂକାର । ଏହା ଛଡ଼ା କେନ୍ଦ୍ରାପଡ଼ାର ପ୍ରସିଦ୍ଧ ଜମିଦାର ନରେନ୍ଦ୍ର ବଂଶର ପ୍ରଖ୍ୟାତ ଗାୟକ ଗୋକୁଳ ବିହାରୀ ଶ୍ରୀ ଚନ୍ଦନଙ୍କୁ ମଧ୍ୟ ସେ ମନୋନୀତ କରିଥିଲେ । ଏହିଭଳି ଓଡ଼ିଶାର ବିଖ୍ୟାତ ଗାୟକଙ୍କ ସହିତ କଲିକତାର ପ୍ରସିଦ୍ଧ ଗାୟକମାନଙ୍କୁ ଆଣି ମଧୁସୂଦନ ନିଜ ଖର୍ଚ୍ଚରେ ସଂଗୀତ ସମ୍ମିଳନୀମାନ ଆୟୋଜନ କରୁଥିଲେ । ତାହା କ୍ରମେ ଓଡ଼ିଶାର ସଂଗୀତର ଧାରାକୁ ମାର୍ଜିତ ତଥା ଶାସ୍ତ୍ରୀୟ ରୂପ ପ୍ରଦାନ କରିବାରେ ସହାୟକ ହୋଇଥିଲା ।

୧୮୮୧ରେ ଆସିବା ପରେ ମଧୁସୂଦନ ଦୀର୍ଘ ବାରବର୍ଷ ଚାନ୍ଦିନୀଚୌକ ସନ୍ନିକଟ ବିହାରୀବାଗରେ ବାସ କରୁଥିଲେ । ତାଙ୍କର ବାସଭବନରେ ଗଚ୍ଛିତ ଥିଲା ଭାରତୀୟ ତଥା ୟୁରୋପୀୟ ସମସ୍ତ ସଙ୍ଗୀତ-ବାଦ୍ୟଯନ୍ତ୍ର । ପ୍ରତି ଶନିବାର ସଂଧ୍ୟାରେ ତାଙ୍କ ବାସଭବନରେ ରାତ୍ରିକାଳୀନ ସଂଗୀତ ଆସର ବସୁଥିଲା ଓ ପ୍ରଖ୍ୟାତ ସଂଗୀତଜ୍ଞମାନେ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସଂଗୀତ ପରିବେଷଣ କରୁଥିଲେ । ଏହାପରେ କାଶ୍ମୀର ବ୍ରାହ୍ମଣମାନଙ୍କଦ୍ୱାରା ସ୍ୱତନ୍ତ୍ରଭାବେ ପ୍ରସ୍ତୁତ ସୁସ୍ୱାଦୁ ଭୋଜନ ଅତିଥିମାନଙ୍କୁ ପରଷା ଯାଉଥିଲା ।

ଏହା ଛଡ଼ା ସାମସନ ରାଉତଙ୍କୁ ପ୍ରୋତ୍ସାହିତ କରି ମଧୁସୂଦନ ପ୍ରଥମେ ସୃଷ୍ଟି କରିଥିଲେ, ୟୁରୋପୀୟ ଐକ୍ୟତାନିକ ବ୍ୟାଣ୍ଡ୍ ପାର୍ଟି । ଏହାଥିଲା ଓଡ଼ିଆମାନଙ୍କର ନିଜସ୍ୱ ଉଦ୍ୟମ । ମଧୁସୂଦନଙ୍କ ଆର୍ଥିକ ଅନୁଦାନରେ ଏହା ଗଢ଼ି ଉଠିଥିଲା ।

ଓଡ଼ିଶୀ, ଶାସ୍ତ୍ରୀୟ ତଥା ପାଶ୍ଚାତ୍ୟ ଐକ୍ୟତାନିକ ସଂଗୀତ କ୍ଷେତ୍ରରେ ଅସାଧାରଣ ପ୍ରବେଶ ଥିଲା ମଧୁସୂଦନଙ୍କର । ତେଣୁ ୧୯୦୩ର ଉତ୍କଳ ସମ୍ମିଳନୀ ଅଧିବେଶନରେ ଗାନ କରାଯାଉଥିବା ପ୍ରତିଟି ସଂଗୀତ ଚିହ୍ନିତ ଓ ନିର୍ବାଚିତ ହେବା ସହିତ ସଂଗୀତ ମୂର୍ଚ୍ଛନାଗୁଡ଼ିକ ମଧୁସୂଦନଙ୍କର ଅନୁମୋଦନ ଲାଭ ପରେ ହିଁ ଗାନ କରାଯାଉଥିଲା । ମୁଖ୍ୟ ଆବାହନୀ ସଂଗୀତ ଗାନ କରୁଥିଲେ, ଉସ୍ତାଦ ଖାନୁମିଆଁ, ଯାହାଙ୍କର ସ୍ୱରର ମୂର୍ଚ୍ଛନାରେ ଅଭିମନ୍ତ୍ରିତ ହେଉଥିଲା ଦେଶଭକ୍ତିର ପ୍ରବଳ ଉଦ୍ଦୀପନା ।

**ଉତ୍କଳୀୟ ରଙ୍ଗଭୂମିର ପ୍ରଖର ଜ୍ୟୋତି**

ସେତେବେଳେ ରଙ୍ଗମଂଚର ନାମ ଥିଲା ରଂଗଭୂମି । ଏହି ରଂଗମଂଚସବୁ ନାଟକର ଶୈଳୀରେ ପ୍ରଥମେ କଲିକତାରେ ଆରମ୍ଭ ହୋଇଥିଲା । କଲିକତାରେ ପ୍ରଥମ ରଙ୍ଗମଞ୍ଚ 'ନ୍ୟୁ ଥିଏଟର' ସ୍ଥାପିତ ହୁଏ ୧୭୯୫ ସାଲରେ, ଆଉ 'ଚୌରଙ୍ଗୀ ଥିଏଟର' ୧୮୦୪ ସାଲରେ, ଯହିଁରେ ଇଂରାଜୀ ନାଟକ ଅଥବା ଇଂରାଜୀ ନାଟକର ଅନୁବାଦ, ବଂଗୀୟ ଭାଷାରେ ରଚିତନାଟକ ଅଥବା ଇଂରାଜୀ ନାଟକସବୁ ଅଭିନୀତ ହେଉଥିଲା । କ୍ରମେ ରଚିତ ହୁଏ ଉଚ୍ଚ ପରଂପରାର ବଂଗୀୟ ନାଟକସବୁ । ମନମୋହନ ବସୁଙ୍କର ନାଟକ ସମୂହ- ଯଥାକ୍ରମେ 'ରାମାଭିଷେକ' ଓ 'ସତୀ' ନାଟକ । ମଧୁସୂଦନ ଦତ୍ତଙ୍କ 'ଏକି ବଲି ସଭ୍ୟତା', ଜ୍ୟୋତୀନ୍ଦ୍ରନାଥ ମିତ୍ରଙ୍କର 'ଅଶ୍ରୁମତୀ' ଗିରୀଶ ଚନ୍ଦ୍ର ଘୋଷଙ୍କର 'ଦକ୍ଷଯଜ୍ଞ', 'ଚୈତନ୍ୟଲୀଳା', 'ବିଲ୍ୱମଂଗଳ' ଆଦି ବହୁ ନାଟକ । ଏହି ଗିରୀଶ ଚନ୍ଦ୍ର ପରେ ରାମକୃଷ୍ଣ ପରମହଂସଙ୍କ କୃପାପାର୍ଥୀ ହୋଇଥିଲେ ।

ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଢାକାରେ ଷ୍ଟାର ଥିଏଟର, କଲିକତାରେ ଗିରୀଶ ଘୋଷଙ୍କର ରଂଗଭୂମି ଆଉ ନ୍ୟାସନାଲ୍ ଥିଏଟର ସବୁ ଜନପ୍ରିୟ ଥିଲା, ଯେଉଁଠାରେ ନାରୀ ଚରିତ୍ରର ଭୂମିକାରେ ଅବତୀର୍ଣ୍ଣ ହେଉଥିଲେ ରୂପଜୀବୀଗଣ । କ୍ରମେ ବଳିଷ୍ଠ ବଙ୍ଗୀୟ ନାଟକର ପରମ୍ପରା ସୃଷ୍ଟିହେଲା ଆଉ ମଂଚ ପରିବେଷଣର ଶୈଳୀ ଉନ୍ନତ ହେଲା । ବଂଗୀୟ ନାଟ୍ୟ ସାହିତ୍ୟ ସମୃଦ୍ଧ ହେଲା, ନାଟକ ସବୁ ପୁସ୍ତକ ଆକାରରେ ମୁଦ୍ରିତ ହେଲା । କଲିକତା ଛଡ଼ା ବମ୍ବେରେ ମଧ୍ୟ ଗଢ଼ି ଉଠିଲା ହିନ୍ଦୀ ତଥା ମରାଠୀ ନାଟକର ଉଚ୍ଚ ପରଂପରା ।

ଉନବିଂଶ ଶତାବ୍ଦୀର ବଙ୍ଗ ପ୍ରେସିଡେନ୍‌ସିରେ ଓଡ଼ିଶା ଡିଭିଜନ, ଉପାନ୍ତ ଅଂଚଳର ମାତ୍ର ଏକ ଭୂମିଖଣ୍ଡ, ଯାହା ଗମନାଗମନ ଦୃଷ୍ଟିରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ଥିଲା । ଉଭୟ ଅଂଚଳକୁ ସଂଯୁକ୍ତ କରୁଥିବା ପଥଟି ଦସ୍ୟୁସଙ୍କୁଳ ଥିଲା । ତେଣୁ କୁହାଯାଉଥିଲା ।

'ହଳଦୀ ମଖାମଖି, ନରଣଗଡ଼ ପାରି ହେଲେ କୁଟୁମ୍ବ ଦେଖାଦେଖି ।'

୧୮୬୯ ସାଲରୁ ଅବସ୍ଥା ବଦଳିଲା । ସପ୍ତାହକୁ ଅନ୍ତତଃ ଗୋଟିଏ ଜାହାଜ ଚାନ୍ଦବାଲିଠାରୁ କଲିକତା

ଯାତ୍ରା ଆରମ୍ଭ କଲା । କ୍ରମେ ପ୍ରାୟ ୧୮୭୨ ବେଳକୁ ଯୋବ୍ରା ଆନିକଟ ଦେଇ କେନ୍ଦ୍ରାପଡ଼ା ଓ ପଟ୍ଟାମୁଣ୍ଡେଇ, କେନାଲ ସହିତ ସଂଯୁକ୍ତ ହେଲା । ଏହାପରେ କଟକରୁ ଚାନ୍ଦବାଲି ପର୍ଯ୍ୟନ୍ତ ରୀତିମତ ଲଞ୍ଚ ଚଳାଚଳ କଲା । ଫଳରେ କଲିକତା କଟକର ନିକଟବର୍ତ୍ତୀ ହେଲା, ପ୍ରାୟ ୪୮ରୁ ୭୨ ଘଣ୍ଟା ମଧ୍ୟରେ ଲଞ୍ଚ ଓ ଜାହାଜରେ କଲିକତା ଯିବା ସମ୍ଭବ ହେଲା। ତେଣିକି କଲିକତା ଯାତ୍ରା ଗୋଟିଏ କୁଦରୁ ଅନ୍ୟକୁଦକୁ ଲମ୍ଫ ଦେଲା ପରି ସହଜସାଧ୍ୟ ହୋଇଗଲା ।

ଫଳରେ କଲିକତାରୁ ନୂଆ ସଂସ୍କୃତିର ଧାରା ଅବାରିତ ଭାବରେ ବହିବାକୁ ଲାଗିଲା । ହେଲେ ଏହି ସଂସ୍କୃତିର ଧାରାକୁ ଗ୍ରହଣ କରିବାର ଅଗ୍ରଭାଗରେ ଥିଲେ ଏ ଦେଶର ବଙ୍ଗୀୟ ଗୋଷ୍ଠୀ । ସେ ସମୟର ପରିସ୍ଥିତି ବିଷୟରେ ସମ୍ୟକ ଧାରଣା କରିବାପାଇଁ ଅଗ୍ରଗଣ୍ୟ ସମ୍ପାଦକ ଗୌରୀଶଙ୍କର ରାୟଙ୍କର ଚିନ୍ତାଧାରା ସହିତ ପରିଚିତ ହେବା ଉଚିତ । ଗୌରୀଶଙ୍କର ରାୟ, ସମକାଳୀନ ଓଡ଼ିଶାର ଶିକ୍ଷିତ ଶ୍ରେଣୀକୁ ତିନି ଭାଗରେ ବିଭକ୍ତ କରିଥିଲେ -

(୧) ପ୍ରାଚୀନ ଓଡ଼ିଆ ଗୋଷ୍ଠୀ

(୨) ବଂଗୀୟ ଗୋଷ୍ଠୀ- ଏମାନେ ଚୈତନ୍ୟଙ୍କ ସମୟରୁ ଅଥବା ପୂର୍ବରୁ କିମ୍ବା ମୁସଲମାନ ଶାସନ ଆରମ୍ଭରୁ ଓଡ଼ିଶାରେ ବସବାସ କରି ଓଡ଼ିଶାର ସ୍ୱାର୍ଥ ସହିତ ନିଜକୁ ଜଡ଼ିତ କରି ପାରିଥିଲେ । ଅନେକ କ୍ଷେତ୍ରରେ ସେମାନେ ଓଡ଼ିଆ ଭାଷା ଓ ସ୍ୱାର୍ଥର ସଂରକ୍ଷକ ଥିଲେ ମଧ୍ୟ ଭାଷା ଓ ସଂସ୍କୃତି ଦୃଷ୍ଟିରୁ ସେମାନେ ଥିଲେ ବଂଗୀୟ । ସେମାନେ ବଂଗଳା ସାହିତ୍ୟରେ ପାରଦର୍ଶୀ ଥିଲେ ।

(୩) ବହିରାଗତ ବଂଗୀୟ ଗୋଷ୍ଠୀ

ଏହିମାନେ ବ୍ରିଟିଶ ଶାସନ ପରେ, ନିଜର ସ୍ୱାର୍ଥ ସିଦ୍ଧି ପାଇଁ ଓଡ଼ିଶାକୁ ଆସିଥିଲେ ।ଏମାନଙ୍କ ମଧ୍ୟରେ ଥିଲେ ସୂର୍ଯ୍ୟାସ୍ତ ଆଇନ୍ ବଳରେ ଆସିଥିବା ଜମିଦାରି ଗୋଷ୍ଠୀ ତଥା ସେମାନଙ୍କର ଅନୁଗତ କର୍ମଚାରୀବୃନ୍ଦ, ସରକାରୀ କର୍ମଚାରୀ,କିଛି ଆଇନଜୀବୀ, ବ୍ୟବସାୟୀ । ଉନବିଂଶ ଶତାବ୍ଦୀର ଶେଷପାଦ ପର୍ଯ୍ୟନ୍ତ ହରିବଲ୍ଲଭ ବସୁଙ୍କୁ ଛାଡ଼ିଦେଲେ କଟକର ସମସ୍ତ ଓକିଲ ଗୋଷ୍ଠୀ ବଙ୍ଗଳାରୁ ବୃତ୍ତିର ସନ୍ଧାନରେ ଓଡ଼ିଶା ଆସିଥିଲେ ।

୧୮୭୭-୭୮ ବେଳକୁ କଟକ କଲିକତାର ନିକଟବର୍ତ୍ତୀ ହେଲା । ବଂଗୀୟ ନାଟ୍ୟ ସାହିତ୍ୟ ବଂଗୀୟ ଗୋଷ୍ଠୀଙ୍କ ନିକଟରେ ଆସି ପହଞ୍ଚିଲା । ନାଟକ ପ୍ରଦର୍ଶନର ଚାକ୍ଷୁସ ବିବରଣୀ ମଧ୍ୟ ବଂଗୀୟ ପତ୍ରପତ୍ରିକା ମାଧ୍ୟମରେ ପହଞ୍ଚିଲା । ତେଣୁ ନାଟକ ମଞ୍ଚସ୍ଥ କରିବାପାଇଁ ନୂତନ ଉନ୍ମାଦନା ସୃଷ୍ଟିହେଲା ବଂଗୀୟ ଗୋଷ୍ଠୀଙ୍କ ମଧ୍ୟରେ, ବିଶେଷତଃ ଯେଉଁମାନେ ମାହାଙ୍ଗା, ଦୀକ୍ଷିତପଡ଼ା, ଅସୁରେଶ୍ୱର, ରଘୁନାଥପୁର, ଗୋପାଳପୁର ଆଦି ଗ୍ରାମରେ ବାସ କରୁଥିଲେ । ଏମାନେ ଶିକ୍ଷା-ଦୀକ୍ଷା କ୍ଷେତ୍ରରେ ଆଗୁଆ ଥିଲେ ଓ ଅନେକଙ୍କର କଟକ ସହରରେ ଅଲଗା ବାସଗୃହ ଥିଲା ।

କଟକ ସହରରେ ସର୍ବପ୍ରଥମେ ବିଧିବଦ୍ଧଭାବେ ନାଟକ ପ୍ରଦର୍ଶନ ଆରମ୍ଭ ୧୮୭୮ରେ ହେଲା, ଯହିଁରେ ମନମୋହନ ବସୁଙ୍କ ରଚିତ ନାଟକ ରାମାଭିଷେକର ପ୍ରଦର୍ଶନ ହୋଇଥିଲା ।

ଏହାପରେ ମନମୋହନ ବସୁଙ୍କର ଅନ୍ୟ ବଂଗୀୟ ନାଟକ ସବୁ ପ୍ରଦର୍ଶିତ ହୋଇଥିଲା ।

ପ୍ରଥମ ଓଡ଼ିଆ ନାଟକ 'ବାବାଜୀ' ରଚିତ ହୋଇଥିଲା ୧୮୭୭ ସାଲରେ ଜଗନ୍ମୋହନ ଲାଲାଙ୍କ ଦ୍ୱାରା, ଯେ ହିନ୍ଦୀ ସଂସ୍କୃତିର ନିକଟବର୍ତ୍ତୀ ଥିଲେ । ତାଙ୍କର ବଂଶଧରମାନେ ବରେଲିରୁ ଆସିଥିଲେ ଓ ପାରିବାରିକ ବିବାହ ସଂପର୍କରେ ସେ ଉତ୍ତରପ୍ରଦେଶ ଓ ବିହାର ସହିତ ସଂପର୍କିତ ଥିଲେ ।

ପରବର୍ତ୍ତୀ ଓଡ଼ିଆ ନାଟକଟି ରଚନା କରିଥିଲେ ରାମଶଙ୍କର ରାୟ ୧୮୮୦ ସାଲରେ, ଯାହାର ନାମ ଥିଲା 'କାଞ୍ଚିକାବେରୀ' । ରାମଶଙ୍କର ରାୟ ଦେଶୀୟ ବଂଗୀୟ ଗୋଷ୍ଠୀଙ୍କ ମଧ୍ୟରୁ ଆସିଥିଲେ । ପରେ ଜଗନ୍ମୋହନ ଲାଲା, ରାମଶଙ୍କର ରାୟ ଅଧିକ ଓଡ଼ିଆ ନାଟକ ରଚନା କରିଥିଲେ । ୧୮୮୪ ସାଲଠାରୁ ପ୍ରତି ସରସ୍ୱତୀ ପୂଜାରେ କଟକରେ ବଂଗୀୟ ନାଟକ ପ୍ରଦର୍ଶନ ଆରମ୍ଭ ହୋଇଥିଲା ଅସ୍ଥାୟୀ ମଂଚରେ । ଏହି ସବୁ ମଂଚ ଖଟକୁ ଖଟ ଯୋଡ଼ି ଅସ୍ଥାୟୀ ଭାବରେ ତିଆରି କରି ମୁଖ୍ୟତଃ କଟକର ମହିଦାସ ବଜାରରେ ହାରାଧନ ଘୋଷ ଓ କାଳୀପଦ ବନ୍ଦୋପାଧ୍ୟାୟଙ୍କ ବାସଭବନ ନିକଟରେ ହେଉଥିଲା । ନାଟକ ଅଭିନୟ ଏମାନଙ୍କ ହାର୍ଦ୍ଦିକ ଓ ଆର୍ଥିକ ସହାୟତାରେ ହେଉଥିଲା ।

ନାଟ୍ୟକାର ରାମଶଙ୍କର ରାୟ ଓକିଲାତି ଆରମ୍ଭ କରିବା ପରେ, ଏହାଙ୍କର ମହକିଲ କୋଠପଦାର ମହନ୍ତ ରଘୁନାଥ ପୁରୀ, ଯାହାଙ୍କର ଯାତ୍ରାଦଳ ଥିଲା, ତାଙ୍କ ଉଦ୍ୟମରେ ସରସ୍ୱତୀପୂଜା ଉପଲକ୍ଷେ କୋଠପଦାର ଅସ୍ଥାୟୀ ମଂଚରେ କାଞ୍ଚି କାବେରୀ ନାଟକର ଅଭିନୟ ଆରମ୍ଭ କରାଯାଇଥିଲା । ୧୮୮୫ ସାଲରୁ ସବୁବର୍ଷ ପ୍ରତି ସରସ୍ୱତୀ ପୂଜାଦିନ ନାଟକ ଅଭିନୀତ ହେଉଥିଲେ ମଧ୍ୟ, ଏହାର ଅଭିନେତାଗଣ ଅର୍ଦ୍ଧଶିକ୍ଷିତ ଗ୍ରାମବାସୀ ଥିଲେ ଓ ଦର୍ଶକଙ୍କର ରୁଚି ଉନ୍ନତ ଧରଣର ନଥିବାରୁ ଅଭିନୟ ତଥା ପ୍ରଦର୍ଶନ ଉପଯୁକ୍ତ ମାନର ଥିଲା ।

କଟକରେ ଏ ଦେଶୀୟ ବଂଗୀୟ ଗୋଷ୍ଠୀ ସ୍ଥାୟୀ ରଂଗମଂଚ ପ୍ରତିଷ୍ଠାପାଇଁ ଚେଷ୍ଟାକରି ମଧ୍ୟ ବିଫଳ ହୋଇଥିଲେ ।

ଓଡ଼ିଶାରେ ରଂଗମଞ୍ଚ ଆନ୍ଦୋଳନ ଯେପରି ଆସି ପହଞ୍ଚିଲା ସ୍ଥାଣୁତାର ପର୍ଯ୍ୟାୟରେ । ଏହି ସ୍ଥିତିରେ ପଶ୍ଚାତକୁ ଦୃଷ୍ଟି ପ୍ରଦାନ କଲେ ଦେଖାଯାଏ ଯେ, ଏହି ରଂଗଭୂମି ଆନ୍ଦୋଳନରେ ଗ୍ରାମାଞ୍ଚଳର କୋଠପଦାର ମହନ୍ତଙ୍କୁ ଛାଡ଼ିଦେଲେ ମୁଖ୍ୟତଃ ଏ ଦେଶୀୟ ବଂଗୀୟ ଗୋଷ୍ଠୀଙ୍କ ଦ୍ୱାରା ସଂପୂର୍ଣ୍ଣଭାବେ ସଂଚାଳିତ ହୋଇଥିଲା, ଯହିଁରେ ଓଡ଼ିଆ ମାନଙ୍କର ଖଡ଼ିପାଠ ମଧ୍ୟ ଆରମ୍ଭ ହୋଇନଥିଲା । କେତେ ନିର୍ବେଦ ଥିଲା ଏ ଜାତି । ସାମୟିକ ଉନ୍ମାଦନାର ସ୍ଫୁରଣ ମଧ୍ୟ ହଜିଯାଇଥିଲା ଏ ଜାତିର ପରିଧି ମଧ୍ୟରୁ ।

ଏତିକି ବେଳେ ଦୃଶ୍ୟପଟରେ ଉଭାହେଲେ ମଧୁସୂଦନ ଦାସ । ସେ ଓଡ଼ିଶାର ରଂଗମଂଚ ଆନ୍ଦୋଳନରେ ସ୍ଥାୟୀ ରଂଗମଂଚ ପ୍ରତିଷ୍ଠା କ୍ଷେତ୍ରରେ ଆଦ୍ୟ ପ୍ରବର୍ତ୍ତକର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଏ ସଂପର୍କରେ ଓଡ଼ିଶା ନାଟ୍ୟକଳାର ପ୍ରଣେତା ଅଧ୍ୟାପକ ଗିରିଜା ଶଙ୍କର ରାୟ ଲେଖିଛନ୍ତି- ଉତ୍କଳର ନାନା କ୍ଷେତ୍ରରେ ଯେପରି ଅଗ୍ରଣୀ ଏ କ୍ଷେତ୍ରରେ ମଧ୍ୟ ମଧୁସୂଦନ ସେପରି

ଅଗ୍ରଣୀ । ଏହି ସମୟରେ ସ୍ଥାୟୀ ରଂଗମଂଚ ସ୍ଥାପନା ଦିଗରେ ଉତ୍କଳର ବରପୁତ୍ର ଶ୍ରୀ ମଧୁସୂଦନ ଦାସଙ୍କର ଉତ୍ସାହ ଜାତ ହୋଇଥିଲା ଓ କଟକ ନଗରରେ ତାଙ୍କରି ଘରଠାରେ ଗୋଟିଏ ସ୍ଥାୟୀ ନାଟ୍ୟଶାଳା ସ୍ଥାପିତ ହୋଇଥିଲା ଏବଂ ନାଟ୍ୟକାରମାନେ ନୂତନ ନାଟକ ଲେଖିବାରେ ଓ ଅଭିନେତାମାନେ ଅଭିନୟରେ ଉତ୍କର୍ଷ ସାଧନ କରିବାରେ ସଚେଷ୍ଟ ହୋଇଥିଲେ ।

(ଓଡ଼ିଆ ନାଟ୍ୟକଳା ପୃଷ୍ଠା-୭୧)

''ଏହି ସ୍ଥାୟୀ ରଂଗମଂଚରେ ୧୮୮୭ ସାଲ ଡିସେମ୍ବର ୧୦ ତାରିଖରେ ଆମେଚର ଥିଏଟରଙ୍କ ଦ୍ୱାରା ହରିଶ୍ଚନ୍ଦ୍ର ନାଟକର ଅଭିନୟ ହୋଇଥିଲା । ବାବୁ ମଧୁସୂଦନ ଦାସ ଏ କାର୍ଯ୍ୟରେ ବିଶେଷ ଉତ୍ସାହ ପ୍ରଦାନ ଓ ବ୍ୟୟବହନ କରିଥିଲେ (ଉତ୍କଳଦୀପିକା- ୧୭-୧୨-୮୭)''

ଏ ବିଷୟରେ ଗୋଟିଏ ପ୍ରଶ୍ନ ଉଠେ, ମଧୁସୂଦନ କଣ କଳାପ୍ରବଣ ବ୍ୟକ୍ତି ଥିଲେ ?

ହଁ, ମଧୁସୂଦନ କଲିକତା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ, ଯହିଁରେ ବିଶ୍ୱର ଶ୍ରେଷ୍ଠ ନାଟ୍ୟକାର ସେକ୍ସପିଅରଙ୍କ ନାଟ୍ୟ ସାହିତ୍ୟ ତାଙ୍କର ଅଧ୍ୟୟନର ପ୍ରଧାନ ବିଷୟ ଥିଲା । ପରବର୍ତ୍ତୀ କାଳରେ ବିଭିନ୍ନ ବ୍ୟବସ୍ଥାପକ ସଭାର ମଂଚରୁ, ଏହି ନାଟକମାନଙ୍କର ସଂଳାପ ଜରିଆରେ ସେ ଭାରତୀୟ କୃଷକ ଓ ଶ୍ରମିକ ଶ୍ରେଣୀର ଅନ୍ତର୍ଦାହର ବେଦନାକୁ ପ୍ରକଟିତ କରିଥିଲେ ।

କଲିକତାରେ ତାଙ୍କର ସୁଦୀର୍ଘ ରହଣି କାଳରେ ସେ ନ୍ୟାସନାଲ ଥିଏଟର ଆଦି ବହୁ ରଂଗମଂଚରେ ପରିବେଷିତ ନାଟକ ପରିଦର୍ଶନ କରି ନାଟକ ଉପସ୍ଥାପନର ଶୈଳୀ ସହିତ କେବଳ ପରିଚିତ ନଥିଲେ, ଏହି ନାଟକ ଗୋଷ୍ଠୀ ସହିତ ତାଙ୍କର ମଧ୍ୟ ସଂପର୍କ ରହିଥିଲା ।

ଏସବୁ ଦୃଷ୍ଟିରୁ ସମଗ୍ର ଓଡ଼ିଶାରେ ପ୍ରଥମ ସ୍ଥାୟୀ ରଂଗମଂଚ ସ୍ଥାପନାର ଦାୟିତ୍ୱ ଯେତେବେଳେ ତାଙ୍କ ଉପରେ ଆସି ଆପଣାଛାଏଁ ପଡ଼ିଲା, ସେ କ୍ଷେତ୍ରରେ ତାଙ୍କର ପଛଘୁଞ୍ଚା ଦେବାର ପ୍ରଶ୍ନ ନଥିଲା । କଲିକତାରୁ ସର୍ବାଧୁନିକ ଦୃଶ୍ୟପଟ୍ଟ ଓ ସରଞ୍ଜାମ ଆଣି ସେ ନିଜର ବାସ ଭବନର ପଶ୍ଚାତରେ ବିହାରୀବାଗରେ ସ୍ଥାୟୀ ରଂଗମଂଚ ସ୍ଥାପନା କଲେ ।

ମଧୁସୂଦନ ୧୮୮୮ ସାଲରେ,ତାଙ୍କର ଭାଇ ଗୋପାଳ ବଲ୍ଲଭଙ୍କର ବିବାହ ଉତ୍ସବରେ ତାଙ୍କ ରଂଗମଂଚରେ ବହୁ ନାଟକ ବିପୁଳ ସାଜସଜ୍ଜା ମଧ୍ୟରେ ଅଭିନୀତ କରାଇଥିଲେ ।

ସେହି ସ୍ଥାୟୀ ରଂଗମଂଚର ସ୍ୱରୂପ ସଂପର୍କରେ ଉତ୍କଳଦୀପିକାର ୧୮୮୮ ଜୁନ୍ ଦୁଇ ତାରିଖରେ ପ୍ରକାଶ ପାଇଥିଲା --

''ମଧୁବାବୁ ଯେପରି ନାଟ୍ୟଶାଳାଟି ନିର୍ମାଣକରି ନାନା ଦୃଶ୍ୟପଟ୍ଟରେ ରଂଜିତ କରିଛନ୍ତି ଏବଂ ରୋସନାଇ (ଆଲୋକସଜ୍ଜା) ଇତ୍ୟାଦିର ସୁବନ୍ଦୋବସ୍ତଦ୍ୱାରା ଯେମନ୍ତ ଉତ୍ସାହ ଦେଇଅଛନ୍ତି, ତହିଁରେ କିଛିକାଳ ସୁନ୍ଦର ରୂପେ କାର୍ଯ୍ୟଟି ନିର୍ବାହ ହେବ ଏବଂ ବର୍ଷାକାଳରେ ସୁଦ୍ଧା ବ୍ୟାଘାତ ହେବନାହିଁ । ଅଭିନେତା ସଂପ୍ରଦାୟ ମଧ୍ୟ ତେମନ୍ତ ମନୋଯୋଗୀ ହୋଇ ଅଛନ୍ତି ତାହା ଆଶାପୂର୍ଣ୍ଣ ଅଟଇ ।''

ଏହି ବିବରଣୀରୁ ଜଣାଯାଏ ଯେ ମଂଚ ଆଉ ପ୍ରେକ୍ଷାଳୟ ସୁଆଚ୍ଛାଦିତ ଭାବେ ନିର୍ମିତ ହୋଇଥିଲା । ଏହାର ସୁଯୋଗ ନେଇ ସେହିବର୍ଷ ମଇ ପଚିଶ ତାରିଖ ଦିନ 'କୀରତାର୍ଜୁନ' ନାଟକ ଓ ବିବାହ ବିଭ୍ରାଟ ପ୍ରହସନ ଅଭିନୀତ ହୋଇଥିଲା ।

ଏ ସମସ୍ତ ସୁବନ୍ଦୋବସ୍ତ ଆଉ ପ୍ରୋତ୍ସାହନ ସତ୍ତ୍ୱେ କଟକର ଉତ୍କଳୀୟ ପରଂପରାରୁ କୌଣସି ନାଟକ ଅଭିନୟର ପ୍ରୟାସ ହୋଇନଥିଲା । ଯେପରି ଏକ ବିରାଟ ଶୂନ୍ୟତା ଓ ଅସହାୟବୋଧ ଏ ସଂପ୍ରଦାୟକୁ ସମୂଳେ ଗ୍ରାସ କରିଥିଲା, ହେଲେ କଳାସେବାର ଆଢୁଆଳରେ ବିଜୁଳିର ଛଟା ପରି ଉତ୍କଳୀୟ ଛାତ୍ରସମାଜ ମଧ୍ୟରେ କିଛି ଉତ୍ସାହ ଓ ଆଗ୍ରହ ପ୍ରକାଶ ପାଇଥିଲା ଓ ସେମାନେ ସହଯୋଗୀ ବଂଗୀୟ ବଂଧୁମାନଙ୍କ ସହାୟତାରେ ଜଗନ୍ନାଥ ଥିଏଟର ନାମକ ଦଳ ଗଢ଼ି ଯେତେବେଳେ ଆସିଥିଲେ, ମଧୁବାବୁ ସେମାନଙ୍କୁ ସର୍ବାନ୍ତଃକରଣରେ ସାହାଯ୍ୟ କରିଥିଲେ । ପରବର୍ତ୍ତୀ ବିବରଣୀ ଏହିପରି-

ଏହି ଦଳ ମଧୁସୂଦନ ଦାସଙ୍କ ନାଟ୍ୟଶାଳାରେ ନଭେମ୍ବର ୨୪ ତାରିଖରେ ସାବିତ୍ରୀ ଓ ସତ୍ୟବାନ ଉପାଖ୍ୟାନର ଅଭିନୟକରି ଆଦର୍ଶ ସତୀ ନାମକ ନାଟକ ଓ ତତ୍‌କାଳୀନ ହିନ୍ଦୁ ଯୁବକମାନଙ୍କର ଉଚ୍ଛୃଙ୍ଖଳତାକୁ ଅବଲମ୍ବନକରି ଭଣ୍ଡ ଦଳପତି ନାମକ ପ୍ରହସନ କରିଥିଲେ । ଏହି ଦଳରେ କେତେକ ସ୍କୁଲ୍ ଛାତ୍ର କର୍ତ୍ତା ଥିଲେ ଆଉ ରଂଗଭୂମିରେ ସ୍କୁଲ୍ ବାଳକମାନଙ୍କ ବାରଙ୍ଗନା ରୂପରେ ଖେମଟା ନାଚ ରୁଚି ବହିର୍ଭୂତ ଥିଲା । (ଓଡ଼ିଆ ନାଟ୍ୟକଳା ପୃ-୭୩)

ହେଲେ ମଧୁସୂଦନ ଆପତ୍ତି କରିନଥିଲେ, ସେ ଚାହିଁଥିଲେ ଏକପ୍ରକାର ସ୍ଥାଣୁ ପାଲଟି ଯାଇଥିବା ଛାତ୍ରସମାଜ ଟିକିଏ ଦୁର୍ବିନୀତ ବା ସାହସୀ ଆଉ ଉଚ୍ଛୃଙ୍ଖଳ ହୁଅନ୍ତୁ ।

ଏହିବର୍ଷ ଡିସେମ୍ବର ପହିଲାରେ ରାମଶଙ୍କରଙ୍କର ନିଜସ୍ୱ ଗ୍ରାମ ଦୀକ୍ଷିତପଡ଼ାରୁ ଅଭିନେତାଦଳ ଆସି ମଧୁବାବୁଙ୍କର ମଞ୍ଚରେ କାଞ୍ଚିକାବେରୀ ନାଟକ ମଞ୍ଚସ୍ଥ କରିଥିଲେ ।

ମଦୁସୂଦନଙ୍କର ଏହି ରଂଗମଂଚଟି କଲିକତାର ଅତ୍ୟାଧୁନିକ ରଂଗମଂଚର ଏକ ନୂତନ ସଂସ୍କରଣ ଥିଲା, ଯାହାର ମଞ୍ଚପ୍ରସ୍ତୁତି ଓ ପରିଚାଳନା ଦର୍ଶକମାନଙ୍କ ମନରେ ଗଭୀର ପ୍ରଭାବ ବିସ୍ତାର କରିଥିଲା । ଏହା କୋଠପଦାର ମହନ୍ତ ଶ୍ରୀ ରଘୁନାଥ ପୁରୀଙ୍କୁ ତାଙ୍କର ମଞ୍ଚକୁ ଅଧିକ ଉନ୍ନତ କରିବାକୁ ପ୍ରୋତ୍ସାହନ ଯୋଗାଇଥିଲା । ଏ ସଂପର୍କରେ ୧୮୯୨ ସାଲରେ ଉତ୍କଳଦୀପିକାର ବିବରଣୀ ଏପରି ଥିଲା-

'ଗଲା କେତେବର୍ଷ ହେଲା ରଘୁନାଥ ପୁରୀ ସେମାନଙ୍କ ଓଡ଼ିଆ କାଞ୍ଚିକାବେରୀ ନାଟକ ଅଭିନୟ କରି ଦେଖାଉଥିଲେ ମଧ୍ୟ ରଂଗଭୂମି ଭଲ ନଥିଲା । ଏଥର ସେ ବହୁ ବ୍ୟୟ କରି ଏ ନଗର (କଟକ)ର ସୌଖୀନ ନାଟକାଭିନୟ ରଂଗଭୂମି ଭଳି ନିର୍ମାଣ କରିଛନ୍ତି ।' ଏ ଥିଲା କୋଠପଦାରେ ରଂଗମଂଚ ସ୍ଥାପନାର ବିବରଣୀ । ଅବଶ୍ୟ ଏହି ରଂଗମଂଚରେ ସଂପୂର୍ଣ୍ଣ ଦୃଶ୍ୟାବଳୀ ସଂଯୁକ୍ତ ହେବାପାଇଁ ଆହୁରି କିଛି ବର୍ଷ ଲାଗିଗଲା । ଏହା ୧୮୯୭ ସାଲ ବେଳକୁ ସମ୍ପୂର୍ଣ୍ଣ ହୋଇଥିଲା ।

ମଧୁବାବୁଙ୍କର ରଙ୍ଗମଂଚରେ ବାରମ୍ବାର ନାଟକ ଅଭିନୟ କରିବା ସମ୍ଭବ ହୋଇଥିଲା । ଏ ମଞ୍ଚର ଦୃଶ୍ୟାବଳୀ ଓ ସରଞ୍ଜାମ ସର୍ବସାଧାରଣ ସମ୍ପତ୍ତିରେ ପରିଣତ ହୋଇଥିଲା ।

"ଆମ୍ଭମାନଙ୍କର ଶ୍ରଦ୍ଧେୟ ମଧୁସୂଦନ ଦାସ ଆପଣାର ଭ୍ରାତାଙ୍କ ବିବାହ ସମୟରୁ କଲିକତାରୁ କେତେଗୁଡ଼ିଏ ଦୃଶ୍ୟ ଅଣାଇଥିବାରୁ ଉତ୍ସାହ ସହ କେତେକ ବର୍ଷ ବଂଗଳା ଓ ଓଡ଼ିଆ ନାଟକମାନଙ୍କରେ ଅଭିନୟ ଦେଖିବାକୁ ସମର୍ଥ ହୋଇଥିଲୁ । ମାତ୍ର ସେସବୁ ଦୃଶ୍ୟ ରଖିବାପାଇଁ ସ୍ଥାନାଭାବ ଏବଂ କାଳଗ୍ରାସ ଯୋଗୁଁ ନଷ୍ଟ ହୋଇଗଲା ।" (ଉତ୍କଳଦୀପିକା ୯.୨.୧୮୯୫)

ବହୁବର୍ଷ ଧରି ମଧୁବାବୁ କଟକରେ ସ୍ଥାୟୀ ରଂଗମଂଚ ପ୍ରତିଷ୍ଠାକରି ରଙ୍ଗମଞ୍ଚ ପରିବେଷଣ କଳାକୁ ଉନ୍ନୀତ କରିବା ସହିତ ନୂତନ ଓଡ଼ିଆ ନାଟକ ରଚନାଲାଗି ପ୍ରୋତ୍ସାହନ ଯୋଗାଇ ଆସିଥିଲେ । ଏ ସଂପର୍କରେ ଏକ ବିବରଣୀ-

"୧୮୯୧ରେ କଟକର ଆମେଚର ଥିଏଟର ଦଳକୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ କଲିକତାରୁ ବହୁ ଅର୍ଥ ବ୍ୟୟକରି ମଧୁବାବୁ କେତେକ ଦୃଶ୍ୟ ଅଣାଇଥିଲେ । ନିଜ ବସା (ବିହାରୀବାଗ)ର ପଶ୍ଚାତ ଭାଗରେ ରଙ୍ଗଭୂମି ନିର୍ମାଣ ମଧ୍ୟ କରି ଦେଇଥିଲେ ଏବଂ ଯେତେବେଳେ ଇଚ୍ଛା ସେତେବେଳେ ଅଭିନୟ କରିବାକୁ ଅନୁମତି ଦେଇଥିଲେ ।" (ଦେଶପ୍ରାଣ ମଧୁସୂଦନ ପୃଷ୍ଠା-୭୦)

କେବଳ ନାଟକ ପ୍ରଦର୍ଶନ, ମଞ୍ଚ ପରିଚାଳନା ତଥା ଅଭିନୟ ନିର୍ଦ୍ଦେଶନାରେ ପାରଦର୍ଶୀ ନଥିଲେ ମଧୁସୂଦନ । ସେ ସମୟରେ ପ୍ରଦର୍ଶନ କରାଯାଉଥିବା ନାଟକମାନଙ୍କର ମୂଲ୍ୟାୟନ ସହିତ ଧାରାବାହିକ ଭାବେ ସମାଲୋଚନା ସବୁ ଉତ୍କଳଦୀପିକାର ପୃଷ୍ଠାରେ ଇଂରାଜୀ ଓ ଓଡ଼ିଆ ଭାଷାରେ ପ୍ରକାଶ କରିଥିଲେ । ଏହି ପର୍ଯ୍ୟାୟରେ ଲାଲା ଜଗନ୍ମୋହନଙ୍କର ସତୀ ନାଟକଠାରୁ ଆରମ୍ଭ କରି ରାମଶଙ୍କରଙ୍କର ବହୁନାଟକର ସମାଲୋଚନା ପ୍ରକାଶ କରିଥିଲେ । ମଧୁବାବୁ କଂସ ଓ ରାବଣ ଚରିତ୍ରକୁ ଓଡ଼ିଆ ରଂଗମଂଚ ଉପରକୁ ଆଣିବାପାଇଁ ଯେଉଁ ମତ ପ୍ରକାଶ କରିଥିଲେ, ତାହାକୁ ଆଧାରକରି ରାମଶଂକର କିଛି ପୌରାଣିକ ନାଟକ ରଚନାରେ ବ୍ରତୀ ହୋଇଥିଲେ ।

ମଧୁସୂଦନଙ୍କର ସ୍ଥାୟୀ ରଂଗମଂଚଟି ବିହାରୀବାଗରେ ନିର୍ମିତ ହୋଇଥିଲା, ମାତ୍ର ସେ ୧୮୯୨ ସାଲରେ ମିଶନ ରୋଡ଼ର ନିଜସ୍ୱ ଘରକୁ ଆସିବା ପରେ ସ୍ଥାୟୀ ରଂଗମଂଚଟି ଅବହେଳିତ ଅବସ୍ଥାରେ ରହିଯାଇଥିଲା । କିନ୍ତୁ ଦୀର୍ଘକାଳ ଧରି ସେ ନାଟକ ସମାଲୋଚନା ଲେଖିବାର ଧାରାକୁ ଅବ୍ୟାହତ ରଖିଥିଲେ ।

ହାୟଃ ! ଆଜି ଓଡ଼ିଶାର ଏହି ଆଦ୍ୟ ନାଟ୍ୟ ମଂଚ ସଂସ୍ଥାପକଙ୍କର ବିବରଣୀ ବିସ୍ମୃତିର ଗର୍ଭରେ ଲୀନ ହୋଇଯାଇଛି । ଗଭୀର ପରିତାପର ବିଷୟ, ସାହିତ୍ୟ ସମାଲୋଚକମାନେ ବିସ୍ମୃତି ଗର୍ଭରୁ ଏହି ଗୌରବୋଜ୍ଜ୍ୱଳ ପୃଷ୍ଠାଗୁଡ଼ିକୁ ଉନ୍ମୋଚନ କରିବାପାଇଁ ଏ ପର୍ଯ୍ୟନ୍ତ ସମର୍ଥ ହୋଇ ନାହାନ୍ତି ।



# ମୁକ୍ତି ସଂଗ୍ରାମର ଅଗ୍ର ସାରଥି ମଧୁସୂଦନ

'ମଧୁସୂଦନ ଦାସ ଥିଲେ ବ୍ରିଟିଶ ସାମ୍ରାଜ୍ୟବାଦର ସର୍ବଶ୍ରେଷ୍ଠ, ଅନମନୀୟ, ଜ୍ୱଳନଶୀଳ ସମାଲୋଚକ ।'- ଏହା ହେଉଛି ତାଙ୍କ ପ୍ରତି ଓଡ଼ିଶାର ପୂର୍ବତନ ପ୍ରଧାନମଂତ୍ରୀ ବିଶ୍ୱନାଥ ଦାଶଙ୍କ ଶ୍ରଦ୍ଧାଂଜଳିର ଏକ ଅଂଶ । କେନ୍ଦ୍ରୀୟ ବ୍ୟବସ୍ଥାପକ ସଭାରେ ୧୯୧୬ମାର୍ଚ୍ଚ ୭ତାରିଖରେ ସେ ଦୃପ୍ତକଣ୍ଠରେ କହିଥିଲେ-

'ଲବଣକର ହେଉଛି ବ୍ରିଟିଶ ସାମ୍ରାଜ୍ୟବାଦର ଏକ ନିନ୍ଦନୀୟ କଳଙ୍କ, ଯାହାର ତୁରନ୍ତ ଅବଲୁପ୍ତି ଆବଶ୍ୟକ । ପାଶ୍ଚାତ୍ୟ ଶିଳ୍ପସମୂହ ଦେଶଗୁଡ଼ିକ ହେଉଛନ୍ତି ରକ୍ତମୁଖା ଶୋଷକ ଦଳ ଯେଉଁମାନେ ଭାରତର ରକ୍ତକୁ ଅବାରିତ ଶୋଷି ଚାଲିଛନ୍ତି ।'

ଏହା କହିଲାବେଳେ ମଧୁସୂଦନଙ୍କ ମୁହଁରେ ଫୁଟିଉଠିଥିଲା ବ୍ରିଟିଶ ଶାସନ ବିରୁଦ୍ଧରେ ତାଚ୍ଛଲ୍ୟ ଓ ଅବଜ୍ଞାର ଚିହ୍ନ, ଯାହା ତାଙ୍କର କଣ୍ଠସ୍ୱରକୁ ଆହୁରି ତୀବ୍ର ଓ ଶାଣିତ କରିଥିଲା ।

ଏହା ସତ୍ତ୍ୱେ ତାଙ୍କୁ ଦେଖିବାକୁ ମିଳୁଥିଲା ବ୍ରିଟିଶ ଶାସନର ପରିଧି ମଧ୍ୟରେ ଅତ୍ୟନ୍ତ ବିଜ୍ଞତାର ସହ କାର୍ଯ୍ୟନିର୍ବାହ କରିବାର ଅବସରରେ । ବହୁ ପ୍ରଶାସକଙ୍କର ସେ ମଧ୍ୟ ଥିଲେ ଘନିଷ୍ଠ ଓ ସହୃଦୟ ବଂଧୁ । ବ୍ରିଟିଶ ପ୍ରଶାସନର ସମୁଚ୍ଚ କ୍ଷମତା-ଅଳିନ୍ଦରେ ତାଙ୍କର ପ୍ରବେଶ ଥିଲା ସ୍ୱଚ୍ଛନ୍ଦ ଓ ଅବାରିତ ।

ଏହି ଉଭୟ ଭୂମିକାରେ ଥିଲା କିଛି ବିରୋଧାଭାସ, କିଛି ବିପରୀତମୁଖୀ ଅବସ୍ଥାପନ ଯାହା ମଧ୍ୟରେ ଦ୍ୱିଧା ବିଭାଜିତ ହୋଇଯାଇଥିଲା ମଧୁସୂଦନଙ୍କ କାର୍ଯ୍ୟର ପରିସର ଓ ଜୀବନର ଧାରା । ଏ ସମସ୍ତ ମଧ୍ୟରେ ସେ ଝଟକି ଉଠିଥିଲେ ଦେଶପ୍ରେମର ଏକ ଅଂଗୀକାରବଦ୍ଧ ଊର୍ଦ୍ଧ୍ୱାୟିତ ବର୍ତ୍ତିକା ରୂପରେ ଯହିଁରୁ ଉଦ୍ଭାସିତ ଆଲୋକ ରାଶି ଚିରକାଳ ଲାଗି ଦେଦୀପ୍ୟମାନ ରହିବ ଅନୁପ୍ରେରଣାର ଏକ ଶିଖାରୂପେ ।

ଏହି ରହସ୍ୟାବୃତ ପରିଧି ମଧ୍ୟରୁ କିଛି ପ୍ରଖର ଆଉ ଉଜ୍ଜ୍ୱଳ ଦିଗ ଉନ୍ମୋଚନ କରି

ମଧୁସୂଦନଙ୍କୁ ଉପସ୍ଥାପନ କରାଯାଉଛି ଅତ୍ୟନ୍ତ ପ୍ରାଣବନ୍ତ ଭାବରେ କେତୋଟି ଘଟଣା ପ୍ରବାହ ମଧ୍ୟରେ ।

ମଧୁସୂଦନଙ୍କର ୧୮୯୭ ସାଲରେ ପାଶ୍ଚାତ୍ୟଦେଶର ପରିଭ୍ରମଣ ଥିଲା ଅତ୍ୟନ୍ତ ରୋମାଂଚକର ଆଉ ତାତ୍ପର୍ଯ୍ୟପୂର୍ଣ୍ଣ । ଛଅ ମାସ ବ୍ୟାପୀ ଏହି ଯାତ୍ରା କାଳରେ ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ଇଟାଲୀ, ସୁଇଜରଲ୍ୟାଣ୍ଡ ଆଦି ଦେଶର ଗଣତନ୍ତ୍ରର ଧାରାକୁ ଅତ୍ୟନ୍ତ ନିକଟରୁ ମୁହାଁମୁହିଁ ଭାବେ ଅଧ୍ୟୟନ କରିବା ପରେ ସେ ପରିଣତ ହୋଇଯାଇଥିଲେ ପ୍ରତିଶ୍ରୁତିବଦ୍ଧ ଗଣତନ୍ତ୍ରର ଅଫୁରନ୍ତ ପ୍ରବାହ ରୂପରେ । ସେ ୟୁରୋପୀୟ ଭୂଖଣ୍ଡରୁ ସିଧାସଳଖ ଅଧ୍ୟୟନ କରିଥିଲେ ପାଶ୍ଚାତ୍ୟର ପରଂପରା, ଗଣତଂତ୍ରର ଧାରା ଓ ସମାଜବାଦର ମୂଳଭିତ୍ତିଭୂମି ।

ବିଦେଶରୁ ପ୍ରତ୍ୟାବର୍ତ୍ତନ କରିବାର ପ୍ରାୟ ଦୁଇବର୍ଷ ପରର ଏକ ଘଟଣା । ପ୍ରସିଦ୍ଧ ଇଂରାଜୀ ଲେଖକ ରୁଡ଼ୟାର୍ଡ଼ କ୍ଲିପିଙ୍ଗର ଗୋଟିଏ ଗଳ୍ପ ପ୍ରକାଶିତ ହୋଇଥିଲା, ଯହିଁରେ ଭାରତର ଉତ୍ତର ପଶ୍ଚିମ ସୀମାନ୍ତରେ ଅବସ୍ଥାପିତ ଜଣେ ବଂଗୀୟ ଆଇ.ସି.ଏସ୍ ଅଫିସରଙ୍କ କାର୍ଯ୍ୟକଳାପ ସଂପର୍କରେ ଅବାଞ୍ଛିତ ବିବରଣୀ ପ୍ରଦାନ କରାଯାଇଥିଲା । ଏଥିରେ ବଂଗୀୟ ତଥା ଭାରତର ସ୍ୱାଭିମାନକୁ ଲାଞ୍ଛିତ କରାଯାଇଥିଲା । ସେହି ବିବରଣୀ ଅନୁସାରେ କିଛି ଉଗ୍ର ସନ୍ତ୍ରାସବାଦୀଦଳ ଉତ୍ତର-ପଶ୍ଚିମ ସୀମାନ୍ତର ବହୁ ଅଂଚଳକୁ ଆକ୍ରାନ୍ତ କରି ଅଧିକାର କରି ନେଇଥିଲେ । ସଂପୃକ୍ତ ବଂଗୀୟ ଆଇ.ସି.ଏସ୍ ପ୍ରଶାସକ ଜଣକ ସେହି ଅଂଚଳର ଅଧିବାସୀମାନଙ୍କୁ ସୁରକ୍ଷା ପ୍ରଦାନ ନକରି ନିଜେ ପଳାତକ ଭାବରେ ଅନ୍ତର୍ହିତ ହୋଇଯାଇଥିଲେ । ପରେ ସେହି ଅଂଚଳର କିଛି ନାଗରିକଙ୍କଦ୍ୱାରା ସେ ଧରାହୋଇ ଭୀରୁ ଶାର୍ଦ୍ଦୂଳ ରୂପରେ ଅଭିହିତ ଓ ଅପମାନିତ ହୋଇ ଶେଷରେ ମୃତ୍ୟୁବରଣ କରିଥିଲେ ।ଏହିଗଳ୍ପ ସେହି ସମୟରେ ତୀବ୍ର ଆଲୋଡ଼ନ ସୃଷ୍ଟି କରିଥିଲା । ସେ ସମୟର ପ୍ରଦୀପ୍ତ ନାରୀ ନେତ୍ରୀ ସରଳାଦେବୀ ଚୌଧୁରୀ ଏହି ଗଳ୍ପଟି ପଢ଼ିବା ପରେ ଆତଙ୍କରେ ଶିହରିତ ହୋଇଯାଇଥିଲେ ଓ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି ଲେଖିଥିଲେ ପ୍ରତିବାଦପତ୍ର । ସରଳାଦେବୀ ଥିଲେ ବିଶ୍ୱକବି ରବୀନ୍ଦ୍ରନାଥ ଟାଗୋରଙ୍କ ଭାଣିଜୀ ଓ ତାଙ୍କ ଜ୍ୟେଷ୍ଠ ଭଗିନୀ ସ୍ୱର୍ଣ୍ଣକୁମାରୀଙ୍କ କନ୍ୟା । ପ୍ରତିବାଦପତ୍ର ଲେଖି ଏ ସଂପର୍କରେ ଆଲୋଚନା ଲାଗି ସେ କଟକଠାରେ କିଛିଦିନ ଅପେକ୍ଷା ପରେ ମଧୁସୂଦନଙ୍କୁ ଭେଟି ସମସ୍ତ ବିବରଣୀ ପ୍ରଦାନ କରିଥିଲେ । ମଧୁସୂଦନଙ୍କର ଉତ୍ତର ଥିଲା- ''ଏ ପତ୍ର ନୁହେଁ, ଭାରତର ଭାଗ୍ୟ ଯେଉଁ ଦିଗରେ ପ୍ରଧାବିତ ହେଉଛି, ତାହାର ସମ୍ଭାବ୍ୟ ମୁକାବିଲାପାଇଁ ଏବେଠାରୁ ପ୍ରସ୍ତୁତି ଆବଶ୍ୟକ ।'' ମାତ୍ର ପାଞ୍ଚବର୍ଷର ସମୟସୀମା ମଧ୍ୟରେ ବଂଗୀୟ ଯୁବକମାନଙ୍କୁ ଅସ୍ତ୍ରଶସ୍ତ୍ର ଚାଳନା ଓ ବ୍ୟାୟାମରେ ପ୍ରଶିକ୍ଷଣ ଦେଇ ସେମାନଙ୍କ ମଧ୍ୟରେ ଦେଶବତ୍ସଳତାର ମହନୀୟ ଧାରା ଜାଗରିତ କରାଇବାକୁ ପଡ଼ିବ । ଏହି ଜାଗରୁକତା ହିଁ ହେବ, ସେହି ଇଂରେଜ ଲେଖକଙ୍କ ପ୍ରତି ଯଥାର୍ଥ ପ୍ରତିବାଦ-ଉତ୍ତର । ତୁମ୍ଭେ ଯାଇ ପ୍ରଫେସର ମୂର୍ତ୍ତିଜାଙ୍କ ତତ୍ତ୍ୱାବଧାନରେ ଏହି ପ୍ରଶିକ୍ଷଣ ଆରମ୍ଭ କର । ମୁଁ ଏଥିପାଇଁ ସହଯୋଗ ପ୍ରଦାନ କରୁଛି । ''ଅବିଳମ୍ବେ ଶ୍ରୀମତୀ ଚୌଧୁରୀ କଲିକତା ଫେରିଯାଇ, ନିଜର ବାସଭବନ ପରିସରରେ ପ୍ରଫେସର ମୂର୍ତ୍ତିଜାଙ୍କ ଅଧ୍ୟକ୍ଷତାରେ ସ୍ଥାପନ କରିଥିଲେ ବ୍ୟାୟାମ ଶିକ୍ଷା ମାଧ୍ୟମରେ ଅସ୍ତ୍ରଚାଳନାର ପ୍ରଶିକ୍ଷଣ କ୍ଲବ୍ ।

ଚୁମ୍ବକର ଆକର୍ଷଣ ପରି ଟାଣିହୋଇ ଆସିଥିଲେ ବଂଗୀୟ ଯୁବକଗୋଷ୍ଠୀ ପ୍ରବଳ ଉଦ୍ଦୀପନାର ବଶବର୍ତ୍ତୀ ହୋଇ । କଲିକତା ସହର ଓ ବଂଗ ପ୍ରଦେଶର ଅଭ୍ୟନ୍ତରରେ ବିଛେଇ ହୋଇ ଯାଇଥିଲା ଏହିଭଳି କ୍ଲବ୍‌ସବୁ ଯହିଁରେ ମଧୁସୂଦନଙ୍କ ମାନସିକ ସହାୟତାର ଭୂମିକା ଥିଲା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ପରବର୍ତ୍ତୀ କାଳରେ ଏହି କ୍ଲବ୍‌ମାନଙ୍କରୁ ପ୍ରଶିକ୍ଷିତ ହୋଇ ଅବତୀର୍ଣ୍ଣ ହୋଇଥିଲେ ବଂଗୀୟ ଯୁବଗୋଷ୍ଠୀ ଉଗ୍ରବାଦୀ ଭୂମିକାରେ, ଯେଉଁମାନେ ନିଜର ଜୀବନକୁ ଅକାତରେ ଦେଶମାତୃକାର ପୁଣ୍ୟବେଦୀରେ ଅର୍ପଣ କରିବାକୁ ସଦା ପ୍ରସ୍ତୁତ ରହୁଥିଲେ । ଏହି ବିବରଣୀଟି ପ୍ରକାଶିତ ହୋଇଛି ଶ୍ରୀମତୀ ଚୌଧୁରୀଙ୍କର ଆତ୍ମଚରିତ 'ଜୀବନରେ ଝରାପାତ' ପୁସ୍ତକରେ । (ପୃଷ୍ଠା- ୧୩୪)

ମଧୁସୂଦନ ୧୮୮୧ ସାଲରେ କଲିକତାରୁ ଓଡ଼ିଶାକୁ ଫେରି ବାବେଳକୁ ଓଡ଼ିଆ ଭାଷୀ ଅଂଚଳର ପରିସୀମା ସଂକୁଚିତ ହେବା ଆରମ୍ଭ କରିଥିଲା । ମଧୁସୂଦନ ସର୍ବ ଭାରତୀୟ ନେତୃବର୍ଗଙ୍କ ସମକ୍ଷରେ ଓଡ଼ିଆ ଜାତିର ଅନ୍ତର୍ଦାହ ଓ ବିଛିନ୍ନତା ପ୍ରସଙ୍ଗ ଉତ୍ଥାପନ କରିଥିଲେ ମଧ୍ୟ ସାମାନ୍ୟତମ ଆଗ୍ରହ ପ୍ରକାଶିତ ହୋଇନଥିଲା ସେମାନଙ୍କ ପକ୍ଷରୁ । ତେଣୁ ଅବସାଦଗ୍ରସ୍ତ ମଧୁସୂଦନ ୧୯୦୩ ତିରିଶ ତାରିଖରେ ସ୍ଥାପନା କରିଥିଲେ ଉତ୍କଳ ସମ୍ମିଳନୀ । ଲକ୍ଷ୍ୟ ରହିଲା ବ୍ରିଟିଶ ପ୍ରଶାସକଙ୍କ ସହାୟତାରେ ଶାସନ ସଂସ୍କାରର ପରିଧି ମଧ୍ୟରେ ଓଡ଼ିଆ ଭାଷାଭାଷୀ ଅଂଚଳର ମିଶ୍ରଣ ଓ ଓଡ଼ିଶା ପ୍ରଦେଶର ସଂସ୍ଥାପନ ।

ବିଭାଜିତ ଓଡ଼ିଶାର କେତେକ ବିଛିନ୍ନାଞ୍ଚଳ ବିହାରର ଛୋଟନାଗପୁର ଓ ମଧ୍ୟପ୍ରଦେଶର ଛତିଶିଗଡ଼ରୁ ଆସି ଓଡ଼ିଶା ଡିଭିଜନରେ ସାମିଲ୍ ହେବା ସହିତ ବଂଗ ପ୍ରଦେଶ ବିଖଣ୍ଡିତ ହୋଇଥିଲା ୧୯୦୫ ସାଲ୍ ଅକ୍ଟୋବର ୧୬ ତାରିଖରେ । ବଂଗ ବିଭାଜନର ପ୍ରତିକ୍ରିୟାରେ ସମଗ୍ର ବଂଗ ପ୍ରଦେଶ ଆନ୍ଦୋଳିତ ହୋଇ ଉଠିଥିଲା । । ଏହି ଆନ୍ଦୋଳନରେ ଦିଗ୍‌ଦର୍ଶନ ଦେବାପାଇଁ ବରୋଦାକୁ ପ୍ରତ୍ୟାବର୍ତ୍ତନ କଲେ ମହାନ ଯୋଗୀ ଶ୍ରୀ ଅରବିନ୍ଦ, ତାଙ୍କର ମାଣିକ ତାଲା ବାସଭବନରେ ଖୋଲିଲେ ବିପ୍ଳବୀମାନଙ୍କପାଇଁ ପ୍ରଶିକ୍ଷଣ କେନ୍ଦ୍ର । ଅସ୍ତ୍ରଚାଳନାରେ ବଂଗୀୟ ଯୁବକମାନଙ୍କୁ ପାରଦର୍ଶୀ କରିବାପାଇଁ ସରଳାଦେବୀଙ୍କ କ୍ଲବ୍‌ରେ ଅସ୍ତ୍ରଚାଳନାରେ ପ୍ରଶିକ୍ଷିତ ତରୁଣଗଣ ଏଥିରେ ଅତ୍ୟନ୍ତ ଆଗ୍ରହର ସହ ଯୋଗ ଦେଇଥିଲେ । ଏଥିରେ ଶ୍ରୀ ଅରବିନ୍ଦଙ୍କର ଭ୍ରାତା ବାରୀନ୍ଦ୍ର ମୋହନ ପ୍ରମୁଖ ଭୂମିକା ନିର୍ବାହ କରିଥିଲେ । ଶ୍ରୀମତୀ ସରଳାଦେବୀ ଚୌଧୁରୀଙ୍କ ସହଯୋଗ ଶ୍ରୀ ଅରବିନ୍ଦଙ୍କର ଜୀବନ ଚରିତରେ ବିଶେଷ ଭାବେ ଉଲ୍ଲେଖ ହୋଇଛି ।

ଏହି ଅନୁଷ୍ଠାନ ସହିତ ମଧୁସୂଦନ ଜଡ଼ିତ ହୋଇପଡ଼ିଥିଲେ, ଗଭୀର ଦେଶବତ୍ସଳତାର ଉଦ୍ଦୀପନାର ବଶବର୍ତ୍ତୀହୋଇ । ମଧୁସୂଦନଙ୍କର ଶ୍ରୀ ଅରବିନ୍ଦଙ୍କ ସହିତ ଘନିଷ୍ଠତା ଗଢ଼ି ଉଠିଥିଲା । କଟକରେ ବ୍ରଜସୁନ୍ଦର ଦାସଙ୍କ ସହାୟତାରେ କିଛି ଉଗ୍ରବାଦୀଙ୍କୁ ସୁରକ୍ଷା ପ୍ରଦାନ କରାଯାଇଥିଲା । ଏପରିକି ବିପ୍ଳବୀ କ୍ଷୁଦିରାମ, ବ୍ରଜସୁନ୍ଦର ଦାସଙ୍କର ଆତିଥେୟତା ଗ୍ରହଣ କରି କଟକରେ ଅବସ୍ଥାନ କରିଥିଲେ । କିଛି ଉଗ୍ରବାଦୀ ମଧୁସୂଦନଙ୍କର ପରୋକ୍ଷ ପ୍ରୋତ୍ସାହନରେ କେନ୍ଦୁଝରର ଅରଣ୍ୟରେ ଆଶ୍ରୟ ନେଇଥିଲେ ।

ଫେରିଯିବା ତିରିଶି ବର୍ଷ ପଛକୁ । କଲିକତା, ଭବାନୀପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ମଧୁସୂଦନ, ପ୍ରସିଦ୍ଧ ଇଂରାଜୀ ଶିକ୍ଷକ ଭାବେ ଖ୍ୟାତି ଅର୍ଜନ କରିଥାନ୍ତି । ଡାକ୍ତର ଗଂଗାଧର ମୁଖାର୍ଜୀଙ୍କର ଅନୁରୋଧକ୍ରମେ ତାଙ୍କ ପୁତ୍ର ଆଶୁତୋଷ ମୁଖାର୍ଜୀଙ୍କର ଶିକ୍ଷାଭାର ସେ ଗ୍ରହଣ କରିଥାନ୍ତି । ଭବାନୀପୁରର ଅନ୍ୟତମ ପ୍ରସିଦ୍ଧ ଆଇନଜ୍ଞ ଆନନ୍ଦ ମୋହନ ଦାସଙ୍କ ନିବେଦନ ସତ୍ତ୍ୱେ କାର୍ଯ୍ୟଭାରଯୋଗୁଁ ମଧୁସୂଦନ ତାଙ୍କ ପୁତ୍ର ଚିତ୍ତରଂଜନ ଦାସଙ୍କ ଶିକ୍ଷା ଭାର ଗ୍ରହଣ କରିପାରିନଥିଲେ ମଧ୍ୟ ସାମୟିକ ଭାବେ ପ୍ରୋତ୍ସାହନ ଓ ଉପଦେଶ ପ୍ରଦାନ କରିଆସୁଥିଲେ । ତିରିଶି ବର୍ଷର ଅନ୍ତରାଳରେ ଗୁରୁ ଓ ଦୁଇଛାତ୍ର କଲିକତା ହାଇକୋର୍ଟର ପ୍ରବୀଣ ଆଇନଜୀବୀ ଭାବରେ ବହୁ ସୁଖ୍ୟାତିର ଅଧିକାରୀ ହୋଇଥିଲେ । ଏହି ଦୁଇ ଛାତ୍ରଙ୍କ ଅକୃତ୍ରିମ ଶ୍ରଦ୍ଧା ଓ ଭକ୍ତିର ଭାଜନ ମଧୁସୂଦନ ହୋଇପାରିଥିଲେ ଓ ଆଇନଗତ ଜଟିଳ ସମସ୍ୟାର ସମାଧାନ ପାଇଁ ମଧୁସୂଦନଙ୍କ ପରାମର୍ଶ ଗ୍ରହଣ କରୁଥିଲେ ।

ମଧୁସୂଦନ କଲିକତାରେ କାର୍ଯ୍ୟ କରିବାବେଳେ ଗ୍ରାଣ୍ଡ ହୋଟେଲ୍‌ରେ ହିଁ ଅବସ୍ଥାନ କରୁଥିଲେ। ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ରୁମ୍ ସଂରକ୍ଷିତ ହୋଇ ରହୁଥିଲା । ଶ୍ରୀ ଅରବିନ୍ଦ 'ବନ୍ଦେମାତରଂ' ପତ୍ରିକାର ପ୍ରକାଶନ ସହିତ ଉଗ୍ରବାଦୀ କାର୍ଯ୍ୟକ୍ରମପାଇଁ ସାଧାରଣଙ୍କ ଅଗୋଚରରେ ପୃଷ୍ଠପୋଷକତା କରୁଥିଲେ। ଚିତ୍ତରଂଜନ ଦାସ ଏବଂ ତାଙ୍କ ଜରିଆରେ ମଧୁସୂଦନ ଶ୍ରୀ ଅରବିନ୍ଦଙ୍କ ସହିତ ସଂପର୍କ ସ୍ଥାପନ କରଥିଲେ । ମଦୁସୂଦନଙ୍କ ପରାମର୍ଶକ୍ରମେ ତାଙ୍କ ପୁତ୍ର ପ୍ରତିମ ସୂର୍ଯ୍ୟମଣି ନାୟକ, ଚିତ୍ତରଂଜନଙ୍କ ମଟର ଚାଳକ, ପରବର୍ତ୍ତୀ ପର୍ଯ୍ୟାୟରେ ସ୍ୱାଧୀନତା ସଂଗ୍ରାମୀ ରୂପେ ବହୁ ସମ୍ମାନର ଅଧିକାରୀ ହୋଇପାରିଥିଲେ । ତାଙ୍କ ଆତ୍ମଜୀବନୀର କିଛି ଅଂଶ-

''ଦେଶବଂଧୁ ଚିତ୍ତରଂଜନଙ୍କ ଘରେ କିଛିଦିନ ରହିବା ପରେ ଖବର ଆସିଲା ଯେ, ଓଡ଼ିଶାର ମଧୁବାବୁ କଲିକତା ଆସି କଲିକତାର ଗ୍ରାଣ୍ଡ ହୋଟେଲ୍‌ରେ ରହୁଛନ୍ତି । ଦେଶବଂଧୁଙ୍କୁ ଗାଡ଼ିରେ ବସାଇ ମୁଁ ଗ୍ରାଣ୍ଡ ହୋଟେଲ୍‌କୁ ଗଲି । ଉପର ମହଲାରେ ବହୁତ ଭିଡ଼ ହୋଇଥାଏ । ବହୁ ହାକିମହୁକୁମା ତାଙ୍କୁ ସାକ୍ଷାତ କରିବାକୁ ଆସିଥାନ୍ତି । ମଧୁବାବୁ ନିଜ କାମରାରୁ ବାହାରିଆସିଲେ । ଗୋରା ହାକିମମାନେ ମୁଣ୍ଡରୁ ନିଜନିଜ ଟୋପି କାଢ଼ିଦେଇ ବାମ ହାତରେ ଧରି ଜଣଜଣ ହୋଇ ମଧୁବାବୁଙ୍କର କରମର୍ଦ୍ଦନ କଲେ । ମୋ ଆଖିରୁ ଲୁହ ଝରିଆସିଲା । ଜଣେ ଓଡ଼ିଆ ପୁଅକୁ ବିଲାତର ବଡ଼ ସାହେବ ତଥା କଲିକତାର ଉଚ୍ଚ ଶିକ୍ଷିତମାନେ ଏତେ ସମ୍ମାନ ଦିଅନ୍ତି ? ପରେ ସମସ୍ତେ ବସିଲେ, ଚା ଆସିଲା, ବଡ଼ ବିଚିତ୍ର କଥା, ମଧୁବାବୁ ନିଜ ଚାହା କପ୍‌ରେ ମୁହଁ ନଲଗାଇଲା ପର୍ଯ୍ୟନ୍ତ ବିଜ୍ଞବ୍ୟକ୍ତିମାନେ ଅପେକ୍ଷା କରିଥାନ୍ତି । ଏହା ହିଁ ମଧୁସୂଦନଙ୍କର ବ୍ୟକ୍ତିତ୍ୱର ଏକ ଝଲକ । ସେହିଦିନୁ ଧାରାବାହିକଭାବେ ମୋର ସଂପର୍କ ରହିଆସିଥିଲା ମଧୁସୂଦନଙ୍କ ସହ ଦେଶବଂଧୁ ଚିତ୍ତରଂଜନଙ୍କର ଜରିଆରେ ।''

ଶ୍ରୀଅରବିନ୍ଦଙ୍କ ସହ ମଧୁସୂଦନଙ୍କର ବ୍ୟକ୍ତିଗତ ଭାବେ ଘନିଷ୍ଠ ସଂପର୍କ ସ୍ଥାପନ ହୋଇଥିଲା। ୧୯୦୭ ଡିସେମ୍ବର ୧୨ ତାରିଖରେ ପ୍ରକାଶିତ ବନ୍ଦେମାତରଂ ସଂଖ୍ୟାରେ ଶ୍ରୀ ଅରବିନ୍ଦ ମଦୁସୂଦନଙ୍କୁ ଏକ ସୁଦକ୍ଷ ଓ ଶକ୍ତିସଂପନ୍ନ ପ୍ରତିଭାଶାଳୀ ଜନନାୟକ ରୂପେ ଆଖ୍ୟାୟିତ କରି

ତାଙ୍କ ଅଧିନାୟକତ୍ୱରେ ଓଡ଼ିଶାରେ ନବଜାଗରଣର ସୂତ୍ରପାତ ହୋଇଥିବା ନିମନ୍ତେ ତାହାଙ୍କୁ ଅଭିନନ୍ଦନ ଜଣାଇଥିଲେ ।

ଏହାର ମାତ୍ର ସାଢ଼େ ଚାରିମାସ ପରେ ୧୯୦୮ ଏପ୍ରିଲ୍ ୩୦ ତାରିଖରେ ମୁଜାଫରପୁରରେ ଏକ ଶକ୍ତିଶାଳୀ ବୋମା ବିସ୍ଫୋରଣରେ ଅତ୍ୟାଚାରୀ ପ୍ରଶାସକ ମିଃ କିଙ୍ଗସ୍‌ଫୋର୍ଡଙ୍କ ବଦଳରେ ଦୁଇଜଣ ଶ୍ୱେତାଙ୍ଗିନୀ ମହିଳାଙ୍କର ମୃତ୍ୟୁହୁଏ ଏବଂ ଖୁଦିରାମ ଓ ପ୍ରଫୁଲ୍ଲ ଚକି ଧରାପଡ଼ନ୍ତି । ଏହାର ଦୁଇଦିନ ପରେ କଲିକତାର ମାଣିକ ତାଲା ବାସଭବନ ଖାନତଲାସ ପରେ ଶ୍ରୀ ଅରବିନ୍ଦ କାରାବରଣ କଲେ । ତାଙ୍କ ବିରୁଦ୍ଧରେ ଦୀର୍ଘ ଏକବର୍ଷବ୍ୟାପୀ ମକଦ୍ଦମା ଚାଲିଲା, ଚିତ୍ତରଂଜନ ଦାସଙ୍କୁ ମଧୁସୂଦନ ଆଇନଗତ ପରାମର୍ଶ ଦେଉଥିଲେ । ୧୯୦୯ରେ ଅରବିନ୍ଦଙ୍କ ମୁକ୍ତିପରେ ୧୯୧୦ ଫେବ୍ରୁଆରିରେ ଶ୍ରୀ ଅରବିନ୍ଦଙ୍କ ଚନ୍ଦନପୁର ଯାତ୍ରା ପର୍ଯ୍ୟନ୍ତ ମଧୁସୂଦନଙ୍କ ପ୍ରଚ୍ଛନ୍ନ ଭୂମିକା ରହିଥିଲା । ଏହି ପର୍ଯ୍ୟାୟରେ ତାଙ୍କୁ ବହୁବାର ସିଷ୍ଟର ନିବେଦିତା ଓ ଚିତ୍ତରଂଜନଙ୍କ ଗହଣରେ ଦେଖିବାକୁ ମିଳୁଥିଲା । ସିଷ୍ଟର ନିବେଦିତା ଶ୍ରୀ ଅରବିନ୍ଦଙ୍କ ସଂପାଦିତ କର୍ମଯୋଗୀ ପତ୍ରିକା ପ୍ରକାଶନରେ ସହଯୋଗ କରିବା ସହିତ ତାଙ୍କ ଚନ୍ଦନପୁର ଯାତ୍ରା ପରେ ଏହି ପତ୍ରିକାର ସଂପାଦନା ଓ ପ୍ରକାଶନର ଗୁରୁଦାୟିତ୍ୱ ବହନ କରିଥିଲେ । ଚିତ୍ତରଂଜନ ଦାସ ଓ ମଧୁସୂଦନ ଏହା ସହିତ ଗଭୀର ଭାବରେ ସଂପୃକ୍ତ ଥିଲେ ।

ମହାତ୍ମାଗାନ୍ଧୀ ପ୍ରାୟ ୧୯୧୫ ସାଲ ବେଳକୁ ଦକ୍ଷିଣ ଆଫ୍ରିକାରୁ ଭାରତ ଫେରିଆସିଥିଲେ ଓ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସହିତ ପୂର୍ବ ସଂପର୍କକୁ ଅଧିକ ନିବିଡ଼ କରିବା ସହିତ ଶାନ୍ତିନିକେତନ ଆଦି ଅନୁଷ୍ଠାନ ପରିଦର୍ଶନ କରିବା ମଧ୍ୟରେ ପରସ୍ପର ପ୍ରତି ସହୃଦୟତାର ବନ୍ଧନରେ ଆବଦ୍ଧ ହୋଇଥିଲେ । ଏହା ସହିତ ମହାତ୍ମାଗାନ୍ଧୀ ୧୯୧୬ରେ ଅନୁଷ୍ଠିତ ଲକ୍ଷ୍ନୌ କଂଗ୍ରେସରେ ବିଶିଷ୍ଟ ଅତିଥିରୂପେ ଉପସ୍ଥିତ ଥିଲେ । ଏହି ଅଧିବେଶନରେ ଓଡ଼ିଶାର ଏକମାତ୍ର ପ୍ରତିନିଧି ରୂପରେ ମଧୁସୂଦନ ଉପସ୍ଥିତ ରହି ଆଲୋଚନାରେ ଅଂଶଗ୍ରହଣ କରିଥିଲେ ।

ଏହାପରେ ୧୯୧୯ରେ ଜାଲିଆନାୱାଲାବାଗ୍‌ର ନୃଶଂଶ ଗୁଳିକାଣ୍ଡଯୋଗୁଁ ସମଗ୍ର ଦେଶରେ ଏକ ବିସ୍ଫୋରକ ପରିସ୍ଥିତି ସୃଷ୍ଟି ହୋଇଥିଲା । ଏହି ସମୟରେ ମହାତ୍ମାଗାନ୍ଧୀ ଲାହୋର ଓ ଅମୃତସର ପରିଦର୍ଶନ କରି ସ୍ଥିତିର ଅନୁଧ୍ୟାନ କରି ଅଶାନ୍ତ ଉତ୍ତେଜନାକୁ କ୍ରମଶଃ ହ୍ରାସ କରିଥିଲେ । ଏହି ସମୟରେ କଂଗ୍ରେସ ପକ୍ଷରୁ ଯେଉଁ ଅନୁସନ୍ଧାନ କମିଟି ସ୍ଥାପିତ ହୋଇଥିଲା, ତହିଁରେ ଆଇନଜ୍ଞ ଚିତ୍ତରଂଜନ ଦାସଙ୍କୁ ଗାନ୍ଧିଜୀ ଜଣେ ଅଗ୍ରଣୀ ସଦସ୍ୟ ରୂପେ ଗ୍ରହଣ କରିଥିଲେ । ଆଇନ ବ୍ୟବସାୟରେ ପରାକାଷ୍ଠା ଲାଭକରି ଚିତ୍ତରଂଜନ ବିପୁଳ ଐଶ୍ୱର୍ଯ୍ୟ ଓ ସଂପତ୍ତିର ଅଧିକାରୀ ହୋଇଥିଲେ ମଧ୍ୟ ମହାତ୍ମାଗାନ୍ଧୀଙ୍କ ସଂପର୍କରେ ଆସିବା ପରେ ସେ ଦେଶସେବାରେ ନିଜକୁ ନିୟୋଜିତ କରିବାପାଇଁ ସଂକଳ୍ପବଦ୍ଧ ହୋଇଥିଲେ । ଏହି ସମୟରେ ଗାନ୍ଧିଜୀ ଲାହୋରରେ ଅବସ୍ଥାନ କାଳରେ ଶ୍ରୀମତୀ ସରଳାଦେବୀ ଚୌଧୁରୀଙ୍କ ଅତିଥି ହୋଇଥିଲେ । ଏଣେ ୧୯୨୦ ଆରମ୍ଭରେ ମଧୁସୂଦନ ଦାସ, ବ୍ରଜ ସୁନ୍ଦର ଦାସଙ୍କ ମାଧ୍ୟମରେ ବିଭାଜିତ ଓଡ଼ିଆ ଭାଷୀ ଅଞ୍ଚଳର ସଂଖ୍ୟାଲଘୁ ସମସ୍ୟାକୁ ଉପସ୍ଥାପନା କରି ଲେଖିଥିଲେ, 'ହେ

ମହାତ୍ମାଗାନ୍ଧୀ । ଆପଣଙ୍କର ପରିକଳ୍ପିତ ନୂତନ ଭାରତ କଣ ଐତିହାସିକ ଓଡ଼ିଆ ଜାତିର ଭସ୍ମାବଶେଷ ଉପରେ ପ୍ରତିଷ୍ଠିତ ହେବ?' ଏହି ପ୍ରକ୍ରିୟା ମାଧ୍ୟମରେ ମଧୁସୂଦନ ଦାସ ମହାତ୍ମାଗାନ୍ଧୀଙ୍କ ନିକଟତର ହୋଇଥିଲେ । ମଧୁସୂଦନ ଦାସ କଲିକତା ହାଇକୋର୍ଟରେ ଏଡ୍‌ଭୋକେଟ୍ ରୂପେ ଏହି ସମୟରେ କଲିକତାରେ ଅବସ୍ଥାନ କରି ରାଜନୈତିକ ପରିସ୍ଥିତିର ଅନୁଧ୍ୟାନ କରୁଥିଲେ । ମହାତ୍ମାଗାନ୍ଧୀ ୧୯୨୦ ସେପ୍ଟେମ୍ବରରେ କଲିକତାରେ ଅନୁଷ୍ଠିତ ଏକ କଂଗ୍ରେସ ଅଧିବେଶନରେ ସରକାରଙ୍କ ସହିତ ଅସହଯୋଗ କାର୍ଯ୍ୟକ୍ରମର ବ୍ୟାଖ୍ୟାନ କରି ସମଗ୍ର ଦେଶରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲେ । ହେଲେ ବହୁ ବୁଦ୍ଧିଜୀବୀ ଏହା ଆକାଶ କୁସୁମ ପରି ଅବାସ୍ତବ ବୋଲି ମତପ୍ରକାଶ କରିଥିଲେ । ମହାତ୍ମାଗାନ୍ଧୀଙ୍କ ଏହି କାର୍ଯ୍ୟକ୍ରମରେ ବିଦ୍ୟାଳୟ, କଚେରି ବର୍ଜନ ସହିତ ନିର୍ବାଚନ ପ୍ରକ୍ରିୟାକୁ ପ୍ରତ୍ୟାଖ୍ୟାନ କରିବା ଅନ୍ତର୍ଭୁକ୍ତ ଥିଲା । ବଂଗଳାର ଉଦୀୟମାନ ନେତା ଚିତ୍ତରଂଜନ ଦାସ ମହାତ୍ମାଗାନ୍ଧୀଙ୍କ ବ୍ୟାଖ୍ୟାନରେ ଆକର୍ଷିତ ହୋଇଥିଲେ ମଧ୍ୟ ନିର୍ବାଚନ ପ୍ରକ୍ରିୟା ବର୍ଜନ ବିଷୟରେ ମତାନ୍ତର ସୃଷ୍ଟି ହୋଇଥିଲା । ତେଣୁ ସେ ଗାନ୍ଧୀଙ୍କ ଏହି କର୍ମ ପନ୍ଥାରୁ ଦୂରତ୍ୱ ରକ୍ଷା କରିଥିଲେ । ଏହା ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସତର୍କ ଦୃଷ୍ଟିକୁ ଆକର୍ଷଣ କରିଥିଲା । ଯଦି ଚିତ୍ତରଂଜନ ମହାତ୍ମାଗାନ୍ଧୀଙ୍କର ଏହି ନିର୍ଦ୍ଦେଶିତ କାର୍ଯ୍ୟରୁ ଅଲଗା ରହନ୍ତି, ତାହା ସାରା ବଂଗପାଇଁ ଏକ ଦୁର୍ଭାଗ୍ୟଦାୟକ ସ୍ଥିତି ରୂପେ ବିବେଚିତ ହେବ ବୋଲି ସେ ଆକଳନ କଲେ । ମଧୁସୂଦନଙ୍କ ସହିତ ଚିତ୍ତରଂଜନଙ୍କ ଘନିଷ୍ଠତା ସଂପର୍କରେ ସେ ଅବହିତ ଥିଲେ । ମହାତ୍ମାଗାନ୍ଧୀ ୧୯୨୦ ସାଲରେ ୟଙ୍ଗ ଇଣ୍ଡିଆ ପତ୍ରିକାରେ 'ଉତ୍କଳର ଚିତ୍କାର' ନିବନ୍ଧ ଲେଖି ମଧୁସୂଦନ ଦାସଙ୍କୁ ଆକର୍ଷିତ କରିଥିଲେ ଓ କ୍ରମଶଃ ଉଭୟଙ୍କର ସଂପର୍କରେ ଘନିଷ୍ଠତା ବୃଦ୍ଧି ପାଇଥିଲା । ଉଭୟ ଚିତ୍ତରଂଜନ ଦାସ ଓ ମହାତ୍ମାଗାନ୍ଧୀଙ୍କ ସହିତ ମଧୁସୂଦନ ସଂପର୍କିତ ଥିବାରୁ, ରବୀନ୍ଦ୍ରନାଥ ସେମାନଙ୍କ ଭିତରେ ମଧ୍ୟସ୍ଥତା କରିବା ପାଇଁ ମଧୁସୂଦନଙ୍କୁ ନିମନ୍ତ୍ରଣ କଲେ । ମଧୁସୂଦନ କଲିକତା ଆସି ରବୀନ୍ଦ୍ରନାଥଙ୍କ ପରାମର୍ଶରେ ଚିତ୍ତରଂଜନ ଦାସଙ୍କ ସହିତ ମହାତ୍ମାଗାନ୍ଧୀଙ୍କର ଅଭିନବ ଦୃଷ୍ଟିକୋଣ ସଂପର୍କରେ ବିଶଦ ଆଉ ହାର୍ଦ୍ଦିକ ଆଲୋଚନା କଲେ । ବହୁ ପରୀକ୍ଷା ନିରୀକ୍ଷା ପରେ ଚିତ୍ତରଂଜନ ଦାସ ମହାତ୍ମାଗାନ୍ଧୀଙ୍କ ପ୍ରଦର୍ଶିତ ମାର୍ଗ ପ୍ରତି ନିଜର ସମ୍ମତି ପ୍ରଦାନ କଲେ । ସମାଧାନର ପନ୍ଥା କ୍ରମଶଃ ଉଜ୍ଜ୍ୱଳ ହେବାକୁ ଲାଗିଲା । ସମୟର ଅନୁକୂଳ ପରିସ୍ଥିତି ଅତ୍ୟନ୍ତ ହୃଦୟଗ୍ରାହୀ ଥିଲା ।

ଏହି ସମୟରେ ମହାତ୍ମାଗାନ୍ଧୀ ଆସି କଲିକତାର ବିରଳା ଭବନରେ ଅବସ୍ଥାନ କରୁଥାନ୍ତି । ଏହି ସମୟର ଘଟଣାବଳୀ ସୂର୍ଯ୍ୟମଣିଙ୍କର ଆତ୍ମଚରିତରୁ -

'ପ୍ରଭାତ ସମୟ । ଅମାନିଆ ଉତ୍ତଳା ପବନଟି ବହିଚାଲିଛି ଶୀତର ପ୍ରକୋଷ୍ଟକୁ ଅଧିକ ପ୍ରଗାଢ଼ କରି । ସୂର୍ଯ୍ୟମଣି କାର୍ ନେଇ ଆସି ପହଞ୍ଚିଲେ ଗ୍ରାଣ୍ଡ ହୋଟେଲ୍‌ରେ ମଧୁସୂଦନ ରହୁଥିବା କୋଠରିରେ । ପୂର୍ବ ପ୍ରସ୍ତୁତି ମତେ ମଧୁସୂଦନ ଆସି ବସିଲେ କାର୍‌ରେ । ସୂର୍ଯ୍ୟମଣି କାର୍‌ଟିକୁ ନେଇ ପହୁଞ୍ଚାଇଲେ ବିରଳା ଭବନରେ । ସେଠାରେ ଗାନ୍ଧିଜୀଙ୍କ ସହିତ ନିଭୃତ ଆଲୋଚନା କରି ମଧୁସୂଦନ ଆସି ବସିଲେ କାର୍‌ର ଆଗ ସିଟ୍‌ରେ । ମହାତ୍ମାଗାନ୍ଧୀ ଓ ଶ୍ରୀମତୀ ସରୋଜିନୀ ନାଇଡୁ

ଆସି ବସିଲେ କାର୍‌ର ପଛ ସିଟ୍‌ରେ । ସଭିଙ୍କ ମଧ୍ୟରେ ହାର୍ଦ୍ଦିକ ଆଲୋଚନା ଚାଲୁ ରହିଥାଏ । ଗାଡ଼ି ଆସି ପହଞ୍ଚିଲା ଚିତ୍ତରଂଜନଙ୍କ ବାସଭବନରେ । ଅତିଥିବୃନ୍ଦ ଅତିଥିଶାଳାରେ ଆସି ଉପବେଶନ କଲେ । ଭିତରୁ ଗୋଟିଏ ଟ୍ରେରେ କିଛି ଫଳ ଆସି ପହଞ୍ଚିଲା ଅତିଥିମାନଙ୍କୁ ଆପ୍ୟାୟିତ କରିବାପାଇଁ । ଗୋଟିଏ ପ୍ଲେଟରେ ସେଇ ଫଳକୁ ସୋରା ସୋରା କାଟି ମଧୁସୂଦନ ଗାନ୍ଧିଜୀଙ୍କୁ ଅର୍ପଣ କଲେ । ହେଲେ ବଣିଆ ମହାତ୍ମାଗାନ୍ଧୀ ତାଙ୍କ ଦରଦାମର ମୂଲଚାଲ ଆରମ୍ଭ କରିଦେଲେ ଆଉ କହିଲେ, ମୋର ସ୍ୱାର୍ଥସିଦ୍ଧି ନହେଲେ କାହିଁକି ଏ ଫଳ ଗ୍ରହଣ କରିବି ? ଗାନ୍ଧିଜୀ ନଛୋଡ଼ବନ୍ଧା । ଆଉ କିଛି ପରିମାଣରେ ସଂଶୟ ବିଜଡ଼ିତ ଥିଲେ । ଅବଶେଷରେ ମଧୁସୂଦନ ପ୍ରତିଶ୍ରୁତି ପ୍ରଦାନ କରି କହିଲେ, '' ଆପଣଙ୍କର ଅଭିଳାଷ ଚରିତାର୍ଥ ହେବ ।''

ବହୁ ଅନୁନୟ ପରେ ଗାନ୍ଧିଜୀ ଗୋଟିଏ ମାତ୍ର ସୋରା ଫଳ ଗ୍ରହଣ କରି ଦ୍ୱାର ମୁହଁକୁ ଚାହିଁ ରହିଲେ । ସହସା ହଠାତ୍ ପରଦା ହଟେଇ ଶ୍ୱେତ ଖଦଡ଼ର ସଫେଦ ପରିଚ୍ଛଦ ପରିହିତ ଚିତ୍ତରଂଜନ ଆସି ମହାତ୍ମାଗାନ୍ଧୀଙ୍କୁ ପ୍ରଣାମ କରନ୍ତେ, ଗାନ୍ଧିଜୀ ନିବିଡ଼ ଆଶ୍ଲେଷରେ ତାଙ୍କୁ କୋଳାଗ୍ରତ କରି ନେଲେ । ଏକ ହାର୍ଦ୍ଦିକ ବାତାବରଣର ଉଚ୍ଛ୍ୱାସ ଭରା ଉଲ୍ଲାସ ଯେପରି ସର୍ବତ୍ର ଛାଇ ଯାଇଥିଲା ।''

ଏହାଥିଲା ସୂର୍ଯ୍ୟମଣିଙ୍କର ଆତ୍ମଚରିତର କିଛି ଅଂଶ, ଯାହା ସେ ବେଳର ରାଜନୈତିକ ପରିସ୍ଥିତିର ଉଷ୍ମତାକୁ ଅତ୍ୟନ୍ତ ବିଶ୍ୱସ୍ତତାର ସହ ରୂପାୟିତ କରୁଥିଲା ।

ପ୍ରକୃତରେ ୧୯୨୦ଡିସେମ୍ବର ମାସରେ ନାଗପୁର କଂଗ୍ରେସରେ ଗାନ୍ଧିଜୀଙ୍କର ଅସହଯୋଗ ପ୍ରସ୍ତାବ ଆଗତ କରିବାରେ ଚିତ୍ତରଂଜନ ଦାସ ତାତ୍ପର୍ଯ୍ୟପୂର୍ଣ୍ଣ ସହଯୋଗ ପ୍ରଦାନ କରି ଏହାକୁ ସଫଳ କରାଇପାରିଥିଲେ । ମଧୁସୂଦନ ବହୁ ସମୟରେ ନୀରବରେ କଂଗ୍ରେସକୁ ତାତ୍ତ୍ୱିକ ସହଯୋଗ ପ୍ରଦାନ କରି ଏହାର ଅନ୍ତର୍ନିହିତ ସମସ୍ୟାବଳୀର ସମାଧାନ କରୁଥିଲେ । ଏ କ୍ଷେତ୍ରରେ ତାଙ୍କର ସଂପର୍କର ସେତୁ ଥିଲେ ଚିତ୍ତରଂଜନ ଦାସ ।

ମଧୁସୂଦନ ସଶସ୍ତ୍ର ସଂଗ୍ରାମର ବିରୋଧୀ ନଥିଲେ । ସେ ୧୯୧୫ରେ କଟକରେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କର ଅଭ୍ୟର୍ଥନା ମଂଚରେ ପ୍ରଦତ୍ତ ଭାଷଣରେ କହିଥିଲେ- ''ମାଙ୍କଡ଼ ବସି ଆମ ଗଛରେ ଫଳଖାଉଛି । ତାକୁ ଖତେଇ ହେଲେ ବା ଘୋଘୋ କଲେ କଣ ହେବ, ମାଙ୍କଡ଼କୁ ତଡ଼ିବାପାଇଁ ଆବଶ୍ୟକ ବାଟୁଳିଖଡ଼ାର ଦୁର୍ବାର ପ୍ରୟୋଗ'' ।

ମଧୁସୂଦନ ଭାରତର ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିବାକୁ ପ୍ରସ୍ତୁତ ଥିଲେ । ମାତ୍ର ଗଭୀର ଭାବେ ଦେଶବତ୍ସଳ ମଧୁସୂଦନଙ୍କର ପାଦ ଦୁଇଟି ଓଡ଼ିଶା ମାଟିରେ ଗଭୀର ଭାବରେ ପ୍ରୋଥିତ ହୋଇଥିଲା । ସେଥିରୁ ନିସ୍ତାରପାଇବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ସମସ୍ତ ଓଡ଼ିଶା ଥିଲା ମଧ୍ୟବର୍ତ୍ତୀ ନୌକର ସାହି ଶାସନର ଶୃଙ୍ଖଳରେ ଆବଦ୍ଧ । ଏହି ଶୃଙ୍ଖଳ ଛିନ୍ନ ହେବାପରେ ଭାରତର ସ୍ୱାଧୀନତା ସଂଗ୍ରାମରେ ଏପରିକି ଜଣେ ଉଗ୍ରବାଦୀର ଭୂମିକାରେ ଅବତୀର୍ଣ୍ଣ ହେବାକୁ ମଧ୍ୟ ସେ ପ୍ରସ୍ତୁତ ଥିଲେ । ମାତ୍ର ସେ ନିଶ୍ଚିତ ଥିଲେ ଯେ, ସ୍ୱାଧୀନତା ପୂର୍ବରୁ ଓଡ଼ିଶା ପ୍ରଦେଶ ଗଠନ ସମ୍ଭବ ନହେଲେ ପ୍ରତିବେଶୀ ନେତୃବର୍ଗଙ୍କ ଚକ୍ରାନ୍ତରେ ଓଡ଼ିଶାର ସତ୍ତା ଲୋପ ହେବାର

ଆଶଙ୍କା ପ୍ରତିପଦରେ ରହିଥିଲା । ତେଣୁ ଓଡ଼ିଶା ପ୍ରଦେଶ ଗଠନର ସମସ୍ତ ପ୍ରୟାସର ଅନ୍ତରାଳରେ ନୀରବ ଭାବେ ବହିଚାଲିଥିଲା, ମହାଭାରତୀୟ ପ୍ରୀତିର ଅଫୁରନ୍ତ ବନ୍ୟା ।

ମଧୁସୂଦନଙ୍କର ଏହି ଦ୍ୱୈତ ଭୂମିକା ସଂପର୍କରେ ଗାନ୍ଧୀ ବହୁ ପରିମାଣରେ ଅବହିତ ଥିଲେ । ତେଣୁ ସେ ମଧୁସୂଦନଙ୍କୁ ''ଭାରତର ମହାନ ଦେଶବତ୍ସଳ'' ନେତୃପୁରୁଷ ରୂପେ ସଂବୋଧିତ କରି, ଆପଣାର ମାର୍ଗଦର୍ଶକ ରୂପେ ସ୍ୱଦେଶୀ ଶିଳ୍ପ ଆନ୍ଦୋଳନ ଓ ନିଷ୍ପେଷିତ ଦଳିତ ବର୍ଗଙ୍କର ସେବାକ୍ଷେତ୍ରରେ, ମଧୁସୂଦନଙ୍କ ଆଭିମୁଖ୍ୟକୁ ମାନ୍ୟତା ପ୍ରଦାନ ସହ ଗ୍ରହଣ କରିନେଇଥିଲେ ।



# ପ୍ରଜାକୁଳର ତ୍ରାଣକର୍ତ୍ତା ମଧୁସୂଦନ

ବହୁଦେଶର ପ୍ରଚଳିତ ଗଣତାନ୍ତ୍ରିକ ଧାରାରେ ନ୍ୟସ୍ତସ୍ୱାର୍ଥଗୋଷ୍ଠୀ ପ୍ରମୁଖ ଭୂମିକାରେ ଅବତୀର୍ଣ୍ଣ ହୋଇ ଯେପରି ସାମାଜିକ ବିଧିବ୍ୟବସ୍ଥାକୁ ଉଲ୍ଲଂଘନ ଓ ବିପର୍ଯ୍ୟସ୍ତ କରିଆସିଛନ୍ତି, ତାହା ଉଦ୍‌ବେଗର କାରଣ ହୋଇଛି । ମାତ୍ର ଭାରତରେ ମଧୁବାବୁ ଏହି ଗୋଷ୍ଠୀକୁ ସମୂଳେ ବର୍ଜନକରି ସୁସଂଯୋଜିତ ନିବାଚନ ପ୍ରକ୍ରିୟା ମାଧମରେ ଗଣତାନ୍ତ୍ରିକ ଓ ସାମାଜିକ ବ୍ୟବସ୍ଥା ପ୍ରତିଷ୍ଠା କରିଥିଲେ । ୧୯୦୯ ସାଲରେ ପ୍ରଜା ପ୍ରତିନିଧି ସଭାର ପ୍ରତିଷ୍ଠା କ୍ଷେତ୍ରରେ ଏହା ପ୍ରତିପାଦିତ ହୋଇଛି । ୧୯୧୨ ସାଲରେ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାର କିଛି ଚିହ୍ନିତ କୃଷିଭିତ୍ତିକ ଅଞ୍ଚଳରେ ଜମିଦାର, ସାହୁକାର ତଥା ବ୍ୟବସାୟୀ ଆଦି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀକୁ ସଂପୂର୍ଣ୍ଣ ଭାବେ ବର୍ଜନ କରି; ଗୋଟିଏ ଗୋଟିଏ କ୍ଷୁଦ୍ର ଗ୍ରାମ ଗୋଷ୍ଠୀ ଅଂଚଳକୁ ଏକ ଏକ ନିର୍ବାଚନ ମଣ୍ଡଳୀରୂପେ ଧାର୍ଯ୍ୟକରି; ନିର୍ବାଚନର ବିଧିବ୍ୟବସ୍ଥା ମାଧ୍ୟମରେ ସେ ପ୍ରତିନିଧି ନିର୍ବାଚନ କରିଥିଲେ । ପ୍ରାୟ ଦୁଇମାସରୁ ଉର୍ଦ୍ଧ୍ୱକାଳ ଧରି ମଧୁସୂଦନ ଗ୍ରାମ ଗହଳରେ ପ୍ରଜାପ୍ରତିନିଧିମାନଙ୍କ ନିର୍ବାଚନ ପ୍ରକ୍ରିୟା ସମାହିତ କରି ୧୪.୭.୧୯୧୨ରେ କଟକର ଟାଉନ ଲାଇବ୍ରେରୀଠାରେ ନବନିର୍ବାଚିତ ପ୍ରଜା ପ୍ରତିନିଧିମାନଙ୍କର କେନ୍ଦ୍ରୀୟ ସଭା ଆହ୍ୱାନ କରିଥିଲେ । ଏଥିରେ ସହସ୍ରାଧିକ ପ୍ରଜା ପ୍ରତିନିଧି ଯୋଗ ଦେଇଥିଲେ । ଜମିଦାରୀ ଗୋଷ୍ଠୀରେ ଅନ୍ତର୍ଭୁକ୍ତ ଥିବାରୁ ମଧୁସୂଦନଙ୍କର ପରମ ବଂଧୁ ତଥା ଉତ୍କଳଦୀପିକାର ସଂପାଦକ ଗୌରୀଶଂକର ରାୟ ଏହି ନିର୍ବାଚନ ପ୍ରକ୍ରିୟାରେ ଅଂଶ ଗ୍ରହଣ କରିପାରିନଥିଲେ ମଧ୍ୟ ଜଣେ ନିମନ୍ତ୍ରିତ ଦର୍ଶକଭାବେ ଏହି ସଭାରେ ଯୋଗଦାନ କରି ଯେଉଁ ମନ୍ତବ୍ୟ ଉତ୍କଳଦୀପିକାର ପୃଷ୍ଠାରେ ସନ୍ନିବେଶିତ କରିଥିଲେ, ତାହା ପ୍ରଣିଧାନଯୋଗ୍ୟ -

'' ଏଠାରେ (କଟକରେ) ଯେଉଁସବୁ ସମ୍ମିଳନୀ ଅଛି ସେ ସମସ୍ତଙ୍କର ସଭ୍ୟ ଅନେକ । ମାତ୍ର କେତେଜଣ ଶିକ୍ଷିତ ବ୍ୟକ୍ତି ଉପସ୍ଥିତି ରହି କାର୍ଯ୍ୟକରନ୍ତି ଏବଂ ଜନସାଧାରଣଙ୍କର ମତବ୍ୟକ୍ତ କରନ୍ତି । ମାତ୍ର ଏହି ପ୍ରଜା ପ୍ରତିନିଧି ସଭାରେ, ଜନସାଧାରଣଙ୍କର ପ୍ରତିନିଧି ସ୍ୱୟଂ ଉପସ୍ଥିତ, ଏବଂ ଏଠାରେ ଉଚ୍ଚଶିକ୍ଷିତ ବ୍ୟକ୍ତି ଅଳପ ମାତ୍ର ଥିଲେ । ଏହି ନିର୍ବାଚନ ମଣ୍ଡଳୀ ଅଂଚଳର ମଫସଲ ତଥା ଗ୍ରାମ

ନିବାସୀ ବହୁ ଓକିଲ, ମୁକ୍ତାର, ଜମିଦାର ଓ ବ୍ୟବସାୟୀ ପ୍ରତ୍ୟକ୍ଷ ଏହି ନଗରୀରେ ଥିବା ସତ୍ତ୍ୱେ ସେମାନଙ୍କ ମଧ୍ୟରୁ ଦୁଇ ଚାରିଜଣଙ୍କ ଛଡ଼ା ଅନ୍ୟ କାହାରିକୁ ଭେଟିଲୁ ନାହିଁ ।'' ଉତ୍କଳଦୀପିକା ୨୦.୭.୧୯୧୨) ଏହା ଥିଲା ଗୌରୀଶଙ୍କରଙ୍କ ନିଜସ୍ୱ ବକ୍ତବ୍ୟ, ତାହା ପ୍ରଜାର ପ୍ରତିନିଧି ସଭାର ବାସ୍ତବ ସ୍ୱରୂପକୁ ପ୍ରତିପାଦିତ କରୁଥିଲା । ଏହି ପ୍ରଜା ପ୍ରତିନିଧି ସଭାରେ ମଧୁସୂଦନ ଦାସ ସଭାପତି ରୂପେ ବରିତ ହୋଇ, ପଣ୍ଡିତ ଗୋପବଂଧୁ ଓ ନୀଳକଣ୍ଠ ଦାସ ସମ୍ପାଦକ ରୂପେ ନିର୍ବାଚିତ ହୋଇଥିଲେ ।

ବିହାର ଓ ଓଡ଼ିଶା କାଉନ୍‌ସିଲ୍‌ର କାର୍ଯ୍ୟକାରୀ ସଦସ୍ୟ ମିଷ୍ଟର ଇ.ଭି.ଲେଭେଞ୍ଜି ୧.୯.୧୯୧୩ରେ ଲେଖିଥିଲେ - ''ଓଡ଼ିଶାର ଏହି ପ୍ରଜା ପ୍ରତିନିଧି ସଭା ସଦୃଶ, ପ୍ରଜାକୁଳଦ୍ୱାରା ନିର୍ବାଚିତ ପ୍ରତିନିଧିମୂଳକ ପ୍ରତିଷ୍ଠାନ ସାରା ଭାରତରେ ପରିଦୃଶ୍ୟମାନ ହୁଏ ନାହିଁ । ଏହି ଦୃଷ୍ଟିରୁ ଓଡ଼ିଶାର ପ୍ରଜା ପ୍ରତିନିଧି ସଭା ସମଗ୍ର ଭାରତରେ ଅନନ୍ୟ ଓ ଅଦ୍ୱିତୀୟ । ବର୍ତ୍ତମାନ ଏହାର ନିର୍ବାଚିତ ପ୍ରତିନିଧିମାନଙ୍କ ସଂଖ୍ୟା ୧୧୭୩ରେ ପହଞ୍ଚିଛି । ଏହି ପ୍ରଜା ପ୍ରତିନିଧି ସଭା ଓଡ଼ିଶାର ଶହଶହ ଗ୍ରାମର ଜନସାଧାରଣଙ୍କ ସ୍ୱାର୍ଥ, ଆଶା, ଆକାଙ୍‌କ୍ଷା, ଆବେଗ ଓ ପ୍ରତ୍ୟାଶାର ଭାବନାକୁ ପ୍ରତିଫଳିତ କରୁଅଛି ।''

୧୯୧୨ରେ ଏକ ଚକ୍ରାନ୍ତ ମଧ୍ୟରେ ଓଡ଼ିଶାର ପ୍ରଜାକୁଳକୁ ନିଷ୍ପେଷଣର ଅତଳ ଗର୍ଭକୁ ନିକ୍ଷେପ କରିବାପାଇଁ ଯେଉଁ ପ୍ରଚେଷ୍ଟା ଆରମ୍ଭ ହୋଇଥିଲା, ମଧୁସୂଦନଙ୍କର ନେତୃତ୍ୱଯୋଗୁଁ ତାହା ବହୁ ପରିମାଣରେ ପ୍ରତିହତ ହୋଇପାରିଥିଲା । ସେହି ମୂଳ କଥାକୁ ଫେରିବା ।

ଇଷ୍ଟଇଣ୍ଡିଆ କମ୍ପାନି ୧୭୬୩ ସାଲରୁ ଦେୱାନି ଗ୍ରାଣ୍ଟ ବଳରେ ବଙ୍ଗ ଓ ବିହାରରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ କରିଥିଲେ ମଧ୍ୟ ଓଡ଼ିଶା ପାଇଁ କ୍ରମାଗତ ଖଜଣା ବୃଦ୍ଧି ମାଧ୍ୟମରେ ଏକ ଶୋଷଣମୂଳକ ପ୍ରକ୍ରିୟା ସଂଚାଳିତ ହୋଇଥିଲା । ଏହାଛଡ଼ା ୧୮୩୫ରୁ ୧୮୪୫ ଏବଂ ୧୮୯୦ରୁ ୧୯୦୦ ପର୍ଯ୍ୟନ୍ତ ଦୁଇଥର ସେଟେଲ୍‌ମେଣ୍ଟ ବା ବନ୍ଦୋବସ୍ତ ପ୍ରକ୍ରିୟା ସହିତ ୧୯୦୭ରୁ ଆରମ୍ଭ ହୋଇଥିବା ରିଭିଜନ ସେଟଲ୍‌ମେଣ୍ଟ ପ୍ରକ୍ରିୟା ସମଗ୍ର ପରିସ୍ଥିତିକୁ ବିସ୍ଫୋରକ କରିଦେଇଥିଲା । ଏଣେ ୧୮୮୫ ସାଲରୁ ବଂଗ ପ୍ରଜା ସ୍ୱତ୍ତ୍ୱ ଆଇନକୁ ଯଥେଚ୍ଛାଚାର ଭାବରେ ଓଡ଼ିଶା ଉପରେ ଲଦି ଦିଆଯାଇଥିବା ବେଳେ, ୧୯୧୨ ସାଲରେ ଓଡ଼ିଶାରେ ସ୍ୱାର୍ଥାନ୍ୱେଷୀ ବଂଗୀୟ ଜମିଦାରବର୍ଗଙ୍କର ଶୋଷଣ ପ୍ରକ୍ରିୟାକୁ ଅଧିକ ଉଗ୍ର କରିବାପାଇଁ,ମିଃ ଏଫ୍. ଏ. ସ୍ଲାକ୍‌ଙ୍କର ପ୍ରଣୀତ ଓଡ଼ିଶା ପ୍ରଜାସ୍ୱତ୍ତ୍ୱ ବିଲ୍ ବଂଗ ବିଧାନ କାଉନ୍‌ସିଲ୍‌ରେ ଉପସ୍ଥାପନ କରାଯାଇଥିଲା । ଏହା ଓଡ଼ିଶାର ବିପର୍ଯ୍ୟସ୍ତ ତଥା ଦୟନୀୟ ପ୍ରଜାକୁଳକୁ ନିଷ୍ପେଷଣର ଅନ୍ତିମ ପର୍ଯ୍ୟାୟରେ ପହଞ୍ଚାଇବାପାଇଁ ଅଭିପ୍ରେତ ଥିଲା । ମାତ୍ର ମଧୁସୂଦନ ଏହି ବିଲ୍‌କୁ ତୀବ୍ର ବିରୋଧ କରି ଦୃପ୍ତ କଣ୍ଠରେ ଯେଉଁବକ୍ତବ୍ୟ ପ୍ରଦାନ କରିଥିଲେ, ତାହା ବଙ୍ଗ ବିଧାନ କାଉନ୍‌ସିଲ ରିପୋର୍ଟରେ ଶତାଧିକ ପୃଷ୍ଠାରେ ଲିପିବଦ୍ଧ ରହିଛି । ତାହାର କିଛି ଅଂଶ --

''ଅତ୍ୟନ୍ତ ଶୋଷଣକାରୀ ଓଡ଼ିଶା ପ୍ରଜାସ୍ୱତ୍ତ୍ୱ ବିଲ୍ ନବଗୁଞ୍ଜରର ଭଳି ଅତ୍ୟନ୍ତ ଆକର୍ଷଣୀୟ । ମାତ୍ରଏହାର ଅନ୍ତରାଳରେ ରହିଛି ସମସ୍ତ ଧ୍ୱଂସକାରୀ ଶକ୍ତିର ସମାହାର । ନବଗୁଞ୍ଜରର ତିନିଗୋଟି

ପାଦ ମଧ୍ୟରୁ ଗୋଟିଏ ପାଦ ବ୍ୟାଘ୍ରର, ଦ୍ୱିତୀୟଟି ଅଶ୍ୱର, ତୃତୀୟଟି ହସ୍ତୀର; ଶରୀରଟି ସିଂହର, ଲାଞ୍ଜଟି ହେଉଛି ଉର୍ଦ୍ଧ୍ୱାୟିତ ଉତ୍‌କ୍ଷିପ୍ତ ନାଗର ଫଣା । ସର୍ବୋପରି ହସ୍ତରେ ରହିଛି ସୁଦର୍ଶନ ଚକ୍ର । ସମସ୍ତ ଧ୍ୱଂସକାରୀ ଶକ୍ତିର ସମାହାର ଘଟିଛି ଏହି ନବଗୁଂଜରର ପ୍ରତୀକରେ । ସେହିପରି ଓଡ଼ିଶା ପ୍ରଜାସ୍ୱତ୍ୱ ବିଲ୍‌ରେ ସନ୍ନିବେଶିତ ରହିଛି, ବମ୍ବେ, ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗ ତଥା ପୂର୍ବବଂଗ ପ୍ରଜାସ୍ୱତ୍ୱ ଆଇନର ସମସ୍ତ ନିଷ୍ପେଷଣମୂଳକ ବିଧି ବ୍ୟବସ୍ଥାର ସମନ୍ୱୟ । ବଂଗ ସରକାରଙ୍କର ପ୍ରଚଣ୍ଡ ଧ୍ୱଂସକାରୀ ଶକ୍ତି ସଂପର୍କରେ ଓଡ଼ିଶା ଅବହିତ ରହିଛି । ୧୮୬୬ ସାଲର କରାଳ ଦୁର୍ଭିକ୍ଷର ଗ୍ରାସ ସହିତ ଯେଉଁ ପ୍ରଳୟଙ୍କରୀ ବନ୍ୟା ଓଡ଼ିଶାରେ ସଂଘଟିତ ହୋଇଥିଲା, ତାହା କେତେ ନିୟୁତ ଲୋକଙ୍କୁ ଏ ଭୂମିରୁ ନିର୍ମୂଳ କରିଦେଇଥିଲା ।''

ମଧୁସୂଦନଙ୍କ ଉଗ୍ର ପ୍ରତିବାଦ ସତ୍ତ୍ୱେ ବଂଗ ବିଧାନ କାଉନସିଲରେ ଏହି ବିଲ୍ ଗୃହୀତ ହୋଇଥିଲା । ତେଣୁ ସେ ଭାରତର ବଡ଼ଲାଟ ଲର୍ଡ଼ ହାର୍ଡିଞ୍ଜଙ୍କୁ ତୀବ୍ର ପ୍ରତିବାଦ ଜଣାଇ ଲେଖିଥିଲେ- ''ଓଡ଼ିଶାର ପ୍ରଜାକୁଳର ସ୍ୱାର୍ଥ ବିରୋଧୀ ତଥା ନିଷ୍ପେଷଣର ପ୍ରତୀକ ଏହି ଓଡ଼ିଶା ପ୍ରଜାସ୍ୱତ୍ୱ ବିଲ୍‌କୁ ଯଦି ବଡ଼ଲାଟ ମଞ୍ଜୁରୀ ପ୍ରଦାନ କରନ୍ତି, ତାହାହେଲେ ସେ ଅବିଳମ୍ବେ ଓଡ଼ିଶାରୁ ଅନ୍ତତଃ କୋଡ଼ିଏ ହଜାର କୃଷକଙ୍କୁ ନେଇ ବେଲଭିଜିଆର ପ୍ରାସାଦ ସମ୍ମୁଖରେ ପ୍ରତିବାଦର ଆୟୋଜନ କରିବେ ଏବଂ ସ୍ୱୟଂ ବଡ଼ଲାଟ ସେମାନଙ୍କର ସ୍ଥିତି ସଂପର୍କରେ ଅନୁଧ୍ୟାନ କରିପାରିବେ ।'' ବଡ଼ଲାଟ ଲର୍ଡ଼ ହାର୍ଡିଞ୍ଜ ଏହି ବିଲ୍‌କୁ ମଂଜୁରୀ ପ୍ରଦାନ ନକରି ଫେରାଇ ଦେଇଥିଲେ । ସମଗ୍ର ଭାରତୀୟ ପାର୍ଲାମେଣ୍ଟାରୀ ଇତିହାସରେ ଏହା ଥିଲା ଏକମାତ୍ର ବ୍ୟତିକ୍ରମ । ଏହାର ପଶ୍ଚାତରେ ରହିଥିଲା ମଧୁସୂଦନଙ୍କ ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱ, ଯାହା ତାଙ୍କୁ ଜଣେ ଅପ୍ରତିହତ ସଂଗ୍ରାମୀର ମର୍ଯ୍ୟାଦା ପ୍ରଦାନ କରିଥିଲା । ମଧୁସୂଦନ ବଂଗ, ଓଡ଼ିଶା ତଥା ବିହାର କାଉନ୍‌ସିଲ୍‌ରେ ପ୍ରଜାଙ୍କର ସ୍ୱାର୍ଥରକ୍ଷାଲାଗି ଯେଉଁ ମେମୋରାଣ୍ଡମ ପ୍ରଦାନ କରିଥିଲେ, ତହିଁରେ ବିନା କ୍ଷତି ପୂରଣରେ ଜମିଦାରି ପ୍ରଥାର ଉଚ୍ଛେଦ ଲାଗି ବଳିଷ୍ଠ ଯୁକ୍ତିମାନ ଉପସ୍ଥାପିତ କରାଯାଇଥିଲା । ପ୍ରଜା ପ୍ରତିନିଧି ସଭାର ସଂପାଦକ ପଣ୍ଡିତ ନୀଳକଂଣ୍ଠଙ୍କ ଭାଷାରେ ''ଏହି ମେମୋରାଣ୍ଡମ୍ ପ୍ରଜାକୁଳର ସ୍ୱାର୍ଥରକ୍ଷା ଲାଗି ସର୍ବୋତ୍ତମ ତଥା ସର୍ବୋତ୍କୃଷ୍ଟ ଦଲିଲ୍ ଥିଲା, ଯାହା ଏ ପର୍ଯ୍ୟନ୍ତ ଅନତିକ୍ରମ୍ୟ ହୋଇ ରହିଛି ।''

ହାଡ ଦୁଇଖଣ୍ଡ ମାଉଁସ ପଳେ
ମଧୁକୁ କିଏ ବା ବୁଦ୍ଧିରେ ବଳେ ?



# ଜାତିର ପହିଲି ଖେଳୱାଡ଼୍

ଉନବିଂଶ ଶତାବ୍ଦୀର ଶେଷ ଭାଗରେ, ରେନେଁସା ବା ନବଜାଗରଣର ଅଧ୍ୟାୟରେ, ଉନ୍ମେଷିତ ଉତ୍କଳୀୟତାର ପ୍ରତିଟି ପର୍ବରେ, ମଧୁବାବୁଙ୍କର ଥିଲା ଆଦ୍ୟ ଭୂମିକା । ସେ ଉଭା ହୋଇଥିଲେ ସାମଗ୍ରିକ ଉନ୍ନୟନର ଉଜ୍ଜ୍ୱଳ ପ୍ରତୀକ ରୂପରେ ।

ସେ ଥିଲେ ଜାତୀୟ ଜାଗରଣ ପର୍ବରେ ଓଡ଼ିଶାର ପହିଲି ଖେଳୱାଡ଼ । ନିଜର ଜୀବନକୁ ବଲ୍‌ଟିଏ ପରି ପାପୁଲିରେ ରଖି ଖେଳିବାର ଅଦମ୍ୟ ସାହସିକତା ଆଉ ଆତ୍ମପ୍ରତ୍ୟୟ ଥିଲା ତାଙ୍କର । ଦୁଃସାହସିକତା ଥିଲା ତାଙ୍କ ଜୀବନର ଐକ୍ୟତାନିକ ସ୍ୱର, ଯହିଁରେ ଉତ୍‌ଥାନ ଆଉ ପତନର ରାଗିଣୀ ନିନାଦିତ ହେଉଥିଲା, ମୂର୍ଚ୍ଛନାର ହର୍ଷୋଲ୍ଲାସ ଆଉ ବିଷାଦର ସ୍ୱର ଲହରୀରେ । ଅସୀମ ଧୈର୍ଯ୍ୟ ଓ ଦାମ୍ଭିକତାକୁ ଘେନି ଭବିଷ୍ୟତକୁ ଲମ୍ଫଦେବାର ଉନ୍ମାଦନା ତାଙ୍କ ଜୀବନରେ ରୂପାୟିତ ହୋଇଥିଲା । ଉଭୟ ସଂପତ୍ତି ଆଉ ବିପତ୍ତିର ବିରୋଧାଭାଷ, ଯେପରି ତାଙ୍କ ଜୀବନଧାରାରେ ପ୍ରତିଧ୍ୱନିତ ହେଉଥିଲା, ଏକ ପ୍ରବାଦୀୟ ମାର୍ମିକ ଉକ୍ତିରେ- ''ଘୋଡ଼ାଚଢ଼ାଠାରୁ ସଂପତ୍ତି ନାହିଁ, ଘରପୋଡ଼ିଠାରୁ ବିପତ୍ତି ନାହିଁ'' । ଏକ ଉନ୍ମାଦ ସାଗରର ଜୁଆର ଆଉ ଭଟ୍ଟା ପରି ତାଙ୍କର ଜୀବନର ଧାରା ପ୍ରବାହିତ ହୋଇଥିଲା ଅସମତାର ଅସମାହିତ ଗତିରେ । ରୋମାଞ୍ଚକର ଘୋଡ଼ାଚଢ଼ାର ଆଭିଜାତ୍ୟମୟ ସମୃଦ୍ଧିର ପରବର୍ତ୍ତୀ ପର୍ଯ୍ୟାୟରେ ଦେଶପାଇଁ ନିଜକୁ ସେ ନିଃଶେଷ କରିଦେଇଥିଲେ । ପରିଣାମରେ ନିଃସ୍ୱ ଭାବରେ ନିଜର ବାସଭବନରୁ ଉଚ୍ଛେଦିତ ହୋଇ ଛିଡ଼ା ହୋଇଥିଲେ ଖୋଲା ମଇଦାନର ଆକାଶ ତଳେ । ହେଲେ ଜୀବନର ପ୍ରତିଟି ପର୍ଯ୍ୟାୟରେ ସେ ରହିଥିଲେ ଖେଳୱାଡ଼ ପରି ସ୍ଫୂର୍ତ୍ତିବନ୍ତ ଓ ଅବଦମିତ ହୋଇ ।

ମାତ୍ର ଅଠର ବର୍ଷ ବୟସରେ,ଭବିଷ୍ୟତର ଅନିଶ୍ଚିତତା ମଧ୍ୟରେ, ଗୋଟିଏ ଉତ୍‌କ୍ଷେପିତ ଅଶାନ୍ତ ଉଲ୍କା ପରି ସେ ଲମ୍ଫ ଦେଇଥିଲେ, ରାଜନୈତିକ ଓ ସାଂସ୍କୃତିକ ଜାଗରଣର ପୀଠ କଲିକତା ନଗରୀକୁ । ସେତେବେଳେ କଲିକତା ଥିଲା ଦେଶର ରାଜଧାନୀ । ଗ୍ରହଣଶୀଳତାର ସମସ୍ତ ଆଗ୍ରହ ନେଇ ସେ ଏସୀୟ, ୟୁରୋପୀୟ ଓ ବିଶ୍ୱଜନୀନ ସଂସ୍କୃତିର ମହନୀୟ ଧାରାକୁ ନିରୀକ୍ଷଣ

କରିଥିଲେ । ଦେଶ ସେବାର ମହାନ ଆଦର୍ଶରେ ଅନୁପ୍ରାଣିତ ବହୁ ତ୍ୟାଗୀ ନେତୃବର୍ଗଙ୍କ ପରି ତାଙ୍କର ଜୀବନରେ ନ ଥିଲା, ନିଃସ୍ୱତାର ପୀଡ଼ନ କିମ୍ବା ଆତ୍ମଦହନ । ମାତ୍ର ଜୀବନ ଥିଲା ସମସ୍ତ ଆଂଗିକ ବିଭବରେ ପରିପୂର୍ଣ୍ଣ ଏକ ସ୍ୱୟଂସଂପୂର୍ଣ୍ଣ ଓ ସମନ୍ୱିତ ପୂର୍ଣ୍ଣାଙ୍ଗ ଜୀବନ ।

କଲିକତାରେ ଅବସ୍ଥାନ କାଳରେ ବହୁ ଜାତୀୟ ତଥା ୟୁରୋପୀୟ କ୍ଲବର ସଦସ୍ୟ ଭାବେ ସେ ସଂପର୍କିତ ହୋଇଥିଲେ, ସେ ସମୟରେ ପ୍ରଚଳିତ ବିଭିନ୍ନ ସଂସ୍କୃତିର ବିଧାନ ସହିତ ଅନ୍ତରଂଗ ଭାବେ । ଏହା ତାଙ୍କର ବ୍ୟକ୍ତିତ୍ୱକୁ ପ୍ରଦାନ କରିଥିଲା ଗାରିମା, ଔଦାର୍ଯ୍ୟ ଆଉ ପ୍ରଚଣ୍ଡ ସ୍ୱାଭିମାନ ।

କ୍ରୀଡ଼ା ସହିତ ତାଙ୍କର ବେଶ୍ ଅନ୍ତରଂଗତା ଥିଲା । ଦେଶୀୟ କ୍ରୀଡ଼ା ସହିତ ପାଶ୍ଚାତ୍ୟ କ୍ରୀଡ଼ାରେ ସେ ପାରଦର୍ଶୀ ଥିଲେ । ହେଲେ ତାଙ୍କର ପ୍ରଥମ ସଉକ ଥିଲା ଘୋଡ଼ାଚଢ଼ା । ସେତେବେଳେ ଘୋଡ଼ା ହିଁ ଥିଲା ଯାତାୟାତର ଏକମାତ୍ର ମାଧ୍ୟମ । ତାଙ୍କର ଅଶ୍ୱଶାଳାରେ ଥିଲେ ବହୁ ଦୁର୍ଦ୍ଦାନ୍ତ ଅଶ୍ୱ, ଯେଉଁମାନେ ଚାଉଳିଆଗଂଜର ଘୋଡ଼ା ଦୌଡ଼ ପ୍ରତିଯୋଗିତାରେ ଭାଗନେଇ ପ୍ରଥମ ସ୍ଥାନର ବିଜେତା ହୋଇ ପାରିଥିଲେ । ଊନବିଂଶ ଶତାବ୍ଦୀର ଶେଷଭାଗରେ କଟକ ସହରର ନିଷ୍ଚଳତା ମଧ୍ୟରେ ଘୋଡ଼ାଦୌଡ଼ ଥିଲା ନଗରବାସୀଙ୍କ ମୁଖ୍ୟ ତଥା ରୋମାଞ୍ଚକର ଆକର୍ଷଣ ।

କଟକ ସହରର ଚାଉଳିଆଗଞ୍ଜଠାରେ ୧୯୦୫ ପର୍ଯ୍ୟନ୍ତ ଥିଲା ସେନାଛାଉଣିର ଗୋଟିଏ ମୁଖ୍ୟ କେନ୍ଦ୍ର । ଏଠାରେ ଅଶ୍ୱାରୋହୀ ସିପାହୀମାନଙ୍କର ଗୋଟିଏ ବାଟାଲିଅନ ଥିଲା । ଏହାର ପରିସରରେ କ୍ଷିପ୍ରଗାମୀ ଓ ସମ୍ମୁଖ ଯୁଦ୍ଧରେ ପାରଦର୍ଶୀ ବହୁ ଘୋଡ଼ା ପାଳିତ ହେଉଥିଲେ । ମଧୁସୂଦନଙ୍କ ପାଖରେ ସେହି ବାଟାଲିଅନ ଜରିଆରେ ସଂଗୃହୀତ ସର୍ବୋତ୍କୃଷ୍ଟ ଅଶ୍ୱଗୁଡ଼ିଏ ଥିଲେ ।

ଏ ସଂପର୍କରେ କଟକରେ ସରକାରୀ କାର୍ଯ୍ୟରେ ଅବସ୍ଥାପିତ ଥିବା ଓ ପରବର୍ତ୍ତୀ କାଳରେ ବିହାରର ଗଭର୍ଣ୍ଣର ପଦକୁ ଉନ୍ନୀତ ହୋଇଥିବା ଇଂରେଜୀ ଆଇ.ସି.ଏସ୍ ଅଫିସର ସାର୍ ହ୍ୟାଗ୍ ମ୍ୟାକ୍ ଫରସନ୍ ସ୍ମୃତିଚାରଣ କରି କହନ୍ତି-

"ମିଃ ମଧୁସୂଦନ ଦାସ, ତାଙ୍କର ସୁବିନ୍ୟସ୍ତ ଘୋଡ଼ାଶାଳରେ ବହୁ କ୍ଷିପ୍ରଗାମୀ ଘୋଡ଼ାସବୁ ରଖୁଥିଲେ । ତାହା ମଧ୍ୟରେ ଥିଲା ମାନ୍ଦ୍ରାଜ ରେଜିମେଣ୍ଟର, ଫଲଫାଷ୍ଟାନ୍ କର୍ଣ୍ଣେଲଙ୍କ ଦ୍ୱାରା ବ୍ୟବହୃତ ଗୋଟିଏ ତେଜୀୟାନ ଘୋଡ଼ା । ସେହି ଘୋଡ଼ାଟି ଲମ୍ଫଦେଇ ସମ୍ମୁଖ ଆକ୍ରମଣ କରିବାରେ ଖ୍ୟାତି ଅର୍ଜନ କରିଥିଲା, ଯାହାକୁ କେବଳ ମିଃ -ଦାସ ଶୃଙ୍ଖଳିତ ଓ ବଶୀଭୂତ କରିବାକୁ ସକ୍ଷମ ହୋଇଥିଲେ ଏବଂ ଏଥିପାଇଁ ସେହି ଘୋଡ଼ାକୁ ଲାଞ୍ଚ ସ୍ୱରୂପ ଆଖୁଖଣ୍ଡମାନ ଖାଇବାକୁ ଦେଉଥିଲେ । ପରେ ମୁଁ ସେହି ଘୋଡ଼ା ଉପରେ ସବାର ହୋଇ ଚାଲିଗଲି ଚନ୍ଦକା ଅଂଚଳକୁ ଜିଲ୍ଲା କଲେକ୍ଟରଙ୍କ ଗହଣରେ, ମୋର ଗସ୍ତକାଳୀନ କାର୍ଯ୍ୟସୂଚୀରେ । ମାତ୍ର ମୋର ସେହି ଘୋଡ଼ା ଚଳେଇବାର କିଛି ଦକ୍ଷତା ଥିଲା ଯାହାକୁ ସେ ଘୋଡ଼ା ବରଦାସ୍ତ କରିବା ଅବସ୍ଥାରେ ନଥିଲା । ସେ କ୍ରମଶଃ ଅଶାନ୍ତ ହେଲା ଆଉ ମୁଁ ତାକୁ ଆଖୁଖଣ୍ଡମାନ ଲାଞ୍ଚ ସ୍ୱରୂପ ଦେଇ ପ୍ରଲୋଭିତ କରିବାକୁ ଚେଷ୍ଟାକଲି । ମାତ୍ର ସେ ଅସ୍ଥିର ହୋଇ ସେହିଦିନ ସଂଧ୍ୟାରେ ଉତ୍ତେଜିତ ହୋଇ ଦ୍ରୁତଗତିରେ ଲମ୍ଫଦେଲା ଓ ସେହି ଘଟଣାର ଅଠଚାଳିଶି ଘଣ୍ଟା ପରେ ମୁଁ ସିଭିଲ୍ ସର୍ଜନ କର୍ଣ୍ଣେଲ୍ ଜୋରାବଙ୍କର ତତ୍ତ୍ୱାବଧାନରେ ବିଛଣାରେ ଶୋଇଥିବା ଅବସ୍ଥାରେ ଦେଖିବାକୁ ପାଇଲି । ସେହିଦିନଠାରୁ ମିଃ ଦାସ ପ୍ରତିଦିନ, ମୁଁ ସଂପୂର୍ଣ୍ଣ

ଆରୋଗ୍ୟ ଲାଭ କଲାପର୍ଯ୍ୟନ୍ତ ମୋର ଅବସ୍ଥା ସଂପର୍କରେ ତଦାରଖ କରୁଥିଲେ । ସେହି ଘଟଣାରେ, ସେ ତାଙ୍କର ବହୁ ମୂଲ୍ୟବାନ ଘୋଡ଼ାଟିକୁ ହରାଇ ଥିଲେ ମଧ୍ୟ ମୋ ଠାରୁ ତାହାର କ୍ଷତିପୂରଣ ବାବଦରେ କୌଣସି ଅର୍ଥ ଗ୍ରହଣ କରିବାକୁ ରାଜି ହୋଇ ନଥିଲେ ।''

ତାରୁଣ୍ୟ ସହିତ କ୍ରୀଡ଼ାର ରହିଛି ଅବିଚ୍ଛେଦ୍ୟ ସଂପର୍କ । ବିପତ୍ନୀକ ମଧୁସୂଦନ ୧୮୮୧ ବେଳକୁ କଟକ ଫେରିଲାବେଳେ, ସେ ତାରୁଣ୍ୟକୁ ବହୁକାଳୁ ଅତିକ୍ରମ କରିସାରିଥିଲେ ମଧ୍ୟ, ଛାତ୍ର ଆଉ ତରୁଣମାନଙ୍କ ସହିତ ତାଙ୍କ ସଂପର୍କ ଥିଲା ଅତ୍ୟନ୍ତ ହାର୍ଦ୍ଦିକ ଓ ଅନ୍ତରଂଗ । ୧୮୮୭ରେ ଛାତ୍ରମାନଙ୍କୁ ସଂଗଠିତ କରିବାପାଇଁ ସେ ଗଢ଼ିଥିଲେ, ''ଗ୍ରାଜୁଏଟ୍ ଏଣ୍ଡ ଅଣ୍ଡର ଗ୍ରାଜୁଏଟ୍ ଏସୋସିଏସନ୍ । ତେଣୁ ସେ ଉଭା ହୋଇଥିଲେ ତରୁଣମାନଙ୍କ ପାଇଁ ଏକ ପ୍ରେରଣାର ଉତ୍ସ ରୂପେ । ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ସେ ୧୯୦୩-୦୪ ବେଳକୁ ଗଢ଼ିଥିଲେ ଉତ୍କଳ ୟଙ୍ଗ୍ ମ୍ୟାନସ୍ ଆସୋସିଏସନ୍'', ଯାହାର ସମସ୍ତ ଖର୍ଚ୍ଚ ବହନ ସହ ସେ ଥିଲେ ଏହାର ମୁଖ୍ୟ ପରାମର୍ଶଦାତା । ଏହାର ସଭାପତି ଥିଲେ ରେଭେନ୍‌ସା କଲେଜର ଅଧ୍ୟକ୍ଷ, ଅଧ୍ୟାପକମାନେ ସମ୍ମାନିତ ସଦସ୍ୟ ଆଉ ଛାତ୍ରମାନେ ସାଧାରଣ ସଭ୍ୟ ରୂପେ ଗୃହୀତ ହୋଇଥିଲେ । ଏହି ଅନୁଷ୍ଠାନ ଜରିଆରେ ଛାତ୍ରମାନଙ୍କୁ ଦେଶୀୟ କ୍ରୀଡ଼ା ସହିତ ମୁଖ୍ୟତଃ ପାଶ୍ଚାତ୍ୟ ଖେଳାଳୀମାନଙ୍କ ସଂପର୍କରେ ପ୍ରଶିକ୍ଷଣ ଦିଆଯାଉଥିଲା । ସେହି ଖେଳଗୁଡ଼ିକ ହେଲା ଟେନିସ୍, ବ୍ୟାଡ଼ମିଣ୍ଟନ, ବିଲିୟାର୍ଡ଼, କ୍ରିକେଟ୍ ଆଦି ବହୁବିଧ ଶାରିରୀକ ଖେଳ। ଏହାଛଡ଼ା ନଦୀରେ ନୌକାଚାଳନା ଲାଗି ବିହିତ ବ୍ୟବସ୍ଥା ଥିଲା । ଏହି ସମସ୍ତ ଖେଳର ସାମୟିକ ପ୍ରତିଯୋଗିତା ଆୟୋଜନ ସହିତ ପୁରସ୍କାର ଆଦି ଦିଆଯାଉଥିଲା । ଏହି କାର୍ଯ୍ୟକ୍ରମ ସବୁ ପରିଚାଳିତ ହେଉଥିଲା ମଧୁସୂଦନଙ୍କ ଦ୍ୱାରା । ତାଙ୍କର ପାଳିତା କନ୍ୟା ଶୈଳବାଳା ଯେ କି ଏହାର ସଂପାଦିକା ଥିଲେ, ତାଙ୍କର ଅକୁଣ୍ଠ ସହଯୋଗ ଥିଲା ଏଥିରେ। ଏହି ଛାତ୍ରମାନଙ୍କଲାଗି ସ୍ୱତନ୍ତ୍ର ଛାତ୍ରାବାସ ଓ ସୁବ୍ୟବସ୍ଥିତ ପଠନାଳୟର ବ୍ୟବସ୍ଥା କରାଯାଇଥିଲା ମଧୁସ୍ମୃତି ବାସଭବନରେ । ଉତ୍କଳ ସମ୍ମିଳନୀର ବହୁ ଅଧିବେଶନରେ ଏହି ଛାତ୍ରମାନେ ହିଁ ମୁଖ୍ୟତଃ ସ୍ୱେଚ୍ଛାସେବକର କାର୍ଯ୍ୟ ନିର୍ବାହ କରୁଥିଲେ ।

ଏହି ଉତ୍କଳ ସମ୍ମିଳନୀ ମଂଚରେ ୧୯୦୩ ସାଲରୁ ପ୍ରତିବର୍ଷ ଅନୁଷ୍ଠିତ ହେଉଥିଲା ନିଖିଳ ଉତ୍କଳ ଛାତ୍ର ସମ୍ମିଳନୀ । ଏହା ମଧ୍ୟ ଥିଲା ନେତୃତ୍ୱ ଗଠନର ଏକ ସାର୍ବଜନୀନ ମଂଚ । ଏହି ମଂଚରୁ ପ୍ରଶିକ୍ଷିତ ହୋଇଥିଲେ ଓଡ଼ିଶାର ନେତୃମଣ୍ଡଳୀ- ଉତ୍କଳମଣି ଗୋପବଂଧୁଙ୍କଠାରୁ ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ପର୍ଯ୍ୟନ୍ତ । ଏଠାରୁ ପ୍ରଶିକ୍ଷିତ ହୋଇ ସେମାନେ ଜାତୀୟ କଂଗ୍ରେସ ମଞ୍ଚରେ ଯୋଗଦାନ କରିଥିଲେ ।

ଓଡ଼ିଶା ସ୍ପୋର୍ଟସ ଆସୋସିଏସନ୍ କ୍ରୀଡ଼ା କ୍ଷେତ୍ରରେ ସର୍ବପ୍ରଥମ ପ୍ରାଦେଶିକ ସ୍ତରର ଅନୁଷ୍ଠାନ । ଏହା ସ୍ଥାପିତ ହୋଇଥିଲା ମଧୁସୂଦନଙ୍କଦ୍ୱାରା ୧୯୦୪ ସାଲରେ । ଏହି ଏସୋସିଏସନ୍ ଜରିଆରେ ପ୍ରାଦେଶିକ ସ୍ତରରେ କ୍ରୀଡ଼ା ପ୍ରତିଯୋଗିତାର କାର୍ଯ୍ୟକ୍ରମ ସବୁ ଆୟୋଜିତ ହେଉଥିଲା । ଖେଳରେ ବିଜୟୀ ପ୍ରତିଯୋଗୀମାନଙ୍କୁ ପୁରସ୍କାର ପ୍ରଦାନ ସକାଶେ ଯେଉଁ ସିଲ୍ଡ଼, କପ୍‌ଗୁଡ଼ିକ ପ୍ରଦାନ କରାଯାଉଥିଲା, ସେ ସମସ୍ତ ପ୍ରସ୍ତୁତ ହେଉଥିଲା ମଧୁସୂଦନଙ୍କ ପ୍ରତିଷ୍ଠିତ ଓଡ଼ିଶା ଆର୍ଟସ

ଓ୍ୱାରସ୍ ଅନୁଷ୍ଠାନରେ । ଆବଶ୍ୟକ ବ୍ୟୟ ବହନ କରୁଥିଲେ ମଧୁବାବୁ । ସବୁଠାରୁ ସମ୍ମାନଜନକ ପୁରସ୍କାର, ସେ ସମୟର କମିଶନର କୃଷ୍ଣଗୋବିନ୍ଦ ଗୁପ୍ତଙ୍କ ନାମରେ ନାମିତ ହୋଇ ଓଡ଼ିଶା ଆର୍ଟ ଓ୍ୱାରସ୍ ତରଫରୁ ପ୍ରଦତ୍ତ ହେଉଥିଲା । ଏହି ପ୍ରାଦେଶିକ ସ୍ପୋର୍ଟସ ଏସୋସିଏସନ୍‌ର ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଉଥିଲା ମଧୁସୂଦନଙ୍କ ପ୍ରୋତ୍ସାହନରେ ବାରବାଟୀ ପଡ଼ିଆରେ ।

ଏହି ଏସୋସିଏସନ୍ ଥିଲା ସର୍ବପ୍ରଥମ ଓଡ଼ିଶାର କ୍ରୀଡ଼ା ଅନୁଷ୍ଠାନ, ଯାହାର କ୍ରମବିକାଶର ଅନ୍ତିମ ଉପଲବ୍ଧିରେ ନିର୍ମିତ ହୋଇଛି ଆଜିର ସୁବିଶାଳ ବାରବାଟୀ ଷ୍ଟାଡ଼ିୟମ୍ । ଏହି ପଡ଼ିଆଟି ସେ ସମୟରେ ଥିଲା କ୍ରୀଡ଼ାର କେନ୍ଦ୍ର, ଯାହାର ପଶ୍ଚାତରେ ମଧୁସୂଦନଙ୍କର ପ୍ରେରଣା ହିଁ ଥିଲା ମୂଳ ଉତ୍ସ । ହେଲେ ମୂଳ ଉଦ୍ୟୋକ୍ତା ଓ ପ୍ରତିଷ୍ଠାତା ମଧୁସୂଦନଙ୍କର ଆଦ୍ୟ ନାମଟି ଆଜି ହଜିଯାଇଛି କ୍ରୀଡ଼ାଜଗତର ଇତିବୃତ୍ତରୁ ।

ମଧୁସୂଦନ କଟକ ଜିଲ୍ଲା ବୋର୍ଡ଼ର ଭାଇସ୍ ଚେୟାରମ୍ୟାନ୍ ରୂପେ ନିର୍ବାଚିତ ହୋଇଥିଲେ ଓ କଲେକ୍ଟର ମଧୁସୂଦନଙ୍କ ପାରଦର୍ଶିତାରେ ମୁଗ୍ଧ ହୋଇ ଜିଲ୍ଲା ବୋର୍ଡ଼ ପରିଚାଳନାର ଦାୟିତ୍ୱ ତାଙ୍କୁ ଅର୍ପଣକରି ପ୍ରତ୍ୟକ୍ଷ ପରିଚାଳନାରୁ ଅପସରି ଯାଇଥିଲେ । ଏହି ପର୍ଯ୍ୟାୟରେ ମଧୁବାବୁ ଜିଲ୍ଲା ବୋର୍ଡ଼ ପରିଚାଳିତ ହାଇସ୍କୁଲଗୁଡ଼ିକରେ ବ୍ୟାୟାମ ଶିକ୍ଷାର ବ୍ୟବସ୍ଥାକରି ସ୍ୱତନ୍ତ୍ର ବ୍ୟାୟାମ ଶିକ୍ଷକମାନଙ୍କୁ ନିଯୁକ୍ତି ଦେଇଥିଲେ । ହେଲେ ପ୍ରଶିକ୍ଷିତ ବ୍ୟାୟାମ ଶିକ୍ଷକଙ୍କ ଅଭାବଯୋଗୁଁ ଜେଲ୍‌ଦଣ୍ଡ ଭୋଗୁଥିବା ବାଳ କଏଦୀଙ୍କ ମଧ୍ୟରୁ କେତେକଙ୍କୁ ସ୍ୱତନ୍ତ୍ର ଭାବେ ବାଛି ଜେଲ୍‌ରେ ବ୍ୟାୟାମ ପ୍ରଶିକ୍ଷଣର ବ୍ୟବସ୍ଥା କରିଥିଲେ । ପ୍ରଶିକ୍ଷିତ ଏହି ବାଳ ଅପରାଧୀମାନେ ପରବର୍ତ୍ତୀ କାଳରେ ବ୍ୟାୟାମ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ । ମାନବିକତାର ଆବେଦନରେ ଏହିଭଳି ଉଦାର ଦୃଷ୍ଟିଭଙ୍ଗୀର ତୁଳନା ନାହିଁ, ଯାହା ଥିଲା ମଧୁସୂଦନଙ୍କର ଏକାନ୍ତ ନିଜସ୍ୱ । ହେଲେ କ୍ରୀଡ଼ା ପ୍ରତି ମଧୁସୂଦନଙ୍କର ଏହି ଅହେତୁକ ଆକର୍ଷଣର ଆରମ୍ଭ କେଉଁଠି ? ରାତ୍ରିରେ ଆହାର ବିବର୍ଜିତ, ଏକାହାରୀ ମଧୁସୂଦନଙ୍କର ଖାଦ୍ୟ ଥିଲା କେତେ ତୋଳା ଓଜନର ଭାତ, ଦୁଇ ଫଡ଼ା ବାଇଗଣ ସିଝା ଆଉ ମୋଚାଏ ହିଡ଼ିମିଚା ଶାଗର ଖରଡ଼ା । ମାତ୍ର ତାଙ୍କର ମଧ୍ୟାହ୍ନ ଭୋଜନ କଅଣ ବା ଥିଲା ?

ସେ ଯୁଗର ପାଟଣା ହାଇକୋର୍ଟର ଜଷ୍ଟିସ୍ ଶ୍ରୀ ଏସ୍. ବି. ଢାବ୍‌ଲେ ଆଇ.ସି.ଏସ୍ ସ୍ମୃତିଚାରଣ କରି କହନ୍ତି- ମିଃ ଦାସଙ୍କୁ ମୁଁ ବହୁବାର ଭେଟୁଥିଲି ୧୯୨୧ ସାଲରେ, ବିହାର ଓଡ଼ିଶା ମୁନିସ୍‌ପାଲ ବିଲ୍ ପାଇଁ ଗଠିତ ସିଲେକ୍ଟ କମିଟି ଅଧିବେଶନରେ । ସେତେବେଳେ ସେ ସ୍ୱାୟତ୍ତ ଶାସନ ବିଭାଗର ମନ୍ତ୍ରୀ ଥାଇ ମ୍ୟୁନିସ୍‌ପାଲ ବିଲ୍‌ଟି ବ୍ୟବସ୍ଥାପକ ସଭାରେ ଉପସ୍ଥାପିତ କରିଥାନ୍ତି ।

''ମଧ୍ୟାହ୍ନ ଭୋଜନର ବିରତି । ସେତିକି ବେଳେ ଆମେମାନେ ତାଙ୍କୁ ଭେଟିଲୁ । ମିଃ ଦାସ ତାଙ୍କ ପକେଟରୁ କେତୋଟି ଅଳ୍ପ ଚାଉଳ ଭଜା (ମୁଢ଼ି କିମ୍ବା ହୁଡ଼ୁମ୍ବ) ନେଇ ପାଟିରେ ପକାଇଲେ । ପଚାରିବାରେ ସେ କହିଲେ, ଏହା ହିଁ ଥିଲା ତାଙ୍କର ସମଗ୍ର ଦିନର ସ୍ଥୂଳ ଆହାର । ସେ ପ୍ରତିଦିନ ଚାରିରୁ ପାଞ୍ଚ ମାଇଲ୍ ଚାଲିବା ସହିତ ଦିନରେ ପନ୍ଦରରୁ ଷୋହଳ ଘଣ୍ଟା କାର୍ଯ୍ୟ କରୁଥିଲେ । ହଁ, ସେ ଖାଦ୍ୟ ବିଷୟରେ ପୂର୍ଣ୍ଣ ଭାବରେ ସଚେତନ ଥିଲେ । ଖାଦ୍ୟ ବିଷୟରେ ସଚେତନତା ଆଉ ନିୟମିତ ଚାଲିବା (ବ୍ୟାୟାମ) ସହିତ ପରିଶ୍ରମ ଥିଲା ତାଙ୍କର ସୁଦୀର୍ଘ ଜୀବନର ହେତୁ ।''

କ୍ରୀଡ଼ା ଆଉ ମଧୁସୂଦନ । ଆପାତତଃ ବାହ୍ୟଦୃଷ୍ଟିରୁ ଜଣାଯିବ ବିରୋଧାଭାସ ପରି । ମଧୁସୂଦନ ଥିଲେ ଆଜୀବନ ରୁଗ୍‌ଣ । ଦୁର୍ବଳ ସ୍ୱାସ୍ଥ୍ୟ ଘେନି ସେ ସାରା ଜୀବନ ଧରିଥିଲେ ଦାରୁଣ ଉଦର ବ୍ୟଥାର ରୋଗ । ପେଟ ବ୍ୟଥାର ଅସହ୍ୟନୀୟ ଯଂତ୍ରଣା କେବଳ ସେ ଭୋଗୁନଥିଲେ, ବେଳେବେଳେ ମାଟି କାମୁଡ଼ି ପଡ଼ିରହୁଥିଲେ । ଏହା ସତ୍ତ୍ୱେ ସେ ଥିଲେ ଅବଦମିତ ଖେଳଓ୍ୱାଡ଼୍, ଏକାନ୍ତ ଭାବେ ଖେଳଓ୍ୱାଡ଼୍ ।

**ତାଙ୍କର ଆଦ୍ୟ ଜୀବନ ପୃଷ୍ଠା-**

ମଧୁସୂଦନଙ୍କ ବାପା ଥିଲେ ପାର୍‌ସି ପଢ଼ା ଓକିଲ । ତେଣୁ ପଟିଆ ରାଜାଙ୍କର ଦରବାରରୁ ତାଙ୍କୁ ବେଳେବେଳେ ଡକରା ଆସେ, କୋର୍ଟ କଚେରିକୁ ଯାଇ ବିଭିନ୍ନ କେସ୍ ସବୁ ତଦବିର୍ କରିବାପାଇଁ । ଏଥିପାଇଁ ହାତୀରେ ଚଢ଼ି ରଘୁନାଥ ଦାସ ଯାଆନ୍ତି ପଟିଆ ରାଜ୍ୟର ଗଡ଼କୁ । ହେଲେ ଏହା ସହିତ ରଘୁନାଥ ଦାସଙ୍କୁ ରାଜାଙ୍କର ନିର୍ଦ୍ଦେଶଥାଏ, ପୁଅକୁ ସାଥିରେ ଆଣିବା ପାଇଁ । ପୁତ୍ର ମଧୁସୂଦନ କେବଳ ରାଜାଙ୍କର ଏକମାତ୍ର ପ୍ରିୟପାତ୍ର ନଥିଲେ, ସେ ଥିଲେ ସାରା ପଟିଆର ଆକର୍ଷଣର କେନ୍ଦ୍ରବିନ୍ଦୁ । ସେତେବେଳକୁ ସେ ମାଟ୍ରିକ୍ ପଢ଼ିଥାନ୍ତି ଅଥବା ମାଟ୍ରିକ୍ ପଢ଼ା ସାରି କିଛି ସମୟ ବିତାଉଥାନ୍ତି ।

ପଟିଆରେ ଅବସ୍ଥାନ କାଳରେ ମଧୁସୂଦନଙ୍କର ଅବାଧ ପ୍ରବେଶ ଥିଲା ରାଜାଙ୍କର ଘୋଡ଼ାଶାଳରୁ ଆରମ୍ଭକରି ନିଘଞ୍ଚ ଜଙ୍ଗଲ ପର୍ଯ୍ୟନ୍ତ । ପଟିଆରେ ତାଙ୍କର ସାରା ସକାଳ ଓଳିଟି କଟିଯାଏ ଘୋଡ଼ାଶାଳରୁ ସବୁତକ ଦୁର୍ଦ୍ଦାନ୍ତ ଘୋଡ଼ା ଆଣି ସବାର କରିବାରେ ଆଉ ଉପର ଓଳିଟି ବିତିଯାଏ ନନ୍ଦନକାନନରେ ନୌକା ଚଲାଇବାରେ । ଆଉ ରାତିଟି ?

ତାଙ୍କର ସାରା ରାତି କଟୁଥିଲା, ନଅରଠାରୁ ଖଣ୍ଡେ ଦୂରରେ ନିଘଞ୍ଚ ଅରଣ୍ୟରେ ତିଆରି ଶିକାରୀ ଘରର ମଂଚା ଉପରେ, ଯେଉଁଠାରେ ଶିକାର କରିବା ଅପେକ୍ଷା ଗଭୀର ରାତିରେ ନିଶାଚରମାନଙ୍କ ଗତିବିଧି ନିରୀକ୍ଷଣରେ । ସେ ଶିକାର କାର୍ଯ୍ୟକ୍ରମରେ ବନ୍ଧୁକ ଆଦି ଚଳାଇବା ବିଷୟରେ ପାରଦର୍ଶୀ ଥିଲେ । ସେ ମଧ୍ୟ ଥିଲେ ବହୁପରିମାଣରେ ଦୁଃସାହସିକ । ଥରେ ମନ୍ଦିରର ଚୂଡ଼ା ଉପରକୁ ଉଠିଯାଇ ନେତ ସବୁ ବାନ୍ଧିଥିଲେ । କେଉଁ କ୍ଷେତ୍ରରେ ହାରିଯିବାକୁ ସେ ପ୍ରସ୍ତୁତ ନଥିଲେ । ଏହି ଦୁଃସାହସିକତା ଥିଲା ତାଙ୍କର ଦେଶ ସେବାରେ ଉତ୍ସର୍ଗୀକୃତ ଖେଳୁଓ୍ୱାଡ଼୍ ଜୀବନର ଆଦ୍ୟସୂତ୍ର ।

ଅନ୍ତହୀନ ପ୍ରୟାସ ଯାହାଙ୍କର ଜୀବନରେ ଆବାହନ ସଂଗୀତ ରୂପେ ଧ୍ୱନିତ, ସେଠାରେ ହାରି ଯିବାର ଆସ୍ଥାନଟି କେଉଁଠି ବା ତିଷ୍ଠି ରହିପାରେ ? ଜୀବନର ଦୁର୍ନିବାର ସଂଗ୍ରାମରେ ତାଙ୍କୁ ପରାଜୟ ବହୁବାର ଛୁଇଁ ଯାଇଥିଲେ ମଧ୍ୟ ସେ ରହି ଯାଇଛନ୍ତି ଅତି ଅଦ୍‌ଭୂତଭାବେ ଅପରାଜେୟ । ସେହି ଅପରାଜିତ ରହିବାର ଚରମ ସ୍ମାରକୀ, ଆଧୁନିକ ଓଡ଼ିଶା ପ୍ରଦେଶ ଆଉ ତାହା ହିଁ ହେଉଛି ଜାତିର ପହିଲି ଖେଳୁଓ୍ୱାଡ଼୍‌ଙ୍କର ସ୍ମୃତିରେ ନିବେଦିତ ସର୍ବଶ୍ରେଷ୍ଠ ସ୍ତୁତି ଅର୍ଘ୍ୟ ।



# ମାନବାତ୍ମାର ପୂଜାରୀ ମଧୁସୂଦନ

ଅପରିସୀମ ସଦ୍‌ହୃଦୟତା ଏବଂ ଅକଳନ ମାନବୀୟ ମୂଲ୍ୟବୋଧର ଆଧାରରେ, ମଧୁବାବୁଙ୍କ ଜୀବନରେ ଯେଉଁ ଅପରିମେୟ ମୈତ୍ରୀ ଓ କରୁଣାର ପରିପ୍ରକାଶ ଘଟିଥିଲା, ତାହାର ପଟାନ୍ତର ନାହିଁ । ତାଙ୍କ ଜୀବନରେ ସମପ୍ରାଣତା ଓ ସମବେଦନାର ବ୍ୟାପ୍ତି ଥିଲା ସୀମାହୀନ ସାଗର ପରି ବିସ୍ତାରିତ ଓ ସଂପ୍ରସାରିତ । ତାହାର କିଞ୍ଚିତ୍ ମାର୍ମିକ ସଂକେତ ମିଳେ ରାଜେନ୍ଦ୍ର ପ୍ରସାଦଙ୍କର ସ୍ମୃତିଚାରଣରୁ- ''ମୋର ସ୍ମୃତିପଟରେ ଗଭୀର ଭାବେ ଅଙ୍କିତ ରହିଛି ଯେ ମଧୁସୂଦନ ଦାସ ମନ୍ତ୍ରୀ ପଦରେ ଅଧିଷ୍ଠିତ ଥିଲାବେଳେ, ତାଙ୍କର ଛାପା ପରିଦର୍ଶନ ବେଳେ, ମୁଁ ଅସୁସ୍ଥ ଥିବା ଜାଣି ମୋ ନିକଟକୁ ଆସିଥିଲେ ଓ ତାଙ୍କର ସଂବେଦନଶୀଳ ନରମ ଅଂଗୁଳିଗୁଡ଼ିକର ସ୍ପର୍ଶରେ ମୁଁ ତତ୍‌କ୍ଷଣାତ୍ ରୋଗ ଯନ୍ତ୍ରଣାରୁ ମୁକ୍ତିଲାଭ କରିଥିଲି ।'' ଗ୍ଲାସ୍‌ଗୋ ହେରାଲଡ୍ ପତ୍ରିକାର ପ୍ରତିନିଧି ହେନେରି ନେଭିନ୍‌ସନ୍ ୧୯୦୭ ରେ ତାଙ୍କର ପ୍ରାମାଣିକ ଗ୍ରନ୍ଥ ନ୍ୟୁ ସ୍ପିରିଟ୍ ଇନ୍ ଇଣ୍ଡିଆ ଗ୍ରନ୍ଥରେ ଲେଖିଛନ୍ତି- ''ମଧୁସୂଦନ ଦାସଙ୍କର ଅନ୍ତଃସ୍ଥଳରେ ସଦା ଅସରନ୍ତି ବଦାନ୍ୟତା ଓ ଗଭୀର ଭାବ ଉଲ୍ଲାସଭରା ସହାନୁଭୂତି ବିରାଜୁଥିଲା । ତାଙ୍କ ସହିତ ମିଳିତ ହେବା ଥିଲା, ମଧ୍ୟଯୁଗୀୟ ସନ୍ଥମାନଙ୍କ ସହିତ ସଂପର୍କ ସ୍ଥାପନା ପରି ଅତ୍ୟନ୍ତ ପ୍ରଭାବଶାଳୀ ଓ ତାତ୍ପର୍ଯ୍ୟପୂର୍ଣ୍ଣ, ଯେଉଁମାନଙ୍କ ପ୍ରଗାଢ଼ ଇଚ୍ଛାଶକ୍ତି ପ୍ରକୃତିର ନିଗୂଢ଼ ନିୟମକୁ କିଞ୍ଚିତ୍ ପରିମାଣରେ ନମନୀୟ କରିପାରୁଥିଲା । ମୁଁ ଦେଖିଥିଲି, କିପରି ଜଣେ ଦୁରାରୋଗ୍ୟ କ୍ଷତରେ ଆକ୍ରାନ୍ତ କଣେ ବ୍ୟକ୍ତି ତାଙ୍କଠାରୁ ସାମାନ୍ୟ ମୁଦ୍ରାଟିଏ ଧାର ମାଗିଥିଲା, ତାହାର କ୍ଷତରେ ଛୁଆଇଁ ଦେବାପାଇଁ ଓ ପ୍ରସବକାଳୀନ ଦୁର୍ବିସହ ଯନ୍ତ୍ରଣା ଭୋଗୁଥିବା ସ୍ତ୍ରୀର ସ୍ୱାମୀଟି ଗୋଟିଏ ଜଳପୂର୍ଣ୍ଣ ପାତ୍ରଟିଏ ଆଣି ତାକୁ ସ୍ପର୍ଶ କରିବାପାଇଁ ତାଙ୍କୁ ସବିନୟ ନିବେଦନ ଜଣାଇଥିଲା ।''

ସେ ଯୁଗର ବିବରଣୀ ଆଜି ଦୁର୍ଲ୍ଲଭ । ପ୍ରତିପକ୍ଷର ସୁପରିକଳ୍ପିତ ନିର୍ବେଦତା ମଧ୍ୟରେ ତାଙ୍କର ସମସ୍ତ ସ୍ମୃତିର ଆଲେଖ୍ୟ ସବୁ ଆଜି ଅବଲୁପ୍ତ । ହେଲେ ତାହାରି ମଧ୍ୟରେ ଯେଉଁ କେତେକ ବୃତ୍ତାନ୍ତର ଝଲକ ଉପଲବ୍ଧ ହୁଏ, ତାହା ଆମକୁ ହତବାକ କରିଦିଏ । ସେ ଯୁଗର ପ୍ରତିଷ୍ଠିତ ମୁଦ୍ରାକର

ବାସୁଦେବ ନାୟକଙ୍କ ଫଟୋଗ୍ରାଫିକ୍ ସ୍ମୃତିଚାରଣରୁ ଉଦ୍ଧାର କରି ତାଙ୍କର ପୁତ୍ର ଗଣମାଧ୍ୟମ ବିଶେଷଜ୍ଞ ସାରଦା ପ୍ରସନ୍ନ ନାୟକ କହନ୍ତି-

''ମଧୁସୂଦନ ଦାସ ପ୍ରାତଃ ଭ୍ରମଣରେ ମହାନଦୀ କୂଳକୁ, ପୂର୍ବାହ୍ନରେ କୋର୍ଟକୁ ଆଉ ସାୟାହ୍ନରେ କଚେରି ବାହୁଡ଼ାଣି ପଥରେ କାଠଯୋଡ଼ି କୂଳ ଦେଇ ରାଜାବଗିଚା ଓ ରାଣୀହାଟ ଦେଇ ନିଜର କୋଠିକୁ ଚାଲିଚାଲି ହିଁ ଫେରନ୍ତି । ତାଙ୍କର ପଶ୍ଚାତରେ କିଛି ଦୂରରେ ଅନୁଧାବନ କରୁଥାଏ ଘୋଡ଼ାଟଣା ଫିଟନ ଗାଡ଼ି । ବେଳେବେଳେ ପଥ ମଧ୍ୟରେ ନିକଟସ୍ଥ ବସ୍ତିମାନଙ୍କୁ ଯାଇ ତାରକସି ଶିଳ୍ପୀ ତଥା ଅନ୍ୟ କାରିଗରଙ୍କର ଅଭିଜ୍ଞ ନିପୁଣତାରେ ପ୍ରସ୍ତୁତ ଅତ୍ୟନ୍ତ କଳା ଭାସ୍କର୍ଯ୍ୟ ସମ୍ବଳିତ ବସ୍ତୁମାନଙ୍କର ପରୀକ୍ଷାନୀରିକ୍ଷା କରୁଥିଲେ । ତାଙ୍କର ନିତିଦିନିଆ ଏହି ଦିନଚର୍ଯ୍ୟାର ଅବିସ୍ମରଣୀୟ ଯାତ୍ରା ପଥରେ ସେ ସହରୀ ଶିକ୍ଷିତ ବ୍ୟକ୍ତିମାନଙ୍କୁ ନିରାପଦ ଦୂରତ୍ୱରେ ରଖିଥାନ୍ତି, ଆଉ ତାଙ୍କର ଅନୁସନ୍ଧିତ୍ସୁ ଆଖି ଖୋଜିବୁଲୁଥାଏ ଗୋଟିଏ ଗ୍ରହଣଶୀଳ ନିଃସ୍ୱ ଦରିଦ୍ର ବ୍ୟକ୍ତିଟିଏ ପାଇବାପାଇଁ । କିଛିକ୍ଷଣ ପରେ ରାସ୍ତାଧାରରେ ଚାଲୁଥିବା ଏହିଭଳି ଜଣେ ଈପ୍ସିତ ବ୍ୟକ୍ତିଟିଏ ପାଇଗଲେ, ତା' ନିକଟକୁ ଚାଲିଯାଆନ୍ତି । ଆଉ ତା' ପିଠିରେ କିଞ୍ଚିତ୍ ସ୍ପର୍ଶକରି ଅଥବା ଥାପୁଡ଼େଇ ଦେଇ ଦ୍ରୁତ ପଦପାତରେ ଆଗକୁ ଚାଲିଆସି ତାକୁ ଆନ୍ତରିକ ସମ୍ଭାଷଣ ଜଣାଇ ସ୍ୱାଗତ କରନ୍ତି । ଅବସ୍ଥା ଭେଦରେ ନମସ୍କାର ମଧ୍ୟ କରିଥାନ୍ତି । ପ୍ରତ୍ୟୁତ୍ତରରେ ସେହି ବ୍ୟକ୍ତିଠାରୁ ନିର୍ମଳ ଭାବବିନିମୟର ଇସାରା ମିଳିଥାଏ ଏବଂ ଉଭୟଙ୍କର ଚକ୍ଷୁର ମିଳନ ହୋଇଥାଏ । ହଁ, ସେ ଯେ ନିଜର ବାଞ୍ଛିତ ବ୍ୟକ୍ତିଟିଏ ପାଇଗଲେ । ଏଣିକି ସ୍ୱଚ୍ଛନ୍ଦରେ ନିଜର ବାହୁଟିକୁ ସମବେଦନା ଆଉ ସହୃଦୟତାର ଅଭିବ୍ୟକ୍ତିରେ, ସେହି ବ୍ୟକ୍ତିଠାରେ ବେଢ଼େଇ ଦିଅନ୍ତି । ସେହିପରି ମୁଦ୍ରାରେ ନିଜସ୍ୱ ଦୁନିଆର କଥୋପକଥନ ଓ ବାର୍ତ୍ତାଳାପରେ ଉଭୟ ଚାଲିଥାଆନ୍ତି ଆଗକୁ ନିରୋଳା ପଥରେ । ସେହି ବ୍ୟକ୍ତିଟିର ଜୀବନର ସମସ୍ୟା ସଂପର୍କରେ ସେ ନିବିଡ଼ ଭାବେ ପରିଚିତ ହୋଇଯାଆନ୍ତି । ପଥ ସରିବା ପୂର୍ବରୁ ଉଭୟେ ଉଭୟଙ୍କଠାରୁ ବିଦାୟ ନିଅନ୍ତି ପୁଣି ବାରମ୍ବାର ମିଳିତ ହେବାର ପ୍ରତିଶ୍ରୁତି ନେଇ । ( ଅତି ଅଦ୍‌ଭୁତ ଭାବେ ଏହା ମିଳିଯାଉଥିଲା ଗୋପୀନାଥ ମହାନ୍ତିଙ୍କର ପ୍ରାଣସ୍ପର୍ଶୀ ଆଦିବାସୀମାନଙ୍କ ସହିତ ମିଳିତ ହେବା ପ୍ରକ୍ରିୟା ସହିତ ।)

ଏହା କଣ ଆପଣଙ୍କୁ ଅବିଶ୍ୱାସବୋଧ ହେଉଛି ? କେବେ ନୁହେଁ । ତାହାର ପ୍ରମାଣସିଦ୍ଧ ବକ୍ତବ୍ୟ ପ୍ରଦାନ କରନ୍ତି ପ୍ରସିଦ୍ଧ ନାଟ୍ୟକାର ରାମଶଙ୍କର ରାୟ ୩୦.୧.୧୯୦୪ରେ ମଧୁବାବୁଙ୍କ ଏକ ସମ୍ବର୍ଦ୍ଧନା ପ୍ରଦାନ ଉତ୍ସବରେ । ସେ କହିଥିଲେ - ''ମଧୁବାବୁ ରାମ ସାହୁ ବା ଶ୍ୟାମଭୋଇ କଥା କହିଲେ କେବଳ ଶୁଣନ୍ତି ନାହିଁ, ବାଟରେ ଚାଲି ଯାଉଥିଲେ 'ବାୟା' ସହିତ ସୁଦ୍ଧା କଥାବାର୍ତ୍ତା କରନ୍ତି'' । ଦେଶପ୍ରାଣ ମଧୁସୂଦନ ଗ୍ରନ୍ଥରେ ଆହୁରି ଚମକପ୍ରଦ ତଥ୍ୟ ସମ୍ଭାର ସନ୍ନିବେଶିତ ହୋଇଛି । ସେଥିରେ ଉଲ୍ଲେଖ ଅଛି ଯେ ''ମଧୁବାବୁ ମାନସିକ ଯନ୍ତ୍ରଣାଗ୍ରସ୍ତ ପାଗଳମାନଙ୍କ ପାଖରେ ବସି ସହୃଦୟ ଆନ୍ତରିକ ଭାବବିନିମୟରେ ବହୁ ସମୟ କେବଳ ବିତାଇ ଦିଅନ୍ତି ନାହିଁ, ସେହିମାନଙ୍କ ଚିକିତ୍ସାର ଭାର ବହନକରି ନିୟମିତ ଅର୍ଥ ସାହାଯ୍ୟ କରିଥାନ୍ତି । ସେହିଭଳି ଅସହାୟ ଭିକାରିମାନେ ତାଙ୍କର କରୁଣା ପାତ୍ର ଥିଲେ । କଟକର ପ୍ରଥମ ମହିଳା ଚିକିତ୍ସାଳୟ ଲେଡ଼ି ଟମ୍‌ସନ୍

ଡିସ୍‌ପେନ୍‌ସରିର ପ୍ରଥମ ସଂପାଦକ ରହି ସେ ଓଡ଼ିଶା ବାହାରୁ ବହୁ ଅର୍ଥର ସଂସ୍ଥାନ କରିଥିଲେ । କଟକର ପ୍ରଥମ କୁଷ୍ଠାଶ୍ରମ ତାଙ୍କର ହାର୍ଦ୍ଦିକ ପ୍ରଚେଷ୍ଟାରେ ସ୍ଥାପିତ ହୋଇଥିଲା ।''

ଏ ସଂପର୍କରେ ମଧୁସୂଦନ ଲେଖିଥିଲେ, ପ୍ରତ୍ୟେକ ମଣିଷ ହେଉଛି ଏକ ଆତ୍ମାର ସଂଗଠିତ ଶକ୍ତି ଓ ସେ ସ୍ୱର୍ଗୀୟ କାର୍ଯ୍ୟାଦେଶ ଘେନି ଜନ୍ମଲାଭ କରେ । ତେଣୁ ସେ ପ୍ରାୟ ଲୋକଲୋଚନର ଅନ୍ତରାଳରେ ଦଳିତ, ନିଷ୍ପେଷିତ ବ୍ୟକ୍ତିମାନଙ୍କ ସହିତ ସମ୍ମିଳିତ ହେଉଥିଲେ, ଯେପରି ସେମାନେ ସେମାନଙ୍କର ଜୀବନଲାଗି ଅଭିପ୍ରେତ ଅଭୀଷ୍ଟ ଲକ୍ଷ୍ୟପୂରଣରେ ବ୍ରତୀ ହୋଇପାରିଥିଲେ । ଅଯାଚିତ କରୁଣା ଓ ଅଫୁରନ୍ତ ସମ୍ବେଦନାର ଆଧାରରେ ମଧୁସୂଦନଙ୍କର ଏହି ଅକଳ୍ପନୀୟ ଅବଦାନର କୌଣସି ତୁଳନା ନାହିଁ ।

ଉତ୍କଳମଣି ଗୋପବଂଧୁ ୧୯୦୭ରେ ପ୍ରଥମେ ବନ୍ୟା ଦୁର୍ଗତଙ୍କ ସେବାଲାଗି ସାଧାରଣ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ମାତ୍ର ମଧୁସୂଦନ ପ୍ରାୟ ୧୮୮୭ରୁ ନିରବଚ୍ଛିନ୍ନ ଭାବରେ ଏହି ସେବାରେ ନିଜକୁ ନିୟୋଜିତ କରିଥିଲେ । ରଥଯାତ୍ରାବେଳେ ଜଗନ୍ନାଥ ସଡ଼କରେ ଭ୍ରାମ୍ୟମାଣ ଚିକିତ୍ସାକେନ୍ଦ୍ର ସ୍ଥାପନା ସହିତ, ବନ୍ୟା ତଥା ମରୁଡ଼ିଗ୍ରସ୍ତ ଜନତାର ସେବା ଓ ସାହଚର୍ଯ୍ୟ ପ୍ରଦାନ ଲାଗି ତାଙ୍କର ରୁଗ୍‌ଣ ଶରୀରରେ ଚାଲିଚାଲି,ପାଲିଙ୍କିରେ, ବଳଦଗାଡ଼ିରେ ଓ ଆବଶ୍ୟକ କ୍ଷେତ୍ରରେ ହାତୀ ପିଠିରେ ବସି ଦୁର୍ଗମ ଅଂଚଳକୁ ଯାତ୍ରା କରୁଥିଲେ, ଯାହାର ଅତ୍ୟନ୍ତ ଚାକ୍ଷୁସ ବିବରଣୀ ନାଭିନ୍‌ସନଙ୍କ ପ୍ରାମାଣିକ ଗ୍ରନ୍ଥରେ ସନ୍ନିବେଶିତ ହୋଇଛି ।

ଗୋପାଳକୃଷ୍ଣ ଗୋଖଲେଙ୍କ ସହିତ ମଧୁସୂଦନ ଦାସଙ୍କୁ ୧୯୦୪ ରେ ସି.ଆଇ.ଇ. ଉପାଧି ପ୍ରଦାନ କରାଯାଇଥିଲା । ସେ ସମୟରେ ତାଙ୍କ ଜୀବନର ସାମଗ୍ରିକ ମୂଲ୍ୟାୟନ କରି ଗୌରୀଶଙ୍କର ରାୟ ଉତ୍କଳଦୀପିକାରେ ଯେଉଁ ସଂପାଦକୀୟ ନିବନ୍ଧଟି ଲେଖିଥିଲେ, ତାହାର କିଛିଅଂଶ ଏଠାରେ ଉଦ୍ଧାର କରାଗଲା- ''ଓଡ଼ିଶାରେ ଶ୍ରମଜୀବୀଙ୍କ ହିତ ନିମନ୍ତେ ଓ ସେମାନଙ୍କର ଶ୍ରମ ଲାଘବ କରିବାପାଇଁ ସେ ଓଡ଼ିଶା ଶିଳ୍ପଶାଳା ଖୋଲିଥିଲେ । ସାମାନ୍ୟ ଶ୍ରେଣୀର ଶ୍ରମଜୀବୀର ଦୁଃଖରେ ସେ ସହାନୁଭୂତି ପ୍ରଦର୍ଶନ କରିଛନ୍ତି ।''

ଏହାଥିଲା ମଧୁସୂଦନଙ୍କ ମହନୀୟ ବ୍ୟକ୍ତିତ୍ୱର ଏକ ଅନାଲୋଚିତ ଦିଗ । ଉନବିଂଶ ଶତାବ୍ଦୀର ଶେଷ ଭାଗରେ, ଗ୍ରାମ୍ୟ ଶିଳ୍ପରେ ଯେଉଁ ଉତ୍ପାଦନ ପ୍ରକ୍ରିୟା ପ୍ରଚଳିତ ଥିଲା, ତାହା ଥିଲା ଅତ୍ୟନ୍ତ ଯଂତ୍ରଣାଦାୟକ ଶାରୀରିକ ଶ୍ରମ , ଯାହା ବହୁ ସମୟରେ ଅମାନବୀୟ ଥିଲା । ଶ୍ରମଜୀବୀ ଓ କାରିଗରମାନଙ୍କ କାୟିକ କ୍ଳେଶକୁ ଅପନୋଦନ କରି ଯାଂତ୍ରିକ ପ୍ରକ୍ରିୟାର ପ୍ରଚଳନ କ୍ଷେତ୍ରରେ ମଧୁସୂଦନ ଥିଲେ ପ୍ରଥମ । ଜୈବିକ ଏବଂ ରାସାୟନିକ ରଂଗର ପ୍ରୟୋଗ ସାଙ୍ଗକୁ ତାରକସି, ତମ୍ବା, କଂସା, ପିତ୍ତଳ, ଲୁହା, ଆଲୁମିନିୟମ୍, କାଠ, ହାତୀଦାନ୍ତ ଓ ସୋଲ ଆଦି କ୍ଷେତ୍ରରେ ଯାନ୍ତ୍ରିକ ପ୍ରକ୍ରିୟା ପ୍ରଚଳନଠାରୁ ଆରମ୍ଭକରି ଚମଡ଼ା ଶିଳ୍ପରେ ସେ ଉନ୍ନତ ବିଧିର ପ୍ରଚଳନ କରାଇଥିଲେ । ଏହା ମହାତ୍ମାଗାନ୍ଧୀଙ୍କର ଦୃଷ୍ଟିକୁ ଗଭୀର ଭାବେ ଆକର୍ଷିତ କରିଥିଲା । ମଧୁସୂଦନ କେନ୍ଦୁଝର ଆଦି ଗଡ଼ଜାତ ରାଜ୍ୟରେ ପରିଭ୍ରମଣ ବେଳେ ଅଶ୍ୱାରୋହଣରେ ଶିଳ୍ପୀପଲ୍ଲୀଗୁଡିକୁ ଯାଇ, ଅବସର ସମୟ କେବଳ

ବିତାଉ ନଥିଲେ, ସେମାନଙ୍କ ପାରଂପରିକ ଶିଳ୍ପରେ ମଧ୍ୟ ଉନ୍ନତି ସାଧନ କରିଥିଲେ । ମଧୁବାବୁଙ୍କ ସଂପର୍କରେ ମହାତ୍ମାଗାନ୍ଧୀ ଲେଖିଛନ୍ତି -

''ଏ ସମସ୍ତର ଊର୍ଦ୍ଧ୍ୱରେ ମଧୁସୂଦନ ଥିଲେ ନବ ଓଡ଼ିଶା ପ୍ରଦେଶର ଜନକ । ପିତା ନିଜ ଅଂଗରୁ ସନ୍ତାନର ଅବୟବ ପ୍ରଦାନ କଲା ପରି, ମଧୁସୂଦନ ପାରଳା ମହାରାଜାଙ୍କର ସୁନିପୁଣ ଓ ଦକ୍ଷ ସହାୟତାରେ ଅକଳନୀୟ ପ୍ରାକୃତିକ ବିଭବରେ ପରିପୂର୍ଣ୍ଣ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ କରାଇ ନବ ଓଡ଼ିଶା ପ୍ରଦେଶର ପ୍ରତିଷ୍ଠା କରିଥିଲେ । ପରିଣାମରେ ସେ ଥିଲେ ଏହି ରାଜ୍ୟର ସ୍ରଷ୍ଟା ।''



# ଓଡ଼ିଶାରେ ନାରୀଶିକ୍ଷାର ଇତିବୃତ୍ତ

ରେବତୀ ଗଳ୍ପ ରଚନାର ଶତବାର୍ଷିକୀ ପାଳନ ହେଲା ୧୯୯୮ରେ । ସେ ସମୟରେ ନାରୀ ସମାଜର ସ୍ଥିତି ସଂପର୍କରେ ଚିନ୍ତା କଲେ ଆଚମ୍ବିତ ହେବାକୁ ହୁଏ । ରେବତୀ ଗଳ୍ପ ରଚନାର ସାତବର୍ଷ ପରେ ୧୯୦୫ ବେଳକୁ ଓଡ଼ିଶାର ରାଜନୈତିକ ଆଉ ସାଂସ୍କୃତିକ ରାଜଧାନୀ କଟକ ସହରରେ ବହୁ ସ୍ୱାଭିମାନୀ ପ୍ରଚଣ୍ଡ ପ୍ରତିଭାଶାଳୀ ବ୍ୟକ୍ତିଙ୍କର ଉପସ୍ଥିତି ସତ୍ତ୍ୱେ ନାରୀଶିକ୍ଷାର ଅଗ୍ରଗତି ଥିଲା ଅତ୍ୟନ୍ତ ପ୍ରାରମ୍ଭିକ ସ୍ତରରେ, 'ରେବତୀ' ର ପାଠପଢ଼ା ପର୍ଯ୍ୟନ୍ତ । ଆହୁରି ଦୁର୍ଭାଗ୍ୟର ବିଷୟ ଯେ, ସେହିବର୍ଷ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଶିକ୍ଷାଦାନ ସ୍ତର ଭର୍ଣ୍ଣାକୁଲାର ଶ୍ରେଣୀରୁ ଅପର ପ୍ରାଇମେରୀ ସ୍ତରକୁ ଖସାଇ ଦିଆଗଲା, ବହୁ ବର୍ଷ ଧରି ପରୀକ୍ଷାଫଳ ନୈରାଶ୍ୟଜନକ ହେବାରୁ । ସେହି ବର୍ଷ ଏହି ବାଳିକା ବିଦ୍ୟାଳୟର ମୋଟ ଛାତ୍ରୀ ୭୬ ଜଣଙ୍କ ମଧ୍ୟରୁ ଉଚ୍ଚ ପ୍ରାଥମିକ ସ୍ତରରେ ଛଅ ଜଣ, ନିମ୍ନ ପ୍ରାଥମିକ ସ୍ତରରେ ଦଶଜଣ ଆଉ ବଳକା ୬୦ ଜଣ ଶିଶୁ ଶ୍ରେଣୀରେ ପଢୁଥିଲେ । ସ୍କୁଲ୍‌ରେ ମାତ୍ର ସତର ଜଣ ଓଡ଼ିଆ ଛାତ୍ରୀ ଥିଲେ । ବାକି ସମସ୍ତେ ବଂଗାଳୀ ।

୧୯୦୫ ରୁ ୧୯୦୮ । ତାହାଥିଲା ନାରୀଶିକ୍ଷାର ଇତିବୃତ୍ତରେ ସ୍ଥାଣୁତାର ପର୍ଯ୍ୟାୟ । ନାରୀଶିକ୍ଷାର ସ୍ରୋତଟି ଅଟକି ଯାଇଥିଲା ବିଦ୍ୱେଷର ଚକ୍ରାନ୍ତ ମଧ୍ୟରେ । ହଠାତ୍ ଦୃଶ୍ୟପଟ୍ଟରେ ଉଭାହେଲେ କ୍ରାନ୍ତି ପୁରୁଷ ମଧୁସୂଦନ । ତାଂକରି ଦିଗ୍‌ଦର୍ଶନରେ ହଜି ଯାଉଥିବା ସ୍ରୋତଟି ଯେପରି ପ୍ରବହମାନ ହେଲା ୧୯୦୮ରୁ ୧୯୧୦ ମଧ୍ୟରେ । ଓଡ଼ିଶାର ସର୍ବପ୍ରଥମ ବାଳିକା ହାଇସ୍କୁଲ୍‌ଟି ପୂର୍ଣ୍ଣାଙ୍ଗ ହେଲା । ଏହି ସମୟ ମଧ୍ୟରେ ଯେଉଁ ଦୁଇଜଣ ଛାତ୍ରୀ ପ୍ରଥମେ (୧୯୦୯)ମାଟ୍ରିକ୍ ପରୀକ୍ଷାରେ ଏହି ସ୍କୁଲ୍‌ରୁ ଉତ୍ତୀର୍ଣ୍ଣ ହେଲେ, ସେମାନେ ହେଉଛନ୍ତି ବିଶ୍ୱନାଥ କରଙ୍କ କନ୍ୟା ନର୍ମଦା କର ଓ ଖ୍ରୀଷ୍ଟିୟାନ ପରିବାରର ଗଂଗାଧର ଷଡ଼ଙ୍ଗୀଙ୍କ କନ୍ୟା ଚଂଦ୍ରମୁଖୀ ଷଡ଼ଂଗୀ । ଏହି ଦୁଇଜଣ ମଧ୍ୟ ଓଡ଼ିଆ ଜାତିର ପ୍ରଥମ ମହିଳା ଗ୍ରାଜୁଏଟ, ଯେଉଁମାନେ କଲିକତାର ବେଥୁନ୍ କଲେଜରୁ ୧୯୧୫ରେ ବିଏ ପାଶ୍ କରି କିଛିବର୍ଷପାଇଁ ରେଭେନ୍‌ସା ବାଳିକା ବିଦ୍ୟାଳୟର ଶିକ୍ଷୟିତ୍ରୀ ରୂପେ ନାରୀଶିକ୍ଷାର ପ୍ରଗତିରେ ବଳିଷ୍ଠ ଯୋଗଦାନ କରିଥିଲେ ।

ଓଡ଼ିଶାର ନାରୀଶିକ୍ଷାକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ୧୮୬୯ ସାଲରେ ଛଅଜଣ ବଂଗୀୟ ବାଳିକାଙ୍କୁ ନେଇ ଘରୋଇ ଟ୍ୟୁସନ୍ ଭାବରେ ପ୍ରଥମ ପାଠଶାଳାଟି ଆରଂଭ ହୋଇଥିଲା । ୧୮୭୧ ସାଲ ବେଳକୁ ଏହା ୧୪ ଜଣ ଛାତ୍ରୀଙ୍କୁ ନେଇ ବାଲୁବଜାର ନିକଟରେ ଅବିନାଶ ଚଂଦ୍ର ଚଟ୍ଟୋପାଧ୍ୟୟଙ୍କ ଗୃହରେ ପରିଚାଳିତ ହେଉଥିଲା । ପରେ ସ୍କୁଲ୍‌ଟିର ନାମ ହେଲା ରେଭେନ୍‌ସା ହିନ୍ଦୁ ବାଳିକା ବିଦ୍ୟାଳୟ, ଯାହାକୁ ୧୮୮୩ ବେଳକୁ ଭର୍ଣ୍ଣାକୁଲାର ସ୍ତରକୁ ଉନ୍ନୀତ କରାଗଲା । ସେତେବେଳକୁ ମାସିକ ସରକାରୀ ଗ୍ରାଂଟ ଥିଲା ପଚିଶ ଟଙ୍କା । ୧୯୦୫ ବେଳକୁ ଏହାର ଶ୍ରେଣୀସଂଖ୍ୟା କମାଇ ଦିଆଗଲା । ଶିକ୍ଷାଦାନ ନିମ୍ନମାନର ଥିବାରୁ ଅନ୍ୟ ଏକ ଉନ୍ନତ ସ୍କୁଲ୍ ସ୍ଥାପନାପାଇଁ ସରକାରୀ ସ୍ତରରେ ମତ ପ୍ରକାଶ ପାଇଲା ।

ସେତେବେଳକୁ ଓଡ଼ିଶାରେ ଶିକ୍ଷିତ ଓ ସଂଭ୍ରାନ୍ତ ସମାଜରେ ନାରୀମାନଙ୍କର ସ୍ଥାନଥିଲା ସୂର୍ଯ୍ୟାଲୋକର ଅଗମ୍ୟସ୍ଥାନରେ, ଗୃହର ଅଂତଃପୁରରେ । ବହୁ ସଂପ୍ରଦାୟର ବାଲ୍ୟବିବାହ ଥିଲା ଚିରାଚରିତ ପ୍ରଥା । ବିବାହ ହେଉଥିଲା ବାରରୁ ପଂଦର ବର୍ଷ ମଧ୍ୟରେ । ଏପରିକି ସେ ବେଳର ସବୁଠାରୁ ପ୍ରଗତିଶୀଳ ପରିବାରରୁ ଆସିଥିବା ରମାଦେବୀଙ୍କର ବିବାହ ଚଉଦ ବର୍ଷରେ ହୋଇଥିଲା । ଝିଅମାନେ ଖଡ଼ିପାଠ, ଚାଟଶାଳୀ ପାଠ ସମାପ୍ତ କରି ପ୍ରାଥମିକ ବା ମାଇନର ଶ୍ରେଣୀ ପଢ଼ିଲାବେଳକୁ ବିବାହଯୋଗ୍ୟ ବୟସ ଆସି ପହଞ୍ଚି ଯାଉଥିଲା । ତେଣୁ ଉଚ୍ଚ ଶ୍ରେଣୀରେ ଅଧ୍ୟୟନ କରିବାପାଇଁ ଛାତ୍ରୀ ମିଳିବା ଥିଲା ଦୁଃସାଧ୍ୟ ।

ଏହାଛଡ଼ା ଆହୁରି ଥିଲା ଅନ୍ତର୍ନିହିତ ସମସ୍ୟା । ବଂଗ ପ୍ରଦେଶର ଗୋଟିଏ ଡିଭିଜନ ରୂପେ ଓଡ଼ିଶାର କେବଳ ଶାସକୀୟ ରାଜଧାନୀ ନୁହେଁ, ସାଂସ୍କୃତିକ ଜାଗରଣର ମୁଖ୍ୟକେନ୍ଦ୍ର ଥିଲା କଲିକତା, ଯାହା ସହିତ ଓଡ଼ିଶା ସଂଯୁକ୍ତ ହୋଇଥାଏ ନୂତନ ଭାବେ ସଂଯୁକ୍ତ ରେଳପଥଦ୍ୱାରା ୧୯୦୦ ସାଲରେ । ବଂଗାଳୀ ସଂସ୍କୃତିର ଧାରା ଅବାରିତ ଭାବରେ ବହିଚାଲିଥିଲା । ସ୍ୱଳ୍ପ ସଂଖ୍ୟକ ଓଡ଼ିଆ ଭାଷାରେ ମୁଦ୍ରିତ ପୁସ୍ତକଯୋଗୁଁ ଶିକ୍ଷିତ ସମାଜ ବଂଗଳା ପୁସ୍ତକ ପଢୁଥିଲେ । ବଂଗଳା ଭାଷା ହୋଇଯାଇଥିଲା ବାହାର ଜଗତ ସହିତ ସଂପର୍କର ସେତୁ । ଶିକ୍ଷିତ ଓଡ଼ିଆଂକ ତୁଣ୍ଡରେ ଓଡ଼ିଆ ଅପେକ୍ଷା ବଂଗଳା ହିଁ ସହଜରେ ପଇଟୁ ଥିଲା । କିରାଣିଠାରୁ ଆରମ୍ଭକରି ହାକିମଙ୍କ ପର୍ଯ୍ୟନ୍ତ ସଂପର୍କ ସ୍ଥାପନକରିବା ସହିତ ଭାବପ୍ରକାଶ କରିବାଲାଗି ସବୁକ୍ଷେତ୍ରରେ ବଙ୍ଗଳା ଭାଷା ହିଁ ଥିଲା ମାଧ୍ୟମ ।

ଆହୁରି ଥାଆନ୍ତି ବଂଗଳାର ପ୍ରଭାବଶାଳୀ ଜମିଦାର ଗୋଷ୍ଠୀ, ସୂର୍ଯ୍ୟାସ୍ତ ଆଇନ୍ ବଳରେ ଯେଉଁମାନଙ୍କର ଚେର ରହିଥାଏ ବଂଗଳା ମାଟିରେ । ଓଡ଼ିଶାରେ ବ୍ରାହ୍ମଧର୍ମ ଗ୍ରହଣ କରିଥିବା ପରିବାରସବୁ ସଂପର୍କିତ ଥିଲେ କଲିକେତାର ବହୁ ସଂସ୍କୃତିସଂପନ୍ନ ପରିବାର ସହିତ । ଭକ୍ତକବି ମଧୁସୂଦନ ରାଓଂକଠାରୁ ଆରମ୍ଭ କରି ବହୁ ପରିବାରରେ ବଂଗଳା ହିଁ ପରିଣତ ହୋଇଯାଇଥିଲା ମାତୃଭାଷାରେ । ଏ ସମସ୍ତ ଥିଲା ସେ ଯୁଗର ଚଳଣି । ମାତ୍ର ସମସ୍ୟାଟି ହେଲା, ବଂଗଳା ଭାଷା ଜରିଆରେ ଜ୍ଞାନ ଆହରଣ ଓ ନୂତନ ସଂସ୍କୃତି ସହିତ ପରିଚିତ ହେଲାବେଳେ ନିଜର ମାଟି ଓ ପରଂପରା ଉପରେ ଠିଆ ହେବାର ଆତ୍ମପ୍ରତ୍ୟୟ ଓ ଦାମ୍ଭିକତା

ହୁଏତ ଓଡ଼ିଆମାନଙ୍କର ନଥିଲା । ଥିଲା ଉଜାଣି ସୁଅରେ ଭାସିଯାଇ ବଂଗୀୟ ସଂସ୍କୃତିକୁ ନିର୍ବିଚାରରେ ଗ୍ରହଣ କରିନେବାର ଅଦମ୍ୟ ଆଗ୍ରହ ।

ଏହି ସମୟ ସୁଅରେ ଭାସି ଯାଇଥିଲା ଓଡ଼ିଶାର ନାରୀଶିକ୍ଷା କିଛିକାଳ ଦିଗହରା ହୋଇ । ଏତିକିବେଳେ ନାରୀଶିକ୍ଷାର ମାର୍ଗଦର୍ଶନ କରିଥିଲେ ମଧୁସୂଦନ ଓ ଉଭାହୋଇଥିଲେ ଦୁଇଜଣ ବଳିଷ୍ଠ ବ୍ୟକ୍ତିତ୍ୱସଂପନ୍ନ ନାରୀ ଚରିତ୍ର । ଜଣେ କୁମାରୀ ଶୈଳବାଳା ଦାସ । ଜନ୍ମ, ଶିକ୍ଷା, ଦୀକ୍ଷା ଓ ବିଦ୍ୟାଧ୍ୟୟନ ବଂଗରେ। ଧର୍ମରେ ଖ୍ରୀଷ୍ଟିୟାନ, ସଂସ୍କୃତିରେ ବଂଗାଳୀ । ୧୮୯୭ରେ ଆଇ.ଏ ପାଶ୍ ଓ ୧୯୦୬-୭ରେ ବିଲାତରେ ନାରୀଶିକ୍ଷାର ସ୍ୱତଂତ୍ର ପ୍ରଶିକ୍ଷଣ ପ୍ରାପ୍ତ। ମାତ୍ର ମଧୁବାବୁଙ୍କ ପାଳିତା କନ୍ୟା ଭାବରେ ଓଡ଼ିଆର ଅଧିକାରିଣୀ ଓ ମଧୁବାବୁଙ୍କ ନିର୍ଦ୍ଦେଶରେ କିଛିକାଳ ଓଡ଼ିଶାର ସ୍ୱାର୍ଥରକ୍ଷା (ନାରୀଶିକ୍ଷା) ପାଇଁ ନିଜକୁ ନିୟୋଜିତ କରିଥିଲେ । ତାଙ୍କର ଶିକ୍ଷା, ଦୀକ୍ଷା ତଥା ସଂସ୍କୃତି ଏଥିରେ କିଛିଟା ପ୍ରତିବଂଧକ ସୃଷ୍ଟି କରିଥିଲେ ମଧ୍ୟ ମଧୁସୂଦନଙ୍କର ବ୍ୟକ୍ତିଗତ ପ୍ରଭାବଯୋଗୁଁ ସେ ଏହା ବହୁ ପରିମାଣରେ ଅତିକ୍ରମ କରିପାରିଥିଲେ ।

ଅନ୍ୟ ଜଣେ ହେଉଛନ୍ତି, ରେବା ରାୟ(ରାଓ) । ଜନ୍ମରେ ମରାଠୀ, ଭକ୍ତକବିଙ୍କ ଝିଅାରୀ, ବିଶିଷ୍ଟ ଓଡ଼ିଆ ଅଭିଧାନ ପ୍ରଣେତା ଜଗନ୍ନାଥ ରାଓଙ୍କର ଝିଅ । ବାଲ୍ୟଶିକ୍ଷା ରେଭେନ୍ସା ବାଳିକା ବିଦ୍ୟାଳୟରେ । ୧୮୮୭ରେ ବୃତ୍ତି ପାଇ ଅପର ପ୍ରାଇମେରୀ ପାଶ୍ ସହିତ ଭର୍ଣ୍ଣାକୁଲାର କ୍ଲାସ୍‌ରେ ଅଧ୍ୟୟନ । ଅଳ୍ପ ବୟସରୁ ତାଙ୍କ ରଚିତ ଓଡ଼ିଆ ଗ୍ରନ୍ଥ 'ଅଂଜଳି' ଉଚ୍ଚ ପ୍ରଶଂସିତ ହୋଇଥିଲା । ଓଡ଼ିଆ ଭାଷାରେ ତାଙ୍କର ପ୍ରଥମ ରନ୍ଧନ ଶାସ୍ତ୍ର 'ରାନ୍ଧଣା' ସର୍ବଜନାଦୃତ ହୋଇଥିଲା । ସେ ଓଡ଼ିଆ ସାଧୁଚରଣ ରାୟଙ୍କୁ ବ୍ରାହ୍ମ ମତରେ ବିବାହ କରିଥିଲେ । ସ୍ୱାମୀଙ୍କ ସହାୟତାରେ ସେ ଆଶା ନାମରେ ସାମୟିକ ଓଡ଼ିଆ ପତ୍ରିକା ସଂପାଦନା କରିଥିଲେ । ଏସବୁ ସତ୍ତ୍ୱେ ବ୍ରାହ୍ମଧର୍ମ ତଥା ଭକ୍ତକବିଙ୍କ ଜରିଆରେ କଲିକତା ତଥା ବଂଗଳାର ବହୁ ସଂସ୍କୃତିସଂପନ୍ନ ପରିବାରଙ୍କ ସହିତ ଜଡ଼ିତ ଥିଲେ ଓ ବଂଗଳା ସଂସ୍କୃତି ପ୍ରତି ତାଙ୍କର ଅପରିସୀମ ଆଗ୍ରହ ଥିଲା । କୁମାରୀ ଶୈଳବାଳା ଓ ଶ୍ରୀମତୀ ରେବା ରାୟ ଦୁଇଟି ବିପରୀତମୁଖୀ ଚରିତ୍ର । ନିଜର ବ୍ୟକ୍ତିତ୍ୱକୁ ଉପସ୍ଥାପିତ କରିବାରେ ପାରଦର୍ଶୀ । ଲକ୍ଷ୍ୟ ହାସଲ ଲାଗି ଯେକୌଣସି ପଥ ଗ୍ରହଣ କରିବାକୁ ପଛାଉ ନଥିଲେ ସେମାନେ । ଆଗରୁ କୁହାଯାଇଛି, ରେଭେନ୍ସା ବାଳିକା ବିଦ୍ୟାଳୟରେ ଶିକ୍ଷାଦାନର ମାନରେ ଅବନତିଯୋଗୁଁ ନୂତନ ବାଳିକା ବିଦ୍ୟାଳୟ ସ୍ଥାପନାପାଇଁ ସରକାରୀ ସ୍ତରରେ ମାନସିକତା ସୃଷ୍ଟି ହୋଇଥିଲା । ଏହାର ସୁଯୋଗ ନେଇ ରେବା ରାୟ ଗୋଟିଏ ବାଳିକା ଉଚ୍ଚ ବିଦ୍ୟାଳୟ ସ୍ଥାପନ କଲେ, ଭକ୍ତକବି ଯାହାର ପୃଷ୍ଠପୋଷକ ରୂପେ ଛିଡ଼ା ହୋଇଥିଲେ। ସ୍କୁଲ୍‌ର ପ୍ରଥମ ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଲା ମାର୍ଚ୍ଚ ୧୯୦୭ରେ । ଏଥିରେ ୪୫ ଜଣ ବାଳିକା ପଢୁଥିଲେ । ସଭାରେ ପରଦା ଆଢୁଆଳରେ ବାଳିକାମାନେ ବଂଗଳା ଗୀତ ଗାନ ସାଙ୍ଗକୁ ଇଂରାଜୀ ପାଠ ଆବୃତ୍ତି କରୁଥିଲେ । ଏ ସ୍କୁଲ୍ ସଂପର୍କରେ ନିର୍ଭୀକ ସାମ୍ବାଦିକ ଗୌରୀ ଶଙ୍କର ରାୟ କହିଥିଲେ- "କେବଳ ସ୍କୁଲର ସମସ୍ତ ପିଲା ବଂଗାଳୀ ହୋଇଥିବାରୁ ଆମମାନଙ୍କ ମନରେ ବିଶେଷ ଦୁଃଖ ହୋଇଥିଲା । ଶ୍ରୀମତୀ ରେବା ରାୟ ଓଡ଼ିଆ ହୋଇଥିବା ସ୍ଥଳେ ତାଙ୍କ ପ୍ରତିଷ୍ଠିତ ସ୍କୁଲ୍‌ରେ ଓଡ଼ିଆ ଛାତ୍ରୀ ଅଭାବ ଥିବା ବଡ଼ ଆଶ୍ଚର୍ଯ୍ୟର

ବିଷୟ । ଏ ସ୍କୁଲ୍ ସଂପର୍କରେ ପରବର୍ତ୍ତୀ ଘଟଣା ପ୍ରବାହ ଅନୁଧ୍ୟାନ କଲେ ଜଣାଯାଏ, ଏହି ସ୍କୁଲ୍‌ଟି ଆଜିକାଲିର ବହୁ ଧର୍ମୀୟ ସଂସ୍ଥା ପ୍ରତିଷ୍ଠିତ କନ୍‌ଭେଂଟ ଶୈଳୀର ସ୍କୁଲ୍ ପରି ଥିଲା । ସ୍କୁଲ୍‌ଟି ଆଦର୍ଶ ବାଳିକା ବିଦ୍ୟାଳୟ ନାମରେ ନାମିତ ହୋଇଥିଲେ ମଧ୍ୟ ବଂଗରେ ଏହା ବ୍ରାହ୍ମ ବାଳିକା ବିଦ୍ୟାଳୟ ରୂପେ ପରିଚିତ ଥିଲା । ତେଣୁ କଲିକତା ଓ ବଂଗର ବହୁ ବଂଗାଳୀ ଛାତ୍ରୀ ଏଠାରେ ଆସି ପଢୁଥିଲେ । ବଳକା ଛାତ୍ରୀ ଥିଲେ ବଂଗଳାରୁ ଆଗତ ସରକାରୀ କର୍ମଚାରୀ ତଥା ଜମିଦାରଙ୍କ ଝିଅ । ତେଣୁ ଏହି ସ୍କୁଲ୍‌କୁ ଅଚିରେ ମାସିକ ସରକାରୀ ଗ୍ରାଣ୍ଟ ୩୦୦ଟଙ୍କା ମିଳିପାରିଲା । ଏହି ଛାତ୍ରୀମାନଙ୍କ ମଧ୍ୟରୁ ଅନେକେ ରେଭେନ୍‌ସା ବାଳିକା ବିଦ୍ୟାଳୟରୁ ଆସିଥିବାରୁ ସେ ସ୍କୁଲରେ ଛାତ୍ରୀସଂଖ୍ୟା କମିଗଲା । ରେଭେନ୍‌ସା ବାଳିକା ବିଦ୍ୟାଳୟକୁ ସ୍କୁଲ୍ ବିଭାଗ ଅଧିକାରୀ ମଧୁସୂଦନ ରାଓ ୧୯୦୭ ମସିହାରେ ପରିଦର୍ଶନକରି ଲେଖିଥିଲେ- ''ଏହି ସ୍କୁଲ୍‌ରେ ଉଚ୍ଚ ପ୍ରାଥମିକ ଶ୍ରେଣୀରେ ୨ଜଣ, ନିମ୍ନ ପ୍ରାଥମିକ ଶ୍ରେଣୀରେ ୫ ଜଣ ଓ ବଳକା ୬୦ ଜଣ ଛାତ୍ରୀ ଶିଶୁ ଶ୍ରେଣୀରେ ଅଧ୍ୟୟନ କରୁଛନ୍ତି ।'' ତେଣୁ ମଧୁସୂଦନ ରାଓ ମଂତବ୍ୟ ଦେଲେ ଯେ, ଉପରୋକ୍ତ ବିବରଣୀକୁ ନଜର କଲେ ଏ କଥା ଆଖିରେ ପଡ଼େ ଯେ ଏ ସ୍କୁଲ୍‌ର ମାନ ଅତ୍ୟନ୍ତ ନିମ୍ନ ସ୍ତରର ହୋଇପଡ଼ିଛି । ଏହା ପ୍ରକୃତରେ ଗୋଟିଏ ଶିଶୁ ବିଦ୍ୟାଳୟ । ମୁଁ ଦୁଃଖର ସହ ଅନୁଭବ କରୁଛି, ଏହା ଦିନକୁ ଦିନ ଖରାପ ଆଡ଼କୁ ଗତି କରୁଛି । ଏହା ସହିତ ରେବା ରାୟଙ୍କ ସ୍କୁଲ୍‌କୁ ଉଚ୍ଚ ବିଦ୍ୟାଳୟରେ ପରିଣତ କରିବାପାଇଁ ଦୃଢ଼ ସମର୍ଥନ ସେ ଜଣାଇଥିଲେ । ଏଥିପାଇଁ ସରକାରୀ କର୍ମଚାରୀଙ୍କ ଅକୁଣ୍ଠ ସମର୍ଥନ ଥିଲା । ଫଳରେ ରେଭେନ୍‌ସା ବାଳିକା ବିଦ୍ୟାଳୟକୁ ସରକାରୀ ଅନୁଦାନ କମିଗଲା ।

ସୌଭାଗ୍ୟବଶତଃ ରେଭେନ୍‌ସା ବାଳିକା ବିଦ୍ୟାଳୟର ଆସିଷ୍ଟାଣ୍ଟ ସେକ୍ରେଟାରୀ ପଦରେ ତରୁଣ ଓକିଲ ଗୋପାଳ ଚଂଦ୍ର ପ୍ରହରାଜ (ପରବର୍ତ୍ତୀ କାଳରେ ପ୍ରଖ୍ୟାତ ଭାଷାବିତ୍) ଅବସ୍ଥାପିତ ହୋଇଥିଲେ । ସେତେବେଳର ବି.ଏ. ପାଶ୍ ଛାତ୍ରମାନଙ୍କୁ ମଧୁବାବୁଙ୍କ ଅନୁମୋଦନ କ୍ରମେ ଡେପୁଟି ଚାକିରି ମିଳୁଥିଲା । ସେ ସମୟରେ ମଧୁବାବୁ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଅନ୍ତର୍ନିହିତ ପ୍ରତିଭାର ଠାବକରି ତାଙ୍କର ସକଳ ଅନୁରୋଧ ସତ୍ତ୍ୱେ ଡେପୁଟି ଚାକିରିପାଇଁ ଅନୁମୋଦନ ନ କରି ଦେଶ ସେବାରେ କିଛି ସମୟ ଦେବାପାଇଁ ଅନୁପ୍ରେରିତ କରିଥିଲେ ।

ଗୋପାଳ ପ୍ରହରାଜ ମଧୁବାବୁଂକ ଜୁନିୟର ଓକିଲ ଥିଲେ । ସେ ଏତିକିବେଳେ ମଧୁବାବୁଙ୍କୁ ନାରୀଶିକ୍ଷା ସଂପର୍କରେ ଉପୁଜୁଥିବା ସମସ୍ୟା ସଂପର୍କରେ ଅବଗତ କରାଇଥିଲେ । ତତ୍‌କ୍ଷଣାତ୍ ମଧୁବାବୁଙ୍କ ନିର୍ଦ୍ଦେଶରେ ସଦ୍ୟ ବିଲାତରୁ ଶିକ୍ଷାପ୍ରାପ୍ତ ଶୈଳବାଳା ଓ ଗୋପାଳ ପ୍ରହରାଜଙ୍କୁ ରେଭେନ୍‌ସା ବିଦ୍ୟାଳୟର ସଂପାଦିକା ଓ ସହ-ସଂପାଦକ ଭାବେ ନ୍ୟୁକ୍ତି ଦିଆଗଲା । ଘରଘର ବୁଲି ଛାତ୍ରୀ ସଂଗ୍ରହର ଅଭିଯାନ ଆରମ୍ଭ ହେଲା । ମଧୁସୂଦନଙ୍କ ବ୍ୟକ୍ତିଗତ ପ୍ରଭାବଯୋଗୁଁ ସ୍କୁଲ୍‌ର ଛାତ୍ରୀ ସଂଖ୍ୟା ୫୦ରୁ ୩୦୦କୁ ବୃଦ୍ଧି ପାଇଲା । ଏହାସତ୍ତ୍ୱେ ପଦସ୍ଥ ସରକାରୀ କର୍ମଚାରୀ ଏହି ସ୍କୁଲ୍ ବିରୋଧରେ କାର୍ଯ୍ୟ କରିଚାଲିଥିଲେ । ସରକାରୀ ଅନୁଦାନ ବଂଦ ହେବା ପରେ କିଛି ବର୍ଷ ଧରି ମଧୁସୂଦନ ସ୍କୁଲ୍‌ର ସମସ୍ତ ଖର୍ଚ୍ଚ ନିଜେ ବହନ କରିଥିଲେ । ଅବଶ୍ୟ କିଛି ସାହାଯ୍ୟ ମୟୂରଭଂଜ ମହାରାଜା ଓ କନିକା ରାଜାଙ୍କଠାରୁ ମିଳିଥିଲା । ଏହି ଅର୍ଥରେ ଘୋଡ଼ାଗାଡ଼ି ସବୁ ଛାତ୍ରୀମାନଙ୍କୁ

ପ୍ରତି ପରିବାରରୁ ସ୍କୁଲ୍‌କୁ ଆଣୁଥିଲା । କ୍ରମେ ରେବା ରାୟଂକ ସ୍କୁଲ୍ ସଂପର୍କରେ ପ୍ରକୃତ ତଥ୍ୟ କଲିକତାର ଉଚ୍ଚଶିକ୍ଷା ବିଭାଗର ଅଧିକାରୀଙ୍କ ନଜରକୁ ଆସିଲା । ୧୯୦୮ ସାଲ ଜୁଲାଇ ୨୫ ତାରିଖରେ ବଂଗ ପ୍ରଦେଶ ଡି.ପି.ଆଇ. ରେବା ରାୟଙ୍କ ସ୍କୁଲ୍‌କୁ ପରିଦର୍ଶନ କରି ମଂତବ୍ୟ ଦେଲେ- "ଏ ସ୍କୁଲ୍ ବର୍ତ୍ତମାନର ପରିସ୍ଥିତିରେ ଅଧିକ କାଳ ଚାଲିବା ଉଚିତ ହେବନାହିଁ । ଏହି ସ୍କୁଲ୍ ଓଡ଼ିଆମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ। ଏହା ବଂଗାଳୀ ବାଳିକା ବିଦ୍ୟାଳୟ । ଅପରପକ୍ଷେ କୁମାରୀ ଶୈଳବାଳାଙ୍କ ସ୍କୁଲ୍ ଓଡ଼ିଶାରେ ନାରୀ ଶିକ୍ଷା କ୍ଷେତ୍ରରେ ପ୍ରଥମ ସଫଳ ପ୍ରଚେଷ୍ଟା ।" ଏହାପରେ ରେବା ରାୟଙ୍କ ସ୍କୁଲ୍‌ଟି ସରକାରୀ ଅନୁଦାନରୁ ବଂଚିତ ହୋଇ ବନ୍ଦ ହୋଇଗଲା । ଏହା ଥିଲା ଅନ୍ୟ ପ୍ରଦେଶରୁ ଆସିଥିବା ବଂଗାଳୀ ସରକାରୀ କର୍ମଚାରୀଙ୍କ ପ୍ରତି ପ୍ରଚଣ୍ଡ ଆଘାତ । ତେଣୁ ସେମାନେ ସାମାନ୍ୟ ଉପଲକ୍ଷ୍ୟର ଆଳରେ ବହୁକାଳ ଧରି ଶୈଳବାଳାଙ୍କ ସ୍କୁଲ୍‌କୁ ସରକାରୀ ଅନୁଦାନ ବନ୍ଦ ରଖିଥିଲେ । ଆଉ ଏହି ଏକମାତ୍ର ଓଡ଼ିଆ ଉଚ୍ଚ ବିଦ୍ୟାଳୟକୁ ବଂଚାଇବାପାଇଁ ମଧୁସୂଦନ ଅକୁଣ୍ଠ ଭାବରେ ଅର୍ଥବ୍ୟୟ କରି ଚାଲିଥିଲେ । ପରେ ମଧୁସୂଦନ ବଂଗର ଗଭର୍ଣ୍ଣର ସାର୍ ଏଡୁଆର୍ଡ ବେକରଂକର ବ୍ୟକ୍ତିଗତ ଦୃଷ୍ଟି ଆକର୍ଷଣ କରି ପୁନରାୟ ଅନୁଦାନ ଆଣିଥିଲେ । ଶୈଳବାଳା ଏଥିପାଇଁ ଦାର୍ଜିଲିଂ ଯାଇ ଗଭର୍ଣ୍ଣରଙ୍କୁ ଭେଟିଥିଲେ । ସରକାରୀ ସାହାଯ୍ୟ ପାଇବା ପରେ ୧୯୧୩ ରେ ପୂର୍ଣ୍ଣାଙ୍ଗ ତଥା ସୁପରିଚାଳିତ ଏହି ମହିଳା ବିଦ୍ୟାଳୟକୁ ମଧୁସୂଦନ ସରକାରଙ୍କୁ ହସ୍ତାନ୍ତର କରିଥିଲେ । ପରେ ସମଗ୍ର ବିହାର ଓଡ଼ିଶା ପ୍ରଦେଶରେ ଏହା ପ୍ରଥମ ମହିଳା ବିଦ୍ୟାଳୟର ମାନ୍ୟତା ପାଇଥିଲା ୧୯୧୫ରେ ।

ଗ୍ରାମ୍ୟ ଅର୍ଦ୍ଧସ୍ୱାକ୍ଷର ବାଳିକା ରେବତୀକୁ (ନାରୀ ସମାଜକୁ ) କୁନ୍ତଳା କୁମାରୀ ସାବତ୍ ଅଥବା ଡାକ୍ତର ବୀଣା ଦେଈ କିମ୍ବା ଜ୍ୟୋସ୍ନା ଦେଈ ସ୍ତରକୁ ଉନ୍ନୀତ କରିଥିଲେ ଯୁଗଦ୍ରଷ୍ଟା ମଧୁସୂଦନ, ମାତ୍ର କେତୋଟି ବର୍ଷର ପ୍ରଚେଷ୍ଟାରେ । ଏବେ ପଛକୁ ଦୃଷ୍ଟି ନିକ୍ଷେପ କଲେ ଆଶ୍ଚର୍ଯ୍ୟ ଲାଗେ, ୧୮୬୭-୬୮ ମସିହାରେ ଓଡ଼ିଆ ଭାଷା ଲୋପର ଚକ୍ରାନ୍ତ ନୁହେଁ, ୧୯୦୭ ରେ ଓଡ଼ିଶାରେ ନାରୀଶିକ୍ଷା ଲୋପପାଇଁ ଯେଉଁ ପ୍ରଚେଷ୍ଟା ହୋଇଥିଲା, ତହିଁରେ କିଛି ଲବ୍ଧପ୍ରତିଷ୍ଠ ନେତୃବର୍ଗ ସାମିଲ୍ ହୋଇଥିଲେ ବୋଧହୁଏ ନିଜର ଅଜ୍ଞାତ ସାରରେ, ଯାହାକୁ ମଧୁସୂଦନ ପ୍ରତିହତ କରିପାରିଥିଲେ, ନିଜର ବିଚକ୍ଷଣ ବୁଦ୍ଧିମତ୍ତା ଓ ଦୂରଦୃଷ୍ଟି ବଳରେ । କେବଳ ସେତିକି ନୁହେଁ, ବହୁ ଚକ୍ରାନ୍ତରୁ ଓଡ଼ିଆ ଜାତିକୁ ରକ୍ଷା କରିଥିଲେ ମଧୁସୂଦନ, ଯାହାର ଅନେକ ତଥ୍ୟ ଏ ପର୍ଯ୍ୟନ୍ତ ଉପଲବ୍ଧ ନୁହେଁ । ତାହାରି ମଧ୍ୟରୁ ଏହା ଗୋଟିଏ ଅଜ୍ଞାତ ଅଧ୍ୟାୟ ।



# ସମବାୟର ଆଦ୍ୟ ପ୍ରବର୍ତ୍ତକ ମଧୁସୂଦନ

ସମଗ୍ର ଭାରତରେ ସମବାୟ ଆନ୍ଦୋଳନର ପ୍ରାରମ୍ଭକାଳ ୧୯୦୪ ସାଲ ରୂପରେ ଚିହ୍ନିତ ହୋଇଛି । ସେହିବର୍ଷ ଭାରତରେ ସର୍ବପ୍ରଥମ ସମବାୟ ଆଇନ ୧୯୦୪ ନାମରେ ପ୍ରଣୟନ କରାଯାଇଥିଲା । ଏହି ଆଇନ ପ୍ରଣୟନ ପରେ ପ୍ରାଥମିକ ସ୍ତରରେ ସମବାୟ ଋଣସମିତି ସ୍ଥାପନାପାଇଁ ସୁଯୋଗ ମିଳିଥିଲା । ଏହାପରେ ୧୯୧୨ ରେ "ଭାରତ ସମବାୟ ସମିତି ଆଇନ" ପ୍ରଣୀତ ହେଲା । ଫଳରେ ୧୯୦୪ର ଆଇନରେ ଥିବା ସମସ୍ତ ବାଧା ଓ ସୀମାବଦ୍ଧତାର ଅବସାନ ଘଟିଲା ଓ ସମବାୟ ସ୍ତରରେ ଅଣକୃଷି ଖାଉଟି ଭଂଡ଼ାର ଉଦ୍ୟୋଗ ଆଦି ସମିତି ପ୍ରତିଷ୍ଠା ପାଇଁ ସୁଯୋଗ ମିଳିଲା ।

ଓଡ଼ିଶା ପାଇଁ ଅତ୍ୟନ୍ତ ଗୌରବ ଆଉ ମର୍ଯ୍ୟାଦାର ବିଷୟ ଯେ, ୧୯୦୪ ରେ ପ୍ରଥମ ସମବାୟ ଆଇନ ପ୍ରଣୟନର ଛଅବର୍ଷ ପୂର୍ବରୁ ୧୮୯୮ ସାଲରେ ମଧୁସୂଦନ ଦାସଙ୍କ ଦ୍ୱାରା ଭାରତର ଅନ୍ୟତମ ପ୍ରଥମ ସମବାୟ ସମିତି "କଟକ କୋ-ଅପରେଟିଭ୍ ଷ୍ଟୋର୍" ର ସ୍ଥାପନା ହୋଇଥିଲା । ଏହା ହେଉଛି ସମବାୟ ଆନ୍ଦୋଳନର ଆଦ୍ୟ କୀର୍ତ୍ତିସ୍ତମ୍ଭ । ବିଖଣ୍ଡିତ ଆଉ ବିଭାଜିତ ଓଡ଼ିଆ ଭାଷୀ ଅଂଚଳର ମିଶ୍ରଣ ଉଦ୍ଦେଶ୍ୟରେ ମଧୁସୂଦନ ଦାସ ୧୮୯୭ ସାଲର ଏପ୍ରିଲ୍ ମାସଠାରୁ ନଭେମ୍ବର ମାସ ପର୍ଯ୍ୟନ୍ତ ଇଂଲଣ୍ଡ ସହିତ ୟୁରୋପର ବହୁଦେଶ ପରିଭ୍ରମଣ କରିଥିଲେ । ସେହି ସମୟରେ ଇଂଲଣ୍ଡ ତଥା ୟୁରୋପର ବହୁଦେଶରେ ସମବାୟ ଆନ୍ଦୋଳନର ସର୍ବବ୍ୟାପକତା ଓ ମହନୀୟତାରେ ଅଭିଭୂତ ହୋଇ ମଧୁସୂଦନ ଦାସ "କଟକ କୋ-ଅପରେଟିଭ୍ ଷ୍ଟୋର" ର ସ୍ଥାପନପାଇଁ ସଂକଳ୍ପବଦ୍ଧ ହୋଇଥିଲେ ।

ଊନବିଂଶ ଶତାବ୍ଦୀ ଆରମ୍ଭରେ ସମାଜବାଦର ପରିପ୍ରକାଶ ଘଟିଥିଲା ଏବଂ ୧୮୪୭ ସାଲ ବେଳକୁ କାଲମାର୍କସ୍‌ଙ୍କର ମୁଖ୍ୟ ଗ୍ରନ୍ଥମାନ ପ୍ରକାଶିତ ହୋଇଥିଲା । ଏହା ଫଳରେ ସୋସିଆଲ୍ ଡେମୋକ୍ରେଟିକ୍ ଫ୍ରଣ୍ଟ ଦଳ ୧୮୮୧ରେ ଗଠିତ ହେଲା । ପରବର୍ତ୍ତୀ ପର୍ଯ୍ୟାୟରେ ମାର୍କସଙ୍କ ଚିନ୍ତାଧାରା ଅପେକ୍ଷା ଜର୍ଜ ବର୍ଣ୍ଣାର୍ଡ଼ ଶ, ସିଡ଼ନି ଓଲିଭର, ଗ୍ରାହମ ୱାଲ୍ସ ଏବଂ ସିଡ୍‌ନି ୱେବ୍‌ଙ୍କର

ପ୍ରତିଷ୍ଠିତ ଫାବ୍ରିଏନ ସୋସାଇଟି ଏହି ଦଳ ଉପରେ ପ୍ରଭାବ ବିସ୍ତାର କରିଥିଲା । ପରିଣାମରେ ୧୮୯୩ରେ ସ୍ୱତନ୍ତ୍ର ଶ୍ରମିକ ଦଳର ଉଦ୍ଭବ ହୋଇଥିଲା ।

ମଧୁସୂଦନ ଇଂଲଣ୍ଡରେ ପହଞ୍ଚିଲାବେଳକୁ ସମବାୟ ଆନ୍ଦୋଳନ ତଥା ସମାଜବାଦ ତାହାର ଗୌରବମୟ ପର୍ଯ୍ୟାୟରେ ଉପନୀତ ହୋଇଥିଲା । ସେ ୧୮୯୭ର ମଇମାସରେ ଲଣ୍ଡନରେ ପହଞ୍ଚିଲା ପରେ ଲଣ୍ଡନ ସମବାୟ ସମିତିର କାର୍ଯ୍ୟକାରିତାରେ ମୁଗ୍ଧହୋଇ ତାହାର କାର୍ଯ୍ୟ ପ୍ରଣାଳୀ ଅନୁଧ୍ୟାନ କରିଥିଲେ । ଏପରି ଘରୋଇ ଶିଳ୍ପସଂସ୍ଥା ତଥା ବାଣିଜ୍ୟିକ ସଂସ୍ଥାମାନଙ୍କରେ ସମବାୟ ଖାଉଟି ଭଣ୍ଡାରମାନ ସ୍ଥାପିତ ହୋଇ ଶ୍ରମିକମାନଙ୍କର ଅବସ୍ଥାରେ କିପରି ଉନ୍ନତି ଓ ସମୃଦ୍ଧି ଆଣିପାରିଥିଲା, ତାହା ମଧ୍ୟ ଅନୁଧ୍ୟାନ କରିଥିଲେ । ମଧୁସୂଦନ ଇଂଲଣ୍ଡରେ ସମବାୟର ମହାନ ତୀର୍ଥକ୍ଷେତ୍ର ରକ୍‌ଡେଲ୍‌କୁ ପରିଦର୍ଶନ କରି ଏହାର ସହଯୋଗୀ ଗୋଷ୍ଠୀ କିପରି ସେମାନଙ୍କର କ୍ରାନ୍ତିକାରୀ ଦିଗଦର୍ଶନରେ ସମବାୟ ଆନ୍ଦୋଳନକୁ ବିଶ୍ୱର ଏକ ସ୍ଥିର ଶକ୍ତିରେ ପରିଣତ କରିଥିଲେ, ତାହାର ମଧ୍ୟ ଅଧ୍ୟୟନ କରିଥିଲେ । ବିଶ୍ୱରେ ସମବାୟ ପ୍ରଚେଷ୍ଟାର ମୁଖ୍ୟ ଅନୁଷ୍ଠାନ ମାଞ୍ଚେଷ୍ଟରଠାରେ ପ୍ରତିଷ୍ଠିତ ଥିବା କେନ୍ଦ୍ରୀୟ ହୋଲ୍‌ସେଲ୍ ସମିତି ପରିଦର୍ଶନ କରି ସେହି ଅନୁଷ୍ଠାନ ତାହାର ଶାଖାମାନଙ୍କରେ ସୁଦକ୍ଷ ପରିଚାଳନାରେ ମଧ୍ୟ କିପରି ସମବାୟ ସାମ୍ରାଜ୍ୟର ସ୍ଥାପନା କରି ସମବାୟ କମନୱେଲ୍ ପ୍ରତିଷ୍ଠା ଲାଗି ପଥ ସୁଗମ କରିପାରିଛି, ତାହା ଅନୁଧ୍ୟାନ କରିଥିଲେ । ଏହି ପରିଦର୍ଶନ କାଳରେ ଇଂଲଣ୍ଡର ସମବାୟ କ୍ଷେତ୍ରରେ କ୍ରାନ୍ତିକାରୀ ପ୍ରବାଦ ପୁରୁଷ ଜାକୋବ ଜର୍ଜ ହୋଲିୟୋକ୍(୧୮୧୭-୧୯୦୬)ଙ୍କୁ ଭେଟିଥିଲେ । ହୋଲିୟୋକ୍ ମୁଖ୍ୟତଃ ଜଣେ ଇଂଜିନିୟର ଥିଲେ ମଧ୍ୟ ୧୮୩୭ ସାଲରୁ ସମବାୟ ଚିନ୍ତାଧାରାର ପ୍ରତିଷ୍ଠାତା ରବର୍ଟ ଓୟେନ୍‌ଙ୍କ ସଂପର୍କରେ ଆସିଥିଲେ । ସମବାୟ ଆନ୍ଦୋଳନର ଅଗ୍ରଗତିର ପ୍ରତ୍ୟେକ ପର୍ଯ୍ୟାୟରେ ସେ ସମ୍ମିଳିତ ଥିଲେ ।

ଏପରିକି ବିଖଣ୍ଡିତ ଇଟାଲିକୁ ସ୍ୱତଂତ୍ର ଦେଶର ମାନ୍ୟତା ପ୍ରଦାନ କ୍ଷେତ୍ରରେ ହୋଲିୟୋକ୍ ସଂକଳ୍ପବଦ୍ଧ ଭୂମିକା ଗ୍ରହଣ କରିଥିଲେ । ଏଣୁ ମଧୁସୂଦନ ହୋଲିୟୋକଙ୍କୁ ସମବାୟ କ୍ଷେତ୍ରରେ ଆଦ୍ୟଗୁରୁ ରୂପେ ଗ୍ରହଣ କରିଥିଲେ । ମାଞ୍ଚେଷ୍ଟର ଛଡ଼ା ଲଣ୍ଡନଠାରେ ହୋଲିୟୋକଙ୍କୁ ମଧୁସୂଦନ ବହୁବାର ଭେଟିଥିଲେ । ପ୍ରକୃତରେ ହୋଲିୟୋକ୍ ଥିଲେ ଇଂଲଣ୍ଡ ତଥା ୟୁରୋପୀୟ ସମବାୟ ଆନ୍ଦୋଳନର ମୁଖ୍ୟ ବ୍ୟାଖ୍ୟାକାର । ତାଙ୍କ ରଚିତ ଅସଂଖ୍ୟ ପୁସ୍ତକାବଳୀ ମଧ୍ୟରେ ନିମ୍ନ ଲିଖିତ ପୁସ୍ତକାବଳୀଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ଥିଲା । 1. Self Help by people. 2. History of co-operative in Rochdate, 3. History of co-operation in England, 4. Self-Help Hundred years ago, 5. Co-operative movement today (1891)

ମଧୁସୂଦନ ଲଣ୍ଡନରେ ଅବସ୍ଥାନ କାଳରେ, ଖାଉଟି ସମବାୟ ଭଣ୍ଡାରର ଅପୂର୍ବ ସାଫଲ୍ୟରେ ସ୍ତମ୍ଭୀଭୂତ ହୋଇ କଟକରେ ଏହି ଭଳି ଏକ ଭଣ୍ଡାର ପ୍ରତିଷ୍ଠା କରିବାଲାଗି ସଂକଳ୍ପବଦ୍ଧ ଥିଲେ । ଇଂଲଣ୍ଡରେ ଅବସ୍ଥାନ କାଳରେ ମଧୁସୂଦନ ଗ୍ଲାସ୍‌ଗୋଠାରେ ପ୍ରତିଷ୍ଠିତ ସ୍କଟିଶ୍ ସମବାୟ କେନ୍ଦ୍ରୀୟ ସମିତିକୁ ମଧ୍ୟ ପରିଦର୍ଶନ କରିଥିଲେ । ଲଣ୍ଡନଠାରେ ଅଗଷ୍ଟମାସ ୧୮୯୫ରେ ପ୍ରଥମ ଆନ୍ତର୍ଜାତିକ

ସମବାୟ ମୈତ୍ରୀ କଂଗ୍ରେସ ଅନୁଷ୍ଠିତ ହୋଇଥିଲା । ଏହା ସମସ୍ତ ପ୍ରକାର ସମବାୟ ଉଦ୍ୟୋଗକୁ ସମନ୍ୱିତ କରି ଆନ୍ତର୍ଜାତିକ ସମବାୟ ସଂଘ (I.C.A) ରୂପେ ପରିଚିତ ହେଲା । ମଧୁବାବୁ ଇଂଲଣ୍ଡରେ ଏହା ସହିତ ମଧ୍ୟ ସଂପର୍କିତ ଥିଲେ ।

ଇଂଲଣ୍ଡ ପରିଭ୍ରମଣ ସମାପ୍ତ କରି ମଧୁସୂଦନ ୧୮୯୭ସେପ୍ଟେମ୍ବର ଦ୍ୱିତୀୟ ସପ୍ତାହରେ ଜର୍ମାନୀ ଅଭିମୁଖେ ଯାତ୍ରା କରିଥିଲେ । ବହୁକାଳ ବିଖଣ୍ଡିତ ରହିବାପରେ ମହାନ ସଂଗ୍ରାମୀ ଇସ୍ପାତ ପୁରୁଷ ବିସ୍‌ମାର୍କଙ୍କ ନେତୃତ୍ୱରେ ଜର୍ମାନୀ ଏକତ୍ର ହୋଇ ୧୮୭୧ ସାଲ ବେଳକୁ ସ୍ୱତଂତ୍ର ଦେଶର ମାନ୍ୟତା ପାଇଥିଲା । ଏଣୁ ବିଭାଜିତ ଓ ଖଣ୍ଡିତ ଓଡ଼ିଆ ଜାତିକୁ ଏକତ୍ର କରିବାପାଇଁ ସଂକଳ୍ପବଦ୍ଧ ମଧୁସୂଦନଙ୍କ ପାଇଁ ଜର୍ମାନୀ ପରିଦର୍ଶନ ଏକ ତୀର୍ଥ କ୍ଷେତ୍ର ଥିଲା । ମଲାଗୋରୁର ଚମଡ଼ାକୁ କଷାଇ ଯୋତା ତିଆରି କରିବାର ବିଧାନ ଅନ୍ୱେଷଣରେ ମଧ୍ୟ ସେ ବିଦେଶ ଗସ୍ତରେ ଆସିଥିଲେ । ଜର୍ମାନୀରେ ଏହି ପ୍ରୟୋଗ ବିଧିର ଆବିଷ୍କାର କରି, ସେହି ପ୍ରଣାଳୀ ଅନୁସରଣରେ ମଧୁସୂଦନ ପରବର୍ତ୍ତୀ କାଳରେ ଉତ୍କଳ ଟ୍ୟାନେରି ପ୍ରତିଷ୍ଠା କରିଥିଲେ । ଜର୍ମାନୀ ରହଣି କାଳରେ ମଧୁସୂଦନ, ଜର୍ମାନର କୃଷି ଗ୍ରାମ୍ୟ ଋଣ ସମିତିର ଉପାଦେୟତା ସଂପର୍କରେ ଅନୁଧ୍ୟାନ କରିଥିଲେ । ରାଫାଇଜାନ ଗ୍ରାମ୍ୟ କୃଷିଋଣ ସମିତି ୧୮୬୨ ବେଳକୁ ପ୍ରତିଷ୍ଠା ହୋଇଥିବାବେଳେ ୧୮୭୨ ସାଲ ବେଳକୁ ସ୍କୁଲଜ ପ୍ରତିଷ୍ଠିତ ପୌର ସମବାୟ ବ୍ୟାଙ୍କ ପ୍ରତିଷ୍ଠିତ ହୋଇ ଗୌରବ ଅର୍ଜ୍ଜନ କରିଥିଲା । ଜର୍ମାନରେ ୧୮୬୪ ସାଲରୁ ସମବାୟ ଭୂବନ୍ଧକ ଋଣଦାନ ବ୍ୟବସ୍ଥା ମଧ୍ୟ ପ୍ରଚଳନ ଥିଲା । ଜର୍ମାନୀର ସମବାୟ ସ୍ଥିତି ଓ କାର୍ଯ୍ୟକାରିତା ସଂପର୍କରେ ଅନୁଧ୍ୟାନ ସମାପ୍ତ କରି ମଧୁସୂଦନ ସୁଇଜରଲ୍ୟାଣ୍ଡ ଓ ବେଲଜିୟମ୍ ପରିଦର୍ଶନ କରିଥିଲେ । ବିଖଣ୍ଡିତ ଇଟାଲି ମଧ୍ୟ ଗାରିବାଲଡ଼ି ଓ ମାଜ୍ଜିନୀଙ୍କ ନେତୃତ୍ୱରେ ୧୮୭୨ ବେଳକୁ ସମ୍ମିଳିତ ହୋଇ ସ୍ୱାଧୀନ ଦେଶରେ ପରିଣତ ହୋଇଥିଲା । ତେଣୁ ମଧୁସୂଦନଙ୍କପାଇଁ ଏହି ଦେଶ ପରିଦର୍ଶନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା । ଇଟାଲୀରେ ଲୁସ୍‌ଲିଙ୍କ ନେତୃତ୍ୱରେ ଗ୍ରାମ୍ୟ ଓ ପୌର ସମବାୟ ଋଣ ସମିତି ଗଠିତ ହୋଇଥିଲା । ଇଟାଲୀ ସମବାୟ ଆନ୍ଦୋଳନର ମୁଖ୍ୟ ବିଭବ ଥିଲା ସମବାୟ କୃଷି ସମିତି । ମୁଖ୍ୟତଃ ଜମି ଉଦ୍ଧାର କାର୍ଯ୍ୟକ୍ରମ ମାଧ୍ୟମରେ ଜମିର ଉନ୍ନୟନ କରାଯାଇ ସମବାୟ କୃଷି ସମିତି ପରିଚାଳନାରେ କୃଷି କାର୍ଯ୍ୟକ୍ରମ ସଂପାଦନପାଇଁ ବ୍ୟବସ୍ଥା ରହିଥିଲା ।

ମଧୁସୂଦନ ଦାସ ୧୮୯୭ ସାଲର ଏପ୍ରିଲ୍ ମାସ ଛବିଶି ତାରିଖରେ ଇଂଲଣ୍ଡ ଯାତ୍ରା କରି ସେଠାରେ ସେପ୍ଟେମ୍ବର ମାସ ଦଶ ତାରିଖ ପର୍ଯ୍ୟନ୍ତ ଅବସ୍ଥାନ କରି, ତତ୍ପରେ ଇଉରୋପର ବହୁ ଦେଶ ପରିଭ୍ରମଣ ପରେ ନଭେମ୍ବର ମାସର ଶେଷ ଭାଗରେ କଟକ ଫେରି ଆସିଥିଲେ । ସମଗ୍ର ୟୁରୋପରେ ପାଶ୍ଚାତ୍ୟ ସଂସ୍କୃତି, ସଭ୍ୟତା, ଶିଳ୍ପ, ଉଦ୍ୟୋଗ, ବାଣିଜ୍ୟ ଓ ଗଣତାନ୍ତ୍ରିକ ମୂଲ୍ୟବୋଧର ଅଭିଜ୍ଞତା ନେଇ ଓଡ଼ିଶାକୁ ଫେରି ଆସିଥିଲେ, ସେହି ଅନୁଭୂତିଲବ୍ଧ ଜ୍ଞାନକୁ ଓଡ଼ିଶା ମାଟିରେ ସଂଯୋଜିତ କରିବାପାଇଁ ।

ମଧୁସୂଦନ ଓଡ଼ିଶାରେ ସମବାୟ ଉଦ୍ୟୋଗ ଆରମ୍ଭ କରିବା ଅଭିପ୍ରାୟରେ କଟକରେ ନିଜ ବାସଭବନରେ ୧୮୯୮ ସାଲ ଫେବୃଆରି ପାଞ୍ଚ ତାରିଖଠାରୁ ପ୍ରତି ଶନିବାର ସଂଧ୍ୟାରେ ବହୁ

ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରି ୟୁରୋପ ତଥା ଇଂଲଣ୍ଡରେ ସମବାୟ ଆନ୍ଦୋଳନର ବ୍ୟାପକତା ଓ କାର୍ଯ୍ୟକାରିତା ସଂପର୍କରେ ବ୍ୟାଖ୍ୟାନ ପ୍ରଦାନ ସହିତ ଆଲୋଚନା କରୁଥିଲେ । ଏ ସଂପର୍କରେ ସେହିବର୍ଷ ଫେବ୍ରୁଆରି ୫ ତାରିଖରେ ଉତ୍କଳ ଦୀପିକାରେ ନିମ୍ନଲିଖିତ ସମ୍ବାଦଟି ପ୍ରକାଶିତ ହୋଇଥିଲା:-

''ଅଦ୍ୟ ଅପରାହ୍ଣ ସମୟରେ ମାନ୍ୟବର ବାବୁ ମଧୁସୂଦନ ଦାସ ନିକଟସ୍ଥ କେତେକ ଭଦ୍ରଲୋକଙ୍କୁ ଆପଣା କୋଠିକୁ ଆମଂତ୍ରିତ କରିଅଛନ୍ତି । ସୌହାର୍ଦ୍ଦ୍ୟ ବଢ଼ାଇବା ଓ ଦୁଃଖ-ସୁଖର ଚର୍ଚ୍ଚା କରିବା ଏହି ଆମନ୍ତ୍ରଣର ଅଭିପ୍ରାୟ ଅଟେ । କେତେ ଜଣଙ୍କୁ ଆମନ୍ତ୍ରଣ କରିବାର ଏକମାତ୍ର କାରଣ ହେଲା ଏହିକି ଯେ, ଏକ ଦିନରେ ସମସ୍ତଙ୍କର ଉଚିତ ଆଦର ଓ ଚର୍ଚ୍ଚା କରିବା ଅସମ୍ଭବ । ଅତଏବ ବାବୁ ମହୋଦୟଙ୍କର ଇଚ୍ଛା ଯେ, କ୍ରମେ କ୍ରମେ ସମସ୍ତଙ୍କୁ ଆହ୍ୱାନ କରିବେ ।''

ଏହି ପ୍ରକ୍ରିୟା ଫେବ୍ରୁଆରି ମାସଠାରୁ ଲାଗିରହିଲା । ଏହି ସାପ୍ତାହିକ ସମାରୋହରେ କେଉଁଦିନ କଳାକାର, କେଉଁଦିନ ଶିଳ୍ପୀଗୋଷ୍ଠୀ, କେଉଁଦିନ କିରାଣିମାନଙ୍କୁ, କେଉଁଦିନ ମୋଚି ବା ଅନ୍ୟ ଶ୍ରମଜୀବୀମାନଙ୍କୁ, କେଉଁଦିନ ବୁଣାକାର ଗୋଷ୍ଠୀଙ୍କୁ ଅଥବା କେଉଁଦିନ କଟକର ବୁଦ୍ଧିଜୀବୀ ଗୋଷ୍ଠୀଙ୍କୁ ନିମନ୍ତ୍ରଣ କରୁଥିଲେ । ଏହି ସାପ୍ତାହିକ ଅଧିବେଶନକୁ ମଧୁସୂଦନ ଏଟ୍ ହୋମ୍ ନାମରେ ନାମିତ କରିଥିଲେ । ଫକୀରମୋହନ ତାଙ୍କର ଜୀବନବ୍ୟାପୀ ଗଡ଼ଜାତ ତଥା ଜମିଦାରି ମାହାଲମାନଙ୍କରେ କାର୍ଯ୍ୟବ୍ୟସ୍ତ ରହି ୧୮୯୬ ବେଳକୁ କଟକ ବକ୍ସିବଜାରରେ ଏକ କୋଠି କ୍ରୟକରି ଅବସ୍ଥାନ କରୁଥିଲେ । ଫକୀରମୋହନଙ୍କ ସହିତ ମଧୁସୂଦନଙ୍କର ବନ୍ଧୁତା ଓ ସଖ୍ୟଭାବ ଅତ୍ୟନ୍ତ ସୌହାର୍ଦ୍ଦ୍ୟପୂର୍ଣ୍ଣ ଥିଲା । ଫକୀରମୋହନ ପ୍ରାୟ ଏଟ୍ ହୋମ୍‌ର ପ୍ରତି ଅଧିବେଶନରେ ଯୋଗଦାନ କରୁଥିଲେ । ଏହାଙ୍କ ସହିତ ଏହି ଅଧିବେଶନରେ ଉତ୍କଳ ସାହିତ୍ୟର ସୁଯୋଗ୍ୟ ସଂପାଦକ ବିଶ୍ୱନାଥ କର ମଧ୍ୟ ଯୋଗଦାନ କରୁଥିଲେ । ଏ ସଂପର୍କରେ ତାଙ୍କର ପ୍ରଦତ୍ତ ବିବରଣୀ ଉତ୍କଳ ସାହିତ୍ୟ ପତ୍ରିକାରେ ୧୯୩୪ ସାଲ ଏପ୍ରିଲ୍ ମାସରେ ମଧୁବାବୁଙ୍କ ଦେହାନ୍ତ ପରେ ପ୍ରକାଶିତ ହୋଇଥିଲା ।

''ଉତ୍କଳ ଗୌରବ ସ୍ୱର୍ଗୀୟ ମଧୁସୂଦନ ଦାସ ମହୋଦୟ ପ୍ରଥମ ଥର ବିଲାତରୁ ଫେରିଆସି ନିଜ ବାସଭବନରେ ଗୋଟିଏ ସାପ୍ତାହିକ ଏଟ୍ ହୋମ୍‌ର ଆୟୋଜନ କରିଥିଲେ । ପ୍ରତି ଶନିବାର ସଂଧ୍ୟା ସମୟରେ ସହରର ବିଭିନ୍ନ ଶ୍ରେଣୀର କେତେଜଣ ଭଦ୍ରବ୍ୟକ୍ତି ନିମନ୍ତ୍ରିତ ହେଉଥିଲେ । ସେମାନଙ୍କପାଇଁ ଚା ଜଳଖିଆ ଓ ନାନା ପ୍ରକାରର କ୍ରୀଡ଼ାକୌତୁକର ବ୍ୟବସ୍ଥା ହେଉଥିଲା । ଏହି ସୂତ୍ରରେ ଜାତୀୟ ଉନ୍ନତି ସମ୍ବନ୍ଧରେ ନାନା ଆଲୋଚନା ଚାଲୁଥିଲା । ପ୍ରକୃତ ପକ୍ଷରେ ଏହାହିଁ ଜାତୀୟ ଜାଗରଣ ଦିଗରେ ମଧୁସୂଦନଙ୍କର ପ୍ରଥମ ଉଦ୍ୟମ । ପ୍ରଧାନ କଥା ଥିଲା, ସମବାୟ ନୀତିରେ ଜାତୀୟ ଧନ ଭଂଣ୍ଡାର ବା ବ୍ୟାଙ୍କ ପ୍ରତିଷ୍ଠା କରି ତାହାରି ସାହାଯ୍ୟରେ ଜାତୀୟ ଶିଳ୍ପ ପ୍ରଭୃତିର ଉନ୍ନତି ସାଧନ । ମଧୁସୂଦନ ସାରା ଜୀବନ ଧରି ତାଙ୍କ ଉଦ୍ଦେଶ୍ୟ ସାଧନରେ ପରାଙ୍ମୁଖ ନଥିଲେ ।''

(ଉତ୍କଳ ସାହିତ୍ୟ ୩୭, ୧୦ ସଂଖ୍ୟା, ଏପ୍ରିଲ୍ ୧୯୩୪)

୧୮୯୮ ସାଲ ବୈଶାଖ ମାସ ଉତ୍କଳ ସାହିତ୍ୟ (୩୭/୧୦ ସଂଖ୍ୟା)ରେ ଫକୀର ମୋହନ ସେନାପତି ''ଅତିହୋମ'' ନାମରେ ଏକ ବିଷୟ ରଚନା କରି ସେଥିରେ ଲେଖିଛନ୍ତି- ''ଭକ୍ତବତ୍ସଳ ଭଗବାନ ଆର୍ତ୍ତମାନଙ୍କ ଦୁଃଖ ବିମୋଚନ ନିମନ୍ତେ ସେହି ଘୋର ତିମିରାବଗୁଣ୍ଠିତା ରଜନୀରେ ଯାତ୍ରା କଲେ । ପ୍ରଭୁ ଅଂଧକାର ରାତ୍ରିରେ ଏକାକୀ ଯାତ୍ରା କରିବାରୁ ଲକ୍ଷ୍ମୀଠାକୁରାଣୀ ପ୍ରଭୁଙ୍କୁ ଜଣାଇଲେ, ହେ ଗୋଲକପତି ! ଅନୁଗ୍ରହକରି ଦୁଃଖୀମାନଙ୍କର ଦୁଃଖ ବିମୋଚନ କର । ଆମ୍ଭେ ମଧ୍ୟ ସେମାନଙ୍କ ଶସ୍ୟ କ୍ଷେତ୍ରରେ ଚିରକାଳ ବିରାଜିତ ଥିବୁ । ଏଥୁ ଅନନ୍ତରେ ଭଗବାନ ଆକାଶ ମାର୍ଗରେ ବିରାଜିତ ହୋଇ ଶୂନ୍ୟବାଣୀରେ ଉଚ୍ଚସ୍ୱରରେ ଆଜ୍ଞା କଲେ- ''ହେ ଉତ୍କଳୀୟମାନେ ! ଦେବରାଜ ସତ୍ୟବାଦୀ । ତାହାଙ୍କର ଅଭିଶାପ ଅବ୍ୟର୍ଥ । ତୁମେମାନେ ଏହି ଅଭିଶାପ ପ୍ରଭାବରୁ ଅବଶ୍ୟ ଦୁର୍ଦ୍ଦଶାକୁ ଭଜିବ। ମାତ୍ର ସେଥିରେ ମୁକ୍ତି ପାଇବାର ସନ୍ଧାନ ବୋଲୁଅଛୁ, ଶ୍ରବଣକର । କଳିଯୁଗର ମଧ୍ୟଭାଗରେ ଆମ୍ଭ ନାମ ଧାରଣକରି ଆମ୍ଭ ଅଂଶରୁ ଏକ ମହାପୁରୁଷ ଜନ୍ମଗ୍ରହଣ କରିବେ । ସେହି ପୁରୁଷ ଶ୍ୱେତଦୀପରୁ ଭ୍ରମଣ କରିଆସି ବାରବାଟୀ ପୁଣ୍ୟ କ୍ଷେତ୍ରରେ ରାଜସୂୟ ଅଶ୍ୱମେଧ ଯଜ୍ଞ ସମାନ ଏକ 'ଅତିହୋମ' ଆରମ୍ଭ କରିବେ । ସେହି ଯଜ୍ଞ ଯାବନିକ ଭାଷାରେ ଏଟ୍ ହୋମ୍ ନାମରେ କଥିତ ହେବ । ସେହି ଯଜ୍ଞର ବିଧିପାଳନ କଲେ ତୁମ୍ଭେମାନେ ଶାପରୁ ମୁକ୍ତହୋଇ ପରମ ସୌଭାଗ୍ୟ ଲାଭ କରିବ । ଏହି ଯଜ୍ଞର ବିଧି ତୁମ୍ଭମାନଙ୍କୁ ବୋଲୁଅଛୁଁ, ମନଯୋଗ ପୂର୍ବକ ଶ୍ରବଣ କର । ରାଜସୂୟ ଯଜ୍ଞ ପରି ଏହି ମହାଯଜ୍ଞ ଚତୁର୍ବର୍ଗ ଫଳପ୍ରଦ ଅଟେ । ଯଜ୍ଞକର୍ତ୍ତା ଶୁଦ୍ଧାଚାରୀ ହୋଇ ଶନିବାର ସାୟାହ୍ନ ସମୟରେ ନଗରବାସୀ ଭଦ୍ରଲୋକମାନଙ୍କୁ ଆହ୍ୱାନ ପୂର୍ବକ ସଭ୍ୟ କରିବେ । ସଭ୍ୟମାନେ ଯଥେଷ୍ଟ ପରିମାଣରେ ଚାହାପାନ, ତାମ୍ବୁଳ ଚର୍ବଣ ଓ ଧୂମପାନ କରି ଗୋଟିଏ ନ୍ୟାସନାଲ୍ ବ୍ୟାଙ୍କ ସ୍ଥାପନ କରିବେ । ସେହି ବ୍ୟାଙ୍କ୍ ପାଣ୍ଠି, ଓଡ଼ିଶାର ସର୍ବ ଶ୍ରେଣୀର ଲୋକମାନଙ୍କଠାରୁ ସଂଗ୍ରହ କରାଯିବ । ଯେଉଁମାନେ ବ୍ୟାଙ୍କ୍‌ରେ ମୁଦ୍ରା ନ୍ୟସ୍ତ କରିବେ, ପ୍ରତି ସମ୍ବତ୍ସରରେ ଲାଭ ଦୃଷ୍ଟିରେ ବୃଦ୍ଧି ଦିଆଯିବ । ବ୍ୟାଙ୍କ୍ ଧନରେ ଉତ୍କଳର ସମୁଦ୍ର କୂଳବର୍ତ୍ତୀ ପତିତ ଭୂମି କର୍ଷଣ କରାଯାଇ ଚା, ନୀଳ ପ୍ରଭୃତି ଲାଭକର କୃଷିମାନ କରାଯିବ ଏବଂ ଉତ୍କଳଭୂମିରୁ ଲୁପ୍ତପ୍ରାୟ ଶିଳ୍ପଜାତ ଦ୍ରବ୍ୟମାନ ବାଣିଜ୍ୟ ନିମନ୍ତେ ବିଦେଶକୁ ପ୍ରେରଣ କରାଯିବ । ହେ ଉତ୍କଳୀୟମାନେ ! ଆମ୍ଭର ଆଦେଶପାଳନ ନକଲେ କଦାଚ ଇନ୍ଦ୍ର ଶାପରୁ ମୁକ୍ତ ହେବନାହିଁ ।''

ଏତକ ବୋଲି ଭଗବାନ । ଶୂନ୍ୟରେ ହେଲେ ଅନ୍ତର୍ଦ୍ଧାନ ॥
ଗୁପତ ଭାଗବତ କଥା । ଶୁଣିଲେ ମରେ ଦେହୁଁ ବ୍ୟଥା ॥
ଯେ ଲୋକ ପଇସାର ରଙ୍କୀ । ପାଇବ ପଣପଣ ଟଙ୍କା ॥
ଅପତ୍ୟ ନାହିଁ ଯାହା ଘରେ । ତା ପୁଅ ଡେଇଁବ ଦାଣ୍ଡରେ ॥
ସଂପଦ ଯିବ ଘରେ ଭରି । ସୁଖ ତା ବୋଇଲେ ନସରି ॥
ଯେ କରେ ଭକ୍ତିରେ ଶ୍ରବଣ । ସାଧୁ ଭକତ ସେହି ଜଣ ॥
ଅମାନ୍ୟ କରିବ ଯେ ଗୀତ । ଦଣ୍ଡ ପାଇବ ସମୁଚିତ ॥
ନିଶ୍ଚେ ସେ ବୁଢ଼ା ହେବ କାଳେ । ପାଚିଣ ଯିବେ ମୁଣ୍ଡବାଳେ ॥

ଖସି ପଡ଼ିବ ଦାନ୍ତ ମାନ । ଚୋବାଇ ନ ପାରିବ ପାନ ॥
ଅମାନ୍ୟ କଲେ ଗୀତ ଶୁଣି । ମୁଣ୍ଡରେ ଚରିବ ଉକୁଣି ॥
ନକର ଗ୍ରନ୍ଥ ଉପହାସ । ଗୀତେ ଭଣିଲେ ଦେବବ୍ୟାସ ॥
ବାଇ ମହାନ୍ତି ଅନୁବାଦ । ଶ୍ରବଣେ ତୁଟଇ ପ୍ରମାଦ ॥

ଇତିଶ୍ରୀ ଗୁପ୍ତ ଭାଗବତେ ମହାପୁରାଣେ ପ୍ରଥମ ସ୍କନ୍ଦେ ଶୁକ ପରୀକ୍ଷିତ ସମ୍ବାଦେ "ଅତିହୋମ" ନାମ ଦୁଇ ଅଧ୍ୟାୟ, ଶ୍ରୀ ପଞ୍ଚୁ ଚନ୍ଦ୍ର ଧୀରେନ୍ଦ୍ର ମହାନ୍ତି । (ଛଦ୍ମନାମ)

(ଫକୀରମୋହନଙ୍କ ଅତିହୋମ ରଚନା ଉପରେ ଶ୍ରୀଯୁକ୍ତ ବିଶ୍ୱନାଥ କର, ସଂପାଦକ "ଉତ୍କଳ ସାହିତ୍ୟ" ସମାଜଙ୍କ ପ୍ରଦତ୍ତ ବକ୍ତବ୍ୟ)

"ସୁରସିକ ଫକୀର ମୋହନ ସେନାପତି ମହାଶୟ, ପଞ୍ଚୁଚନ୍ଦ୍ର ଧୀରେନ୍ଦ୍ର ମହାନ୍ତି, ଏହି ଛଦ୍ମନାମରେ ତାଙ୍କର "ନନାଙ୍କ ବସ୍ତାନୀ" ଭିତରେ "ଅତିହୋମ" ନାମ ଦେଇ ଏହି ପ୍ରସଙ୍ଗ ଉଲ୍ଲେଖ କରିଥିଲେ । ୧୮୯୮ ସାଲ ବୈଶାଖ ମାସର ଉତ୍କଳ ସାହିତ୍ୟରୁ ଆମ୍ଭେମାନେ ଏଠାରେ ଉଦ୍ଧୃତି ଦେଲୁ ।" ମାତ୍ର ଓଡ଼ିଶାରେ ଦେଶବାସୀଙ୍କଠାରୁ ଏଥିଲାଗି ଆବଶ୍ୟକୀୟ ପ୍ରୋତ୍ସାହନ ଓ ସମର୍ଥନ ମିଳିପାରି ନ ଥିଲା । ତେଣୁ ପରବର୍ତ୍ତୀ ପର୍ଯ୍ୟାୟରେ କଟକଠାରେ ଗୋଟିଏ ଖାଉଟି ସମବାୟ ଭଣ୍ଡାର- "କଟକ କୋ-ଅପରେଟିଭ୍ ଷ୍ଟୋର" ନାମରେ ପ୍ରତିଷ୍ଠା କରିବାକୁ ସିଦ୍ଧାନ୍ତ ଗ୍ରହଣ କଲେ । ଆଇନଜୀବୀ, ସରକାରୀ କର୍ମଚାରୀ, ଅମଲା ଶ୍ରେଣୀ, ଜନସାଧାରଣ ତଥା ନିମ୍ନବର୍ଗର ଲୋକମାନଙ୍କର ସଭା ଆହ୍ୱାନ କରିଥିଲେ । ଏହା ଲକ୍ଷ୍ୟ ସାଧନର ଏକ ପର୍ଯ୍ୟାୟ, ଯାହା ସେ ଯୁଗରେ ଅସମ୍ଭବ ବୋଲି ବିବେଚିତ ହେଉଥିଲା । ମଧୁସୂଦନ ଥରେ କୌଣସି ସଂକଳ୍ପ ନେଲେ, ଲକ୍ଷ୍ୟସ୍ଥଳରେ ପହଞ୍ଚିବା ଅସାଧ୍ୟ ହେଲେ ମଧ୍ୟ ତାହା ତାଙ୍କପାଇଁ ଅସମ୍ଭବ ହେଉ ନଥିଲା । କାର୍ଯ୍ୟ ନିର୍ଣ୍ଣାୟକ ଧାରା ଥିଲା ସୁପରିକଳ୍ପିତ । ତେଣୁ ସମିତିର ଅଂଶଧନ ସଂଗ୍ରହ ପର୍ଯ୍ୟାୟରେ ସେ ସଂଭାବ୍ୟ ସଭ୍ୟମାନଙ୍କୁ ବାରମ୍ବାର ଭେଟୁଥିଲେ । ସେହି ସମବାୟ (ଯୌଥ) ସ୍ଥାପନାପାଇଁ କେତେ ସ୍ୱତନ୍ତ୍ର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ମଧୁବାବୁଙ୍କ କୋଠରିରେ ୧୮୯୮ ସାଲର ଜୁନ ମାସରେ ସମିତି ସ୍ଥାପିତ ହେବାର ତିନି ମାସ ପୂର୍ବରୁ ମାର୍ଚ୍ଚମାସ ୧୨ ତାରିଖରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ତାହାର ବିବରଣୀ ମଧ୍ୟ ପ୍ରକାଶିତ ହୋଇଥିଲା ସେହି ମାସର "ଉତ୍କଳଦୀପିକା" ପତ୍ରିକାରେ । ବିବରଣୀ କି ମନୋଜ୍ଞ, ପ୍ରାଞ୍ଜଳ, ଆଉ ବିଷୟରେ ଉପସ୍ଥାପନ ଖୁବ୍ ମାର୍ମିକ । ପାଠକମାନଙ୍କର କୌତୂହଳ ଚରିତାର୍ଥ କରିବାପାଇଁ ସମଗ୍ର ବିବରଣୀଟି ଉପସ୍ଥାପନା କରାଗଲା । ଜନତାର ସହଯୋଗରେ ସମବାୟ ସମିତିର ପ୍ରଚେଷ୍ଟାରେ ମୂଲ୍ୟବୋଧକୁ ମାନ୍ୟତା ପ୍ରଦାନ କରାଯାଇଥିଲା । ଏହି ଆଲେଖ୍ୟର ଏହା ହିଁ ପରମ ତାତ୍ପର୍ଯ୍ୟ ।

"ଗତ ରବିବାର ଅପରାହ୍ଣ କାଳରେ ଅଦାଲତର କିଛି ଅମଲା ମାନ୍ୟବର ବାବୁ ମଧୁସୂଦନ ଦାସଙ୍କ ଘରଠାରେ ଏକତ୍ରିତ ହୋଇଥିଲେ । ବାବୁ ମହାଶୟ ସେମାନଙ୍କୁ ଅନେକ ଉତ୍ସାହ ଏବଂ ହିତକର ବାକ୍ୟରେ ବୁଝାଇଦେଲେ ଯେ, ଏକମେଳ ହୋଇ ଚେଷ୍ଟା ଓ ଯତ୍ନକଲେ ଅନେକ ସୁନ୍ଦର ଉପାୟ ବାହାରିପାରିବ । ବିଲାତରେ ସମଶ୍ରେଣୀର ଅନେକ ଲୋକ ଏକତ୍ରିତ ହୋଇ ଗୋଟିଏ

ବ୍ୟବସାୟଦ୍ୱାରା ଯେମନ୍ତ ସେମାନଙ୍କର ଅଭାବ ଦୂର କରୁଅଛନ୍ତି, ଦେଶୀୟ ଲୋକମାନେ ସେହିଭଳି ହିତକର କାର୍ଯ୍ୟକରିବାରେ ପ୍ରବୃତ୍ତ ହେବାର ଦେଖିଲେ ସେ ଅତ୍ୟନ୍ତ ଆନନ୍ଦିତ ହେବେ । ଅର୍ଥ ବିନା ବ୍ୟବସାୟ ଚାଲି ନପାରେ । ଏହା ସତ୍ୟ କଥା । ମାତ୍ର ଯେଉଁଠାରେ ଦଶଜଣ ମିଶି ଏକ ମନରେ ଚେଷ୍ଟା କରିବେ ସେଠାରେ ଅର୍ଥର ଅଭାବ ହେବନାହିଁ । ପ୍ରତିଜଣ ଅଳ୍ପ ଜମାକଲେ କେତେଗୁଡ଼ିଏ ଟଙ୍କା ଜମାହୋଇପାରିବ । ଅମଲାଙ୍କ ବେତନ ସେମାନଙ୍କ ଖର୍ଚ୍ଚକୁ ନିଅଣ୍ଟବୋଲି ସେମାନେ କିଛି ସଂଚୟ କରିପାରନ୍ତି ନାହିଁ । ସୁତରାଂ କୌଣସି ବ୍ୟବସାୟରେ ଯୋଗଦେବାକୁ ଅକ୍ଷମ ବୋଧ କରନ୍ତି । ଏହା ତାହାଙ୍କର ଭ୍ରମ ଅଟେ । ଅନ୍ୟ ଉପାୟ ତେଣିକି । କେବଳ ଦରମା ପାଇବା ବେଳେ ତହିଁରୁ କିଛି ମାସକୁ ମାସ ବ୍ୟାଙ୍କରେ ଜମାଦେଲେ ବର୍ଷରେ ଅବଶ୍ୟ କେତେଗୁଡ଼ିଏ ଟଙ୍କା ଜମାହେବ ଏବଂ ଯେତେ ଜମା କରିବା ବାବୁ ମହାଶୟ ସେଥିନିମନ୍ତେ କିଛି ସୁଧ ଦେବେ । ଉପସ୍ଥିତ ଅମଲାମାନେ ଏହି ଉପଦେଶ ଶୁଣି ପ୍ରତ୍ୟେକ ସେଭିଙ୍ଗ ବ୍ୟାଙ୍କ୍‌ରେ କିଛି ଟଂକା ଜମା କରିବାର ପ୍ରତିଜ୍ଞା କଲେ ଏବଂ ଯେ ଯେତେ ଟଂକା ଜମା କରିବ, ତହିଁର ତାଲିକା ମଧ୍ୟ ଦେଲେ । ତହିଁରେ ମୋଟ ଟ ୮୩ ଙ୍କା ହେଲା । ସେଭିଙ୍ଗ୍ ବ୍ୟାଙ୍କ ବହିମାନ ଜଣେ ସରଦାର ଜିମା ରହିବ ଏବଂ ଅମଲାମାନେ ତାହାଙ୍କ ନିକଟରେ ଟଂକା ଦାଖଲ କଲେ ସେ ଡାକଘରକୁ ପଠାଇ ପ୍ରତ୍ୟେକଙ୍କର ବହିରେ ଜମା କରାଇ ଆଣିବେ । ଯାହାର ବହି, ତାହାଠାରେ ରହିଲେ, କେତେବେଳେ ଭଂଗେଇବାକୁ ଇଚ୍ଛା ହେବ, ଏଥିପାଇଁ ଜଣଙ୍କ ନିକଟରେ ରହିବାର ସ୍ଥିର ହୋଇଛି । ଟଙ୍କା ଜମା ହେବାର ଆରମ୍ଭ ଦେଖିଲେ ବାବୁ ମହାଶୟ ହାତରୁ ଧନ ଦେଇ ମଫସଲରୁ ଧାନ, ଚାଉଳ ଅଣାଇ ପ୍ରଥମେ ସେହି ବ୍ୟବସାୟ ଆରମ୍ଭ କରିବେ । ଅମଲାମାନେ ବଜାର ହାରରେ ଏହି ଗୋଦାମରୁ କିଣିବେ ଏବଂ ଲାଭ ଯାହା ହେବ, ଅଂଶ ଅନୁପାତରେ ପାଇବେ । ଅମଲାମାନେ ଯେମନ୍ତ ଉତ୍ସାହ ସହିତ ଏ ପ୍ରସ୍ତାବ ଗ୍ରହଣ କଲେ, ସେହିଭଳି ଉତ୍ସାହରେ କାର୍ଯ୍ୟ କରିବେ । ହେଲେ ସେମାନଙ୍କର କେତେ ସୁନ୍ଦର ହେବ ତାହା ଅଳ୍ପ କାଳରେ ପ୍ରତ୍ୟକ୍ଷ ହେବ । କେବଳ ଦୃଢ଼ ସଂକଳ୍ପକରି କାର୍ଯ୍ୟରେ ପ୍ରବୃତ୍ତହେବା ଆବଶ୍ୟକ । କାରଣ ଥରେ ସେ ପ୍ରବୃତ୍ତ ହେଲେ ମାସକୁ ମାସ ଯେମନ୍ତ କିଛି ଜମା ହେଉଥିବ ତାହା ବଢ଼ାଇବାକୁ ତତୋଽଧିକ ଉତ୍ସାହ ଦେବ ଏବଂ ଅନର୍ଥକ ବ୍ୟୟର ଲାଳସା ମ୍ଳାନ ପଡ଼ିଯିବ । ଆସନ୍ତାକାଲି ବାବୁ ମହାଶୟଙ୍କ ଘରଠାରେ କଚେରି ଅମଲାମାନଙ୍କର ଏହିପରି ସଭା ହେବ ଏବଂ ଆମେମାନେ ଏକାନ୍ତ ଆଶାକରୁ କି ସେମାନେ ଅଦାଲତର ଅମଲାଙ୍କ ପରି ସେଭିଙ୍ଗ ସମ୍ବନ୍ଧ ଟଂକା ଜମାଇବାକୁ ପ୍ରବୃତ୍ତ ହେବେ ଏବଂ ବ୍ୟବସାୟ ପ୍ରତି ମନ ବଳାଇବେ । ଏହି ଶୁଭକାର୍ଯ୍ୟର ସୂତ୍ରପାତ ନିମନ୍ତେ ଆମ୍ଭେମାନେ ମଧୁବାବୁଙ୍କୁ ଶତ ଧନ୍ୟବାଦ ଦେଉଅଛୁ ଏବଂ ପ୍ରାର୍ଥନା କରୁଅଛୁ ଯେ ଈଶ୍ୱରଙ୍କ କୃପାରୁ ଅବିଳମ୍ବେ ତାହା ସିଦ୍ଧ ହେଉ ।''

ଏହିଭଳି ମଧୁବାବୁ ଅଦାଲତ, କଚେରି, କଲେକ୍ଟରେଟର ଅମଲା ଆଉ ଅନ୍ୟ ବିଭାଗର କର୍ମଚାରୀଙ୍କ ମଧ୍ୟରେ ସଂଚୟ ଅମାନତ ମାଧ୍ୟମରେ ଅଂଶଧନ ସଂଗ୍ରହର ସୁପରିକଳ୍ପିତ ଯୋଜନା ଉପସ୍ଥାପନ କରି ଅଂଶଧନ ସଂଗ୍ରହର ପ୍ରକ୍ରିୟା ତ୍ୱରାନ୍ୱିତ କରିଥିଲେ ।

କଟକରେ କୋ-ଅପରେଟିଭ୍ ଖାଉଟି ଭଂଡାର ସ୍ଥାପନପାଇଁ ସେ ଆଇନଜୀବୀ ଗୋଷ୍ଠୀ, ଶ୍ରମିକ, କର୍ମଜୀବୀ, ସରକାରୀ କର୍ମଚାରୀ ଓ କିରାଣି ଗୋଷ୍ଠୀଙ୍କୁ ବାରମ୍ବାର ଆହ୍ୱାନ କରିଥିଲେ ।

ଭାରତର ସମବାୟ ଆନ୍ଦୋଳନର ଇତିହାସରେ ୧୯୯୮ ସାଲର ଜୁନ ଏଗାର ତାରିଖ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ, ଯେଉଁଦିନ ଭାରତର ପ୍ରଥମ ସମବାୟ ଖାଉଟି ଭଣ୍ଡାର ପ୍ରତିଷ୍ଠିତ ହେଲା କଟକରେ । ସେ ସଂପର୍କରେ ଏକ ବିବରଣୀ ୧୯୯୮ ଜୁନ୍ ୧୮ ତାରିଖରେ ଉତ୍କଳ ଦୀପିକାର ଏକ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ତାହାର ଉଦ୍ଧୃତି ଏଠାରେ ଉପସ୍ଥାପିତହୋଇଛି -

"ମଧୁସୂଦନ ଦାସଙ୍କ ଘରଠାରେ ୧୮୯୮ ମସିହା ଜୁନ୍ ମାସ ଏଗାର ତାରିଖରେ ହୋଇଥିବା ଏକ ସର୍ବସାଧାରଣ ସଭାରେ ଅନେକ ସଂଖ୍ୟକ ଓକିଲ, ମୁକ୍ତାର ଓ ଅମଲାମାନେ ଉପସ୍ଥିତ ଥିଲେ । ତହିଁରେ ଅଂଶୀଦାର ଓ ସର୍ବସାଧାରଣଙ୍କୁ ଚାଉଳ, ଡାଲି, ଘିଅ, ତେଲ, ଲୁଗା, ଜାଳିବା କାଠ ଇତ୍ୟାଦି ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟମାନ ଯୋଗାଇବାପାଇଁ ଗୋଟିଏ ଯୌଥ ଭଣ୍ଡାର ସ୍ଥାପନ କରିବାକୁ ସ୍ଥିର ହେଲା ।"

ଏହି କାର୍ଯ୍ୟ ଟ ୧୦,୦୦୦ ମୂଳଧନରେ ଆରମ୍ଭ ହେବ । ତାହା ୨୦୦୦ ଅଂଶରେ ବିଭକ୍ତ ହେବ । ପ୍ରତି ଅଂଶର ମୂଲ୍ୟ ପାଞ୍ଚ ଟଙ୍କା । ଚଳିତ ମାସ ୨୬ ତାରିଖ ପର୍ଯ୍ୟନ୍ତ ଉକ୍ତ ଅଂଶମାନ ବଣ୍ଟାଯିବ ଏବଂ ଯାହାଙ୍କର ଯେତେ ଅଂଶ ନେବାର ଇଚ୍ଛା ହେବ, ସେ ତାହା ଲେଖି କଟକର କଟକଚଣ୍ଡୀ ନିବାସୀ ମଧୁସୂଦନ ଦାସ ସମ୍ପାଦକଙ୍କ ସମୀପକୁ ଉକ୍ତ ତାରିଖ ମଧ୍ୟରେ ଆବେଦନ କରିପାରିବେ । ଯେ ଯେତେ ଅଂଶ ନେବେ, ତହିଁର ଅର୍ଦ୍ଧେକ ମୂଲ୍ୟ ଆଗାମୀ ଜୁଲାଇ ମାସ ପାଞ୍ଚ ତାରିଖ କିମ୍ବା ତହିଁ ପୂର୍ବେ ଦେବାକୁ ଏବଂ ଅବଶିଷ୍ଟ ଟଂକା ଆଗାମୀ ଅଗଷ୍ଟ ମାସ ୫ ତାରିଖ ଆଗରୁ ଦେବାକୁ ହେବ ।

ନିମ୍ନଲିଖିତ ଭଦ୍ରଲୋକମାନେ ଡାଇରେକ୍ଟର ପଦରେ ନିଯୁକ୍ତ ହୋଇଅଛନ୍ତି । ବାବୁ ହରିଚରଣ ବାନାର୍ଜୀ (ଓକିଲ), ବାବୁ ମଧୁସୂଦନ ଦାସ (ଓକିଲ), ବାବୁ ଜାନକୀନାଥ ବସୁ (ଓକିଲ), ବାବୁ ବନମାଳୀ ଦାସ (ମୁକ୍ତାର), ବାବୁ ରାଜକିଶୋର ମହାନ୍ତି (ମୁକ୍ତାର), ବାବୁ ଯଦୁନନ୍ଦନ ମଜୁମଦାର (ନାଜିର), ବାବୁ ଜଗତ ବଲ୍ଲଭ ଘୋଷ, ( ସିରସ୍ତାଦାର), ମୁନସି ମେହେମୁଦ ଅଲ୍ଲୀ ଜଜ ଅଦାଲତର ମୁତରଜମ । ବାବୁ ମଧୁସୂଦନ ଦାସ ଉକ୍ତ ଯୌଥ ଭଣ୍ଡାରର ସଂପାଦକ ଏବଂ ବାବୁ ଜାନକୀନାଥ ବୋଷ କୋଷାଧ୍ୟକ୍ଷ ନିଯୁକ୍ତ ହେଲେ । ପ୍ରତି ୬ ମାସରେ ଅଂଶୀଦାରମାନଙ୍କର ସଭାହେବ ।

ଏହି ମର୍ମରେ ୧୮୯୮ ସାଲ ଜୁନ୍ ୧୮ ତାରିଖରେ ସେ ବେଳର ଜନପ୍ରିୟ ସାପ୍ତାହିକ ଉତ୍କଳ ଦୀପିକାରେ ଏହି କୋ-ଅପରେଟିଭ୍ ଭଣ୍ଡାର ସଂପର୍କରେ ଇଂରାଜୀ ବିଜ୍ଞାପନ ପ୍ରକାଶିତ ହୋଇଥିଲା ।

ଏକ ଶହ ବର୍ଷର ଅନ୍ତରାଳରେ ୧୮୯୮ ସାଲର ଏହି ବିଜ୍ଞାପନ ସହିତ ପ୍ରଥମ ସମବାୟ ସମିତି "କଟକ କୋ-ଅପରେଟଭ୍" ଭଣ୍ଡାରର ୧୮୯୮ରେ ସ୍ଥାପିତ ହେବାର ସଂବାଦ ଯେତେବେଳେ ପ୍ରସାରିତ ହେଲା, ସେତେବେଳେ ସମଗ୍ର ଦେଶର ସମବାୟ ପ୍ରେମୀଙ୍କ ମଧ୍ୟରେ ଏକ ଚାଞ୍ଚଲ୍ୟ ସୃଷ୍ଟି ହୋଇଥିଲା ।

ପରବର୍ତ୍ତୀ ପର୍ଯ୍ୟାୟ ମଧୁସୂଦନ ଦାସ ୧୮୯୮ ସାଲ ଜୁନ ମାସ ଏଗାର ତାରିଖରେ ସମିତି ଗଠନର ଶୁଭକ୍ଷଣରେ, ଯେଉଁ ଘୋଷଣାନାମା ପ୍ରକାଶ କରିଥିଲେ- ସେଥିରେ ଉଲ୍ଲେଖ କରିଥିଲେ ଯେ ଯୌଥ ବା ସମବାୟ ଭଣ୍ଡାର ପକ୍ଷରୁ ଯେଉଁ ନିତ୍ୟ ବ୍ୟବହାର୍ଯ୍ୟ ଖାଉଟି ଦ୍ରବ୍ୟ ଯୋଗାଇ ଦିଆଯିବ, ତାହା ଉଭୟ ଅଂଶୀଦାର ଓ ସର୍ବସାଧାରଣ କିଣି ପାରିବେ ।

''ମାତ୍ର କିଛି ପାଠକଙ୍କ ମନରେ ଏ ଦିଗରେ ଏକ ସନ୍ଦେହର ସୂତ୍ରପାତ ହେଲା ଯେ,ସମବାୟ ଭଣ୍ଡାର ଯଦି ଅଂଶୀଦାରମାନଙ୍କର, ତାହେଲେ ସର୍ବସାଧାରଣ କିପରି ସମବାୟ ଭଣ୍ଡାରରୁ ଜିନିଷପତ୍ର କିଣିପାରିବେ ? କଟକରେ ସେତେବେଳେ, ମିଲ୍‌ଦ୍ୱାରା କ୍ୟାଣ୍ଟନମେଣ୍ଟ ଓ କିଲ୍ଲାରେ ସରକାରୀ ଭଣ୍ଡାରମାନ ସ୍ଥାପିତ ଥିଲା । ତହିଁରୁ କେବଳ ସେହି ବିଭାଗର ସରକାରୀ କର୍ମଚାରୀମାନେ ଜିନିଷ କ୍ରୟ କରୁଥିଲେ ।''

ପାଠକମାନଙ୍କର ସନ୍ଦେହ ମୋଚନ କରିବାପାଇଁ ସେ ଏକ ପତ୍ର ଉତ୍କଳ ଦୀପିକାରେ ପ୍ରକାଶ କରିଥିଲେ । ସେ ତାଙ୍କର ୟୁରୋପ ଓ ଲଣ୍ଡନ ପରିଭ୍ରମଣର ଅଭିଜ୍ଞତା ପ୍ରକାଶକରି ଉଲ୍ଲେଖ କରିଥିଲେ ଯେ, ବିଦେଶରେ ବହୁ ସମବାୟ ଖାଉଟି ଭଣ୍ଡାର ଅଛି । ତାହା ଅଂଶୀଦାରଙ୍କ ଛଡ଼ା ସର୍ବସାଧାରଣଙ୍କୁ ମଧ୍ୟ ଜିନିଷ ବିକ୍ରୟ କରିଥାନ୍ତି । ମୂଳ କଥା ହେଲା ଉତ୍ପାଦକ ଓ ଖାଉଟିମାନଙ୍କ ମଧ୍ୟରେ ସିଧାସଳଖ ଜିନିଷ ଯୋଗାଣ ବ୍ୟବସ୍ଥା, ଖାଉଟି ସମବାୟ ଭଣ୍ଡାର, ସଂଚାଳିତ କରୁଥିବାରୁ ମଧ୍ୟବର୍ତ୍ତୀ ବ୍ୟବସାୟୀଙ୍କର ଶୋଷଣରୁ ଖାଉଟିମାନଙ୍କୁ ରକ୍ଷା କରିଥାଏ । ଏଥିଯୋଗୁଁ ଇଂଲଣ୍ଡରେ ସମବାୟ ପ୍ରତିଷ୍ଠାନଗୁଡ଼ିକ ଅତ୍ୟନ୍ତ ଜନପ୍ରିୟତା ହାସଲ କରିଛନ୍ତି ଏବଂ ଏକ ସାମାଜିକ ନ୍ୟାୟ ପ୍ରଦାନ ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଅଛନ୍ତି ।

ଅଗଷ୍ଟ ୬ ତାରିଖରେ ପ୍ରକାଶିତ ଉତ୍କଳ ଦୀପିକାର ବିବରଣୀରୁ ଜଣାଯାଏ ଯେ,ଅଂଶ ନେବାପାଇଁ ୨୬୦ ଜଣ ବ୍ୟକ୍ତି ଆବେଦନ କରିଥିଲେ ଓ ତହିଁରୁ ୧୬୦ ଜଣ କଟକ ସହରର ବାସିନ୍ଦା ଥିଲେ ।

ଏହି ସଭାର ପରବର୍ତ୍ତୀ ବିବରଣୀ ଏହିଭଳି ସଂଗୃହୀତ ହୋଇଛି-

''ବାବୁ ଫକୀରମୋହନ ସେନାପତି ଏକ ଉତ୍ସାହପୂର୍ଣ୍ଣ ହୃଦୟଗ୍ରାହୀ ବକ୍ତୃତାଦ୍ୱାରା ତାହା ଅନୁମୋଦନ କଲେ ଏବଂ ବାବୁ ହରମୋହନ ରାୟ ଚୌଧୁରୀ ତହିଁର ପୋଷକତାରେ ଏକ ବକ୍ତୃତା ପ୍ରଦାନ କଲେ । ପରିଶେଷରେ ସମସ୍ତଙ୍କ ସମ୍ମତିରେ ଯୌଥ ଭଣ୍ଡାର ବ୍ୟବସାୟ କରିବା ସ୍ଥିର ହୋଇ ପ୍ରଥମେ କି କି ଦ୍ରବ୍ୟ କାରବାର ହେବ ଏବଂ ଯେଉଁ ନିୟମାନୁଯାୟୀ କାର୍ଯ୍ୟ ଚଳିବ, ତାହା ସ୍ଥିର କରିବାପାଇଁ ୧୧ ଜଣ ଡାଇରେକ୍ଟର ମନୋନୀତ ହେଲେ । ସ୍ଥିର ହେଲା ଯେ ଡାଇରେକ୍ଟରମାନେ ଦି୧୫ନ ମଧ୍ୟରେ ବିସ୍ତାରିତ ଅନୁଷ୍ଠାନ ପତ୍ର ଓ ନିୟମାବଳୀ ଛାପା କରି ଅଂଶ ପ୍ରାର୍ଥୀମାନଙ୍କ ନିକଟକୁ ପଠାଇ ଦେବେ ।''

ଏ ଥିଲା ଅଗଷ୍ଟ ୬ ତାରିଖ ୧୯୯୮ ସାଲରେ ପ୍ରକାଶିତ ଉତ୍କଳଦୀପିକାର ବିବରଣୀ । ଏଥିରୁ ଜଣାଯାଏ ଯେ ଉଦ୍ୟୋଗଟି ଅଦ୍ଭୁତ ଜନପ୍ରିୟତା ହାସଲ କରିଥିଲା ଏବଂ ଜନସାଧାରଣ

ବିଶେଷ କରି ଅମଲା ଗୋଷ୍ଠୀଙ୍କ ମଧ୍ୟରେ ଏକ ଜାଗରୁକତା ସୃଷ୍ଟି କରିଥିଲା । ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ କିରାଣି ବା ଅମଲା, ଯେଉଁମାନେ ସ୍ୱଳ୍ପ ବେତନଭୋଗୀ ଥିଲେ, ସେମାନେ ଅତ୍ୟନ୍ତ ଉତ୍କଣ୍ଠା ପ୍ରକାଶ କରିଥିଲେ ଏହାର ସଦସ୍ୟ ହେବାପାଇଁ । ଏହାଥିଲା ସ୍ୱତଃସ୍ଫୂର୍ତ୍ତ ଜନସହଯୋଗର ନମୁନା, ଯାହା ସମବାୟ ଅନୁଷ୍ଠାନପାଇଁ ଏକ ଦୁର୍ଲ୍ଲଭ ବିଭବ ରୂପେ ବିବେଚିତ ହେଉଥିଲା ।

ଏହି ସମିତି ସଂସ୍ଥାପନାର ସୁଦୀର୍ଘ ବିବରଣୀରୁ ଜଣାଯାଏ, ଏକ ଗଣତାନ୍ତ୍ରିକ ପରୀକ୍ଷା ମଧ୍ୟରେ ଜନଗଣଙ୍କ ଆବେଦନକୁ ଭିତ୍ତିକରି, ଏହି ସମିତି ଗଠନ ହୋଇଥିଲା, ମାନବିକ ମୂଲ୍ୟବୋଧର ଆଧାରରେ ସମାଜର ନିମ୍ନବର୍ଗଙ୍କୁ ଉପକାର ପ୍ରଦାନ କରିବାପାଇଁ । ତେଣୁ ଆଜିକାଲିର ସମବାୟ ପ୍ରଚେଷ୍ଟା ପରି ଏହା ଜନସାଧାରଣଙ୍କ ଉପରେ ଆରୋପିତ କରା ନଯାଇ ତାଙ୍କର ସହାନୁଭୂତି ଓ ସହଯୋଗ ଭିକ୍ଷା କରି ଏକ ଗଭୀର ଆନ୍ତରିକତା ଓ ଭ୍ରାତୃତ୍ୱବୋଧ ମଧ୍ୟରେ ଏହି ସମିତି ଗଢ଼ିଉଠିଥିଲା । ଏଠାରେ ସୂଚାଇବା ଅପ୍ରାସଂଗିକ ବୋଧ ହେବନାହିଁ ଯେ, ଯେଉଁ ପ୍ରିଣ୍ଟିଂ କଂପାନିର କୋଠାରେ ଏହି ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଅଧିବେଶନ ଆହୂତ ହେଉଥିଲା, ସେହି ତାତ୍ପର୍ଯ୍ୟପୂର୍ଣ୍ଣ କୋଠାଟି ବିଧିର ନିର୍ଦ୍ଦେଶ କ୍ରମେ ସମବାୟ ପରିସରକୁ ଆସିଛି । ସେହି ଗୃହରେ ବର୍ତ୍ତମାନ ରାଜ୍ୟ ସମବାୟ ବ୍ୟାଙ୍କ୍ କଟକ ଶାଖା ସଂଚାଳିତ ହେଉଛି । ତେଣୁ ଏଠାରେ ଏକ ସ୍ମୃତି ସଭାଗୃହ ପ୍ରତିଷ୍ଠା କରାଯିବା ସଂପର୍କରେ କର୍ମକର୍ତ୍ତାମାନେ ବିଚାର କରିବା ଆବଶ୍ୟକ ।

୧୮୯୮ ସାଲର ଅଗଷ୍ଟ ୬ ତାରିଖରୁ ସେହି ବର୍ଷର ଅକ୍ଟୋବର ପହିଲା ଦିନ କଟକ କୋ-ଅପରେଟିଭ୍ ଷ୍ଟୋର ତାର ବ୍ୟବସାୟ ଆରମ୍ଭ କରିଥିଲା, ଏହା ମଧ୍ୟରେ ସମୟର ବ୍ୟବଧାନ ଥିଲା ମାତ୍ର ଦେଢ଼ ମାସ । ଏହି ସ୍ୱଳ୍ପ ସମୟ ମଧ୍ୟରେ କି କ୍ଷିପ୍ରତାର ସହ କାର୍ଯ୍ୟ ସଂପାଦନ କରାଯାଇ, ସମିତିର ଅଂଶଧନ ଆଶାଜନକ ଭାବରେ ସଂଗ୍ରହ କରାଯାଇ, ସମିତିର ଗତିଧାରାକୁ ତ୍ୱରାନ୍ୱିତ କରାଯାଇଥିଲା, ତାହାର ପଟ୍ଟାନ୍ତର ନାହିଁ । ସମୁଦାୟ ନିର୍ଣ୍ଣିତ ହୋଇଥିବା କାର୍ଯ୍ୟକାରୀ ମୂଳଧନ ଦଶହଜାର ଟଂକାରୁ ଏହି ଦେଢ଼ ମାସ ମଧ୍ୟରେ ଛଅ ହଜାର ଟଂକା ସଂଗ୍ରହ ହୋଇଥିଲା, ଯାହା ଆସିଥିଲା ନିମ୍ନବର୍ଗ ତଥା ଅମଲାମାନଙ୍କଠାରୁ । ଅଂଶଧନ କ୍ରୟ କରିବାପାଇଁ ଅମଲାମାନେ ଛଅ ମାସ ଧରି ନିଜ ଦରମାରୁ କାଟି ପୋଷ୍ଟ ଅଫିସର୍ ସେଭିଙ୍ଗ ବ୍ୟାଙ୍କରେ ଜମା ଦେଇ ଆସୁଥିଲେ ।

ସମବାୟ ଭଣ୍ଡାରର ଅଗ୍ରଗତି ସଂପର୍କରେ ଉତ୍କଳଦୀପିକାରେ ୧୮୯୮ ସାଲ ଅକ୍ଟୋବର ପହିଲାରେ ଯେଉଁ ବିବରଣୀ ପ୍ରକାଶ ହୋଇଥିଲା, ତାହାର କିଛି ଉଦ୍ଧୃତି ନିମ୍ନରେ ପ୍ରଦତ୍ତ ହେଲା -

**ବ୍ୟବସାୟର ଉନ୍ନତି :**

ଶ୍ରଦ୍ଧାସ୍ପଦ ବାବୁ ମଧୁସୂଦନ ଦାସ ବିଲାତରୁ ଫେରିଆସି ସ୍ଥାନୀୟ ଲୋକଙ୍କୁ ବାଣିଜ୍ୟ ବ୍ୟବସାୟରେ ପ୍ରବୃତ୍ତ କରିବା ବିଷୟରେ ଯେତେ ଚେଷ୍ଟା ଓ ଯତ୍ନ କରୁଅଛନ୍ତି ତାହା ସମୟ ସମୟରେ ପାଠକମାନଙ୍କୁ ଜଣାଉଅଛୁ । ସେ କେବଳ ଏ ସ୍ଥାନରେ ନାନା ଶ୍ରେଣୀର ଭଦ୍ରଲୋକଙ୍କୁ ପୁନଃପୁନଃ ଆପଣା କୋଠିକୁ ଆମନ୍ତ୍ରିତ କରି ଉପଦେଶ ଓ ପରାମର୍ଶ ଦେଇ ନିଶ୍ଚିନ୍ତ ନହୋଇ

କାର୍ଯ୍ୟାରମ୍ଭ କରି ଅଛନ୍ତି । ତାହାଙ୍କ ଚେଷ୍ଟାରେ ଯେଉଁ ଯୌଥ ଭଣ୍ଡାର ସ୍ଥାପିତ ହୋଇଅଛି, ତହିଁର ମୂଳଧନ ଦଶହଜାର ଟଙ୍କା ମଧ୍ୟରୁ ଛଅ ହଜାର ଟଙ୍କାର ଅଂଶଧନ ଗୃହୀତ ହୋଇ ଟଙ୍କା ଜମା ହୋଇଅଛି ଏବଂ ତହିଁ ମଧ୍ୟରୁ ସେ ଅନେକ ଟଙ୍କା ଦାଦନ ଲଗାଇ ଦେଲେଣି ଏବଂ ଦେଉଅଛନ୍ତି । ଆସନ୍ତା ମାର୍ଗଶୀର ମାସରେ ଧାନ, ଚାଉଳ, ରବି ଇତ୍ୟାଦିର ଆମଦାନି ହେବା ଆରମ୍ଭ ହେବ ଏବଂ ସଂଗେସଂଗେ ବିକ୍ରୟାଦିର ବ୍ୟବସ୍ଥାହେବ ।

କଟକର ସେତେବେଳର ପରିସ୍ଥିତି ଅନୁସାରେ କୃଷିଜାତ ଦ୍ରବ୍ୟ ଆମଦାନି ସମୟରେ ସ୍ୱଳ୍ପ ଦରରେ ସଂଗ୍ରହ କରାଯାଇ ଅମଲା ଓ ଖଟିଖିଆମାନଙ୍କୁ ସୁଲଭ ଦରରେ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଥିବାରୁ ସମିତି ଅଦ୍ଭୁତ ଜନପ୍ରିୟତା ହାସଲ କରିଥିଲା । ଧାନ, ଚାଉଳ, ବିରି, ମୁଗ ଇତ୍ୟାଦି ଛଡ଼ା ଗୋ ଓ ପଶୁଖାଦ୍ୟ କୋଳଥ ଆଦି ଦ୍ରବ୍ୟ ସହିତ ଜାଳେଣି କାଠ ବିକ୍ରୟର ବ୍ୟବସ୍ଥା କରାଯାଇଥିଲା ।

ବିବରଣୀରୁ ଜଣାଯାଏ ଯେ କଟକ କୋ-ଅପରେଟିଭ୍ ଷ୍ଟୋର୍‌ର ମୁଖ୍ୟ ଭଣ୍ଡାର ଦୋକାନରୁ ସଭ୍ୟ ତଥା ଜନସାଧାରଣଙ୍କୁ ଖାଉଟି ଦ୍ରବ୍ୟ ସବୁ ବିକ୍ରୟ କରାଯାଉଥିଲା । ବହୁ କ୍ରେତା ସାରାବର୍ଷ ବା କିଛି ମାସ ଲାଗି ଧାନ, ଚାଉଳ, ମୁଗ, ବିରି ଆଦି ଖରିଦ କରିନେଉଥିଲେ ଫସଲ ଆମଦାନି ସମୟରେ ସୁଲଭ ଦରର ସୁବିଧା ନେବାପାଇଁ ।

ଏଥିରୁ ଜଣାଯାଏ ଯେ, ଅଗଷ୍ଟ ସେପ୍ଟେମ୍ବର ମାସରେ ଅଂଶଧନ ଓ ମୂଳଧନ ଆଦାୟ କରି, କୃଷିଜୀବୀମାନଙ୍କୁ ତିରୋଟ ସମୟରେ ଅର୍ଥ ଲଗାଣ କରାଯିବାଦ୍ୱାରା କୃଷିଜୀବୀମାନଙ୍କୁ ଆର୍ଥିକ ସହାୟତା ପ୍ରଦାନ ସହିତ, ସେମାନଙ୍କର ଉତ୍ପାଦିତ ପଦାର୍ଥକୁ ଉଚିତ ମୂଲ୍ୟ ପ୍ରଦାନ କରାଯାଇ ସୁଲଭ ମୂଲ୍ୟରେ ସମବାୟ ଷ୍ଟୋର୍ ଜରିଆରେ ଅମଲା ତଥା ଖଟିଖିଆ ଜନସାଧାରଣଙ୍କୁ ଯୋଗାଇ ଦିଆଯାଉଥିଲା । କଟକ କୋ-ଅପରେଟିଭ୍ ଷ୍ଟୋର୍ ଏହି ମୋଟା ପାଇକାରୀ କାରବାର ଛଡ଼ା ଉଦ୍ୟୋଗ ସମିତି ନାମକ ଗୋଟିଏ ଖୁଚୁରା କୋ-ଅପରେଟିଭ୍ ବିକ୍ରୟ କାଉଣ୍ଟର ଅଦାଲତ ସାମନାରେ ଖୋଲିଥିଲା । ଏ ସଂପର୍କରେ ଉତ୍କଳ ଦୀପିକାର ପ୍ରକାଶିତ ବିବରଣୀରୁ ଜଣାଯାଏ ଯେ, କଟକ କୋ ଅପରେଟିଭ୍ ଷ୍ଟୋରର ଏକ ଶାଖା ଉଦଯୋଗୀ ସମିତି ଭଣ୍ଡାର ନାମରେ କଟକର ଅଦାଲତର ସମ୍ମୁଖ ରାସ୍ତାରେ ଖୋଲାଯାଇଥିଲା । ଏହା ମୁଖ୍ୟତଃ ସ୍ୱଦେଶୀ ବସ୍ତୁମାନଙ୍କର ଭଣ୍ଡାର ଥିଲା ଯହିଁରେ ଖୁଚୁରା ଦରରେ କ୍ରେତାମାନଙ୍କୁ ଜିନିଷ ବିକ୍ରୟ କରାଯାଉଥିଲା ।

ମଧୁସୂଦନ ମୁଖ୍ୟତଃ ସ୍ୱଦେଶୀ ଶିଳ୍ପ ପ୍ରବର୍ତ୍ତକ ଥିଲେ । ତେଣୁ ଏହି ସମିତି ଜରିଆରେ ସ୍ୱଦେଶୀ ଶିଳ୍ପର ପ୍ରସାର ଓ ବିକ୍ରୟର ବ୍ୟବସ୍ଥା କରିଥିଲେ । ମଧୁବାବୁଙ୍କ ପ୍ରତିଷ୍ଠିତ ଓଡ଼ିଶା ଆର୍ଟ ୱାରସ୍ ଉତ୍ପାଦିତ କଳା ନୈପୁଣ୍ୟ ସଂବଳିତ ତାରକସି ଅଳଂକାର, ସୁଲଭ ବସ୍ତ୍ରସବୁ ବିକ୍ରୟ କରାଯାଉଥିଲା । ଉତ୍କଳ ଦୀପିକାରେ ପ୍ରକାଶିତ ଉଦ୍‌ଯୋଗୀ ସମିତି ଭଣ୍ଡାର ବିଜ୍ଞାପନ ଏଠାରେ ଅବିକଳ ଉଦ୍ଧୃତ କରାଗଲା ।

## -ବିଜ୍ଞାପନ-

## "ଉଦ୍‌ଯୋଗୀ ସମିତି ଭଣ୍ଡାର, କଟକ"

"କ୍ରେତା ଓ ବିକ୍ରେତାର ସ୍ୱାର୍ଥ ଯହିଁରେ ବିପରୀତ ନହୁଏ, ଅର୍ଥାତ୍ କ୍ରେତାର ଲାଭରେ ବିକ୍ରେତାର ଲାଭ ଓ ବିକ୍ରେତାର ଲାଭରେ ଏବଂ କ୍ରେତାର ଲାଭ ହୋଇପାରେ, ଏହି ଉଦ୍ଦେଶ୍ୟ ସାଧନ ନିମନ୍ତେ ଭଣ୍ଡାର ସ୍ଥାପିତ ହୋଇଛି । ପ୍ରବଞ୍ଚନା କ୍ରୟ ସମୟରେ ଅକାରଣ ବାକ୍‌ବିତଣ୍ଡା ପ୍ରଭୃତିଠାରୁ କ୍ରେତାମାନଙ୍କୁ ରକ୍ଷା କରିବା ନିମନ୍ତେ ବିଶେଷ ଉପାୟ କରାହୋଇଅଛି । ଦୋକାନରେ ରଖା ହୋଇଥିବା ଦ୍ରବ୍ୟାଦିର ତାଲିକା କ୍ରେତାମାନେ ଦେଖିପାରନ୍ତି । ସେହି ନିର୍ଦ୍ଦିଷ୍ଟ ମୂଲ୍ୟ ହ୍ରାସ ବା ବୃଦ୍ଧି କରିବାର କ୍ଷମତା କର୍ତ୍ତୃପକ୍ଷଙ୍କ ଛଡ଼ା ଆଉ କାହାରି ନାହିଁ । କର୍ତ୍ତୃପକ୍ଷ ମଧ୍ୟ ବିଶେଷ ବିବେକତାର ସହିତ ଯେତେଦୂର ସଂଭବ ମୂଲ୍ୟ ସୁଲଭ କରିଥାନ୍ତି । ସମୁଦାୟ ଦ୍ରବ୍ୟର ତାଲିକା ଦେବା ସଂଭବ ନୁହେଁ । ପ୍ରଧାନ କେତେକ ଦ୍ରବ୍ୟର ନାମ ପ୍ରକାଶ କରାଯାଉଛି ।"

ଦେଶୀ ତନ୍ତ, ଚନ୍ଦ୍ରକୋଣା, ଫରାସୀ ଡାଙ୍ଗା ଓ ଶାନ୍ତିପୁରୀ ଧୋତି, ଚଦର ଓ ଶାଢ଼ି ଭିନ୍ନଭିନ୍ନ ସ୍ଥାନର ଟସର, ବାପ୍ତି, ନାନା ରକମର ରେଶମ ଲୁଗା, ମୋମ୍ବାଇ, ମାନ୍ଦ୍ରାଜ, ଅହମଦାବାଦ, କାନପୁର ପ୍ରଭୃତି କଳର ଧୋତି, ଚଦର, ଛିଟ, ମୋଜା, ତଉଲିଆ, ଝାଡ଼ନ ଓ ଗାମୁଛା, ବାଦାମି ଓ ସାଦା କାଗଜ, ଚିଠିର କାଗଜ, ଲଫାଫା, ଦୁଆତ, କାଳି, କଲମ, ପେନ୍‌ସିଲ୍, ରେଜର, ଛୁରା, କଇଁଚି, ଷ୍ଟିଲ୍‌ପେନ୍, ନିବ୍ ପ୍ରଭୃତି, ସର୍ବପ୍ରକାର ସାମାନ, ବିବିଧ ସୁଗନ୍ଧ ତେଲ ଓ ସୁଗନ୍ଧ ପାଣି ବାର୍ଲି, ଆରାରୁଟ୍, ଶାଗୁ ପ୍ରଭୃତି ରୋଗୀମାନଙ୍କର ବହୁବିଧପଥ୍ୟ, କଟକର ବିଖ୍ୟାତ ଶିଳ୍ପୀର ଫରୁଆ ଓ ଖେଳଣା ଓ ସୁନାରୂପାର ଉତ୍କୃଷ୍ଟ ନାନାବିଧ ଅଳଂକାର । ଏହାଛଡ଼ା ଅନ୍ୟ ସ୍ୱଳ୍ପମୂଲ୍ୟ ଦ୍ରବ୍ୟ ନେବାକୁ ଇଚ୍ଛାକଲେ ସୁଲଭ ମୂଲ୍ୟରେ ଅଣାଇ ଦିଆଯାଏ । କଟକର ଦେଓ୍ୱାନି ଅଦାଲତର ସମ୍ମୁଖରେ ଭଣ୍ଡାର ସ୍ଥାପିତ ।

**ଆମଦାନି ନାନାବିଧ ଶୀତବସ୍ତ୍ର:**

କଟକ କୋ-ଅପରେଟିଭ୍ ଷ୍ଟୋର ବିପୁଳ ଜନପ୍ରିୟତା ହାସଲ କରିଥିଲା ଏବଂ ଏହା କଟକ ସହରରେ ଚାଞ୍ଚଲ୍ୟ ସୃଷ୍ଟି କରିପାରିଥିଲା । କାରବାର ଉତ୍ସାହଜନକ ଥିଲା ।

ଏହି ଭଣ୍ଡାରରେ ବିଦେଶୀ ଉତ୍ପାଦିତ ଜିନିଷମାନ ରଖିବା ଏକ ପ୍ରକାର ନିଷିଦ୍ଧ କରାଯାଇଥିଲା । ଏହା ମଧୁବାବୁଙ୍କର ସ୍ୱଦେଶୀପ୍ରୀତିର ପରିଚୟ ଥିଲା । ଏଥିରେ ସ୍ୱଦେଶୀ ତନ୍ତ ଲୁଗା ତଥା ସ୍ୱଦେଶୀ କଳର ଉତ୍ପାଦିତ ବସ୍ତ୍ର ଛଡ଼ା କାଗଜ, ଖାତା, ବହି, ଶୀତବସ୍ତ୍ର, କଟକର ବିଖ୍ୟାତ ତାରକସି କମନୀୟ ବସ୍ତୁରାଜି, ଅଳଂକାର, ଶିଙ୍ଗ ଉତ୍ପାଦିତ ମନୋହର ପଦାର୍ଥ ତଥା ବିଭିନ୍ନ ହସ୍ତଶିଳ୍ପର ସୁରୁଚିସଂପନ୍ନ ବସ୍ତୁମାନଙ୍କର ବିକ୍ରୟର ବ୍ୟବସ୍ଥା ଥିଲା । ସ୍ୱଦେଶୀ ତନ୍ତପ୍ରସ୍ତୁତ ବନାରସି ପାଟବସ୍ତ୍ର ଏବଂ ଭାରତର ବିଖ୍ୟାତ ଶାଢ଼ିମାନଙ୍କର ଏକ ସୁଦୃଶ୍ୟ ସମାହାର ଏହି ଭଂଡାର ମଧ୍ୟରେ ଦେଖିବାକୁ ମିଳିଥିଲା । ଏହା ସହିତ ମଧ୍ୟ ଗଚ୍ଛିତ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁ ରହିଥିଲା ।

ପ୍ରଥମ ବର୍ଷ (୧୮୯୮-୯୯) ବହୁଳ ବ୍ୟବସାୟ କରି ଏହା ଅଭୂତପୂର୍ବ ସଫଳତା ହାସଲ କରିଥିଲା । ଏହାର କାରବାର ମୁଖ୍ୟତଃ ଥିଲା କୃଷିଜାତ ଖାଦ୍ୟ ଦ୍ରବ୍ୟ । ଏ ସଂପର୍କରେ ୧୦.୨.୧୯୦୦ ରେ ଉତ୍କଳ ଦୀପିକାରେ ସମ୍ବାଦଟି ପ୍ରକାଶ ପାଇଥିଲା ।

"ଗତ ସୋମବାର(୫.୨.୧୯୦୦) ଅପରାହ୍ଣରେ ଏଠାରେ ପ୍ରିଣ୍ଟିଂ କଂପାନି ଗୃହରେ ବାବୁ ମଧୁସୂଦନ ଦାସଙ୍କ ସ୍ଥାପିତ କୋ-ଅପରେଟିଭ୍ ଷ୍ଟୋର୍ (ଯୁକ୍ତ ଭଣ୍ଡାର)ର ଡାଇରେକ୍ଟରମାନଙ୍କର ସଭା ହୋଇଥିଲା । ଜଣାଗଲା ଧାନ, ବିରି, କୋଳଥ, ବ୍ୟବସାୟରେ ଶତକଡ଼ା ଟ୨୫ଙ୍କା ଲାଭ ହୋଇଅଛି । ଆସନ୍ତା ମାର୍ଚ୍ଚମାସ ପ୍ରଥମ ସପ୍ତାହରେ ଅଂଶୀଦାରମାନଙ୍କର ଗୋଟିଏ ସାଧାରଣ ସଭା ହେବ ଏବଂ ତହିଁରେ କାର୍ଯ୍ୟ ନିର୍ବାହର ସୁବ୍ୟବସ୍ଥା ହେବ ।"

ଏହି ସମବାୟ ଷ୍ଟୋରର ପ୍ରତିଷ୍ଠା-ପ୍ରଭାବ ସୁଦୂରପ୍ରସାରୀ ଥିଲା । ସମବାୟଜନିତ ବାତାବରଣ ଓ ଚିନ୍ତାଧାରାରେ ସମଗ୍ର ଓଡ଼ିଶା ଆପ୍ଳୁତ ଥିଲା । ନୂତନ ସମବାୟ ଉଦ୍ୟୋଗମାନ ସୃଷ୍ଟି କରିବାଲାଗି ଏହା ଉତ୍ସାହ ଓ ଉଦ୍ଦୀପନା ଖେଳାଇ ଦେଇଥିଲା । ଦେଶରେ ପରବର୍ତ୍ତୀକାଳର ସମବାୟ ଆନ୍ଦୋଳନ ଏହାର ପରମ ସାକ୍ଷ୍ୟ ପ୍ରଦାନ କରେ । ଏଣୁ ମଧୁସୂଦନ ଦାସ ଥିଲେ ଓଡ଼ିଶାର ସମବାୟ ଆନ୍ଦୋଳନର ଭଗୀରଥ ଆଉ ଆଦ୍ୟ ପ୍ରବର୍ତ୍ତକ ।

ପ୍ରାୟ ୧୯୦୦ ବେଳକୁ ସମବାୟ ଚିନ୍ତାଧାରା ସାରା ଓଡ଼ିଶାର ମାନସ ପଟକୁ ଆଚ୍ଛନ୍ନ କରିଥାଏ । ରେଭେନ୍ସା କଲେଜର ଉତ୍ସାହୀ ଯୁବକମାନେ ଏଥିରେ ଅଧିକରୁ ଅଧିକ ଭାବେ ଅନୁପ୍ରାଣିତ ହେଲେ । ଫକୀରମୋହନ ଥିଲେ ଏହାର ଅନ୍ୟତମ ବାର୍ତ୍ତାବହ । ସେ ସମୟର ଜଣେ ପ୍ରବୀଣ ଗ୍ରାଜୁଏଟ ଥିଲେ ବାଳମୁକୁନ୍ଦ କାନୁନ୍‌ଗୋ । ସେ ଗୋପାଳ ବଲ୍ଲଭ ଦାସଙ୍କର ପତ୍ନୀ ବସନ୍ତ କୁମାରୀ ଦେବୀଙ୍କର କନିଷ୍ଠା ଭଗିନୀ ହେମନ୍ତ କୁମାରୀଙ୍କୁ ବିବାହ କରିଥିଲେ । ସେ ବନ୍ଧୁତାର ସୂତ୍ରରେ କଟକ କୋ-ଅପରେଟିଭ୍ ଷ୍ଟୋର୍‌ର ପରିଚାଳନା ଆଡ଼କୁ ଆକର୍ଷିତ ହୋଇଥିଲେ ଏବଂ ମଧୁସୂଦନ ଦାସଙ୍କଠାରୁ ଏଥିଲାଗି ବିପୁଳ ପ୍ରୋତ୍ସାହନ ପାଇଥିଲେ । ପରବର୍ତ୍ତୀ ଅବସ୍ଥାରେ ବାଙ୍କୀଠାରେ ସେ ଡେପୁଟି କଲେକ୍ଟର ରୂପେ ଅବସ୍ଥାପିତ ଥିବା ସମୟରେ କୃଷି ଋଣ ସମିତି ସ୍ଥାପନାର ଉଦ୍ୟମ ଆରମ୍ଭ କରିଥିଲେ । ସେ ମଧ୍ୟ ଥିଲେ ଜଣେ ପ୍ରଖ୍ୟାତ କୃଷି ବିଶାରଦ ଓ ବିଦ୍ୟାଧରପୁର କୃଷିଫାର୍ମ ପରିଚାଳନାରେ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ ।

ଉତ୍କଳ ଭ୍ରମଣରେ ଫକୀରମୋହନ ସେତେବେଳେ ଲେଖିଥିଲେ -

ରୂପା ତାରକସି କାମ, ଶିଙ୍ଗର ପାନିଆ
ଅବଶ୍ୟ କହିବି ଏହା ସବୁ ନୂଆନୂଆ
ମାତ୍ର କୋପରେଟିଭ୍ ଯେବେ ରଖିଯିବ
ଯୁଗେ ଯୁଗେ ଓଡ଼ିଶାରେ ନାମ ତୁମ ଥିବ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସମବାୟ ପ୍ରତିଷ୍ଠାନ ଓଡ଼ିଶାରେ ଜନପ୍ରିୟତା ଲାଭ କରିଥିଲା । ସମବାୟ ଋଣ ଆଇନ ୧୯୦୪ ସାଲରେ ପ୍ରଣୟନ ହେବାପୂର୍ବରୁ ବାଙ୍କିର ଚର୍ଚ୍ଚିକା, ସୁବର୍ଣ୍ଣପୁର

ଓ ବରପୁଟଠାରେ ୧୯୦୩ ସାଲରେ ତିନିଗୋଟି ସମବାୟ ସମିତି ସ୍ଥାପିତ ହୋଇଥିଲା । ରାୟ ବାହାଦୂର ବିଦ୍ୟାଧର ପଣ୍ଡାଙ୍କ ବ୍ୟତୀତ ବାଙ୍କୀର ଡେପୁଟି କଲେକ୍ଟର ବାଳମୁକୁନ୍ଦ କାନୁନ୍‌ଗୋ ଏହି ସମିତିମାନ ସ୍ଥାପନ କରିଥିଲେ ।

ମଧୁସୂଦନ, ଭାରତ ସରକାରଙ୍କର ସମବାୟ ଋଣ ଆଇନ ୧୯୦୪ ସାଲରେ ପ୍ରଣୟନ ହେବାପରେ, ସେହିବର୍ଷ କଟକରେ ଉତ୍କଳ ସମ୍ମିଳନୀ ମଞ୍ଚରୁ, ଏଥିଲାଗି ବିପୁଳ ଉଲ୍ଲାସ ମଧ୍ୟରେ ସ୍ୱାଗତ ସମ୍ଭାଷଣ ଜଣାଇ, ଅଧିକରୁ ଅଧିକ ସମବାୟ କୃଷିଋଣ ସମିତି ସ୍ଥାପନାପାଇଁ ଆହ୍ୱାନ ଜଣାଇଥିଲେ । ଏହା ସହିତ ଉତ୍କଳ ସମ୍ମିଳନୀର ଶାଖା ସମିତିମାନେ ଏହି କାର୍ଯ୍ୟରେ ବ୍ରତୀ ରହିବାକୁ ସେ ନିର୍ଦ୍ଦେଶ ଦେଇଥିଲେ । ଉତ୍କଳ ସମ୍ମିଳନୀରେ ତାଙ୍କର ଅଭିଭାଷଣ ଏହିପରି ଥିଲା-

ଋଣ ସମବାୟ ଉଦ୍ୟୋଗ ମାଧ୍ୟମରେ କୃଷିର ଉନ୍ନୟନ ସହିତ ଏହାର ଅନୁପୂରକ ବୃତ୍ତି ଥିଲା ତନ୍ତଦ୍ୱାରା ଉନ୍ନତମାନର ବସ୍ତ୍ର ଉତ୍ପାଦନ । ପ୍ରାୟ ୧୯୦୪ ସାଲରୁ ମଧୁସୂଦନ ଦାସ ତାଙ୍କର ପ୍ରତିଷ୍ଠିତ ଓଡ଼ିଶା ଶିଳ୍ପାଗାର ମାଧ୍ୟମରେ ହସ୍ତତନ୍ତ ଶିଳ୍ପରେ ପ୍ରଥମ କଳର (ମେକାନିକାଲ) ପ୍ରବର୍ତ୍ତନ ବ୍ୟବସ୍ଥା ମଧ୍ୟରେ ଫ୍ଲାଇ ସଟଲ୍ ଲୁମ୍‌ର ପ୍ରୟୋଗ ବିଧି ସମଗ୍ର ଓଡ଼ିଶାରେ ସଂପ୍ରସାରଣ କରିଥିଲେ । ଏଥିଲାଗି ସବୈତନିକ ବୟନବିଧି ପ୍ରଶିକ୍ଷଣ ବ୍ୟବସ୍ଥା ସହିତ କିସ୍ତି ହାରରେ ଫ୍ଲାଇ ସଟଲ୍ ତନ୍ତ ବିକ୍ରୟର ବ୍ୟବସ୍ଥା କରିଥିଲେ । ଫଳରେ ଏହାର ପ୍ରବର୍ତ୍ତନ ତ୍ୱରାନ୍ୱିତ ହୋଇଥିଲା । ସେହି ପରି ମଧୁସୂଦନ ତାଙ୍କ ପ୍ରତିଷ୍ଠିତ ଆର୍ଟ ସ୍କୁଲ୍ ମାଧ୍ୟମରେ ହସ୍ତତନ୍ତ ବସ୍ତ୍ରରେ ରାସାୟନିକ ରଂଗ ପ୍ରୟୋଗର ବିଧି ପ୍ରବର୍ତ୍ତନ କରିଥିଲେ । ଏହା ଫଳରେ ସମସ୍ତ ଓଡ଼ିଶାରେ ହସ୍ତତନ୍ତ ଶିଳ୍ପ କ୍ଷେତ୍ରରେ ଯୁଗାନ୍ତକାରୀ ପ୍ରବର୍ତ୍ତନ ସଂଘଟିତ ହୋଇଥିଲା । ଭାରତରେ ୧୯୧୨ ସାଲରେ ପୂର୍ଣ୍ଣାଙ୍ଗ ସମବାୟ ଆଇନ ପ୍ରଣୟନ ପରେ ୧୯୧୪-୧୫ ସାଲରୁ ତନ୍ତୁବାୟମାନେ ସଂଗଠିତ ହୋଇ ଓଡ଼ିଶାରେ ବହୁ ସଂଖ୍ୟକ ତନ୍ତୁଶିଳ୍ପ ସମିତିମାନ ଗଠନ କରିଥିଲେ । ବୟନର ପରାକାଷ୍ଠା ଓ ଉନ୍ନତମାନର ବସ୍ତ୍ର ସମଗ୍ର ଦେଶରେ ଖ୍ୟାତି ଅର୍ଜନ କରିଥିଲା । ଏହାର ପଶ୍ଚାତରେ ରହିଥିଲା ମଧୁସୂଦନ ଦାସଙ୍କର ଅନୁପ୍ରେରଣା ଓ ପ୍ରୋତ୍ସାହନ ।

ପରବର୍ତ୍ତୀ ପର୍ଯ୍ୟାୟରେ ସମବାୟର ତୀର୍ଥ ଭୂଇଁ ଇଂଲଣ୍ଡରେ ଆଇନ୍ ଶାସ୍ତ୍ରରେ ଶିକ୍ଷାଲାଭ କରିଥିବା ଜାତିର ଜନକ ମହାତ୍ମାଗାନ୍ଧୀ, ସ୍ୱାଧୀନ ଭାରତର ଲକ୍ଷ୍ୟ ସମବାୟ କମନ୍‌ୱେଲ୍‌ଥ ବୋଲି ଉଦ୍‌ଘୋଷଣା କରିଥିଲେ । ଏ କ୍ଷେତ୍ରରେ ମଧୁସୂଦନ ଥିଲେ ଦିଗ୍‌ଦ୍ରଷ୍ଟା । ଭାରତ ମାଟିରେ ସମବାୟ ଆନ୍ଦୋଳନ ଉନ୍ମେଷ ଲାଭ କରିବାର ବହୁ ପୂର୍ବରୁ ସେ ଏହାର ଆଗମନୀର କେବଳ ଉଦ୍‌ଘୋଷଣା କରି ନଥିଲେ, ଏହାର ବିକାଶ ଏବଂ ପରିପ୍ରକାଶ ଲାଗି ଯଥେଷ୍ଟ ଭିତ୍ତିଭୂମି ସୃଷ୍ଟି କରିଯାଇଥିଲେ । ସେହି ଆଦର୍ଶରେ ବ୍ରତୀ ହେବାର ପରମ ମୁହୂର୍ତ୍ତ ଆଜି ଉପନୀତ । ସମବାୟ ହିଁ ହେଉ ଆଜିର କର୍ମପଂଥା, ଲକ୍ଷ୍ୟ, ସାଧନ ଆଉ ପରିପୂର୍ତ୍ତିର ମାର୍ଗ । ସମବାୟ ଆଇନକୁ ସମର୍ଥନ ଜଣାଇ ଉତ୍କଳ ସମ୍ମିଳନୀରେ ମଧୁବାବୁ ସେଦିନ ଦେଇଥିବା ସ୍ୱାଗତ ଭାଷଣ-

(ସମବାୟ ଋଣ ଆଇନ ୧୯୦୪ ପରିପ୍ରେକ୍ଷୀରେ)

କୃଷିର ଉନ୍ନତି ବିଷୟରେ ଆମ୍ଭମାନଙ୍କୁ ଅନେକ ବିଷୟରେ ଚିନ୍ତା କରିବାକୁ ପଡ଼ିବ । ବର୍ତ୍ତମାନ କୃଷିଜାତ ଦ୍ରବ୍ୟର ଉତ୍ପାଦନ ବିଷୟରେ ଆମ୍ଭମାନଙ୍କର ଏପରି ଚେଷ୍ଟା କରିବା ଆବଶ୍ୟ, ଯାହାଦ୍ୱାରା ଆମ୍ଭମାନଙ୍କର ଦେଶର ଆଭ୍ୟନ୍ତରୀଣ ଅଭାବ ପୂର୍ଣ୍ଣ ହେବ ଓ ଦେଶଜାତ ଦ୍ରବ୍ୟ ବିଦେଶକୁ ପ୍ରେରିତ ହେବ, ଏ ସମ୍ବନ୍ଧରେ ବିହିତ ଉପାୟମାନ ଅବଲମ୍ବନ କରିବାକୁ ହେବ । ସର୍ବପ୍ରଥମେ ଉତ୍କଳର ବିଭିନ୍ନ ସ୍ଥାନର ମୃତ୍ତିକାର ବିଭିନ୍ନ ଶସ୍ୟ ଉତ୍ପାଦିକା ଶକ୍ତି ଜାଣି କେଉଁ ସ୍ଥାନର ମୃତ୍ତିକା କେଉଁ ଫସଲ ନିମନ୍ତେ ଅନୁକୂଳ, ତାହା ରାସାୟନିକ ପରୀକ୍ଷା ଓ ବାସ୍ତବ ପରୀକ୍ଷାଦ୍ୱାରା ସ୍ଥିର କରିବାକୁ ହେବ । କେଉଁ ପ୍ରକାର ଖତ ପ୍ରୟୋଗ କଲେ ମୃତ୍ତିକାର ଉର୍ବରତା ବଢ଼ିବ, କି ପ୍ରଣାଳୀରେ କୃଷି କଲେ ପ୍ରଚୁର ଶସ୍ୟ ଉତ୍ପନ୍ନହେବ, ଏଗୁଡ଼ିକ ସ୍ଥିର କରି କାର୍ଯ୍ୟରେ ପରିଣତ କରିବାକୁ ହେବ । କୃଷି କାର୍ଯ୍ୟରେ ମଧ୍ୟ ସମ୍ମିଳିତ ଚେଷ୍ଟା ଆବଶ୍ୟକ । ସମ୍ମିଳିତ ଚେଷ୍ଟାଦ୍ୱାରା କୃଷିଜୀବୀମାନଙ୍କର କି ପ୍ରକାର ଉନ୍ନତି ସାଧିତ ହୋଇପାରେ ତହିଁର ଉଦାହରଣ ଭାରତବର୍ଷର ଚା କୃଷି ଇତ୍ୟାଦି ବ୍ୟବସାୟ । ଉପରୋକ୍ତ କୃଷିଦ୍ୱାରା ଶତଶତ ୟୁରୋପୀୟ ବିଶେଷ ଲାଭ କରୁଅଛନ୍ତି । ସମ୍ମିଳିତ ଚେଷ୍ଟା, ମୂଳଧନ, ଉପଯୁକ୍ତ ପରିଚାଳନା, ଉତ୍କୃଷ୍ଟ ଯନ୍ତ୍ର ସାହାଯ୍ୟରେ ଆମ ଦେଶର କୃଷିର ଉନ୍ନତି ସାଧିତ ହୋଇପାରେ; ଏହା ଆମ୍ଭର ବିଶ୍ୱାସ । ଏହି ଭାରତବର୍ଷର ପ୍ରଜାମାନେ ଜୀବିକାପାଇଁ କେବଳ କୃଷି ଉପରେ ସର୍ବଦା ନିର୍ଭର କରନ୍ତି । ବିଶେଷତଃ ଉତ୍କଳର ପ୍ରଜାମାନେ କେବଳ କୃଷିଜୀବୀ ଅଟନ୍ତି । ଏଥିପାଇଁ ଗୋ ମହିଷାଦିର ସଂଖ୍ୟା ଯେପରି ବୃଦ୍ଧି ହେବ ଓ ଗରିବ କୃଷକମାନେ ଯେପରି ସାହୁକାରମାନଙ୍କର ହସ୍ତଗତ ନହୋଇ ସ୍ୱ ସ୍ୱ କୃଷି କାର୍ଯ୍ୟ କରିପାରିବେ, ତାହା ବନ୍ଦୋବସ୍ତ କରିବା ଉଚିତ । ବର୍ତ୍ତମାନ ଭାରତ ସରକାରଙ୍କ ପ୍ରଚାରିତ କୋ-ଅପରେଟିଭ୍ କ୍ରେଡିଟ୍ ସୋସାଇଟି ଆକ୍ଟ ଅନୁସାରେ କେତେକ ସମବାୟ ଭଂଡାର ସଂସ୍ଥାପନା କରାଇବା ନିମନ୍ତେ ପ୍ରାଦେଶିକ ସରକାର ଯତ୍ନବାନ ଅଛନ୍ତି । ଆମ ଦେଶରେ ଏହିପରି ସମବାୟ ଭଣ୍ଡାର ସ୍ଥାପନପାଇଁ ଚେଷ୍ଟା କରିବା ଉଚିତ । ଗରିବ କୃଷକମାନେ ନିତାନ୍ତ ଲୋଭୀ ସାହୁକାରମାନଙ୍କର ପ୍ରବର୍ତ୍ତନାରୁ ଯେପରି ମୁକ୍ତ ହେବେ ସେଥିପାଇଁ ଚେଷ୍ଟା କରିବା ଉଚିତ । କୃଷି ଶିକ୍ଷା ସେମାନଙ୍କୁ ପ୍ରଦାନ କରିବା ସର୍ବ ମତରେ ବାଞ୍ଛନୀୟ ଏବଂ ନାନାବିଧ କୃଷି ସେମାନଙ୍କ ଦ୍ୱାରା ଯେପରି ସାଧିତ ହୋଇପାରିବ ସେହିପରି ଅବଲମ୍ବନ ବିଧେୟ ।'' ମଧୁବାବୁଙ୍କ ଏହି ବକ୍ତବ୍ୟ ପ୍ରଣିଧାନଯୋଗ୍ୟ । ମଧୁବାବୁ କୃଷିର ଉନ୍ନତିପାଇଁ କେବଳ ଋଣ ସମବାୟ ସମିତି ନୁହେଁ, ସମବାୟ ଭଣ୍ଡାରମାନ ସ୍ଥାପନପାଇଁ ପରାମର୍ଶ ଦେଇଥିଲେ । ଏହି ସମିତି ଋଣ ସହିତ ବିହନ, ମୃତ୍ତିକା ପରୀକ୍ଷା କରି ଉପଯୁକ୍ତ ସାରର ପ୍ରୟୋଗ, ଉନ୍ନତ କୃଷି ଯଂତ୍ରପାତିର ବ୍ୟବହାର ସହିତ ଉନ୍ନତ ଅର୍ଥକରୀ ଫସଲ ଉତ୍ପାଦନପାଇଁ ପ୍ରଶିକ୍ଷଣ ପ୍ରଦାନ ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ତୁମେତ ଆଲୁଅ ପ୍ରାପ୍ତ ମୁହିଁ ଅନ୍ଧାରିଆ
କିନ୍ତୁ ଭାଇ ଦୁଇ ଜଣ ଜାତିରେ ଓଡ଼ିଆ

ଦେଖିଲି ଗୋଟିଏ କଥା ବିଲାତରେ ବୁଲି
ଆପଣା ଦେଶର କଥା ଯାଇ ନାହିଁ ଭୁଲି
ସେଦିନ ପିଆଇ ମୋତେ ଏକ କପ ଚା'
ଦେଖାଇଲ କେତେ ଚିଜ ସାବାସ ଭାଇ ବାଃ
ମନ ମାନିଗଲା ପରା ଦେଖି ସେ ଓସ୍ତାତୀ
କଟକର କାରିଗରୀ ଦ୍ରବ୍ୟ ନାନା ଜାତି
ରୂପା ତାରକସି କାମ, ଶିଙ୍ଗର ପାନିଆ
ଅବଶ୍ୟ କହିବି ଏହା ସବୁ ନୂଆନୂଆ ।

-ଫକୀର ମୋହନ (ଉତ୍କଳ ଭ୍ରମଣ)



# ଆଇନଜୀବୀ ଏବଂ ଆଇନଜ୍ଞ

"ପାଠ ପଢ଼ିବି ଓକିଲ ହେବି
ମଧୁ ବାରିଷ୍ଟର ସଙ୍ଗେ ଲଢ଼ିବି "

ବିଦ୍‌ବତ୍ତାସଂପନ୍ନ ଆଇନଜୀବୀଗଣ ଦେଶର ଅତ୍ୟନ୍ତ ସମ୍ବେଦନଶୀଳ ଓ ମନନଶୀଳ ବୁଦ୍ଧିଜୀବୀ ଗୋଷ୍ଠୀ ଅଟନ୍ତି । ସେମାନଙ୍କର ଆଇନର ତାତ୍ତ୍ୱିକ ବିଶ୍ଳେଷଣ ବହୁ ନାଗରିକଙ୍କୁ ପ୍ରଦାନ କରିଥାଏ, ନିଜସ୍ୱ ଅଧିକାରକୁ ସାବ୍ୟସ୍ତ କରିବାପାଇଁ ଏକ ପରମ ସୁଯୋଗ । ମାତ୍ର ଏହା ସତ୍ତ୍ୱେ ଆଇନଜୀବୀଙ୍କର ଏହି ମର୍ଯ୍ୟାଦାସଂପନ୍ନ କାର୍ଯ୍ୟକଳାପ ସୀମିତ ରହିଥାଏ କୋର୍ଟ, କଚେରି, ସରକାରୀ ଦପ୍ତର, ନ୍ୟାୟାଳୟ ଓ ବିଚାରାଳୟମାନଙ୍କ ମଧ୍ୟରେ ।

ହେଲେ ପ୍ରତ୍ୟେକ ଆଇନଜୀବୀଙ୍କର ରହିଛି ଏକ ବ୍ୟାପକ ଉତ୍ତରଦାୟୀ ଭୂମିକା ଆଇନଜ୍ଞଭାବରେ, ଯାହାଙ୍କର କାର୍ଯ୍ୟଧାରାର ଦିଗ୍‌ବଳୟ ସମଗ୍ର ସମାଜକୁ ଆବୃତ କରି ପରିବ୍ୟାପ୍ତ ହୋଇଥାଏ । ବହୁବ୍ୟକ୍ତି ଆଇନଜୀବୀର ସୀମିତ ପରିସରର ଊର୍ଦ୍ଧ୍ୱକୁ ଯାଇ ଆଇନଜ୍ଞ ଭାବରେ ନିଜର ପରାକାଷ୍ଠା ପ୍ରଦର୍ଶନ କରିଥାନ୍ତି ଆଉ ତାହାରି ମାଧ୍ୟମରେ ବହୁ ନିଷ୍ପେଷିତଙ୍କୁ ପ୍ରଦାନ କରିଥାନ୍ତି ସ୍ୱସ୍ତିର ସହ ସ୍ୱାଭିମାନର ବଳୟ ମଧ୍ୟରେ ଜୀବନ ଧାରଣ କରିବାପାଇଁ ଏକ ନିଶ୍ଚିତ ପ୍ରତିଶ୍ରୁତି ଏବଂ ଅବଲମ୍ବନ । ଏକ ସର୍ବନିମ୍ନ ଅର୍ଥନୈତିକ କାର୍ଯ୍ୟକ୍ରମ ମାଧ୍ୟମରେ ଜୀଇଁ ରହିବାର ଯେଉଁ ସମ୍ବିଧାନସମ୍ମତ ଅଧିକାର ରହିଛି, ତାହା ବର୍ତ୍ତମାନର ସମାଜରେ ବହୁ ପରିମାଣରେ ବିଡ଼ମ୍ବିତ ଓ ବାଧାପ୍ରାପ୍ତ । ଏ କ୍ଷେତ୍ରରେ ସାମାଜିକ ମୂଲ୍ୟବୋଧର ଆଧାରରେ ଜଣେ ଆଇନଜୀବୀର ଆଇନଜ୍ଞ ଭାବରେ କାର୍ଯ୍ୟର ପରିଧି ବହୁ ଦିଗନ୍ତକୁ ସଂପ୍ରସାରିତ । ମହାତ୍ମାଗାନ୍ଧୀ, ଚିତ୍ତରଂଜନ ଦାସ, ମୋତିଲାଲ ନେହେରୁ ଅଥବା ମଧୁସୂଦନ ଦାସ ପ୍ରମୁଖ ପ୍ରଖ୍ୟାତ ଆଇନଜୀବୀଗଣ ଆଇନଜ୍ଞ ଭାବରେ ତଥା ଦେଶବତ୍ସଳ ନେତୃବର୍ଗ ରୂପେ ଯେଉଁ ଅବିସ୍ମରଣୀୟ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ, ତାହର ଉଜ୍ଜ୍ୱଳ କୃତି ଓ ସ୍ୱାକ୍ଷର ଏବେ ମଧ୍ୟ ବହୁ ଆଇନଜୀବୀଙ୍କୁ ଦିଗ୍‌ଦର୍ଶନ ପ୍ରଦାନ କରି ଆସିଛି ।

ଏ ସମସ୍ତ ଥିଲା ଜାତୀୟ ଗୌରବ ମଧୁସୂଦନ ଦାସଙ୍କ ଶହେ ଚଉବନତମ ଜୟନ୍ତୀ ଅବସରରେ ଏପ୍ରିଲ୍ ୨୮ ତାରିଖରେ ଓଡ଼ିଶା ରାଜ୍ୟ ଆଇନଜୀବୀ ପରିଷଦ ପକ୍ଷରୁ ଓଡ଼ିଶାର ବିଭିନ୍ନ ସ୍ଥାନରେ "ଆଇନଜୀବୀ" ଦିବସ ରୂପେ ପାଳିତ ସମାରୋହମାନଙ୍କରେ ବହୁ ଅଧିବକ୍ତା ତଥା ସମ୍ମାନାସ୍ପଦ ଅତିଥିଗଣଙ୍କର ମୂଲ୍ୟବାନ ବକ୍ତବ୍ୟ ।

ଭାରତର ପ୍ରଖ୍ୟାତ ଜାତୀୟବାଦୀ ନେତା ରୂପେ ମଧୁସୂଦନ ଦାସଙ୍କର ଜଣେ ବିଶିଷ୍ଟ ଆଇନଜ୍ଞ ତଥା ଦେଶବତ୍ସଳ ନାୟକ ରୂପେ ସର୍ବଶ୍ରେଷ୍ଠ ଅବଦାନ ଥିଲା । ପରାଧୀନ ଭାରତରେ ଦେଶର ପ୍ରଥମ ଭାଷାଭିତ୍ତିକ ପ୍ରଦେଶ ଓଡ଼ିଶାର ଗଠନ ବଳିଷ୍ଠ ଜନଜାଗରଣ ତଥା ସାମ୍ବିଧାନିକ ବ୍ୟବସ୍ଥା ମାଧ୍ୟମରେ । ଏହି ପ୍ରକ୍ରିୟା ରିସ୍‌ଲେ ସର୍କୁଲାର (୧୯୦୩) ଠାରୁ ଆରମ୍ଭ ହୋଇ ଭାରତ ଆଇନ (୧୯୩୫) ପର୍ଯ୍ୟନ୍ତ ସୁଦୀର୍ଘ ବତିଶି ବର୍ଷକାଳ ପରିବ୍ୟାପ୍ତ ରହିଥିଲା । ପରାଧୀନ ଭାରତରେ ଓଡ଼ିଶା ପ୍ରଦେଶ ଗଠିତ ହୋଇନଥିଲେ ଏହାର ଗଠନର ସଂଭାବନା ସ୍ୱାଧୀନ ଭାରତରେ ସୁଦୂର ପରାହତ ହୋଇଥାନ୍ତା ।

ମାତ୍ର ସମଗ୍ର ଭାରତରେ ଆଇନ୍‌ଜୀବୀ ଗୋଷ୍ଠୀଙ୍କ ପାଇଁ ମଧୁସୂଦନ ଦାସଙ୍କର ସର୍ବଶ୍ରେଷ୍ଠ ଅବଦାନ ଥିଲା, ଭାରତୀୟ ନାରୀଙ୍କୁ ଆଇନ୍‌ଜୀବୀ ବୃତ୍ତି ଗ୍ରହଣରେ ଯୁଗାନ୍ତକାରୀ ଅଧିକାର ପ୍ରଦାନ ।

ଇଂଲଣ୍ଡରେ ଏହି ଅଧିକାର ୧୯୧୮ ବେଳକୁ ମହିଳାମାନଙ୍କୁ ପ୍ରାପ୍ତ ହୋଇଥିଲା । ମାତ୍ର ୧୯୨୧ ସାଲରେ ମଧୁସୂଦନଙ୍କ ପାଳିତାକନ୍ୟା ସୁଧାଂଶୁବାଳା ହାଜରା, କଲିକତା ବିଶ୍ୱବିଦ୍ୟାଳୟରୁ ଆଇନ୍‌ରେ ସ୍ନାତକ ଉପାଧି ଲାଭ କରିବା ପରେ ୧୯୨୨ ରେ ପାଟନା ହାଇକୋର୍ଟରେ ଆଇନ୍‌ଜୀବୀ ବୃତ୍ତିଗ୍ରହଣଲାଗି ଜଣେ ମହିଳା ଭାବରେ ଆବେଦନ କଲେ । ମାତ୍ର ଏହା ନାମଞ୍ଜୁର ହୋଇଯାଇଥିଲା । ଏହା ପରେ ଏହି ଆବେଦନ ପ୍ରିଭି କାଉନ୍‌ସିଲ୍‌ରେ ଉପସ୍ଥାପିତ ହୋଇଥିଲା । ମଧୁବାବୁଙ୍କ ଅଦମ୍ୟ ପ୍ରଚେଷ୍ଟା ଫଳରେ ଭାରତୀୟ ବ୍ୟବସ୍ଥାପକ ସଭାରେ ୧୯୨୩ ସାଲ ସେପ୍ଟମ୍ବର ମାସରେ ଭାରତୀୟ ଆଇନଜୀବୀ ବୃତ୍ତି ସଂଶୋଧିତ ହୋଇ ନାରୀମାନଙ୍କୁ ଏହି ଅଧିକାର ପ୍ରଦାନ କରାଯାଇଥିଲା । ଫଳରେ ମଂତ୍ରିତ୍ୱ ତ୍ୟାଗ କରିଥିବା ଏହି ମଧୁସୂଦନ ଦାସଙ୍କର ଜଣେ ଜୁନିଅର (ଆର୍ଟିକଲଡ୍ କ୍ଲର୍କ) ଭାବରେ ସୁଧାଂଶୁବାଳା ଓକିଲ ରୂପେ ପାଟନାରେ ୧୨.୧୨.୧୯୨୩ରେ ଗୃହୀତ ହୋଇଥିଲେ । ଆଉ ୨୩.୧.୧୯୨୪ରେ ସୁଧାଂଶୁବାଳା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଭାବେ କଳା ଗାଉନ୍ ପିନ୍ଧି ମଧୁସୂଦନ ଦାସଙ୍କ ସହିତ ପାଟନା ହାଇକୋର୍ଟରେ ଅବତୀର୍ଣ୍ଣ ହେବାର ଯୁଗାନ୍ତକାରୀ ଘଟଣା ସମଗ୍ର ଭାରତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ପ୍ରକୃତରେ ଏହା ହିଁ ଥିଲା ଆଇନଜୀବୀ ଦିବସ ପାଳନର ତାତ୍ପର୍ଯ୍ୟ ।

ମଧୁସୂଦନ ଦାସଙ୍କ ଶତବାର୍ଷିକୀ ପାଳନ କରିବାକୁ ଭୁଲିଯାଇଥିବା ଓଡ଼ିଆମାନଙ୍କୁ ତାହାଙ୍କର ଦେଢ଼ଶହ ବର୍ଷ ଜୟନ୍ତୀ, ୧୯୯୭ରୁ ୧୯୯୯ ସାଲ ମଧ୍ୟରେ ପାଳନ କରିବାପାଇଁ ଯେଉଁ ସଶ୍ରଦ୍ଧ ନିବେଦନ କରାଯାଇଥିଲା, ସେଥିରେ ବହୁ କ୍ଷେତ୍ରରେ ଅନାଗ୍ରହତା ଓ ସ୍ତବ୍ଧ ନୀରବତା ପ୍ରକାଶ ପାଇଥିଲା । ଏହା ସତ୍ତ୍ୱେ ବହୁ ସମ୍ମାନାସ୍ପଦ ଆଇନଜୀବୀ ପରିଷଦ ପକ୍ଷରୁ ଯେଉଁ ସ୍ୱତଃସ୍ଫୂର୍ତ୍ତ ତତ୍ପରତା ଓ ଉଚ୍ଛ୍ୱସିତ ଉଦ୍‌ବେଳନ ପ୍ରକାଶ ପାଇଲା, ତାହା କେବଳ ତାତ୍ପର୍ଯ୍ୟପୂର୍ଣ୍ଣ ନଥିଲା,

ନ୍ୟାୟପାଳିକା ତଥା ଆଇନଜୀବୀ ଗୋଷ୍ଠୀଙ୍କର ସମ୍ମିଳିତ ଓ ସମନ୍ୱିତ ଉଦ୍ୟମରେ ମଧୁସୂଦନଙ୍କ ଜୟନ୍ତୀକୁ ଆଇନଜୀବୀ ଦିବସ ରୂପେ ପାଳନ କରିବା ନିମନ୍ତେ ନିଆଯାଇଥିବା ଐତିହାସିକ ସିଦ୍ଧାନ୍ତ ଓଡ଼ିଆ ଜାତିପାଇଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା । ତେଣୁ ଏ କ୍ଷେତ୍ରରେ ଓଡ଼ିଶା ରାଜ୍ୟ ଆଇନ ପରିଷଦର ଅବିସ୍ମରଣୀୟ ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ।

ବର୍ତ୍ତମାନ ଓଡ଼ିଶାର ଆଇନଜୀବୀଗଣ ମଧୁସୂଦନଙ୍କ ଦିଗ୍‌ଦର୍ଶନର ଛତ୍ରଛାୟା ତଳେ ଏକତ୍ରିତ ହେବାର ଲକ୍ଷ୍ୟ କରାଯାଏ । ମଧୁସୂଦନ ମୁଖ୍ୟତଃ ଦଳିତ, ନିଷ୍ପେଷିତ ତଥା ଅବହେଳିତ ସଂପ୍ରଦାୟ କୃଷକ, ଶ୍ରମିକ, ଶୋଷିତ ଶିଳ୍ପୀକୂଳର ଉନ୍ନୟନ ଲାଗି ପ୍ରତିଶ୍ରୁତିବଦ୍ଧ ଥିଲେ । କଟକରେ ତାଙ୍କର ପ୍ରଥମ କେଶ୍‌ଟି ଜଣେ ସର୍ବହରା କୃଷକ ତଥା ଖାତକକୁ ସୁରକ୍ଷା ପ୍ରଦାନ ପାଇଁ ଅଭିପ୍ରେତ ଥିଲା । ସ୍ୱଦେଶୀ ଶିଳ୍ପ ଆନ୍ଦୋଳନର କର୍ଣ୍ଣଧାର ରୂପେ ତାଙ୍କର ନିବିଡ଼ ସଂପର୍କ ଗଢ଼ି ଉଠିଥିଲା, ସର୍ବହରା ତଥା ନିଷ୍ପେଷିତ ଶିଳ୍ପୀକୁଳ ସହିତ । ଏହି ପ୍ରକ୍ରିୟା ମଧ୍ୟରେ ଦଳିତ ଗୋଷ୍ଠୀଙ୍କୁ ଅର୍ଥନୈତିକ କ୍ଷେତ୍ରରେ ଅବସ୍ଥାପନପାଇଁ ମଧୁସୂଦନ ଦାସଙ୍କ ଦ୍ୱାରା ସ୍ଥାପିତ ଉତ୍କଳ ଟ୍ୟାନେରିରେ ଦଳିତମାନେ ଅଂଶୀଦାର ଥାଇ ପରିଚାଳନାରେ ଅଂଶଗ୍ରହଣ କରୁଥିଲେ । ଏ ସମସ୍ତପାଇଁ ମହାତ୍ମାଗାନ୍ଧୀ ମଧୁସୂଦନ ଦାସଙ୍କୁ ତାଙ୍କର ଅନ୍ୟତମ ମାର୍ଗଦର୍ଶକ ରୂପେ ଗ୍ରହଣ କରିଥିଲେ । ବିନା କ୍ଷତିପୂରଣରେ ଜମିଦାରି ପ୍ରଥାର ଉଚ୍ଛେଦ ଲାଗି ସେ ୧୯୦୯ ସାଲରେ କୃଷକମାନଙ୍କର ସର୍ବବୃହତ ଅନୁଷ୍ଠାନ ପ୍ରଜା ପରିଷଦ ଗଠନ କରିଥିଲେ । ତାହାର କାର୍ଯ୍ୟଧାରା ଅତ୍ୟନ୍ତ ଗରିମାମୟ ଥିଲା ।

ଓଡ଼ିଶାବାସୀଙ୍କପାଇଁ ଆଇନଜୀବୀ ଭାବରେ ମଧୁସୂଦନ ଦାସଙ୍କର ଗୌରବୋଜ୍ୱଳ ଅବଦାନ ହେଲା, ବ୍ରିଟିଶ ସରକାରଙ୍କ କୂଟ ଚକ୍ରାନ୍ତମୂଳକ ଆକ୍ରମଣରୁ ଶ୍ରୀଜଗନ୍ନାଥ ମନ୍ଦିରକୁ ସୁରକ୍ଷା ପ୍ରଦାନ ସହିତ ଗଜପତି ପରଂପରାକୁ ସ୍ୱୀକୃତି ପ୍ରଦାନର ମହନୀୟ ବ୍ୟବସ୍ଥାଗ୍ରହଣ ।

ଆଇନରେ ପାରଦର୍ଶିତା ଲାଭ କରିଥିବା ସଚେତନ ଆଇନଜୀବୀ ଗୋଷ୍ଠୀଙ୍କ ସମ୍ମୁଖରେ ସେ ପ୍ରତିଭାତ ହୋଇଛନ୍ତି ମୁକ୍ତିର ପ୍ରତୀକ ରୂପରେ । ଯେଉଁଠାରେ ମଣିଷର ଅଧିକାର ବାଧାପ୍ରାପ୍ତ, ସେହିଠାରେ ମଧୁସୂଦନ ଦାସ ଅବତୀର୍ଣ୍ଣ ହୋଇଛନ୍ତି ଜାଗ୍ରତ ପ୍ରହରୀ ରୂପରେ ।

ଏଥିପାଇଁ ମଧୁ ଜୟନ୍ତୀ ଅବସରରେ ପାଳିତ ଆଇନଜୀବୀ ଦିବସ ଉପଲକ୍ଷେ ଅନୁଷ୍ଠିତ ବହୁ ସମାରୋହରେ ଆଇନଜୀବୀଗଣ ସମାଜର ନିମ୍ନ ତଥା ଅବହେଳିତ ଗୋଷ୍ଠୀମାନଙ୍କୁ ସୁରକ୍ଷା ତଥା ସୁଲଭ ନ୍ୟାୟ ପ୍ରଦାନପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଛନ୍ତି ।

ମଧୁସୂଦନ ଦାସ, ଶ୍ରୀ ଅରବିନ୍ଦଙ୍କର ଯେଉଁ ମହନୀୟ ଉକ୍ତିଟି ବିହାର ଓଡ଼ିଶା ବିଧାନସଭାରେ ଉପସ୍ଥାପନ କରିଥିଲେ, ତାହା ହେଉଛି - ''ଆଇନ ମଣିଷଙ୍କ ପାଇଁ ନୁହେଁ, ମଣିଷପାଇଁ ହିଁ ଆଇନ ଅଭିପ୍ରେତ ।'' ଏଣୁ ପ୍ରଚଳିତ ଆଇନରେ ରହିଥିବା ତ୍ରୁଟି ସମୂହର ନିରାକରଣ କରାଯାଇ ତାହାକୁ ମଣିଷର ସମନ୍ୱିତ ତଥା ସର୍ବାଙ୍ଗୀନ ଉନ୍ନତି ଲାଗି ସଂଚାଳିତ କରିବାର ଆବଶ୍ୟକତା ରହିଛି ।

ବୋଧହୁଏ ଏହିଠାରେ ହିଁ ରହିଛି ଆଇନଜୀବୀ ଦିବସ ପାଳନର ପରମ ତାତ୍ପର୍ଯ୍ୟ । ଏଠାରେ ଆମ୍ଭେ ସ୍ମରଣରେ ଆଣିଲୁ ମଧୁସୂଦନ ଦାସଙ୍କର ପ୍ରଣୀତ ତଥା ଭାରତର ଅନ୍ୟତମ ସ୍ନାୟୁକେନ୍ଦ୍ର

ବିହାରର ପାଟନାଠାରେ ୧୯୨୩ ସାଲରେ ଓଡ଼ିଶା ଆସେମ୍ବ୍ଲିରେ ଗୃହୀତ ହୋଇଥିବା ଅତ୍ୟନ୍ତ କ୍ରାନ୍ତିକାରୀ ସ୍ୱାୟତ୍ତ ଶାସନ ଆଇନ, ଯାହା ଗଣତନ୍ତ୍ରର ମୂଲ୍ୟବୋଧରେ ଅନନ୍ୟ ଓ ଅତୁଳନୀୟ ଥିଲା । ଏଥିରେ ମହିଳାମାନେ ନିର୍ବାଚିତ ହେବାର ସ୍ୱତନ୍ତ୍ର ବିଧାନ ସହିତ ସ୍ୱାୟତ୍ତ ଶାସନ ସଂସ୍ଥାର ପରିଚାଳନା ପରିଷଦରେ ଦଳିତମାନଙ୍କପାଇଁ ଏକ ସ୍ଥାନ ସଂରକ୍ଷିତ ରହିଥିଲା । ଗଣତନ୍ତ୍ରର ଅନ୍ତର୍ନିହିତ ମୂଳ ପ୍ରାଣସତ୍ତା ଉପରେ ଅଧିଷ୍ଠିତ ଏହି ଆଇନରେ ବିଶ୍ୱାସ ହରାଇ ଥିବା ନିର୍ବାଚିତ ପ୍ରତିନିଧିମାନଙ୍କର ପ୍ରତ୍ୟାହାର ବ୍ୟବସ୍ଥା ସନ୍ନିବେଶିତ ଥିଲା, ଯାହା ସେ ସମୟରେ ପାଶ୍ଚାତ୍ୟର ଗଣତନ୍ତ୍ର ବିଧାନରେ ମଧ୍ୟ ଅକଳ୍ପନୀୟ ଥିଲା । ପରେ ଜୟପ୍ରକାଶ ନାରାୟଣ ତାଙ୍କ ଜୀବନର ଶେଷ ପର୍ଯ୍ୟାୟରେ ଏହି ନୀତି ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ଏଣୁ ଜଣେ ଆଇନଜୀବୀ, ଆଇନଜ୍ଞ, ପାର୍ଲାମେଣ୍ଟାରିଆନ୍, ବିଧାୟକ ତଥା ଦେଶବତ୍ସଳ ନେତାରୂପେ ମଧୁସୂଦନ ଦାସଙ୍କର ଭୂମିକା ଅତ୍ୟନ୍ତ ପ୍ରେରଣାଦାୟକ ଓ ଗରିମାମୟ ଥିଲା, ଯାହା ଦେଶବାସୀଙ୍କୁ କାଳକାଳ ଲାଗି ମାର୍ଗଦର୍ଶନ କରୁଥିବ ।



# ସହସ୍ରଭୁଜାର ଆବାହନ

ଭୂମିକଂପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା
ସେହି ତୋର ମାତା ସେହି ତୋର ତ୍ରାତା
କର ସେହି ପଦପୂଜା । -ମଧୁସୂଦନ

ଇଂରେଜମାନଙ୍କ ଓଡ଼ିଶା ଅଧିକାର ପରେ ଲାଗି ରହିଥିବା କ୍ରମାଗତ ବିଦ୍ରୋହ ଓ ଅସ୍ଥିରତା ସ୍ୱରୂପ ୧୮୧୭ରେ ପାଇକ ବିଦ୍ରୋହ ଓ ୧୮୫୭ରେ ସିପାହୀ ବିଦ୍ରୋହ ହୋଇଥିଲା। ଅର୍ଥନୀତିର ଦ୍ରୁତ ଅବକ୍ଷୟ ସାଙ୍ଗକୁ ୧୮୬୬ର ପ୍ରାଣଶୋଷା ନଅଙ୍କ ଦୁର୍ଭିକ୍ଷର କରାଳ ଆଘାତରେ ଓଡ଼ିଆ ଜାତି ପରିଣତ ହୋଇଯାଇଥିଲା କଂକାଳସାର ଜନସମୂହରେ । ମହାତ୍ମାଗାନ୍ଧୀ ୧୯୨୧ ସାଲରେ ଓଡ଼ିଶା ପରିଦର୍ଶନର ବିକଳ ଅନୁଭୂତିକୁ ଏକ ମର୍ମନ୍ତୁଦ ଓ ଯନ୍ତ୍ରଣାକାତର ସ୍ୱରରେ ବର୍ଣ୍ଣନା କରିଛନ୍ତି-

''ଓଡ଼ିଶାରେ କଂକାଳର ଦୃଶ୍ୟ ଦେଖିବି ବୋଲି ମୁଁ ପ୍ରସ୍ତୁତ ଥିଲି । କିନ୍ତୁ ଯାହା ଦେଖିଲି ସେହି ଅସ୍ଥି ଚର୍ମସାର ସ୍ତ୍ରୀ, ପୁରୁଷ ଆଉ ପିଲାଙ୍କର କରୁଣ ଚେହେରା କେବେ ବି ଭୁଲିବାର ନୁହଁ । ସେମାନେ ଚିତ୍କାର କରି କହୁଥିଲେ 'ଆମେମାନେ ଖାଦ୍ୟ ଚାହୁଁ' ଏହିଭଳି ଲୋକଙ୍କ ପାଖରେ ସ୍ୱରାଜ୍ୟର ଅର୍ଥ ବା କ'ଣ ଥାଇପାରେ ?''

ଏହିମାନେ ହିଁ ଥିଲେ ଓଡ଼ିଶାର ସହସ୍ର ଭୁଜା । ଏହି କଂକାଳସାର ଜନସାଧାରଣଙ୍କୁ ଉପରକୁ ଉଠାଇବାପାଇଁ ଭୂମିକଂପ ଭଳି ବିସ୍ଫୋରକ ଆନ୍ଦୋଳନ ଦରକାର, ଯହିଁରେ ଅଜ୍ଞାନ ରୂପକ ଅନ୍ଧକାରର ଧରଣୀ ଫାଟିଯିବ ଓ ଜାଗରଣର ନୂତନ ପ୍ରଭାତ ଉଦୟ ଲାଭ କରିବ । ଓଡ଼ିଶା ଇତିହାସର ସେହି ନୀରନ୍ଧ୍ର ଅନ୍ଧକାରରେ ଭୂମିକଂପ ଭଳି ବିସ୍ଫୋରଣକାରୀ ଜାଗରଣ ସୃଷ୍ଟି କରିଥିଲେ ମଧୁସୂଦନ, ଜାଳିଥିଲେ ସ୍ୱାଭିମାନର ଦୀପଶିଖା ଓ ବିସ୍ମୃତ ଜାତିକୁ ଦେଇଥିଲେ ଆତ୍ମପରିଚୟର ଚେତନା ।

ଓଡ଼ିଶାର ସ୍ୱାଧୀନତା ଲୋପପାଇଗଲା ୧୫୬୮ ସାଲରେ ଏବଂ ୧୫୯୨ ସାଲରେ ଉପକୂଳର ସମସ୍ତ ଓଡ଼ିଆଭାଷୀ ଅଂଚଳ ମୋଗଲ ବଂନ୍ଦୀ ନାମରେ ପରିଚିତ ହେଲା । ମୋଗଲ ଶାସନାଧୀନ ଏହି ପରିସରରେ ଥିଲା ପାଞ୍ଚଟି ସରକାର ବା ଜିଲ୍ଲା । ସେଗୁଡ଼ିକ ହେଲା ୧. ଜଳେଶ୍ୱର (ମେଦିନୀପୁର ଆଉ ବାଙ୍କୁଡ଼ା ସମେତ), ୨. ଭଦ୍ରକ, ୩. କଟକ. ୪.ସିକାକୋଲ, ୫. ରାଜମହେନ୍ଦ୍ରୀ । ଏହାଛଡ଼ା ପଶ୍ଚିମରେ ଥିଲା ପରିବ୍ୟାପ୍ତ ଓଡ଼ିଆଭାଷୀ ଗଡ଼ଜାତ ଅଂଚଳ । ଏହା ପରଠାରୁ ଦୁର୍ଦ୍ଦିନର କଳାମେଘ ଛାଇ ରହିଲା ଓଡ଼ିଶାର ରାଜନୈତିକ ଆକାଶକୁ । ଏହାପରେ ଓଡ଼ିଶାର ଦକ୍ଷିଣାଞ୍ଚଳ ବ୍ରିଟିଶ ଶାସନ ଅଧୀନକୁ ଆସିଲା ୧୭୬୮ ସାଲରେ ଆଉ ଉତ୍ତର ଓଡ଼ିଶା ୧୮୦୩ ସାଲରେ ଯାହା ଯଥାକ୍ରମେ ମାନ୍ଦ୍ରାଜ ଓ ବଂଗଳା ପ୍ରଦେଶରେ ଥିଲା । ପଶ୍ଚିମର ସଂବଲପୁର ଜିଲ୍ଲା ଆଉ ଏହାର ସଂଲଗ୍ନ ପାଞ୍ଚଟି ଗଡ଼ଜାତ, (କଳାହାଣ୍ଡି, ପାଟନା, ସୋନପୁର, ବାମଣ୍ଡା ଆଉ ରେଢ଼ାଖୋଲ) ଅଞ୍ଚଳ ମଧ୍ୟପ୍ରଦେଶର ପରିସରକୁ ୧୮୪୯ ସାଲରେ ଆସିଥିଲା । ପରେ ଏହି ଅଂଚଳ ୧୮୬୦ରେ ଓଡ଼ିଶା ଡିଭିଜନକୁ ଆସିଲା, ଯେଉଁ ସମୟରେ ଓଡ଼ିଆଭାଷାର ପ୍ରସାର ଘଟିଥିଲା । ପୁନରାୟ ଏହି ଅଞ୍ଚଳ ୩୦.୪.୧୯୬୨ରେ ମଧ୍ୟପ୍ରଦେଶକୁ ସ୍ଥାନାନ୍ତରିତ ହେଲେ ମଧ୍ୟ ଓଡ଼ିଆ ରାଜଭାଷା ଥିଲା । ବଙ୍ଗ ପ୍ରଦେଶର ଓଡ଼ିଶା ଡିଭିଜନ ମଧ୍ୟରେ ଥିବା ମେଦିନୀପୁର ଆଉ ବାଙ୍କୁଡ଼ା ଅଞ୍ଚଳ ୧୮୪୦ ସାଲରେ ବଙ୍ଗ ପ୍ରଦେଶର ବର୍ଦ୍ଧମାନ ଡିଭିଜନକୁ ହସ୍ତାନ୍ତରିତ ହେଲା । ମାତ୍ର ତିରିଶି ବର୍ଷ ମଧ୍ୟରେ ୧୮୭୦ ବେଳକୁ ଏହି ସୁବିଶାଳ ଓଡ଼ିଆଭାଷୀ ଅଂଚଳଟି ବଂଗଳାଭାଷୀ ଅଂଚଳରେ ପରିଣତ ହୋଇଗଲା । ଦକ୍ଷିଣରେ ଯେଉଁ ଓଡ଼ିଆଭାଷୀ ଅଂଚଳ ରାଜମହେନ୍ଦ୍ରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା, କ୍ରମେ ସଂକୁଚିତ ହୋଇଆସିଲା ବିଶାଖାପାଟନମ୍ ପର୍ଯ୍ୟନ୍ତ । ଓଡ଼ିଶାର ଦକ୍ଷିଣାଞ୍ଚଳ ୧୭୬୮ ବେଳକୁ ଇଂରେଜ ଅଧିକାର ସତ୍ତ୍ୱେ ଏ ଅଞ୍ଚଳର ଓଡ଼ିଆ ରାଜାମାନେ ଇଂରେଜ ସରକାରଙ୍କର ବଶ୍ୟତା ସ୍ୱୀକାର ନକରି କ୍ରମାଗତଭାବେ ବିଦ୍ରୋହ ଚାଲୁ ରଖିଥିଲେ । ଏହି ବିଦ୍ରୋହକୁ ପ୍ରତିହତ କରିବାପାଇଁ ଇଂରେଜମାନେ ତେଲ୍‌ଗୁଭାଷୀ ଲୋକଙ୍କୁ ସୈନ୍ୟବାହିନୀରେ ନିଯୁକ୍ତ କରି ଏ ଅଂଚଳକୁ ପ୍ରେରଣ କରୁଥିଲେ । ଇଂରେଜ ଶାସନ କାଳରେ ୧୭୮୯ଠାରୁ ୧୭୯୨ ପର୍ଯ୍ୟନ୍ତ ଯେଉଁ ଭୟାବହ ପାଞ୍ଚମଣିଆ କାନ୍ତର ବା ଦୁର୍ଭିକ୍ଷ ପଡ଼ିଲା ସେଥିରେ ବହୁ ଜନକ୍ଷୟ ହେବା ସଂଗେସଂଗେ ଅଧିକାଂଶ ଅଧିବାସୀ ପଶ୍ଚିମାଞ୍ଚଳର ଗଡ଼ଜାତକୁ ଚାଲିଗଲେ । ତେଣୁ ୧୮୦୦ ସାଲ ବେଳକୁ ଗଞ୍ଜାମ (ସିକାକୋଲ ସମେତ)ର କଲେକ୍ଟର ମିଷ୍ଟର ବ୍ରାଉନ ଲେଖିଛନ୍ତି ଯେ, ସମଗ୍ର ଅଂଚଳଟି ଜନଶୂନ୍ୟତାର ଶେଷ ପର୍ଯ୍ୟାୟରେ ପହଞ୍ଚିଥିଲା । ଏହି ଜନଶୂନ୍ୟ ଅଂଚଳରେ ଆନ୍ଧ୍ର ଅଂଚଳରୁ ଆଗତ ସୈନ୍ୟବାହିନୀ, ରାଜକର୍ମଚାରୀ ଓ ଜନସାଧାରଣ, ତେଲୁଗୁ ଅଫିସରମାନଙ୍କ ସହାୟତାରେ ବସତି ସ୍ଥାପନକରି ଜମିସବୁ ଅଧିକାର କଲେ । ଏହାଛଡ଼ା ଜନଗଣନାରେ ଓଡ଼ିଆ ଅଧିବାସୀମାନଙ୍କୁ ତେଲୁଗୁ ଭାବରେ ଚିହ୍ନିତ କରାଗଲା ଫଳରେ ଓଡ଼ିଆଭାଷୀ ଅଞ୍ଚଳ ସଂକୁଚିତ ହୋଇଗଲା । ପଶ୍ଚିମରେ ବସ୍ତର, ରାୟଗଡ଼, ଫୁଲଝର, ଅଂଚଳରେ ହିନ୍ଦୀଭାଷାର ପ୍ରଭାବ ବୃଦ୍ଧିପାଇବାରୁ ଅଳ୍ପ କେତୋଟି ଗଡ଼ଜାତକୁ ଛାଡ଼ିଦେଲେ ଓଡ଼ିଆଭାଷୀ ଅଞ୍ଚଳ ନିଶ୍ଚିହ୍ନ ହେବା ଅବସ୍ଥାକୁ ଆସିଗଲା ।ଏହାଥିଲା ୧୮୮୧ ସାଲରେ ଓଡ଼ିଆଭାଷୀ ଅଂଚଳର ପରିସ୍ଥିତି ।

ସେତେବେଳେ ଦେଶପ୍ରାଣ ମଧୁସୂଦନ ଦାସ ଓଡ଼ିଶାକୁ ଫେରି ଆସି ଏହି ପରିସ୍ଥିତିର ମୁକାବିଲା କରିବାପାଇଁ ୧୮୮୨ ସାଲରେ ଉତ୍କଳସଭା ଗଠନ କଲେ । ଏହାପରେ କ୍ରମାଗତ ଭାବରେ ଦାବି ଉପସ୍ଥାପନା କଲେ, ସମସ୍ତ ଓଡ଼ିଆ ଭାଷୀ ଅଂଚଳକୁ ମିଶ୍ରଣ କରି ଏକ ଶାସନର ପରିସର ମଧ୍ୟରେ ରଖିବାପାଇଁ ।

ଓଡ଼ିଶା ଇତିହାସର ଧାରା ସୂଚାଇ ଦିଏ ଯେ କେତେ ଶତାବ୍ଦୀର ଘଟଣା ପ୍ରବାହ ପରେ ଉତ୍କଳ ସହିତ ଦକ୍ଷିଣ କୋଶଳର ମିଶ୍ରଣ ହେଲା । ଦଶମ ଶତାବ୍ଦୀରେ ଯଯାତି କେଶରୀଙ୍କଦ୍ୱାରା ଏବଂ ଦ୍ୱାଦଶ ଶତାବ୍ଦୀରେ ଚୋଡ଼ଗଂଗଙ୍କଦ୍ୱାରା କଳିଂଗ ମିଶ୍ରିତ ଥିଲା ସମନ୍ୱିତ ଉତ୍କଳ କୋଶଳ ଖଣ୍ଡରେ । ଏହାପରେ ଅମିତ କ୍ଷମତାଶାଳୀ ଓଡ଼ିଶା ଭୂଖଣ୍ଡର ସୃଷ୍ଟି ହେଲା । ତାହା ପୁଣି ଇତିହାସର ଧାରା ପ୍ରବାହରେ ଅଲଗା ଅଲଗା ତିନିଖଣ୍ଡ ହୋଇ ବଂଗଳା, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ବିଚ୍ଛିନ୍ନ ହୋଇ ରହିଗଲା; ବ୍ରିଟିଶ ଶାସନ କାଳରେ । ଏହାର ପୁନଃ ମିଶ୍ରଣର ଲାଗି ଦାୟିତ୍ୱ ପଡିଲା ମଧୁସୂଦନଙ୍କର ଉପରେ । ତାଙ୍କର ଆବିର୍ଭାବ ଏ ଜାତିର ଉଦ୍ଧାର ଲାଗି ଯେପରି ବିଧି ନିର୍ଦ୍ଦିଷ୍ଟ ଥିଲା । ଇତିହାସର ଗତିଧାରା ପୁଣି ତ୍ୱରାନ୍ୱିତ ହେଲା ୧୮୯୯ ସାଲରେ । ପ୍ରତ୍ନତତ୍ତ୍ୱ ଓ ସଂସ୍କୃତିରେ ରୁଚି ରଖିଥିବା ଅଭିଜାତ ପୁରୁଷ ଲର୍ଡ଼ କର୍ଜନ ଭାରତରେ ବଡ଼ଲାଟ ପଦରେ ଅଧିଷ୍ଠିତ ହେଲେ । ମଧୁସୂଦନଙ୍କର ସିମିଲାଠାରେ ୧୯୦୦ ସାଲର ଅକ୍ଟୋବର ଦ୍ୱିତୀୟ ସପ୍ତାହରେ ଲର୍ଡ଼ କର୍ଜନଙ୍କର ସହିତ ବ୍ୟକ୍ତିଗତ ସାକ୍ଷାତ ଓ ଦାବି ଉପସ୍ଥାପନ ପରେ ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ପ୍ରସଙ୍ଗ ଉଜ୍ଜ୍ୱଳ ହୋଇ ଉଠିଲା । ଏହାର ପୃଷ୍ଠଭୂମିରେ ଥିଲା ମଧୁସୂଦନଙ୍କର ବଳିଷ୍ଠ ଉପସ୍ଥାପନା ଓ ଲର୍ଡ କର୍ଜନଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ।

ରିସ୍‌ଲେ ସର୍କୁଲାରକୁ ଆଧାର କରି ୧୯୦୫ରେ ମଧ୍ୟପ୍ରଦେଶରୁ ସମ୍ବଲପୁର ଜିଲ୍ଲା ଏବଂ କଳାହାଣ୍ଡି, ବଲାଙ୍ଗୀର, ସୋନପୁର, ବାମଣ୍ଡା, ରେଢ଼ାଖୋଲ, ବିହାରର ଗାଂଗପୁର ବଣାଇ ସମେତ ପଶ୍ଚିମାଞ୍ଚଳର ଗଡ଼ଜାତ ସମୂହ ବଙ୍ଗପ୍ରଦେଶର ଓଡ଼ିଶା ଡିଭିଜନରେ ସାମିଲ୍ ହେଲା । ଏହା ଥିଲା ଦେଶ ମିଶ୍ରଣ ଆନ୍ଦୋଳନର ପହିଲି ସଫଳତା । ମାତ୍ର ମାନ୍ଦ୍ରାଜ ସରକାରଙ୍କର ଦୃଢ଼ ପ୍ରତିବାଦଯୋଗୁଁ ଦକ୍ଷିଣର ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ସମ୍ଭବପର ହୋଇ ପାରି ନଥିଲା । ୧୯୦୬ରେ ବାଲେଶ୍ୱରରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ସଭାମଞ୍ଚରେ ମଧୁବାବୁ ଉଦ୍‌ବୋଧନ ଦେଇ କହିଥିଲେ- "ଉତ୍କଳ ଜନନୀର ତିନିପୁତ୍ର ମଧ୍ୟରୁ ତାହାର ପୀଡ଼ା ସମୟରେ ଦୁଇପୁତ୍ର ମୃତ୍ୟୁ ଶଯ୍ୟା ପାଖରେ ଉପସ୍ଥିତ । ଅନ୍ୟ ଏକ ପୁତ୍ର (ଗଂଜାମବାସୀ) ଅନେକ ଦୂରରେ ଥିବାରୁ ଜନନୀ ତାହାକୁ ପାଖରେ ନଦେଖି ବିଶେଷ କଷ୍ଟବୋଧ କରୁଅଛି । ସେହି ଦୂରବର୍ତ୍ତୀ ପୁତ୍ର ମାତୃସେବା କରି ନପାରି ବିଶେଷ ଭାବେ ଦୁଃଖିତ ।"

ଏହାପରେ ସମସ୍ତ ଆନ୍ଦୋଳନ ଓ ପ୍ରତିବାଦ ସତ୍ତ୍ୱେ ଦୀର୍ଘ ବାଇଶି ବର୍ଷ ବିତିଯାଇଛି କେବଳ ପ୍ରତୀକ୍ଷାରେ । ମାତ୍ର ୧୯୨୮ ସାଲରେ ମଧୁସୂଦନଙ୍କର ନିର୍ଦ୍ଦେଶରେ ପାଟଣାଠାରେ ସାଇମନ କମିଶନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପରେ ପ୍ରଦେଶ ଗଠନର ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଥିଲା । ଏହାପରେ ଅଟଲି ସବକମିଟି (୧୯୩୦), ଓଡ଼ନେଲ କମିଟି (୧୯୩୧), ଓଡ଼ିଶା ପ୍ରାଶାସନିକ

କମିଟି ୧୯୩୩ ଜରିଆରେ ଓଡ଼ିଶା ପ୍ରଦେଶର ରୂପରେଖ ନିର୍ଦ୍ଧାରିତ ହୋଇ ଗଂଜାମର ମିଶ୍ରଣକୁ ସ୍ୱୀକୃତି ଦିଆଯାଇଥିଲେ ମଧ୍ୟ ପାରଳା ଖେମୁଣ୍ଡି ଓ ଜୟପୁର ଜମିଦାରିର ମିଶ୍ରଣ ସଂପର୍କରେ କୌଣସି ନିର୍ଦ୍ଦେଶନାମା ପ୍ରକାଶ ପାଇ ନଥିଲା । ମଧୁସୂଦନଙ୍କର ପରାମର୍ଶରେ ୧୯୩୧ ଓ ୧୯୩୩ ସାଲରେ ପାରଳା ମହାରାଜାଙ୍କର ତିନିଥର ଲଣ୍ଡନ ଯାତ୍ରା ସହିତ ଗୋଲଟେବୁଲ୍ ବୈଠକରେ ଦୃଢ଼ଦାବୀ ଉପସ୍ଥାପିତ ହେଲା । ଖଲ୍ଲିକୋଟ ରାଜା ଓ ଭୁବନାନନ୍ଦ ଦାସ ମଧ୍ୟ ଗୋଲଟେବୁଲ୍ ବୈଠକରେ ଯୋଗଦେଇ ୧୯୩୨ ଓ ୧୯୩୩ରେ ଦୃଢ଼ ଦାବି ଜଣାଇଲେ । ଫଳରେ ଜୟପୁର ଓ ପାରଳାଖେମୁଣ୍ଡି ସମେତ ଗଂଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରଦେଶରୁ, ଖରିଆର ଜମିଦାରି ମଧ୍ୟପ୍ରଦେଶରୁ ଆସି ଓଡ଼ିଶା ଭୂଖଣ୍ଡ ସହିତ ମିଶି ନୂତନ ଓଡ଼ିଶା ପ୍ରଦେଶ ଗଠନ (୧୯୩୬) ସମ୍ଭବହେଲା ଏବଂ ମଧୁସୂଦନଙ୍କର ଜୀବନବ୍ୟାପୀ ବିରାମହୀନ ସଂଗ୍ରାମର ସ୍ୱପ୍ନ ସାର୍ଥକତା ଲାଭକଲା । ଏହି ଦେଶ ମିଶ୍ରଣ ଆନ୍ଦୋଳନରେ ଯେଉଁମାନେ ଅକୁଣ୍ଠ ଯୋଗଦାନ କରିଥିଲେ, ସେମାନଙ୍କ ମଧ୍ୟରେ ଅଛନ୍ତି ପାରଳା ମହାରାଜ ବ୍ରଜ ସୁନ୍ଦର ଦାସ, ଉତ୍କଳମଣି ଗୋପବଂଧୁ, ପଣ୍ଡିତ ନୀଳକଣ୍ଠ, ଭୁବନାନନ୍ଦ ଦାସ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, କବି ଗଂଗାଧର, ଧରଣୀଧର ମିଶ୍ର, ଶଶିଭୂଷଣ ରଥ, ଦିବାକର ପଟ୍ଟନାୟକ, ଖଲ୍ଲିକୋଟର ରାଜା ସାହେବ ପ୍ରମୁଖ ।

ମଧୁସୂଦନ ଓଡ଼ିଆ ଜାତିର ଅଗ୍ରଦୂତ ଥିଲେ ମଧ୍ୟ ସେ ଥିଲେ ଭାରତୀୟ ଜାଗରଣର ଅଗ୍ର ବ୍ୟକ୍ତିତ୍ୱ । ତାଙ୍କର କାର୍ଯ୍ୟକ୍ଷେତ୍ର ଥିଲା ସମଗ୍ର ଦେଶର ପରିସର । ୧୮୯୬ଠାରୁ ୧୯୨୩ ସାଲ ପର୍ଯ୍ୟନ୍ତ ସେ ଥିଲେ ବଂଗ, ବିହାର, ଓଡ଼ିଶା ଏବଂ ଇମ୍ପେରିୟାଲ୍ ବ୍ୟବସ୍ଥାପକ ସଭାର ଜଣେ ମର୍ଯ୍ୟାଦାପୂର୍ଣ୍ଣ ସଭ୍ୟ । ତାଙ୍କର ପ୍ରଖର ବୁଦ୍ଧିମତ୍ତା ଓ ଜ୍ୱାଳାମୁଖୀ ଭାଷଣଯୋଗୁଁ ବିତର୍କର ଝଡ଼ ସୃଷ୍ଟିହେଉଥିଲା । ଚିନ୍ତା ଓ ଚେତନାରେ ସେ ଥିଲେ ଜଣେ ଦୂରଦ୍ରଷ୍ଟା ଓ କ୍ରାନ୍ତିକାରୀ ଦିଗ୍‌ଦର୍ଶକ । ତାଙ୍କର କାର୍ଯ୍ୟଧାରାକୁ ଅନ୍ୟମାନେ ଆଗ୍ରହର ସହ ଅନୁସରଣ କରୁଥିଲେ ।

୧)ଭାଷା ସୂତ୍ରରେ ପ୍ରଦେଶ ଗଠନ କରିବାର ସେ ଥିଲେ ଆଦ୍ୟ ପ୍ରବର୍ତ୍ତକ । ଏହାକୁ ଆଧାର କରି ସ୍ୱାଧୀନ ଭାରତରେ ସୃଷ୍ଟି ହୋଇଥିଲା ଭାଷାଭିତ୍ତିକ ପ୍ରଦେଶ ଗଠନର ପରଂପରା ।

୨) ତାଙ୍କ ପ୍ରଚେଷ୍ଟା ଫଳରେ ଭାରତୀୟ ନାରୀମାନେ ପାଇଥିଲେ ଆଇନଜୀବୀ ବୃତ୍ତିଗ୍ରହଣର ଯୁଗାନ୍ତକାରୀ ଅଧିକାର ।

୩) ସେ ଥିଲେ ସାରାଦେଶର ସ୍ୱଦେଶୀ ଶିଳ୍ପ ଆନ୍ଦୋଳନର ପଥ ପ୍ରଦର୍ଶକ । ତାରକସି ଶିଳ୍ପର ପୁନଃପ୍ରତିଷ୍ଠା (୧୮୯୬), ଲଣ୍ଡନଠାରେ ସ୍ୱଦେଶୀ ଶିଳ୍ପ ପ୍ରଦର୍ଶନୀ (୧୮୯୭), ଉତ୍କଳ ଟ୍ୟାନେରି ପ୍ରତିଷ୍ଠା (୧୯୦୫ )ଆଦି ତାଙ୍କର ଅମର କୃତି ।

୪) ମହାତ୍ମାଗାନ୍ଧୀଙ୍କ ପରିକଳ୍ପିତ ଅର୍ଥନୈତିକ ଓ ସାମାଜିକ କାର୍ଯ୍ୟକ୍ରମଗୁଡ଼ିକୁ ତାଙ୍କର ବହୁପୂର୍ବରୁ ଓଡ଼ିଶାର ମାଟିରେ ତାଙ୍କର ରୂପାୟନ । ସ୍ୱଦେଶୀ ଗ୍ରାମ୍ୟଶିଳ୍ପ ଆନ୍ଦୋଳନ (୧୮୯୬), ଲବଣ କର ହ୍ରାସ ଓ ଉତ୍ପାଦନର ସଂରକ୍ଷଣ (୧୮୯୬), ଅସ୍ପୃଶ୍ୟତା ନିବାରଣ, ହିନ୍ଦୁ ମୁସଲମାନ ଏକତା (୧୮୮୮), ତନ୍ତଶିଳ୍ପର ଉନ୍ନୟନ (୧୯୦୫), ଚରଖାର ପ୍ରଚଳନ ଓ ପ୍ରସାର

(୧୯୦୭), କୃଷକର ଅଧିକାର ଓ ପ୍ରଜାସ୍ୱତ୍ୱ ସଂରକ୍ଷଣ (୧୯୧୨) । ଏଥିପାଇଁ ମହାତ୍ମାଗାନ୍ଧୀଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ ମଧୁସୂଦନ ଦାସ ।

୫) ଶ୍ରୀ ଜଗନ୍ନାଥ ମନ୍ଦିରର ପରିଚାଳନାକୁ କରଗତ କରିବାପାଇଁ ଇଂରେଜମାନଙ୍କ ଚକ୍ରାନ୍ତକୁ ଆଇନଗତ ସଂଗ୍ରାମ(୧୮୮୭) ରେ ପ୍ରତିହତ ସାଙ୍ଗକୁ ଗଜପତି ବଂଶର ସାଂସ୍କୃତିକ ଧାରାର ସଂରକ୍ଷଣ ।

୬) କୋଣାର୍କ ଏବଂ ଭୁବନେଶ୍ୱରର କଳା ଓ ଭାସ୍କର୍ଯ୍ୟସଂପନ୍ନ ଜୀର୍ଣ୍ଣ ମନ୍ଦିରଗୁଡିକର ସଂରକ୍ଷଣ (୧୯୦୦-୧୯୦୫) । ଏଥିଯୋଗୁ ଭାସ୍କର୍ଯ୍ୟ ଓଚାରୁକଳା କ୍ଷେତ୍ରରେ ଓଡ଼ିଶା ବିଶ୍ୱରେ ସମ୍ମାନିତ ।

୭) ମନ୍ତ୍ରୀପଦର ଅବୈତନିକତା ଦାବିରେ ଇସ୍ତଫା ପ୍ରଦାନ କରି ଭାରତୀୟ ଗଣତାନ୍ତ୍ରିକ ଧାରାରେ ଗୌରବୋଜ୍ଜ୍ୱଳ ପରଂପରା ସୃଷ୍ଟି । ବିଶ୍ୱାସ ହରାଇଥିବା ନିର୍ବାଚିତ ପ୍ରତିନିଧିମାନଙ୍କ ପ୍ରତ୍ୟାହାର ପ୍ରସଙ୍ଗରେ ଏକ ପ୍ରଗତିଶୀଳ ଚିନ୍ତାଧାରାର ମାର୍ଗଦର୍ଶକ ।

୮) ପାର୍ଲାମେଣ୍ଟାରୀୟ ଗଣତାନ୍ତ୍ରିକ ଧାରାର ପ୍ରତିଶ୍ରୁତିବଦ୍ଧ ସଂରକ୍ଷକ ।

୯) ନିଖିଳ ଭାରତ ଖ୍ରୀଷ୍ଟିୟାନ୍ ସମ୍ମିଳନୀର ଅଧ୍ୟକ୍ଷ ପଦ (୧୯୧୬-୧୮)କ୍ରମାଗତ ଭାବେ ଦୁଇଟି ବାର୍ଷିକ ଅଧିବେଶନରେ ଅଳଂକୃତ କରି ସର୍ବଭାରତୀୟ ମାନ୍ୟତାର ଅଧିକାରୀ ।

୧୦) ମଧୁସୂଦନଙ୍କର ଜୀବନର ଶେଷ ଅର୍ଦ୍ଧଶତାବ୍ଦୀ ଧରି ଓଡ଼ିଶାରେ ଯେତେ ଅନୁଷ୍ଠାନ ଗଢ଼ିଉଠିଥିଲା, ସମସ୍ତ ହିଁ ଥିଲା ତାଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଚେଷ୍ଟାର ଫଳ, ଯାହା ଓଡ଼ିଶାର ସମୃଦ୍ଧି ଓ ବିକାଶ ଲାଗି ଅଭିପ୍ରେତ ଥିଲା । (ବିଶ୍ୱନାଥ ଦାସ)

୧୧) ଦୁର୍ଗତଙ୍କ ସେବା (୧୮୮୫)ସହିତ ବନ୍ୟା ଦୁର୍ଗତ ଓ ମରୁଡ଼ି ପ୍ରପୀଡ଼ିତ ଲୋକଙ୍କ କ୍ଷୟକ୍ଷତି ସଂପର୍କରେ ସରକାରଙ୍କ ଦୃଷ୍ଟି ଆକର୍ଷଣ । ଏ କ୍ଷେତ୍ରରେ ବ୍ରିଟିଶ ସାମ୍ବାଦିକ ନାଭିନ୍‌ସନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

୧୨) କୃଷିଭିତ୍ତିକ ପାଠ୍ୟକ୍ରମର ସଂଯୋଜନା (୧୮୯୬) ସାଙ୍ଗକୁ କୃଷକର ଅଧିକାର ଓ ସ୍ୱତ୍ୱର ସୁରକ୍ଷା ଲାଗ ପ୍ରଜା ପରିଷଦ (୧୯୦୯)ଗଠନ । ବଂଗ ବ୍ୟବସ୍ଥାପକ ସଭାରେ ନ୍ୟସ୍ତସ୍ୱାର୍ଥ ଜମିଦାରି ଗୋଷ୍ଠୀର ପ୍ରରୋଚନାରେ ଉପସ୍ଥାପିତ ଶୋଷଣଭିତ୍ତିକ ପ୍ରଜା ସ୍ୱତ୍ୱ ବିଲ୍‌ର ବିରୋଧ,ଯାହା ଭାରତୀୟ ସାଂବିଧାନିକ ଇତିହାସରେ ଏକ ବ୍ୟତିକ୍ରମ।

୧୩)ଉତ୍କଳ ସମ୍ମିଳନୀ ଅଧିବେଶନରେ ୧୯୦୩ ଠାରୁ ସମସ୍ତ ସାଂସ୍କୃତିକ ତଥା ଅର୍ଦ୍ଧ ବେସରକାରୀ ଅନୁଷ୍ଠାନରେ ଅଗ୍ରାଧିକାର ଭିତ୍ତିରେ ଓଡ଼ିଆ ଭାଷାର ବ୍ୟବହାର ଉପରେ ପ୍ରାଧାନ୍ୟ । ସେ ସମୟର ଇଂରେଜ ପ୍ରଭାବିତ ଯୁଗରେ, ତାହାକୁ ଅନ୍ୟ ରାଜ୍ୟର ଚିନ୍ତାଶୀଳ ବ୍ୟକ୍ତିମାନେ ଗଭୀର ବିସ୍ମୟତାର ସହ ଅନୁଧ୍ୟାନ କରି, ମଧୁସୂଦନଙ୍କର ଏହି କାର୍ଯ୍ୟକୁ ଦିଗ୍‌ଦର୍ଶକର ମାନ୍ୟତା ପ୍ରଦାନ କରିଥିଲେ ।

୧୪) ମଧୁସୂଦନ ଥିଲେ ଏ ଜାତିର ପ୍ରଥମ ଓଡ଼ିଆ ଏମ୍.ଏ, ପ୍ରଥମ ଆଡ୍‌ଭୋକେଟ୍, ୟୁରୋପ

ପରିଦର୍ଶନରେ ପ୍ରଥମ ଓଡ଼ିଆ, ବଡ଼ଲାଟ ଆଉ ପ୍ରାଦେଶିକ ବ୍ୟବସ୍ଥାପକ ସଭାର ପ୍ରଥମ ଓଡ଼ିଆ ସଭ୍ୟ, ପ୍ରଥମ ଓଡ଼ିଆ ମଂତ୍ରୀ ଓ ମଂତ୍ରିତ୍ୱ ତ୍ୟାଗ କରିବାରେ ପ୍ରଥମ ଭାରତୀୟ । ସେ ମଧ୍ୟ ଥିଲେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଓଡ଼ିଆ ସଭ୍ୟ (୧୮୮୬-୧୯୦୧), ସବୁଥିରେ ପ୍ରଥମ ଓଡ଼ିଆ, ମଧୁସୂଦନ ତାଙ୍କର ପ୍ରଚଣ୍ଡ ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱ ଘେନି ଭାରତର ରାଜନୈତିକ ଆକାଶକୁ ଉଦ୍‌ଭାଷିତ କରିଥିଲେ ଏକ ଜ୍ୟୋତିଷ୍ମାନ୍ ତାରକା ପରି ।

ମଧୁସୂଦନଙ୍କର ଆବିର୍ଭାବ ହୋଇଥିଲା ଓଡ଼ିଶା ଇତିହାସର ଏକ ତିମିରାଚ୍ଛନ୍ନ ଅଧ୍ୟାୟରେ, ଯେଉଁ ସମୟରେ ତୀବ୍ର ଶୋଷଣର ଜ୍ୱାଳା ଓ ପରିସ୍ଥିତିର ଦ୍ରୁତ ଅବକ୍ଷୟ ମଧ୍ୟରେ ଓଡ଼ିଶାର ସମସ୍ତ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ସବୁ ଭୁଶୁଡ଼ି ପଡିଥିଲା । ଏହାର ବିରୋଧରେ ଦୃଢ଼ ପ୍ରତିବାଦର ସ୍ୱର ଉତ୍ତୋଳନ କରିବାକୁ ଯେପରି କ୍ଷମତା ହରାଇ ବସିଥିଲା ଏ ଜାତି । ଏହି ସମୟର ଦୃଶ୍ୟପଟରେ ଉଭାହେଲେ ମଧୁସୂଦନ ଓ ଆତ୍ମପ୍ରତ୍ୟୟହୀନ ସହସ୍ର ଭୁଜାଙ୍କର ବାହୁରେ ଭରିଦେଇଥିଲେ ଅଫୁରନ୍ତ ଶକ୍ତି ଆଉ ଉଚ୍ଚସ୍ୱରରେ ପ୍ରତିବାଦ କରିବାର ଅଦ୍‌ଭୁତ କ୍ଷମତା । ତେଣୁ ଉତ୍କଳ ସମ୍ମିଳନୀ, ଛାତ୍ର ସମ୍ମିଳନୀ ଆଦି ଜାଗରଣର ଯେଉଁ ମଂଚ ମଧୁସୂଦନ ସୃଷ୍ଟି କରିଥିଲେ, ତାହାରି ଉପରୁ ସେନାନୀମାନେ ଲକ୍ଷ୍ୟ କରିଥିଲେ ଦେଶ ମିଶ୍ରଣ ଆନ୍ଦୋଳନର ସଂଗ୍ରାମ କ୍ଷେତ୍ରକୁ ଓ ପରବର୍ତ୍ତୀ କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କ ପରିଚାଳିତ କଂଗ୍ରେସର ଅସହଯୋଗ ଆନ୍ଦୋଳନକୁ । ତେଣୁ ଓଡ଼ିଆ ମଧୁସୂଦନଙ୍କ ନେତୃତ୍ୱରେ ପାଇଥିଲା ଏକ ସ୍ୱତନ୍ତ୍ର ସ୍ୱୀକୃତି । ପଣ୍ଡିତ ନେହେରୁ ମଧୁସୂଦନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ କହିଛନ୍ତି, ମଧୁସୂଦନ ଥିଲେ କେବଳ ଓଡ଼ିଶାର ନୁହେଁ, ଭାରତର ଜଣେ ବିଶାଳ ବ୍ୟକ୍ତିତ୍ୱ ।'

ଆଉ ଫକୀରମୋହନ ତାଙ୍କର ଅନ୍ତରର ଆବେଗରେ ମଧୁସୂଦନଙ୍କୁ ସମ୍ବୋଧିତ କରି କହିଛନ୍ତି:-

''ତୁମ୍ଭର ଚରିତ୍ର ଓ ଇତିହାସ<br>
　　　　ପାଉନାହିଁ ଭାଷା କରେ ପ୍ରକାଶ<br>
ଯେତେଦିନ ଥିବ ଉତ୍କଳ ଜାତି<br>
　　　　ଯାବତ ଚନ୍ଦ୍ରାର୍କେ ରଟିବ ଖ୍ୟାତି ।''



# ଭାଷା ସଂଗ୍ରାମ ଓ ନୂତନ ଓଡ଼ିଶାର ଶତାବ୍ଦୀ ସମାରୋହ

ସମଗ୍ର ଭାରତରେ ଓଡ଼ିଶା ପ୍ରଥମ ଭାଷାଭିତ୍ତିକ ରାଜ୍ୟ ରୂପରେ ଯେଉଁ ମାନ୍ୟତା ଲାଭ କରିଛି ତାହାର ପଶ୍ଚାତରେ ରହିଛି ବହୁ ସଂଗ୍ରାମର ଗାଥା । ଓଡ଼ିଶା ମାଟିରେ ବିଦେଶୀ ଉପନିବେଶବାଦୀ ଚକ୍ରାନ୍ତରେ ଓଡ଼ିଆ ଭାଷା ବିପର୍ଯ୍ୟସ୍ତ ହୋଇଥିଲା । ଏଥିପାଇଁ ବହୁବାର ଯେଉଁ ଓଡ଼ିଆ ଭାଷାସୁରକ୍ଷା ସଂଗ୍ରାମ ସଂଚାଳିତ ହୋଇଥିଲା ତାହା ପ୍ରକୃତରେ ଥିଲା ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ଏକ ଆହ୍ୱାନ । ଏହି ପର୍ଯ୍ୟାୟରେ ୧୮୬୭ ସାଲରୁ ୧୮୭୦ ସାଲ ମଧ୍ୟରେ ରାଜେନ୍ଦ୍ର ଲାଲ ମିତ୍ର, ଉମାଚରଣ ହାଲ୍‌ଦାର, ଅଧ୍ୟାପକ ରାଜକୃଷ୍ଣ ମୁଖୋପାଧ୍ୟାୟ କଟକରେ ଏବଂ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ବାଲେଶ୍ୱରରେ ଓଡ଼ିଆ ଭାଷା ଉପରେ ଆକ୍ରମଣର ଯେଉଁ ଅଭିଯାନ ଆରମ୍ଭ କରିଥିଲେ, ତା' ବିରୋଧରେ ସଂଗ୍ରାମର ମୁଖ୍ୟ ସେନାପତି ଦ୍ୱୟ ଥିଲେ ଗୌରୀଶଙ୍କର ଆଉ ଫକୀରମୋହନ । ମାତ୍ର ଏହି ବିକ୍ଷୁବ୍ଧ ଅବସ୍ଥାର ପରିସମାପ୍ତି ଘଟିଥିଲା ଭାଷାବିତ୍ କଲେକ୍ଟର ବିମ୍‌ସ ସାହେବ ଓ ଓଡ଼ିଆ ପ୍ରାଣ କମିଶନର ରେଭେନ୍‌ସା ସାହେବଙ୍କ ଦୃଢ଼ ପଦକ୍ଷେପ ଫଳରେ । ତେବେ ଭାଷା ସଂଗ୍ରାମର ଯେଉଁ ତୁରନ୍ତ ଓ ତୁମୁଳ ଯୁଦ୍ଧଟି ଯୁଝାଯାଇଥିଲା ପଶ୍ଚିମାଞ୍ଚଳର ମାଟିରେ, ତାହାର ପଟାନ୍ତର ନାହିଁ ।

ସମ୍ବଲପୁର ଅଂଚଳ ଖାସ୍ ବ୍ରିଟିଶ ଶାସନକୁ ଆସିଲା ୧୮୪୯ ସାଲରେ । ଏବଂ କାଳକ୍ରମେ ଏହି ଜିଲ୍ଲାଟି ଓଡ଼ିଶା ଡିଭିଜନକୁ ଆସିଥିଲା ୧୮୬୦ ସାଲରେ । ମାତ୍ର ବର୍ଷକ ପରେ ୧୮୬୧ ସାଲରେ ଏହା ନୂତନ ଭାବରେ ଗଠିତ ମଧ୍ୟପ୍ରଦେଶର ଶାସନାଧୀନ ହୋଇଥିଲେ ମଧ୍ୟ ଜନଗଣଙ୍କର ବଳିଷ୍ଠ ଆବେଦନ ଫଳରେ, ଏ ଜିଲ୍ଲାର ଏକମାତ୍ର ସରକାରୀ ଭାଷାଥିଲା 'ଓଡ଼ିଆ' । ଏଣେ ମଧ୍ୟପ୍ରଦେଶର ଅନ୍ୟ ସମସ୍ତ ଜିଲ୍ଲାରେ ପ୍ରାଶାସନିକ ଭାଷା ଥିଲା ହିନ୍ଦୀ । ସମ୍ବଲପୁର ସହର

୧୮୯୩ ସାଲରେ ଝାରସୁଗୁଡ଼ା ସହିତ ରେଳପଥଦ୍ୱାରା ସଂଯୁକ୍ତ ହେବାପରେ, ମଧ୍ୟପ୍ରଦେଶ ସରକାର ସମ୍ବଲପୁର ଜିଲ୍ଲାରେ ହିନ୍ଦୀ ଭାଷାର ପ୍ରଚଳନ ସହିତ ପ୍ରାଶାସନିକ କ୍ଷେତ୍ରରେ ଓଡ଼ିଆ ଭାଷାର ଉଚ୍ଛେଦପାଇଁ ସଂକଳ୍ପବଦ୍ଧ ଥିଲେ । ଏଥିରେ ଗଭୀରଭାବେ ମର୍ମାହତ ହୋଇ ତୀବ୍ର ଅନ୍ତର୍ଦାହର ତାଡ଼ନାରେ 'ଭାରତୀ ରୋଦନ' ଶୀର୍ଷକ ଏକ କବିତାରେ ଗଂଗାଧର ମେହେର ୩୦.୧୦.୧୮୯୪ରେ 'ସମ୍ବଲପୁର ହିତୈଷିଣୀ'ରେ ଲେଖିଥିଲେ-

''ହିନ୍ଦୀ ସରସ୍ୱତୀ ମୋ ଛାତିରେ ବସି
କରିବ ପରା ରାଜତ୍ୱ
ମୋ ଆଶା କାନନ ଭସ୍ମରାଶି ହେବ
ତା ନବ ଉଦ୍ୟାନେ ଖତ ।''

ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀକୁ ପ୍ରାଶାସନିକ ଭାଷାର ମର୍ଯ୍ୟାଦା ଦିଆ ଯାଇଥିଲା ୧୮୯୫ଜାନୁଆରି ୧୫ତାରିଖର ୨୩୭ ନମ୍ବର ଆଦେଶରେ ।ଏହି ଆଦେଶ ଦେଇଥିଲେ ମଧ୍ୟପ୍ରଦେଶର ଚିଫ୍ କମିଶନର ଉଡ଼ବର୍ଣ୍ଣ । ୨୫ ଜାନୁଆରି ୧୮୯୫ରେ ଚିଫ୍ ସେକ୍ରେଟେରୀଙ୍କଦ୍ୱାରା ଏହା ପ୍ରଚାରିତ ହୋଇଥିଲା । ଏହି ନିଦାରୁଣ ଆଦେଶଟି ପ୍ରକାଶିତ ହେବା ପରେ ଜନମାନସରେ ବିସ୍ଫୋରଣ ସୃଷ୍ଟି ହୋଇଥିଲା ଏବଂ କ୍ରମାଗତ ଭାବେ 'ସମ୍ବଲପୁର ହିତୈଷିଣୀ'ର ପୃଷ୍ଠାମାନଙ୍କରେ ପ୍ରତିବାଦ ପତ୍ର, ବିଦ୍ରୋହମୂଳକ କବିତା ତଥା ନିବନ୍ଧମାନ ବହୁ ସଂଖ୍ୟାରେ ପ୍ରକାଶିତ ହେବାକୁ ଲାଗିଲା । ଏହା ଥିଲା ସ୍ୱତଃସ୍ଫୂର୍ତ୍ତ ସାରସ୍ୱତ ପ୍ରତିବାଦ , ଯାହାର ପଶ୍ଚାତରେ ଉଭା ରହିଥିଲେ ବାମଣ୍ଡାର ନରେଶ ସୁଢ଼ଳ ଦେବ ଏବଂ ପତ୍ରିକାର ସମ୍ପାଦକ ନୀଳମଣି ବିଦ୍ୟାରତ୍ନ । ଏଣେ କଟକରୁ ପ୍ରକାଶିତ 'ଉତ୍କଳ ଦୀପିକା'ର ପୃଷ୍ଠାମାନଙ୍କରେ ପ୍ରକାଶିତ ହୋଇଥିଲା ମଧୁସୂଦନ ଦାସଙ୍କର ଭାବଗର୍ଭକ ନିବନ୍ଧମାନ କ୍ରମାଗତ ଭାବେ ୭୦ ପୃଷ୍ଠାର ରଚନାରେ, ଯାହା ଅଚିନ୍ତନୀୟ ଥିଲା ।

ସେହି ୧୮୯୫ ସାଲରେ ଯେଉଁ ଘୋଷଣାନାମାଟି ପ୍ରଚାରିତ ହୋଇ ତୀବ୍ର ଆଲୋଡ଼ନ ସୃଷ୍ଟି କରିଥିଲା, ସେଥିମଧ୍ୟରୁ ଦୁଇଟି ବିଷୟର ଏ ପର୍ଯ୍ୟନ୍ତ ପ୍ରାସଙ୍ଗିକତା ରହିଛି । ପ୍ରଥମଟି ହେଲା, ସମ୍ବଲପୁର ଅଞ୍ଚଳରେ ଶ୍ରୀ ଜଗନ୍ନାଥ ସଂସ୍କୃତିର ପରମ୍ପରା ଅନୁସାରେ ବିଭିନ୍ନ ଗୋଷ୍ଠୀ ଓ ବର୍ଗଙ୍କ ମଧ୍ୟରେ ମହାପ୍ରସାଦ ବସିବା ସହିତ ବନ୍ଧୁତ୍ୱର ଅକାଟ୍ୟ ବନ୍ଧନରେ ଆବଦ୍ଧ ହେବା, ପୋଲିସ୍ ପ୍ରଶାସନ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇଥିଲା । କାରଣ ମହାପ୍ରସାଦ ପରମ୍ପରାରେ ଆବଦ୍ଧ ନିବିଷ୍ଟ ସମାଜ ମଧ୍ୟରେ କୌଣସି ଗୋପନୀୟ ତଥ୍ୟ ଆହରଣ କରି ସେମାନଙ୍କୁ ପ୍ରଶାସନର ଡୋରି ମଧ୍ୟରେ ବାନ୍ଧିବା ସମ୍ଭବପର ହେଉନଥିଲା ବୋଲି ଜଣେ ଉଚ୍ଚପଦସ୍ଥ ପୋଲିସ ଅଧିକାରୀ ଗେଜେଟରେ ତାଙ୍କର ସ୍ୱତନ୍ତ୍ର ଲେଖା ପ୍ରକାଶିତ କରିଥିଲେ । ଓଡ଼ିଆ ଭାଷା ସହିତ ଜଗନ୍ନାଥ ପରମ୍ପରା ଓ ମହାପ୍ରସାଦ ବସିବା ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିବାରୁ ସମ୍ବଲପୁରରୁ ଓଡ଼ିଆ ଭାଷାର ଉଚ୍ଛେଦ ଲାଗି ପ୍ରଶାସନ ଆଗଭର ହୋଇଥିଲା । ସେହି ଓଡ଼ିଆ ଭାଷା ଉଚ୍ଛେଦ ସଂପର୍କୀୟ ଘୋଷଣାନାମାରେ ଉଲ୍ଲେଖ ରହିଥିଲା ଯେ, ସମ୍ବଲପୁରରେ ବ୍ୟବହୃତ ଓଡ଼ିଆ, ମୂଳ

ଓଡ଼ିଆ ଭାଷାର ଅନୁରୂପ ନୁହେଁ । ଏହା ଏକ ପ୍ରକାର ସ୍ଥାନୀୟ ଭାଷା ଯହିଁରେ ହିନ୍ଦୀ ଓ ଛତିଶିଗଡ଼ୀ ଭାଷାର ସବିଶେଷ ମିଶ୍ରଣ ଘଟିଛି । ଲୋକମାନେ ଏହି ଶେଷୋକ୍ତ ଛତିଶିଗଡ଼ୀ ଭାଷା ବୁଝିବାପାଇଁ ବିଶେଷ କଷ୍ଟବୋଧ କରନ୍ତି ନାହିଁ । ତେଣୁ ହିନ୍ଦୀ ଭାଷାର ପ୍ରଚଳନ ସହଜରେ ଆଦୃତ ହେବ । ଅବଶେଷରେ ପ୍ରତ୍ୟେକ କର୍ମଚାରୀଙ୍କର ହିନ୍ଦୀ ଶିଖିବା ବାଧ୍ୟତାମୂଳକ ଥିଲା । ଏହି ଆଦେଶ ବିରୋଧରେ ତୀବ୍ର ଜନଆନ୍ଦୋଳନ କେବଳ ଦେଖା ଦେଇନଥିଲା, ସମ୍ବଲପୁର ଜିଲ୍ଲାରେ, ସଂଲଗ୍ନ ଗଡ଼ଜାତମାନଙ୍କରେ ଏହର ପ୍ରତିକ୍ରିୟା ପରିଲକ୍ଷିତ ହୋଇଥିଲା । ସମ୍ବଲପୁରର ଅଦାଲତ ବିଭାଗର କର୍ମଚାରୀ ବୈକୁଣ୍ଠନାଥ ପାଢ଼ୀ ତତ୍‌କ୍ଷଣାତ୍ ଇସ୍ତଫା ପ୍ରଦାନ କରିଥିଲେ । ପ୍ରଥମ ପ୍ରତିବାଦ ସଭା ୧୧.୨.୧୮୯୫ରେ ବ୍ରହ୍ମପୁର ମନ୍ଦିରରେ ଅନୁଷ୍ଠିତ ହୋଇଥିଲା, ସମ୍ବଲପୁର ଜିଲ୍ଲାର ପ୍ରଥମ ମାଟ୍ରିକୁଲେଟ୍ ଧରଣୀଧର ମିଶ୍ରଙ୍କ ନେତୃତ୍ୱରେ । ୧୩.୬.୧୮୯୫ରେ ସୋମନାଥ ମନ୍ଦିରରେ ସୋମନାଥ ବାବୁଙ୍କର ଅଧ୍ୟକ୍ଷତାରେ ଏକ ବିରାଟ ଜନସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ଭାଷା ସଂକଟ ସଂପର୍କରେ ପ୍ରତିବାଦ ପତ୍ର ମେମୋରାଣ୍ଡମ୍ ଆକାରରେ ଉପସ୍ଥାପିତ କରାଯାଇଥିଲା । ସହର ତଥା ଗ୍ରାମାଞ୍ଚଳମାନଙ୍କରେ କ୍ରମାଗତ ସଭା ହୋଇ ପ୍ରାୟ ୨୩୬୪ ଜଣଙ୍କର ଦସ୍ତଖତ ସଂଗ୍ରହ କରାଯାଇ ୫.୭.୧୮୯୫ରେ ଭାରତର ବଡ଼ଲାଟ ଲର୍ଡ୍ ଏଲଗିନ୍‌ଙ୍କର ଉଦ୍ଦେଶ୍ୟରେ ପ୍ରେରିତ ହୋଇଥିଲା । ଏହି ମେମୋରାଣ୍ଡମ୍‌ରେ ଯେଉଁ ପ୍ରଧାନ ବ୍ୟକ୍ତିମାନେ ଦସ୍ତଖତ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ଗୋକୁଳ ଚନ୍ଦ୍ର ପାଢ଼ୀ, ବାଳମୁକୁନ୍ଦ ପରିଚ୍ଛା, ଗୋପୀନାଥ ସୁଦ, ଗଙ୍ଗାଧର ମିଶ୍ର, କୃପାସିନ୍ଧୁ ସାହୁ, ବାସୁଦେବ ନନ୍ଦ, ଗୋବିନ୍ଦ ନନ୍ଦ, ଲକ୍ଷ୍ମଣ ସାହାନୀ ପ୍ରମୁଖ । ଏହି ମେମୋରାଣ୍ଡମ୍‌ରେ ଉଲ୍ଲେଖ କରାଯାଇଥିଲା ଯେ ମହାପ୍ରସାଦ ଭଳି ଏକ ପବିତ୍ର ପ୍ରଥାର ବିରୋଧରେ ଅଭିଯୋଗ ଆଣିବା ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ, ଯାହା ଓଡ଼ିଆମାନଙ୍କର ନିଜସ୍ୱ ସ୍ଥିତିକୁ ବିପନ୍ନ କରୁଛି । ଏହି ଅଭିଯୋଗ ଜଣେ ଅଫିସରଙ୍କର ଉପର ଠାଉରିଆ ମତ, ଯାହା କୌଣସି ଦୃଷ୍ଟାନ୍ତ ବା ତଥ୍ୟଦ୍ୱାରା ପ୍ରମାଣିତ କରାଯାଇନାହିଁ ।

ସମ୍ବଲପୁରର ଭାଷା ସମସ୍ୟା ସଂପର୍କରେ ନିମ୍ନଲିଖିତ ମତେ ଉକ୍ତ ମେମୋରାଣ୍ଡାରେ ବିଶଦ ଭାବେ ଲେଖାଯାଇଥିଲା ।

"ସମ୍ବଲପୁରର ଭାଷା ଓଡ଼ିଶାର ଓଡ଼ିଆ ନୁହେଁ, ଏକଥା ସତ୍ୟ ନୁହେଁ । ଓଡ଼ିଶାର ସ୍କୁଲ୍ ଇନିସ୍‌ପେକ୍ଟର କିମ୍ବା ଓଡ଼ିଆ ଉଚ୍ଚ ପଦସ୍ଥ ବିଦ୍ୱାନ ବ୍ୟକ୍ତିମାନଙ୍କ ନିକଟରେ ଜିଜ୍ଞାସା କଲେ ସରକାର ଏହାର ପ୍ରକୃତ ଭାବ ଜାଣିପାରିବେ । ଦୂରତ୍ୱଯୋଗୁଁ ପ୍ରତ୍ୟେକ ଭାଷାର ପ୍ରାଦେଶିକ ଭେଦ ଦେଖାଯାଏ । କଲିକତାର ବଂଗଳା ସହିତ ନଦିଆର ବଂଗଳା ଭାଷାର ପ୍ରଭେଦ ଅଛି । ଢାକାର ବଙ୍ଗ ଭାଷାରେ ମଧ୍ୟ ଅଧିକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଇଂଲଣ୍ଡର ୟାର୍କସାୟାରରେ ପ୍ରଚଳିତ ଭାଷା ଲଣ୍ଡନରୁ ଭିନ୍ନ ହେଲେ ମଧ୍ୟ ତାହା ଇଂରାଜୀ ଅଟେ । ଗତ ଜୁଲାଇ ମାସରେ ଚିଫ୍ କମିଶନର ସାହେବ ବାହାଦୂର ହିନ୍ଦୀ ପ୍ରଚଳିତ ହେବା ବିରୋଧରେ ଯେଉଁ ଦରଖାସ୍ତ ପ୍ରାପ୍ତ ହୋଇଥିଲେ ତାହା ଭାବୋଚ୍ଛ୍ୱାସ ପ୍ରଣୋଦିତ ବୋଲି ଅଗ୍ରାହ୍ୟ କରିଥିବା ଜାଣି ଆବେଦନକାରୀମାନେ ଦୁଃଖିତ ।

ଆବେଦନକାରୀମାନେ ପ୍ରଦର୍ଶନ କରିବାକୁ ବାଧ୍ୟ ହେଉଛନ୍ତି ଯେ ଓଡ଼ିଆଭାଷା ସୁପାଠ୍ୟ, ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ପରିପୂର୍ଣ୍ଣ । ଓଡ଼ିଆ ଭାଷାରେ ସେହି ସମସ୍ତ ଚିହ୍ନ ସଂପୂର୍ଣ୍ଣ ରୂପେ ରହିଅଛି, ଯହିଁରୁ ଜଣାଯାଏ ଯେ ,ଏ ଭାଷା ସ୍ୱାଧୀନ ଏବଂ କେବେ ବିନାଶ ପ୍ରାପ୍ତ ହେବନାହିଁ । ଶ୍ରୀଯୁକ୍ତ ବିମ୍‌ସ ସାହେବଙ୍କର ଓଡ଼ିଆ ଭାଷା ବିଷୟକ ପ୍ରସିଦ୍ଧ ଗ୍ରନ୍ଥ ପାଠକଲେ ଏହା ଜଣାପଡ଼ିବ ।

ଶ୍ରୀଯୁକ୍ତ ଚାଲ୍‌ର୍ସ ଗ୍ରାଣ୍ଟ ସାହେବ ମଧ୍ୟପ୍ରଦେଶ ଗେଜେଟିଅରର ଭୂମିକାରେ ଲେଖିଅଛନ୍ତି ଯେ "ସମ୍ବଲପୁର ଏବଂ ତାହାର ଗଡ଼ଜାତ ମାହାଲ ସହିତ ଛତିଶଗଡ଼ ଅନ୍ୟାଂଶର କୌଣସି ଭୌଗୋଳିକ ବା ଐତିହାସିକ ସଂପର୍କ ନାହିଁ ।

ଆବେଦନକାରୀମାନେ ସ୍ପଷ୍ଟ ରୂପେ ପ୍ରଦର୍ଶନ କରୁଅଛନ୍ତି ଯେ, ଭାଷାଦି ଶିକ୍ଷାର ସୁବିଧାନିମିତ୍ତ ହେଉ ଅଥବା, "ଐତିହାସିକ କାରଣରୁ ହେଉ, ସମ୍ବଲପୁରରେ ଓଡ଼ିଆଭାଷା ଅକ୍ଷୁଣ୍ଣ ରହିବା ଉଚିତ । କିନ୍ତୁ ଏହା ମଧ୍ୟ ପ୍ରଦର୍ଶିତ ହୋଇଛି, ଶାସନ କାର୍ଯ୍ୟରେ ସେପରି କିଛି ବ୍ୟଥା ଉପୁଜିବ ନାହିଁ । ତଥାପି କାର୍ଯ୍ୟର ସୁକରଣ ନିମନ୍ତେ ଭାଷା ପରିବର୍ତ୍ତନ ବାଞ୍ଛନୀୟ ହୁଏ । ତେବେ ସମ୍ବଲପୁର ଏବଂ ତାହାର ଗଡ଼ଜାତ ମାହାଲମାନଙ୍କୁ ବଂଗ ଗଭର୍ଣ୍ଣମେଣ୍ଟଙ୍କ ହସ୍ତରେ ସମର୍ପଣ କରି ଦିଆଯାଉ, କାରଣ ଓଡ଼ିଶାର ଲୋକଙ୍କ ସହିତ ଏହି ଲୋକମାନଙ୍କର ଭୌଗୋଳିକ, ଐତିହାସିକ ଓ ସାମାଜିକ ସଂପର୍କ ଥିବାରୁ, ଏହି ପ୍ରକାର ପରିବର୍ତ୍ତନ ସମ୍ବଲପୁରବାସୀଙ୍କ ପକ୍ଷେ ମଙ୍ଗଳକର ହେବ ।

ସମ୍ବଲପୁର କଟକର ଦୂରତ୍ୱ ରାୟପୁର ଦୂରତ୍ୱଠାରୁ ଅଧିକ ନୁହେଁ ।

(ଉକ୍ତ ମେମୋରାଣ୍ଡମ୍‌ର ଶେଷୋକ୍ତ ଅଂଶର ମୂଳ ଇଂରାଜୀ)

From Linguistic, educational and historical stand point Odiya must be allowed to remain unmolested in the country. But if for the administrative difficulties, which too it is feared, have been greatly magnified and misrepresented the district can not be allowed to possess an official language district from that of any other district of the province, your memorialistic beg respectfully to suggest that Sambalpur, with the Garajata mahals. May be made over to Bengal as the part of the Odisha Division with which this portion of the province is geographically, historically and socially connected.

ଏହା ଥିଲା ସଂବଲପୁରର ବିଭିନ୍ନ ସହର ଓ ଗ୍ରାମାଞ୍ଚଳରୁ ୨୩୫୪ ଜଣ ଆବେଦନକାରୀଙ୍କର ସ୍ୱାକ୍ଷର ପ୍ରଦତ୍ତ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ମେମୋରାଣ୍ଡମ୍‌ର କିଛି ତାତ୍ପର୍ଯ୍ୟପୂର୍ଣ୍ଣ ଅଂଶ ।

ଏଣେ କଟକରେ ଜାତୀୟ ଗୌରବ ମଧୁସୂଦନ ଦାସ ଓଡ଼ିଆ ଭାଷା ବିଲୁପ୍ତି ବିରୁଦ୍ଧରେ ତୀବ୍ର ସ୍ୱର ଉତ୍ତୋଳନ କରିଥିଲେ । ଉତ୍କଳ ସଭାର ସଭାପତି ରୂପେ ମଧୁବାବୁ ତା'ର ପ୍ରତିବାଦ ସଭାମାନ ଆହ୍ୱାନ କରିଥିଲେ ।

ମଧୁସୂଦନ ଏଥିପାଇଁ କେବଳ ପ୍ରତିବାଦ ସଭାମାନ ଆୟୋଜନ କରି ନ ଥିଲେ,

ଉତ୍କଳଦୀପିକାର ପୃଷ୍ଠାମାନଙ୍କରେ ସାତଗୋଟି ସୁଦୀର୍ଘ ପାଣ୍ଡିତ୍ୟପୂର୍ଣ୍ଣ ଭାଷାତାତ୍ତ୍ୱିକ ପ୍ରବନ୍ଧ 'ମଧ୍ୟପ୍ରଦେଶରୁ ଓଡ଼ିଆ ଭାଷାର ବହିଷ୍କାର' ନାମରେ ଇଂରାଜୀରେ ପ୍ରକାଶ କରିଥିଲେ । ଏହାଛଡ଼ା ମଧୁସୂଦନ ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ଏଲଗିନ୍ଙ୍କ ନିକଟକୁ ଯେଉଁ ପ୍ରତିବାଦର ପତ୍ରଟି ପଠାଇଥିଲେ, ତହିଁରେ ବ୍ରିଟିଶ ସରକାରଙ୍କ ବିରୋଧରେ ପ୍ରତିବାଦର ସ୍ୱର କିପରି ଉଗ୍ର ଥିଲା ତାହା ନିମ୍ନ ଲିଖିତ ଉଦ୍ଧୃତିରୁ ଜଣାଯାଏ ।

"Denial to the people of the use of their mother -tongue is the worst form of gaging, yet unknown ever in the most despotic form of government." ମାତୃଭାଷାକୁ ନିଷିଦ୍ଧ କରିବା ହେଉଛି ସବୁଠାରୁ ବୀଭତ୍ସ ଧରଣର କଣ୍ଠରୋଧର ବ୍ୟବସ୍ଥା । ଯାହା ସବୁଠାରୁ ଅତ୍ୟାଚାରୀ ଶାସନରେ ମଧ୍ୟ ଦେଖାଯାଏ ନାହିଁ । ଏହି ଉଦ୍ଧୃତି ସହିତ ସୁଦୀର୍ଘ ପ୍ରତିବାଦ ପତ୍ରଟି ଉତ୍କଳ ସଭା ପକ୍ଷରୁ କଟକରୁ ମଧୁସୂଦନ ଦାସଙ୍କଦ୍ୱାରା ବଡ଼ଲାଟ ଏଲିଗିନ୍ଙ୍କ ପାଖକୁ ୨୦.୬.୧୮୯୫ରେ ପଠାଯାଇଥିଲା ।

ଏହାପରେ ସମ୍ବଲପୁରବାସୀଙ୍କର ମେମୋରାଣ୍ଡମ୍ ୫.୭.୧୮୯୫ରେ ପଠାଯାଇଥିଲା । ୧୮୯୭ରେ ମଧୁସୂଦନ ଇଂଲଣ୍ଡ ଯାତ୍ରାକରି ତତ୍କାଳୀନ ଭାରତର ସଚିବ ଲର୍ଡ଼ ହାମିଲ୍ଟନ୍ଙ୍କୁ ଲଣ୍ଡନରେ ସମ୍ବଲପୁରରେ ଓଡ଼ିଆ ଭାଷା ଉଚ୍ଛେଦ ସଂପର୍କରେ ପ୍ରତିବାଦପତ୍ର ଦେଇଥିଲେ, ଯହିଁରେ ମରାଠୀ ଭାଷାର ଅତ୍ୟାଚାର ସଂପର୍କରେ ସବିଶେଷ ଭାବେ ଉଲ୍ଲେଖ ହୋଇଥିଲା । ଇତି ମଧ୍ୟରେ ଲର୍ଡ କର୍ଜନ ଭାରତର ବଡଲାଟ୍ ହେଲେ ୧୮୯୯ ମସିହାରେ ।

କ୍ରମାଗତ ଭାବେ ମଧୁସୂଦନ ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ଲାଗି ଆବେଦନ ପତ୍ରମାନ ପ୍ରେରଣ କରୁଥିଲେ । ଏହିପରି ଏକ ପତ୍ର ପାଇ ଲର୍ଡ଼ କର୍ଜନ ମଧୁସୂଦନଙ୍କୁ ଆମନ୍ତ୍ରଣ ଜଣାଇଲେ ଏବଂ ମଧୁସୂଦନ ୧୯୦୦ ସାଲ ଅକ୍ଟୋବର ତୃତୀୟ ସପ୍ତାହରେ ତାଙ୍କୁ ସିମିଲାଠାରେ ଭେଟି ଓଡ଼ିଆ ଜାତିର ମର୍ମବେଦନା ଓ ବିଖଣ୍ଡିତ ଓଡ଼ିଆଭାଷୀ ଅଂଚଳର ମିଶ୍ରଣଲାଗି ଯେଉଁ ଭାବବିହ୍ୱଳ ଆବେଦନ ଜଣାଇଥିଲେ, ତାହା ତାଙ୍କୁ ଅଭିଭୂତ କରିଥିଲା । ମଧୁସୂଦନ ଲର୍ଡ଼ କର୍ଜନଙ୍କୁ ଓଡ଼ିଶାର ଭବ୍ୟ କୀର୍ତ୍ତିରାଜି ପରିଦର୍ଶନ କରିବାକୁ ଆମନ୍ତ୍ରଣ ଜଣାଇଥିଲେ । ମଧୁସୂଦନଙ୍କ ଆମନ୍ତ୍ରଣ ରକ୍ଷାକରି ୧୬.୧୨.୧୯୦୦ରେ ଲର୍ଡ଼ କର୍ଜନ ପୁରୀ, ଭୁବନେଶ୍ୱରର ଅପୂର୍ବ ଭାସ୍କର୍ଯ୍ୟ କଳା ବିମଣ୍ଡିତ ମନ୍ଦିରରାଜି ପରିଦର୍ଶନ ପରେ, ସମଗ୍ର ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ଲାଗି ପ୍ରତିଶ୍ରୁତିବଦ୍ଧ ହେଲେ ।

୧୮୯୮ ସାଲରେ ୮୨ଟି ଓଡ଼ିଆଭାଷୀ ସ୍କୁଲ୍ର ଉଚ୍ଛେଦ ସହ ତୃତୀୟ ଶ୍ରେଣୀରେ ହିନ୍ଦୀଭାଷା ପ୍ରଚଳନ କରାଯାଇଥିଲା । ଅତ୍ୟନ୍ତ ସୌଭାଗ୍ୟର କଥା ଯେ, ୧୯୦୧ରେ ସମ୍ବଲପୁରରେ ମଦନ ମୋହନ ମିଶ୍ରଙ୍କର ଅଧିନାୟକତ୍ୱରେ ଏକ ନୂତନ ନେତୃତ୍ୱର ସୃଷ୍ଟିହେଲା । କ୍ରମ ପରିବର୍ତ୍ତିତ ଓଡ଼ିଆ ଭାଷାର ଦୟନୀୟ ସ୍ଥିତି ସଂପର୍କରେ ତାଙ୍କରି ନେତୃତ୍ୱରେ ଏକ ନୂତନ ସ୍ମାରକପତ୍ର ଲର୍ଡ଼ କର୍ଜନଙ୍କ ନିକଟକୁ ପ୍ରେରିତ ହେଲା । ଏହାର ଏକକିତା ନକଲ ମଧ୍ୟପ୍ରଦେଶର ଚିଫ୍ କମିଶନର ଏଣ୍ଡ୍ରୁ ଫେଜରଙ୍କ ନିକଟରେ ଦାଖଲ କରାଗଲା । ମଧୁସୂଦନଙ୍କର ସଂପର୍କ ଯୋଗୁଁ ଓଡ଼ିଆମାନଙ୍କର ଏହି ଦାବି ପ୍ରତି ଅତ୍ୟନ୍ତ ସହାନୁଭୂତିଶୀଳ ଲର୍ଡ଼ କର୍ଜନ ଏହି ସ୍ମାରକ ପତ୍ରରେ ଉଲ୍ଲିଖିତ ଥିବା ୮୨

ଗୋଟି ଓଡ଼ିଆ ସ୍କୁଲ୍‌ର ଉଚ୍ଛେଦ ସଂପର୍କରେ ଏକ ରିପୋର୍ଟ ଦେବାକୁ ନିର୍ଦ୍ଦେଶ ଦେଇଥିଲେ, ଯାହାର ଅନୁସନ୍ଧାନର ଭାର ସମ୍ବଲପୁରର ରାଜସ୍ୱ ଅଧିକାରୀ ବୈକୁଣ୍ଠ ନାଥ ପୂଜାରୀଙ୍କ ଉପରେ ନ୍ୟସ୍ତ ଥିଲା । ଶ୍ରୀ ପୂଜାରୀ ଏହାର ରିପୋର୍ଟ ପ୍ରଦାନ ସହିତ ସମ୍ବଲପୁରର ଜନସଂଖ୍ୟା ଗଣନାବେଳେ ଓଡ଼ିଆମାନଙ୍କର ସଂଖ୍ୟା ନିର୍ଦ୍ଧାରଣରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ପୂଜାରୀ ଥିଲେ ଦେଶସେବାର ଜଣେ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ , ଯାହାଙ୍କର ଅକାଳ ବିୟୋଗ ଏକ ବିରାଟ ଶୂନ୍ୟତା ସୃଷ୍ଟି କରିଥିଲା ।

ମଧୁସୂଦନ ଏହିଭଳି ସ୍ଥିତିରେ,ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ ଭାଷା ଆନ୍ଦୋଳନର ସ୍ଥିତି ଜଣାଇବା ସକାଶେ, ସେ ଦାଖଲ କରିଥିବା ସ୍ମାରକପତ୍ରର ନକଲ ଓ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପଠାଇ ସମସ୍ୟାର ଆଶୁ ସମାଧାନ ପାଇଁ ନିବେଦନ କରିଥିଲେ ।

ଏ ମଧ୍ୟରେ ୧୯୦୧ ସାଲର ଜୁଲାଇ ମାସରେ ବ୍ରଜମୋହନ ପଟ୍ଟନାୟକ ନାଗପୁରଠାରେ ଚିଫ୍ କମିଶନର (ମଧ୍ୟପ୍ରଦେଶ) ଏଣ୍ଡ୍ରୁ ଫେଜରଙ୍କୁ ଭେଟି ଭାଷା ସମସ୍ୟାର ମର୍ମନ୍ତୁଦ ସ୍ଥିତି ସଂପର୍କରେ ଅବଗତ କରାଇଥିଲେ । ଏହାର ଏକ ମାସ ପରେ ମଧ୍ୟପ୍ରଦେଶର କମିଶନର ଏଣ୍ଡ୍ରୁ ଫେଜର ସେପ୍ଟେମ୍ବର ପହିଲା ବେଳକୁ ଶିକ୍ଷା ସମ୍ବନ୍ଧୀୟ ଏକ ଅଧିବେଶନରେ ଯୋଗଦେବା ପାଇଁ ସିମଳାରେ ପହଞ୍ଚିଲେ । ଏଭଳି ଏକ ସୁଯୋଗର ଅପେକ୍ଷାରେ ଥିଲେ ମଧୁସୂଦନ । ମଧ୍ୟପ୍ରଦେଶର ଚିଫ୍ କମିଶନର ସିମ୍‌ଲାଠାରେ ପହଞ୍ଚିବା ବିଷୟ ଅବଗତ ହେବା ପୂର୍ବରୁ ମଧୁସୂଦନ ତାଙ୍କର ପରମ ବନ୍ଧୁ ବଡ଼ଲାଟଙ୍କ ସେକ୍ରେଟେରୀ ୱାଲ୍‌ଟର୍ ଲରେନ୍‌ସଙ୍କ ନିକଟକୁ କ୍ରମାଗତ ଭାବେ ଚିଠି ଓ ଟେଲିଗ୍ରାମମାନ ପଠାଇ ବଡ଼ଲାଟ ଓ କମିଶନରଙ୍କ ମଧ୍ୟରେ ଏକ ସାକ୍ଷାତକାର ଆୟୋଜନ କରି ସମ୍ବଲପୁରର ଓଡ଼ିଆ ଭାଷା ସଂପର୍କୀୟ ସମାଧାନର ସୂତ୍ର ବାହାର କରିବାପାଇଁ ନିବେଦନ କରିଥିଲେ ।

ବଡ଼ଲାଟଙ୍କ ପ୍ରାଇଭେଟ ସେକ୍ରେଟେରୀ ୱାଲ୍‌ଟର ଲରେନ୍‌ସଙ୍କ ଉଦ୍ୟମରେ ବଡ଼ଲାଟ ଓ ଚିଫ୍ କମିଶନରଙ୍କ ମଧ୍ୟରେ ସାକ୍ଷାତ ଆଲୋଚନା ସମ୍ଭବ ହୋଇଥିଲା ।ଏଥିରେ ସମ୍ବଲପୁରର ଭାଷା ସମସ୍ୟା ମୁଖ୍ୟସ୍ଥାନ ଅଧିକାର କରିଥିଲା ।

୧୯୦୧ ସେପ୍ଟେମ୍ବର ୧୨ ତାରିଖରେ ମଧୁସୂଦନଙ୍କ ଚିଠିର ଉତ୍ତର ଦେଇ ୱାଲ୍‌ଟର ଲରେନ୍‌ସ ଲେଖିଥିଲେ-

''ମୁଁ ଆପଣଙ୍କଠାରୁ ଗତ ଚାରି ତାରିଖରେ ପାଇଥିବା ପତ୍ରଟି ସମସ୍ତ ଅନୁଲିପି ସହ ବଡ଼ଲାଟଙ୍କ ପାଖରେ ଉପସ୍ଥାପନ କରିଥିଲି । ଏହାଛଡ଼ା ଆପଣଙ୍କଠାରୁ ଆସିଥିବା ସମସ୍ତ ଟେଲିଗ୍ରାମ ମଧ୍ୟ ଉପସ୍ଥାପନ କରିଥିଲି । ଜଣାଯାଏ ମିଷ୍ଟର ଫ୍ରେଜରଙ୍କ ପାଖରେ ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳନ ସଂପର୍କରେ ଏକ ଆବେଦନ ପତ୍ର ବିଚାରପାଇଁ ରହିଛି । ଯେତେବେଳେ ମିଷ୍ଟର ଫ୍ରେଜରଙ୍କ ପାଖରୁ ଏ ସଂପର୍କୀୟ ରିପୋର୍ଟ ଆସିବ, ତାହା ତାଙ୍କ ସରକାରଙ୍କ ପାଖରେ ଉପସ୍ଥାପିତ କରାଯିବ, ସେତେବେଳେ ମହାମାନ୍ୟ ବଡ଼ଲାଟ ଏ ସଂପର୍କରେ ଦୃଷ୍ଟି ଦେବେ ।''

ଅଧିକ କାଳ ବିଳମ୍ବ ନକରି ଏହି ସମସ୍ୟାର ସମାଧାନ କରିବାପାଇଁ ପ୍ରକୃତରେ ବଡ଼ଲାଟଙ୍କର ସାର୍ ଏଣ୍ଡ୍ରୁ ଫେଜରଙ୍କ ପ୍ରତି ଜରୁରୀ ନିର୍ଦ୍ଦେଶ ଥିଲା । ତେଣୁ ସିମ୍ଲାରୁ ଫେରିବା ବାଟରେ ନାଗପୁର ନଯାଇ ସମ୍ବଲପୁରରେ ଏଣ୍ଡ୍ରୁ ଫେଜର ସେହି ସେପ୍ଟେମ୍ବର ମାସ ୨୬ ତାରିଖରୁ ଏହି ଅନୁଧ୍ୟାନ କାର୍ଯ୍ୟ କରିବାପାଇଁ ସ୍ଥିର କରିଥିଲେ ।

ଏହି ସମୟରେ ସମ୍ବଲପୁରରୁ ପଞ୍ଚସଖା ମଦନମୋହନ ମିଶ୍ର, ବଳଭଦ୍ର ସୂପକାର, ଶ୍ରୀପତି ମିଶ୍ର, ବ୍ରଜମୋହନ ପଟ୍ଟନାୟକ ଓ ମଦନ ବିହାରୀ ଦାସ, ସମ୍ବଲପୁରର ଭାଷା ସମସ୍ୟା ସଂପର୍କରେ ବଡ଼ଲାଟଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ସିମ୍ଲାରେ ପହଞ୍ଚିଲେ । ଏ ଦିଗରେ ଯଥେଷ୍ଟ ଅଗ୍ରଗତି କରିଥିବାରୁ ସାର୍ ଏଣ୍ଡ୍ରୁ ଫେଜରଙ୍କ ସେକ୍ରେଟେରୀ ଏହି ପଞ୍ଚସଖାଙ୍କୁ ତୁରନ୍ତ ଫେରିଯାଇ ଚିଫ୍ କମିଶନରଙ୍କ ଭାଷା ସଂକ୍ରାନ୍ତ ଅନୁଧ୍ୟାନ ଓ ଅନୁସନ୍ଧାନରେ ସହଯୋଗିତା କରିବାପାଇଁ ନିବେଦନ କଲେ । ୧୯୦୧ ସେପ୍ଟେମ୍ବର ୨୬ ତାରିଖରେ ସାର୍ ଏଣ୍ଡ୍ରୁ ଫେଜର ସମ୍ବଲପୁରରେ ପହଞ୍ଚି ୩୦ ତାରିଖ ପର୍ଯ୍ୟନ୍ତ ସ୍ୱୟଂ ଅନୁସନ୍ଧାନ କରିବା ସହିତ ସମ୍ବଲପୁରବାସୀଙ୍କ ମର୍ମବେଦନା ଅନୁଭବ କଲେ । ଓଡ଼ିଆ ଭାଷାର ପୁନଃ ପ୍ରଚଳନପାଇଁ ସେ ବଡ଼ଲାଟଙ୍କୁ ସୁପାରିଶ କଲେ ।

ଭାରତୀୟ ସଂସ୍କୃତିର ମହନୀୟ ଧାରାକୁ ଚିହ୍ନିବାଲାଗି ପ୍ରୟାସ କରୁଥିଲେ ଲର୍ଡ଼ କର୍ଜନ । ମଧୁସୂଦନଙ୍କ ଆମନ୍ତ୍ରଣରେ ଓଡ଼ିଶା ପରିଦର୍ଶନ ପରେ ତାଙ୍କର ଓଡ଼ିଆ ଜାତି ପ୍ରତି ଜାଗରିତ ହୋଇଥିଲା ଏକ ସମ୍ମାନବୋଧ । ତେଣୁ ସମ୍ବଲପୁରରେ ସୁଦୀର୍ଘ ଭାଷା ଆନ୍ଦୋଳନର ସମାପ୍ତି ଘଟାଇ ସେ ୧୯୦୨ ସାଲର ମଧ୍ୟ ଭାଗରେ ପୁଣି ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଲାଗି ନିର୍ଦ୍ଦେଶନାମା ଜାରି କଲେ, ଯାହା ୧.୧.୧୯୦୩ରେ କାର୍ଯ୍ୟକାରୀ ହୋଇଥିଲା । ତାଙ୍କର ଦୀର୍ଘକାଳର ନିଜସ୍ୱ ପରିକଳ୍ପନାର ଫଳଶ୍ରୁତି- ରିସ୍ଲେ ସର୍କୁଲାର ପ୍ରକାଶିତ ହୋଇଥିଲା ୧୯୦୩ ଡିସେମ୍ବର ତିନି ତାରିଖରେ, ଯହିଁରେ ସୁବିଶାଳ ବଂଗ ପ୍ରେସିଡେନ୍ସିକୁ ଦ୍ୱିଖଣ୍ଡିତ କରିବା ସହିତ ପଶ୍ଚିମାଞ୍ଚଳରେ ସମସ୍ତ ଓଡ଼ିଆ ଭାଷା ଅଂଚଳର ମିଶ୍ରଣ ସ୍ଥାନ ପାଇଥିଲା । ଏହି ସଂଯୋଜନାରେ ମଧୁସୂଦନଙ୍କର ଗୁରୁତ୍ୱପୂର୍ଣ୍ଣ ଅଂଶ ଥିଲା । ହେଲେ ଏହାକୁ କାର୍ଯ୍ୟକାରୀ କରିବା ପୂର୍ବରୁ ୧୯୦୪ ସାଲର ପୂର୍ବ ଭାଗରେ ଲର୍ଡ଼ କର୍ଜନଙ୍କ ପତ୍ନୀଙ୍କର ସ୍ୱାସ୍ଥ୍ୟହାନି ଯୋଗୁଁ ଦୀର୍ଘକାଳ ଲାଗି ତାଙ୍କୁ ଛୁଟିରେ ଯିବାକୁ ପଡ଼ିଲା । ଓଡ଼ିଶା ସହିତ ମାନ୍ଦ୍ରାସର ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣକୁ ତୀବ୍ର ଭାବରେ ବିରୋଧ କରୁଥିବା ମାନ୍ଦ୍ରାସର ଗଭର୍ଣ୍ଣର ଏମ୍ପଥିଲ କିଛିକାଳ ବଡ଼ଲାଟ ରୂପେ କାର୍ଯ୍ୟ କରୁଥିବା ସମୟରେ ତାଙ୍କର ସ୍ୱତନ୍ତ୍ର ନିର୍ଦ୍ଦେଶ ବଳରେ ଦକ୍ଷିଣ ଓଡ଼ିଶା ମିଶ୍ରଣ ସଂପର୍କୀୟ ପ୍ରଶ୍ନ ଉପରେ ପୂର୍ଣ୍ଣଚ୍ଛେଦ ଟାଣି ଦେଇଥିଲା । ଛୁଟିରୁ ଫେରି ଲର୍ଡ଼ କର୍ଜନ ୧୯୦୫ ସାଲର ଜୁଲାଇ ୧୯ ତାରିଖରେ ରିସ୍ଲେ ସର୍କୁଲାର ସଂଯୋଜନାକୁ ବିଧିବଦ୍ଧ ଭାବେ ସରକାରୀ ପ୍ରସ୍ତାବ ରୂପେ ଗୃହୀତ କରି ଘୋଷଣାନାମା ଜାରି କରିଥିଲେ । ମାତ୍ର ତାଙ୍କର ସୌଭାଗ୍ୟର ଦିନଗୁଡ଼ିକ ସରି ଆସୁଥିଲା । ଏକଦା ତାଙ୍କର ଅନ୍ତରଙ୍ଗ ଥିବା ଭାରତର ସାମରିକ ମୁଖ୍ୟଙ୍କ ସହିତ ତାଙ୍କର ମନୋମାଳିନ୍ୟ ପରିପ୍ରେକ୍ଷୀରେ ଲର୍ଡ଼ କର୍ଜନ ଇସ୍ତଫା ପତ୍ର ଦାଖଲ କରିଥିଲେ । ଏହାକୁ ସପ୍ତମ ଏଡ଼ୱାର୍ଡ଼ (ବ୍ରିଟେନର ରାଜା) ଗ୍ରହଣ କରି ଅଗଷ୍ଟ ଷୋହଳ ତାରିଖରେ ଜଣାଇ ଦେଇଥିଲେ । ହେଲେ ଅପ୍ରତିହତ ଥିଲା ଲର୍ଡ଼

କର୍ଜନଙ୍କ ମନୋବଳ ଓ ରିସ୍‌ଲେ ସର୍କୁଲାରକୁ କାର୍ଯ୍ୟକାରୀ କରାଇବା ପାଇଁ ସେ ପ୍ରତିଶ୍ରୁତିବଦ୍ଧ ଥିଲେ ।

ତେଣୁ ତାଙ୍କର ସରି ଆସୁଥିବା କାର୍ଯ୍ୟକାଳ ମଧ୍ୟରେ ସେ ରିସ୍‌ଲେ ସର୍କୁଲାରକୁ କାର୍ଯ୍ୟକାରୀ କରିବାପାଇଁ ନିର୍ଦ୍ଦେଶନାମା ସେପ୍ଟେମ୍ବର ୧୬ ତାରିଖରେ ଜାରି କରିଥିଲେ, ଯହିଁରେ ନିର୍ଦ୍ଦେଶ ଥିଲା, ମାତ୍ର ମାସକ ପରେ ଅକ୍ଟୋବର ୧୬ ତାରିଖରେ ଏ ସମସ୍ତ ବ୍ୟବସ୍ଥା ବାସ୍ତବ କ୍ଷେତ୍ରରେ ରୂପାୟିତ କରିବାକୁ । କାର୍ଯ୍ୟ ସମ୍ପାଦନ କରାଇବାର ଅଦ୍‌ଭୁତ କ୍ଷମତା ଥିଲା ଲର୍ଡ଼ କର୍ଜନଙ୍କର ।

ଏହି ନୂତନ ସଂଯୋଜନା ଅନୁସାରେ ବଂଗ ପ୍ରଦେଶର ଚଟ୍ଟଗ୍ରାମ ,ଢାକା, ରାଜାସାହି ଅଞ୍ଚଳ ଆସାମ ସହିତ ସଂଯୁକ୍ତ ହୋଇ ହେବ ପୂର୍ବ ବଙ୍ଗ ଓ ଆସାମ ପ୍ରଦେଶ । ପଶ୍ଚିମ ବଂଗ ପ୍ରଦେଶର ଛୋଟନାଗପୁର ଡିଭିଜନର ଅପେକ୍ଷାକୃତ ହିନ୍ଦୀ ସଂସ୍କୃତିସମ୍ପନ୍ନ ସରଗୁଜା, ଯଶପୁର, ଉଦୟପୁର, କୋରିଆ ଆଉ ଚଙ୍ଗଭରକର ଅଞ୍ଚଳଟି ମଧ୍ୟପ୍ରଦେଶ ଛତିଶିଗଡ଼ ଡିଭିଜନରେ ମିଶିବ ।

ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନରୁ ସମ୍ବଲପୁର ଜିଲ୍ଲା, କଳାହାଣ୍ଡି, ପାଟନା, ସୋନପୁର, ବାମଣ୍ଡା, ରେଢ଼ାଖୋଲ ଏବଂ ଛୋଟନାଗପୁର ଡିଭିଜନର ଗାଂଗପୁର ଆଉ ବଣାଇ ଗଡ଼ଜାତ ଅଂଚଳ ଆସି ଓଡ଼ିଶା ଡିଭିଜନରେ ସାମିଲ ହେବ ।

ଏହି ପ୍ରଦେଶ ପୁନର୍ଗଠନର ନିର୍ଦ୍ଦେଶନାମାକୁ ଅକ୍ଟୋବର ୧୬ ତାରିଖରେ କାର୍ଯ୍ୟକାରୀ କରିବାପାଇଁ ସମ୍ବଲପୁରରେ ଏକ ସ୍ୱତନ୍ତ୍ର ସମାରୋହର ଆୟୋଜନ କରାଗଲା । ଏହି ସମାରୋହରେ ଅଧ୍ୟକ୍ଷତା କରିବାପାଇଁ ବଂଗ ପ୍ରଦେଶର ଗଭର୍ଣ୍ଣର ସାର୍ ଏଣ୍ଡ୍ରୁ ଫେଜର ୧୫ ତାରିଖ ସକାଳ ୯ଟାରେ ସସ୍ତ୍ରୀକ ସମ୍ବଲପୁରରେ ପହଞ୍ଚିଲେ । ସମ୍ବଲପୁର ଷ୍ଟେସନଠାରେ ଛତିଶଗଡ଼ର କମିଶନର ମିଷ୍ଟର ଲାରି ସାହେବ, ସମ୍ବଲପୁରର ଡେପୁଟି କମିଶନର, ଗଡ଼ଜାତର ରାଜାସମୂହ, ପଦସ୍ଥ କର୍ମଚାରୀ ଓ ଜନତା ତାଙ୍କୁ ହାର୍ଦ୍ଦିକ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ଚାରିବର୍ଷ ପୂର୍ବେ ଭାଷା ଆନ୍ଦୋଳନ ସଂକ୍ରାନ୍ତରେ ଅନୁସନ୍ଧାନ କରିବାପାଇଁ ଆସିବାବେଳେ ଫ୍ରେଜର ସାହେବଙ୍କୁ ଯେଉଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା, ତାହାର ପୁନରାବୃତ୍ତି ହେଲା । ସେ ଓହ୍ଲାଇବା ସଂଗେସଂଗେ ଦଶଟି ବୋମା ଫୁଟାଯାଇ ତାଙ୍କୁ ସମ୍ବର୍ଦ୍ଧିତ କରାଗଲା । ମଧ୍ୟପ୍ରଦେଶ ଆଉ ଛୋଟନାଗପୁରରୁ ସମଗ୍ର ଓଡ଼ିଆଭାଷୀ ପଶ୍ଚିମାଞ୍ଚଳ ଓଡ଼ିଶାରେ ସାମିଲ ହେବା ଅବକାଶରେ ଆନନ୍ଦର ଉଦ୍ଦୀପନା ଖେଳି ଯାଇଥିଲା ସର୍ବତ୍ର । ଉତ୍କଳ ସମ୍ମିଳନୀ ପକ୍ଷରୁ ମଧୁସୂଦନଙ୍କ ନିର୍ଦ୍ଦେଶରେ ପ୍ରତିନିଧି ଭାବରେ ଦାମୋଦର କର, ଚନ୍ଦ୍ରଶେଖର ନନ୍ଦ ଓ ବ୍ରହ୍ମାନନ୍ଦ ଷଡ଼ଙ୍ଗୀ ଆସି ସମ୍ବଲପୁରରେ ଚଉଦ ତାରିଖ ଦିନ ପହଞ୍ଚି ସମ୍ବଲପୁରର ବନ୍ଧୁମାନଙ୍କୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରିଥିଲେ ।

ସ୍ମରଣୀୟ ଅକ୍ଟୋବର ୧୬ ତାରିଖ ପହଞ୍ଚିଲା । ଏହି ଉପଲକ୍ଷେ ରାସ୍ତାଘାଟ ସବୁ ସୁସଜ୍ଜିତ ହେଲା । ସାରା ପରିବେଶରେ ଆନନ୍ଦ ଉଚ୍ଛ୍ୱାସ ଯେପରି ଲହରି ଭାଙ୍ଗିଲା । ପୂର୍ବାହ୍ଣରେ ଏକ ସ୍ୱତନ୍ତ୍ର ସନନ୍ଦ ପ୍ରଦାନ କରାଯାଇଥିଲା । ଏଥିରେ ଗଡ଼ଜାତ ରାଜାମାନଙ୍କୁ ଅପେକ୍ଷାକୃତ ତଳସ୍ତରରେ ପ୍ରତିଷ୍ଠିତ କରାଯାଇଥିଲା ଏବଂ ଗଭର୍ଣ୍ଣର ଫ୍ରେଜର ସାହେବ ଏହି ସନନ୍ଦର ପରିସୀମାରେ କୌଣସି ବ୍ୟତିକ୍ରମ ହେବ ନାହିଁ ବୋଲି ପ୍ରତିଶ୍ରୁତି ପ୍ରଦାନ କରିଥିଲେ ।

ସେହିଦିନ ଅପରାହ୍ଣରେ ସମ୍ବଲପୁରର ନବନିର୍ମିତ ସଭାଗୃହ ଭିକ୍ଟୋରିଆ ହଲରେ ଗଭର୍ଣ୍ଣରଙ୍କୁ ମ୍ୟୁନିସିପାଲିଟି ପକ୍ଷରୁ ଅଭ୍ୟର୍ଥନା ଦିଆଯାଇଥିଲା । ସଭାଗୃହର ବାରଣ୍ଡା ଫୁଲକୁଣ୍ଡ ଆଉ ସଭାଗୃହ ରଂଗୀନ କାଗଜ ଓ ପତାକାରେ ସୁସଜ୍ଜିତ ଥିଲା । ଗଭର୍ଣ୍ଣର ସସ୍ତ୍ରୀକ ପହଞ୍ଚିବା ପରେ ୧୧ଟି ବୋମା ଫୁଟାଯାଇ ସମ୍ବର୍ଦ୍ଧିତ କରାଯାଇଥିଲା । ମ୍ୟୁନ୍‌ସିପାଲିଟି ଚେୟାରମ୍ୟାନ୍ ଶ୍ରୀ ଯୋଗେନ୍ଦ୍ର ନାଥ ମିତ୍ର ଅଭିନନ୍ଦନ ପତ୍ର ପାଠ କରିଥିଲେ । ମୁଖ୍ୟ ଅତିଥି ଫ୍ରେଜର ଗଡ଼ଜାତର ମହାରାଜାମାନଙ୍କୁ ଓଡ଼ିଶା ଡ଼ିଭିଜନରେ ସାମିଲ ହୋଇଥିବାରୁ ଅଭିନନ୍ଦନ ଜଣାଇଥିଲେ । ହାଇସ୍କୁଲ୍‌ର ପ୍ରଧାନ ଶିକ୍ଷକ ସ୍ୱପ୍ନେଶ୍ୱର ଦାସ ଏହି ସ୍ମରଣୀୟ ଦିବସ ଉପଲକ୍ଷେ 'ଅପୂର୍ବ ଯୋଗ' ନାମକ ପୁସ୍ତକ ବାଣ୍ଟିଥିଲେ । ରାତିରେ ଗଭର୍ଣ୍ଣର ମହୋଦୟ ସ୍ୱତନ୍ତ୍ର ଭୋଜିର ଆୟୋଜନ କରିଥିଲେ । ୧୭ ତାରିଖ ଦିନ ଗଭର୍ଣ୍ଣର ଗଡ଼ଜାତ ରାଜାମାନଙ୍କ ସହିତ ସ୍ୱତନ୍ତ୍ର ଆଲୋଚନା କରି ୧୮ ତାରିଖ ଦିନ ବାମଣ୍ଡା ଭ୍ରମଣରେ ଯାଇଥିଲେ ।

ଏ ସମସ୍ତ ସରକାରୀ ତଥା ଅର୍ଦ୍ଧସରକାରୀ ଉତ୍ସବର ସମାରୋହ ପରେ ୧୯ ତାରିଖରେ ଆୟୋଜିତ ହୋଇଥିଲା, ସମ୍ବଲପୁର ଅଧିବାସୀଙ୍କ ପକ୍ଷରୁ ଏକ ବର୍ଣ୍ଣିଳ ସମାରୋହ । ସମ୍ବଲପୁର ଭାଷା ଆନ୍ଦୋଳନର ବିଜୟ ଲାଭ ପରେ, ଏହାର ଅନ୍ତିମ ପରିଣତି ସ୍ୱରୂପ ପଶ୍ଚିମାଞ୍ଚଳର ମିଶ୍ରଣ ସମ୍ଭବପର ହୋଇପାରିଥିଲା । ଭାଷା ଆନ୍ଦୋଳନରେ ସମ୍ବଲପୁରବାସୀଙ୍କୁ ବିଜୟ ଟୀ᠁ ପିନ୍ଧାଇଥିବା ଫ୍ରେଜର ସାହେବଙ୍କ ଅମୂଲ୍ୟ ଅବଦାନକୁ ସ୍ୱୀକୃତି ଜଣାଇ ଫ୍ରେଜର କ୍ଲବ୍ ସଂସ୍ଥାପିତ ହୋଇ ତା'ର ନବନିର୍ମିତ ଗୃହକୁ ଅପରାହ୍ଣ ୫ଟାରେ ସମ୍ବଲପୁରବାସୀଙ୍କ ଗହଣରେ ପାର୍ବଣର ଅପୂର୍ବ ଉଚ୍ଛ୍ୱାସ ମଧ୍ୟରେ ଉଦ୍‌ଘାଟନ କରିଥିଲେ ଗଭର୍ଣ୍ଣର ଏଣ୍ଡ୍ରୁ ଫେଜର । ଏହା ପରେ ସେ ମହାନଦୀର ଟିଟନବିସ ଘାଟକୁ ସସ୍ତ୍ରୀକ ଯାଇଥିଲେ । ପରବର୍ତ୍ତୀ ବିବରଣୀଟି ସମ୍ବଲପୁର ହିତୈଷିଣୀରୁ (୨୮.୧୦.୧୯୦୫) ଗୃହୀତ ।

'ଟିଟନବିସ' ଘାଟରେ ତିନିଗୋଟି ନୌକାର ଚାପ ବନ୍ଧାହୋଇ ରଖାଯାଇଥିଲା । ଚତୁର୍ଦ୍ଦିଗ ପତାକା, ତୋରଣ, କଦଳୀ ବୃକ୍ଷ ଓ ଫାନୁସ ଦ୍ୱାରା ସୁଶୋଭିତ ଥିଲା । ଉପରେ ଚନ୍ଦ୍ରାତପ ଆଉ ଗାଲିଚା ବିଛେଇ ଚୌକି, ଟେବୁଲ୍ ପକେଇ ଆସନର ସୁବନ୍ଦୋବସ୍ତ କରାଯାଇଥିଲା । ପ୍ରତ୍ୟେକ ଚାପ ଏହିପରି ସୁସଜ୍ଜିତ ଥିଲା । ପ୍ରକୃତରେ ଗଭର୍ଣ୍ଣର ସେଦିନ ମହାନଦୀରେ ଭ୍ରମଣକରି ଯେଉଁ ଅପାର ଆନନ୍ଦ ଲାଭ କରିଥିଲେ ତାହା ବର୍ଣ୍ଣନାତୀତ ।

ସସ୍ତ୍ରୀକ ଛୋଟଲାଟ, ଅନ୍ୟାନ୍ୟ ୟୁରୋପୀୟ କର୍ମଚାରୀ ଓ ମହିଳା ଭଦ୍ରବ୍ୟକ୍ତିବୃନ୍ଦ ଗୋଟିଏ ଚାପରେ ଉଠିଲେ । ନିମନ୍ତ୍ରିତ ରାଜା ଆଉ ରାଜଭ୍ରାତା ମହୋଦୟମାନେ ଅନ୍ୟ ଏକ ଚାପରେ ଉଠିଲେ । ଅପରାହ୍ଣ ୫ଟା ସମୟରେ ଛୋଟଲାଟ ବାହାଦୂର ନୌକାରେ ବସି ତା' ତଳେ ଚାପସବୁ କ୍ରମାନ୍ୱୟରେ ଉପରକୁ ଉଠିବାକୁ ଲାଗିଲେ । ଏହାପରେ ଏକ ମାଇଲ କି ଦୁଇ ମାଇଲ ଯାଇ ପୁଣି ଟିଟନବିସ ଘାଟକୁ ଫେରି ଆସିଲେ । ଛୋଟଲାଟ ଫେରିବା ପୂର୍ବରୁ ଘାଟଟିକୁ ଆଲୋକରେ ସଜାଇ ଦିଆଯାଇଥିଲା ।

ଛୋଟଲାଟ ଚାପ ପରିତ୍ୟାଗ କରି ଘାଟରେ ଉପବେଶନ କରନ୍ତେ ମହାନଦୀର ମଧ୍ୟବର୍ତ୍ତୀ ସ୍ଥଳରେ ଅଗ୍ନିକ୍ରୀଡ଼ା ଆରମ୍ଭ ହେଲା । ସମ୍ବଲପୁରରେ ବାଣୁଆ ହାତୀ ମସ୍ତାନ ପ୍ରାୟ ଏକଶତ ଟଙ୍କାର ବାଣ ପ୍ରସ୍ତୁତ କରିଥିଲେ । ବାଣଗୁଡ଼ିକ ଉତ୍କୃଷ୍ଟ ଥିଲା । ତତ୍ପରେ ଲୋକମାନଙ୍କର ମଙ୍ଗଳ ନୃତ୍ୟ ଓ ଯାତ୍ରା ଦଳର ନୃତ୍ୟ ହୋଇଥିଲା । ଟିଟନବିସ ଘାଟ ସଙ୍ଗେ ସହରର ପ୍ରତ୍ୟେକ ଘାଟ ଆଲୋକିତ ହୋଇଥିଲା । ଦୀପାବଳୀ ଅମାବାସ୍ୟା ପରି ଗୃହପାର୍ଶ୍ୱରେ ଦୀପ ଜଳା ଯାଇଥିଲା ।

କେହି କେହି ଗୃହର ଦ୍ୱାରରେ ପୂର୍ଣ୍ଣକୁମ୍ଭ ସ୍ଥାପନ କରିଥିଲେ ।'' ଏ ଥିଲା ସମ୍ବଲପୁର ହିତୈଷିଣୀର ମାର୍ମିକ ବିବରଣୀ ।

ପରିପୂର୍ଣ୍ଣତାର ନିବିଡ଼ ଆଶ୍ୱାସ ମଧ୍ୟରେ ଉତ୍ସବର ଏକ ଭାବବିହ୍ୱଳତା ବିଭୋର କରିଥିଲା ସମସ୍ତଙ୍କୁ। ଏଥିରେ ସମ୍ମିଳିତ ହୋଇଥିଲେ ସମ୍ବଲପୁର ଅଧିବାସୀଙ୍କର ସହ ପଶ୍ଚିମାଞ୍ଚଳର ଗଡ଼ଜାତ ରାଜ ପ୍ରତିନିଧିବୃନ୍ଦ । ଉତ୍କଳ ସମ୍ମିଳନୀର ପ୍ରତିନିଧିଙ୍କ ଯୋଗଦାନ ଅତ୍ୟନ୍ତ ମାର୍ମିକ ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ଥିଲା । ପଶ୍ଚିମାଞ୍ଚଳର ଏହି ମିଶ୍ରଣ ପରେ ଓଡ଼ିଶା ପ୍ରକୃତରେ ଏକ ସବ୍-ପ୍ରଭିନସ୍ ପଦବୀକୁ ଉନ୍ନୀତ ହୋଇଥିଲା । ତାହା ସ୍ୱତନ୍ତ୍ର ଓଡ଼ିଶା ଗଠନର ଭିତ୍ତିଭୂମି ସ୍ଥାପନ କରିଥିଲା । ଏଣୁ ୧୬.୧୦.୧୯୦୫ ତାରିଖଟି ହେଉଛି ନବ ଓଡ଼ିଶାର ଆଦ୍ୟ ଜନ୍ମୋତ୍ସବ, ଯାହାର ଶତାବ୍ଦୀ ସମାରୋହ, ୨୦୦୪-୨୦୦୫ ସାଲରେ ପାଳିତ ହୋଇଛି ।

ଏହାର ଏକ ମାସ ପରେ, ସେହି ବର୍ଷ ନଭେମ୍ବର ସତର ତାରିଖରେ, ଲର୍ଡ଼ କର୍ଜନଙ୍କୁ ଦେଖିବାକୁ ମିଳିଥିଲା ବମ୍ବେ ବନ୍ଦରରେ, ଲଣ୍ଡନଗାମୀ ଏକ ଜାହାଜରେ ଆରୋହଣ କରିବା ଅବସ୍ଥାରେ ସୂର୍ଯ୍ୟାସ୍ତର ବେଳାରେ । ମାତ୍ର ଖଣ୍ଡିଏ ଦୂରରେ ଅସ୍ତମିତ ସୂର୍ଯ୍ୟର ଆଲୋକରେ ବିଦାୟ ସମ୍ବର୍ଦ୍ଧନା ଜଣାଉଥାନ୍ତି ନବନିଯୁକ୍ତ ଗଭର୍ଣ୍ଣର ଜେନେରାଲ୍ ଲର୍ଡ଼ ମିଣ୍ଟୋ । ସୂର୍ଯ୍ୟାସ୍ତର ସେହି ବର୍ଣ୍ଣିଳ ଆଲୋକରେ ଲର୍ଡ଼ କର୍ଜନ ହୋଇଗଲେ ଅସ୍ତମିତ । ମାତ୍ର ସେ ସଦା ବର୍ଣ୍ଣାଢ଼୍ୟ ଆଲୋକରେ ଓଡ଼ିଶାର ଅନ୍ତରରେ ଚିର ଭାସ୍ୱର । ବ୍ରିଟିଶ ସାମ୍ରାଜ୍ୟବାଦର ତୁଚ୍ଛ ଅହମିକା ଓ ଚକ୍ରାନ୍ତ ମଧ୍ୟରେ, ସେ ଓଡ଼ିଆମାନଙ୍କୁ ସୁରକ୍ଷା ପ୍ରଦାନ କରିଛନ୍ତି ଓ ଅବହେଳା ବିରୋଧରେ ପ୍ରତିବାଦର ସ୍ୱର ଉଠାଇଛନ୍ତି ।

୧୬.୧୦.୧୯୦୫ରେ ନୂତନ ଓଡ଼ିଶାର ପ୍ରଥମ ଜନ୍ମୋତ୍ସବ ପରେ, ସ୍ୱତନ୍ତ୍ର ଓଡ଼ିଶା ଗଠନ ଲାଗି ଅବିରାମ ଭାବରେ ତିରିଶି ବର୍ଷ ସଂଗ୍ରାମ କରିବାକୁ ପଡ଼ିଥିଲା । ପ୍ରକୃତରେ ସମ୍ବଲପୁର ଭାଷା ଆନ୍ଦୋଳନର ମୁଖ୍ୟ କର୍ତ୍ତା ହେଉଛନ୍ତି କବି ଗଂଗାଧର ମେହେର, ଧରଣୀଧର ମିଶ୍ର, ସୋମନାଥ ବାବୁ, ପଞ୍ଚସଖା ବ୍ରଜମୋହନ ପଟ୍ଟନାୟକ, ମଦନ ମୋହନ ମିଶ୍ର, ବଳଭଦ୍ର ସୂପକାର, ମଦନ ବିହାରୀ ଦାସ, ଶ୍ରୀପତି ମିଶ୍ର ଏବଂ ବୈକୁଣ୍ଠନାଥ ପୂଜାରୀ ଓ ଚନ୍ଦ୍ରଶେଖର ବେହେରା । ଏମାନେ ସମସ୍ତେ ଗୌରବର ପାତ୍ର, ଯାହାଙ୍କର ଅପରାଜେୟ ଭୂମିକା ଚିର ସ୍ମରଣୀୟ ।



# ଦକ୍ଷିଣ ଓଡ଼ିଶା ଓ  ମଧୁସୂଦନ

ବହିରାଗତ ପ୍ରଶାସକ ଓ ଜମିଦାର ଗୋଷ୍ଠୀଙ୍କର ନିଷ୍ପେଷଣରେ ଓଡ଼ିଆ ଜାତି ଓ ଓଡ଼ିଆ ଭାଷା  କ୍ରମଶଃ ତା'ର ସତ୍ତା ହରାଇବାକୁ ବସିଥାଏ । ପ୍ରତିବାଦର ସ୍ୱର ଓଡ଼ିଶାର ଠାଏଠାଏ ଶୁଣାଯାଉଥିଲେ ମଧ୍ୟ ତାହା ଥିଲା କ୍ଷୀଣ , ଅସଂଗଠିତ ଓ ଅସମାହିତ ।

ଏହି ଅସଂହତ ସ୍ୱରକୁ ଐକତାନିକ କଲେ ମଧୁସୂଦନ , ଗଣ ଆନ୍ଦୋଳନ ମାଧ୍ୟମରେ । ଫଳରେ ପ୍ରାକୃତିକ ଓଡ଼ିଶା ନିଜର ସଂହତି ଓ ଏକତ୍ୱର ପରିଚୟ ଫେରିପାଇଲା । ଦିଶାହରା ଓଡ଼ିଆ ଜାତିକୁ ଦିଗ୍‌ଦର୍ଶନ ପ୍ରଦାନରଏହି ପ୍ରକ୍ରିୟା ଆରମ୍ଭ ହେଲା ଊନବିଂଶ ଶତାବ୍ଦୀର ଶେଷ ପାଦରେ ।

ଦକ୍ଷିଣ ଓଡ଼ିଶା ମାନ୍ଦ୍ରାଜ ପ୍ରଦେଶରେ ଅନ୍ତର୍ଭୁକ୍ତ ହୋଇ ତା'ର ଭାଷା ସଂସ୍କୃତି ହରାଇଥାଏ । ଓଡ଼ିଆ ଭାଷା କୋର୍ଟ କଚେରିରୁ ଅବଲୁପ୍ତ । ଏହା ବିରୋଧରେ; ଖଲ୍ଲିକୋଟଠାରୁ ଆରମ୍ଭ କରି ଧରାକୋଟ, ସୋରଡ଼ା, ଜଳନ୍ତର, ସୁରଙ୍ଗୀ, ଟିକିଲି ଏବଂ ପାରଳା ଜମିଦାରି ଅଞ୍ଚଳର ପ୍ରତିନିଧିମାନେ ୧୮୭୦ ସେପ୍ଟେମ୍ବର ମାସରେ ଭଞ୍ଜନଗରଠାରେ ଦୀନବନ୍ଧୁ ମହାନ୍ତିଙ୍କ ଆହ୍ୱାନରେ ସଂଗଠିତ ହୋଇଥିଲେ ।  ଏଥିରେ ସହାୟତା ଦେଇଥିଲେ ଜନାର୍ଦ୍ଦନ ଦାସ । ଓଡ଼ିଆ ଭାଷାର ପ୍ରଚଳନପାଇଁ ସେମାନେ ନିବେଦନ ଜଣାଇଥିଲେ, ମାନ୍ଦ୍ରାଜ ସରକାର ଓ ବଡ଼ଲାଟଙ୍କୁ  । ଏହାପରେ ୧୯୭୩  ଜୁଲାଇ ୨୯ ତାରିଖରେ ବ୍ରହ୍ମପୁରରେ ଉତ୍କଳ ସମାଜ ଗଠିତ ହେଲା । ଉଇଲିୟମ୍ ମହାନ୍ତି ଓଡ଼ିଆ ଭାଷା ପ୍ରଚଳନ ଲାଗି ସଂଗ୍ରାମ ଚଳାଇଲେ । ପାରଳା ମହାରାଜା  ପଦ୍ମନାଭ ଦେବ ସାଂସ୍କୃତିକ ଜାଗରଣର କେନ୍ଦ୍ରବିନ୍ଦୁ ଥିଲେ । ଶ୍ୟାମସୁନ୍ଦର ରାଜଗୁରୁ ଓ ଗୋପୀନାଥ ନନ୍ଦଙ୍କର ସମ୍ମିଳିତ ରାଜକାର୍ଯ୍ୟ ବହୁ ପରିମାଣରେ ତେଲୁଗୁ ପ୍ରଭାବକୁ ପ୍ରତିହତ କରିଥିଲା । ଏ ସମସ୍ତ ସତ୍ତ୍ୱେ ୧୯୦୦ ସାଲ ବେଳକୁ ବ୍ରହ୍ମପୁରର କଲେକ୍ଟରଙ୍କ କାର୍ଯ୍ୟାଳୟରେ ଦେଢ଼ଶହ କର୍ମଚାରୀଙ୍କ ମଧ୍ୟରେ ମାତ୍ର ବାର ଜଣ ଓଡ଼ିଆ ନିମ୍ନ ସ୍ତରରେ ଅବସ୍ଥାପିତ ଥିଲେ । ସମସ୍ତ ଗଞ୍ଜାମ ଓ ଦକ୍ଷିଣ ଓଡ଼ିଶାକୁ ଆବରିତ କରି କୌଣସି ସଂଗଠିତ ସଂସ୍ଥା ଗଢ଼ି ଉଠି ନଥିଲା । ଏହି ବିକ୍ଷିପ୍ତ ଆନ୍ଦୋଳନକୁ ସାମଗ୍ରିକ

ରୂପ ଦେବାପାଇଁ ୧୮୯୫ରେ ଖଲିକୋଟର ରାଜା ହରିହର ମର୍ଦ୍ଦରାଜଙ୍କର ମୟୂରଭଞ୍ଜ ରାଜଜେମା ତଥା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କର ଭଗିନୀଙ୍କୁ ବିବାହ ପରେ ଉତ୍ତର ଓଡ଼ିଶା ସହିତ ଦକ୍ଷିଣ ଓଡ଼ିଶା ମଧ୍ୟରେ ଏକ ସାଂସ୍କୃତିକ ଯୋଗସୂତ୍ର ପ୍ରତିଷ୍ଠିତ ହେଲା । ଏହା ସହିତ ଦକ୍ଷିଣ ଓଡ଼ିଶାର ରାଜା ଜମିଦାରମାନେ ବୈବାହିକ ସମ୍ବନ୍ଧରେ ପରସ୍ପର ମଧ୍ୟରେ କେବଳ ସଂପର୍କିତ ନଥିଲେ, ବହୁ ଉତ୍ତର ଓଡ଼ିଶାର ରାଜା ଓ ଜମିଦାରଙ୍କ ସହିତ ଜ୍ଞାତି ତଥା ପାରିବାରିକ ବନ୍ଧନରେ ଆବଦ୍ଧ ଥିଲେ । ମାତ୍ର ୧୯୦୦ ସାଲରେ ସମଗ୍ର ଉପକୂଳ ସଂଯୁକ୍ତ ହେଲା ରେଳମାର୍ଗରେ ପରପସ୍ପରକୁ ନିକଟତର କରି ।

ଜାତିପ୍ରାଣ ମଧୁସୂଦନ ଏହି ସଂପର୍କକୁ ଓଡ଼ିଆ ଜାଗରଣର ଏକ ମାଧ୍ୟମ ରୂପେ ଗ୍ରହଣ କରିଥିଲେ । ତେଣୁ ୧୯୦୦ ସାଲ ବେଳକୁ ଲାଟ ବା ଅନ୍ୟ ଉଚ୍ଚପଦସ୍ଥ ଅଧିକାରୀଙ୍କ ପରିଦର୍ଶନ ଅଥବା ଦରବାର କଟକରେ ଅନୁଷ୍ଠିତ ହେଲାବେଳେ ଯେଉଁ ରାଜା ଓ ଜମିଦାର ଗୋଷ୍ଠୀଙ୍କର ସମାବେଶ ହୋଇଥିଲା, ସେମାନଙ୍କୁ ସ୍ୱତନ୍ତ୍ର ଭାବେ ନିମନ୍ତ୍ରଣ କରି ମଧୁବାବୁ ନିଜ କୋଠିରେ ଏକ କ୍ଷୁଦ୍ର ସମ୍ମିଳନୀର ଆୟୋଜନ କରି ଓଡ଼ିଶାର ସମସ୍ୟା ସେମାନଙ୍କ ଆଗରେ ଉପସ୍ଥାପିତ କରିଥିଲେ । ଏହି ସମ୍ମିଳନୀକୁ ସେ ସ୍ୱତନ୍ତ୍ର ଭାବେ ଖଲିକୋଟର ରାଜା ହରିହର ମର୍ଦ୍ଦରାଜଙ୍କୁ ନିମନ୍ତ୍ରଣ କରିଥିଲେ ।

ନିବିଡ଼ ପରିଚୟ ଓ ସଂପର୍କର ସୂତ୍ର ନେଇ ଏହି ରାଜା ଓ ଜମିଦାରଙ୍କ ମାଧ୍ୟମରେ ଗଞ୍ଜାମରେ ସାମୂହିକ ଜାଗରଣ ସୃଷ୍ଟି କରିବାପାଇଁ ମଧୁବାବୁ ୧୯୦୧ରେ ସ୍ୱତନ୍ତ୍ର ଭାବେ ଚିଠି ଲେଖି, ରାଜା ହରିହରଙ୍କୁ ହାର୍ଦ୍ଦିକ ଅନୁରୋଧ ଜଣାଇଥିଲେ । ସଙ୍ଗେସଙ୍ଗେ ପ୍ରତ୍ୟୁତ୍ତର ଦେଇ ହରିହର ମର୍ଦ୍ଦରାଜ ଅକୁଣ୍ଠ ସହଯୋଗର ପ୍ରତିଶ୍ରୁତି ଜଣାଇଥିଲେ । ରାଜା ହରିହରଙ୍କୁ ଏ କ୍ଷେତ୍ରରେ ପ୍ରୋତ୍ସାହନ ଦେବାପାଇଁ ଉପସ୍ଥିତ ଥିଲେ ଆପଣାର ପ୍ରମୁଖ ଉପଦେଷ୍ଟା ନରସିଂହ ଦାସ ଓ ନୀଳମଣି ବିଦ୍ୟାରତ୍ନ । ମଧୁସୂଦନଙ୍କ ପ୍ରସ୍ତାବର ପ୍ରାରମ୍ଭିକ ରୂପରେଖ ଲାଗି,ଯୁବରାଜ ରାମଚନ୍ଦ୍ର ମର୍ଦ୍ଦରାଜଙ୍କର ଦ୍ୱିତୀୟ ବାର୍ଷିକୀ ଜନ୍ମ ସମାରୋହ ପାଳନ ଉପଲକ୍ଷେ ହରିହର ୧୯୦୨ ଜାନୁଆରି ମାସରେ ଏକ କ୍ଷୁଦ୍ର ସମ୍ମିଳନୀ ଇମା ପ୍ରାସାଦଠାରେ ଆୟୋଜନ କଲେ । ଏହି ସମାବେଶରେ ମଧୁସୂଦନଙ୍କ ଛଡ଼ା ମୟୂରଭଞ୍ଜର ମହାରାଜା, ଫକୀରମୋହନ ସେନାପତି, ପର୍ଶୁରାମ ପାତ୍ର, ଗଦାଧର ବିଦ୍ୟାଭୂଷଣ, ବଳରାମ ମହାରଣା, ନରସିଂହ ଦାସ, ନୀଳମଣି ବିଦ୍ୟାରତ୍ନ ପ୍ରଭୃତି ଯୋଗ ଦେଇଥିଲେ । ଏଥିରେ ଉତ୍କଳ ଜନନୀଙ୍କର ଖଣ୍ଡିତ ରୂପ ସମସ୍ତଙ୍କ ଆଖି ଆଗରେ ନାଚିଗଲା ଓ 'ଜୟ ଉତ୍କଳ ଜନନୀ' ଧ୍ୱନିର ଅବତାରଣା କରାଗଲା । ଏହାର ପରବର୍ତ୍ତୀ ଅଧିବେଶନ ଗଞ୍ଜାମଠାରେ କରିବାପାଇଁ ମଧୁବାବୁ ସର୍ବସମକ୍ଷରେ ପ୍ରସ୍ତାବ ରଖିଲେ ।

ଏହି ପ୍ରସ୍ତାବକୁ ଆଧାର କରି ୧୯୦୩ ଏପ୍ରିଲ୍ ୧୧ ତାରିଖରେ ଗଞ୍ଜାମର ପ୍ରଥମ ଗ୍ରାଜୁଏଟ୍ ଶ୍ୟାମସୁନ୍ଦର ରାଜଗୁରୁଙ୍କର ସଭାପତିତ୍ୱରେ ବ୍ରହ୍ମପୁରଠାରେ ଗଞ୍ଜାମ ସମ୍ମିଳନୀ ଅନୁଷ୍ଠିତ ହେଲା ।

ଏହି ସମ୍ମିଳନୀରେ ମଧୁବାବୁ ଉଦ୍‌ବୋଧନ ଦେଇ କହିଲେ ଯେ, ପ୍ରାକୃତିକ ଦେଶର ସବୁ ଅଞ୍ଚଳରୁ ପ୍ରତିନିଧି ଆସିଛନ୍ତି । ତେଣୁ ଏହା ଉତ୍କଳ ସମ୍ମିଳନୀ ବୋଲାଇବ । ସମସ୍ତଙ୍କ ମନକୁ ଏକଥା ପାଇଲା । ସ୍ଥିର ହେଲା ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକରେ ଅନୁଷ୍ଠିତ ହେବ । ସମ୍ମିଳନୀର ପ୍ରତିନିଧିମାନେ ଗୋଲାପୀ ରଂଗର ପାଗ ଧାରଣ କରିବେ ବୋଲି ସ୍ଥିର ହେଲା । ଗଞ୍ଜାମ

ସମ୍ମିଳନୀ ଉତ୍କଳ ସମ୍ମିଳନୀର ଜନ୍ମଦାତ୍ରୀ ହେଲା । (ପଣ୍ଡିତ ବାଇକୋଳି ମହାପାତ୍ରଙ୍କର ଓଡ଼ିଆ ଆନ୍ଦୋଳନର ଇତିହାସ, ପୃଷ୍ଠା-୫୮ )

କଟକରେ ୧୯୦୩ ଡିସେମ୍ବର ୩୦ ଓ ୩୧ ତାରିଖରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ଗଞ୍ଜାମରୁ ୧୨୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ମଧୁସୂଦନଙ୍କ ଅଭିଳାଷ ବହୁ ପରିମାଣରେ ସାକାର ହେଲା । ପ୍ରକୃତରେ ଉତ୍କଳ ସମ୍ମିଳନୀର ପରବର୍ତ୍ତୀ ପର୍ଯ୍ୟାୟରେ ଗଞ୍ଜାମର ରାଜା, ଜମିଦାର ତଥା ନେତୃସ୍ଥାନୀୟ ବ୍ୟକ୍ତିମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ରାଜା ହରିହରଙ୍କର ତୃତୀୟ ଭଗିନୀପତି ମଦନମୋହନ ସିଂହଦେଓ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ (୧୯୦୪)ରେ ଓ ଦ୍ୱିତୀୟ ଭଗିନୀପତି ସୁରଙ୍ଗୀର ରାଜା ଚନ୍ଦ୍ର ଚୂଡ଼ାମଣି ହରିଚନ୍ଦନ ପଞ୍ଚମ ଅଧିବେଶନ (୧୯୦୮) ଓ ଅଷ୍ଟମ ଅଧିବେଶନ (୧୯୧୪)ରେ ଅଧ୍ୟକ୍ଷତା କରିଥିଲେ । ଏହାଛଡ଼ା ଦଶମ ଅଧିବେଶନ (୧୯୧୧)ରେ ମହାରାଜା ବିକ୍ରମ ଦେବ ବର୍ମା ଓ ଦ୍ୱାଦଶ ଅଧିବେଶନ (୧୯୧୬)ରେ ମଞ୍ଜୁଷା ରାଜା ରାଜମଣି ଅଧ୍ୟକ୍ଷତା କରିଥିଲେ । ୧୯୩୩ରେ ଅନୁଷ୍ଠିତ ବ୍ରହ୍ମପୁର ଅଧିବେଶନରେ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଅଧ୍ୟକ୍ଷତା କରିଥିଲେ ।

୧୯୦୫ ସାଲରୁ ଦକ୍ଷିଣ ଓଡ଼ିଶାର ମିଶ୍ରଣ ହିଁ ମଧୁସୂଦନଙ୍କର ଚିନ୍ତା ଓ ଚେତନାରେ ଅଗ୍ରାଧିକାର ଲାଭ କରିଥିଲା । ୧୯୦୬ ସାଲରେ ଉତ୍କଳ ସମ୍ମିଳନୀର ୪ର୍ଥ ଅଧିବେଶନ ବ୍ରହ୍ମପୁରରେ ଅନୁଷ୍ଠିତ ହେଲା । ମାତ୍ର ଏହା ପୂର୍ବରୁ ୧୯୦୫ ସାଲରେ ମଧୁବାବୁଙ୍କ ପ୍ରେରଣାରେ ସେହିବର୍ଷ ଏପ୍ରିଲ୍ ୨୯, ୩୦ ତାରିଖରେ ଖଲିକୋଟ ଜମିଦାରିର ରମ୍ଭାଠାରେ ଉତ୍କଳ ସମ୍ମିଳନୀର ସ୍ୱତନ୍ତ୍ର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିରେ ପ୍ରାକୃତିକ ଉତ୍କଳର ବହୁ ପ୍ରତିନିଧି ଯୋଗ ଦେବା ସଙ୍ଗେ ସଙ୍ଗେ ଶ୍ରୀରାମଚନ୍ଦ୍ର ଭଞ୍ଜ(ମୟୂରଭଞ୍ଜ) ସଭାପତି ଓ ମଧୁବାବୁ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ । ସମ୍ମିଳନୀ ପରେ ମଧୁବାବୁ ଆହୁରି ୨ ଦିନ ରମ୍ଭାଠାରେ ଉପସ୍ଥିତ ରହି ଭବିଷ୍ୟତ କାର୍ଯ୍ୟପନ୍ଥାର ରୂପରେଖ ପ୍ରସ୍ତୁତ କରିଥିଲେ ।

୧୯୦୬ ସାଲରେ ବ୍ରହ୍ମପୁରଠାରେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବଙ୍କର ଅଧ୍ୟକ୍ଷତାରେ ଅନୁଷ୍ଠିତ ଅଧିବେଶନରେ ମଧୁବାବୁ ଯୋଗ ଦେଇ ଏହି ସମ୍ମିଳନୀର ପରିଚାଳନା ପାଇଁ ନଅଶହ ଟଙ୍କା ଦାନ କରିଥିଲେ । କଟକରେ ଅନୁଷ୍ଠିତ ପ୍ରଥମ ଦୁଇ ଅଧିବେଶନର ପ୍ରାୟ ସମସ୍ତ ଖର୍ଚ୍ଚ ମଧୁବାବୁ ବହନ କରିଥିଲେ ଏବଂ ପରବର୍ତ୍ତୀ ବହୁ ଅଧିବେଶନ ଲାଗି ଖର୍ଚ୍ଚର ସିଂହଭାଗ ମଧୁବାବୁ ସ୍ୱୟଂ ବହନ କରିଚାଲିଥିଲେ । ଜୀବନର ସାୟାହ୍ନରେ ୧୯୨୮ ସାଲ ନଭେମ୍ବର ମାସରେ ଅନୁଷ୍ଠିତ ଏକ ସଭାରେ କହିଥିଲେ,'' ମୁଁ ଉତ୍କଳ ଜନନୀଙ୍କର ସେବାଲାଗି ବିଦୁରର ଖୁଦ ମାତ୍ର ଦାନ କରିଛି ସତ, ମାତ୍ର ମୁଁ ପରଠାରୁ ମାଗିକରି ଦେଶସେବା କରିବା ଜାଣେ ନାହିଁ ।'' ଏହାଥିଲା ମଧୁବାବୁଙ୍କର ପ୍ରାଣବନ୍ତ ବକ୍ତବ୍ୟର ଉଜ୍ଜ୍ୱଳ ବିଭବ,ଯାହା ଥିଲା ସମର୍ପିତ ଭାବେ ଦେଶମାତୃକାର ସେବା ଲାଗି ଉତ୍ସର୍ଗୀକୃତ ଆତ୍ମଦାନର ଏକ ଜ୍ୱଳନ୍ତ ନିଦର୍ଶନ । ରାଜନ୍ୟ ମଣ୍ଡଳୀଙ୍କ ଛଡ଼ା, ମଧୁବାବୁଙ୍କର ସମ୍ପର୍କ ଗଢ଼ି ଉଠିଥିଲା ସବ୍‌ରେଜିଷ୍ଟ୍ରାର୍ ନରସିଂହ ଦାସ (କାନକୁଟୁରୁ)ଓ ଆସିକାର ହରିହର ପଣ୍ଡାଙ୍କ ସହିତ । ପରବର୍ତ୍ତୀ ସ୍ତରରେ ଏହି ବଳୟ ମଧ୍ୟକୁ ଆସିଥିଲେ ଶଶିଭୂଷଣ ରଥ

ଓ ବିଶ୍ୱନାଥ ଦାଶ (ପୂର୍ବତନ ପ୍ରଧାନମନ୍ତ୍ରୀ) । ଏମାନେ ମଧୁସୂଦନ ଦାସଙ୍କୁ ରାଜନୈତିକ ଗୁରୁ ରୂପେ ଗ୍ରହଣ କରିଥିଲେ । ମଧୁବାବୁ ଉତ୍କଳ ଜାତୀୟତାର ପ୍ରତୀକ ରୂପେ ଗ୍ରହଣ କରିଥିଲେ, ଶ୍ରୀ ଜଗନ୍ନାଥ ,ଉତ୍କଳ ଜନନୀ ଏବଂ ଉପେନ୍ଦ୍ର ଭଞ୍ଜଙ୍କୁ । ସେ ବହୁବାର କହୁଥିଲେ, ଉପେନ୍ଦ୍ର ଭଞ୍ଜଙ୍କ ଜାତିମନ୍ତ୍ରରେ ଉତ୍କଳ ଜନନୀଙ୍କର ଅବରୁଦ୍ଧ କଣ୍ଠ ଖୋଲିଯିବ । ୧୯୧୨ ରେ ବ୍ରହ୍ମପୁରରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ମଧୁବାବୁ କହିଥିଲେ, ''ଉପେନ୍ଦ୍ର ଭଞ୍ଜ ଏହିଠାରେ ଜନ୍ମଗ୍ରହଣ କରିଥିଲେ । କୋଟି କୋଟି ଓଡ଼ିଆ ତାଙ୍କୁ ଆମ ଜାତିର କବି କହୁଛନ୍ତି । ମୁଁ ପ୍ରଶ୍ନ କରେ ତୁମ୍ଭର କିପରି ହେଲେ ? ଜାତି କହିଲା, ଜାତିର ସୁସନ୍ତାନ ଜାତିର ଏବଂ କୁସନ୍ତାନ ବାପା ଓ ମାଆର ।'' ୧୯୧୩ ସାଲରେ ପୁରୀ ଅଧିବେଶନରେ ସଭାପତିତ୍ୱ କରି ମଧୁବାବୁ କହିଥିଲେ, 'ଯେଉଁ ପ୍ରଦେଶରୁ ଉପେନ୍ଦ୍ର ଭଞ୍ଜଙ୍କର କଣ୍ଠଧ୍ୱନି ଉଠି ଏକ ସମୟରେ ଉତ୍କଳ ଜାତିର ହୃଦୟକୁ ଆହ୍ଲାଦରେ ନଚାଇ ଥିଲା, ସେ ପ୍ରଦେଶ ଉତ୍କଳ ଜନନୀର ଶରୀରରୁ ବିଛିନ୍ନ । ପୁନର୍ବାର ସେ କହିଥିଲେ,'' ଉପେନ୍ଦ୍ର ଭଞ୍ଜଙ୍କ ମସ୍ତିଷ୍କ ଗଞ୍ଜାମରେ ଯାହା ଉତ୍କଳ ମାତାଙ୍କର ଗଣ୍ଡିରୁ ବିଛିନ୍ନ ।'' ପ୍ରକୃତରେ ଉପେନ୍ଦ୍ର ଭଞ୍ଜଙ୍କ ଜନ୍ମଭୂମିକୁ ଉତ୍କଳମାତାଙ୍କ ମସ୍ତିଷ୍କ ରୂପେ ଚିହ୍ନିତ କରି, ଗଞ୍ଜାମକୁ ଓଡ଼ିଶାରେ ମିଶାଇବାଲାଗି ଜାଗରଣ ସୃଷ୍ଟି କରିବାପାଇଁ ମଧୁସୂଦନ ଛିନ୍ନମସ୍ତା ଦିବସ ପାଳନ କରିଥିଲେ ଏବଂ ଏହି ଅବସରରେ ଏକ ବିଶାଳ ଶୋଭାଯାତ୍ରାର ନେତୃତ୍ୱ ନେଇ ପରିଣତ ବୟସରେ ୧୯୨୮ ସାଲରେ ପଦବ୍ରଜରେ ବୁଲି ଦେଶବାସୀଙ୍କୁ ଆହ୍ୱାନ ଜଣାଇଥିଲେ । ଉପେନ୍ଦ୍ର ଭଞ୍ଜଙ୍କୁ ଜନମାନସରେ ପ୍ରତିଷ୍ଠିତ କରିବାପାଇଁ ତାଙ୍କରି ପ୍ରେରଣାରେ ନିଜର କନିଷ୍ଠ ଭ୍ରାତା ଗୋପାଳ ବଲ୍ଲଭ 'ଇନ୍ଦ୍ରଧନୁ' ପତ୍ରିକା ସଂପାଦନ କରିଥିଲେ । ତିରିଶି ବର୍ଷର ପ୍ରତୀକ୍ଷା ପରେ ୧୯୨୮ ସାଲ ଡିସେମ୍ବର ୧୨ ତାରିଖରେ ମଧୁବାବୁଙ୍କ ଦ୍ୱାରା ପ୍ରେରିତ ବ୍ରଜସୁନ୍ଦର ଦାସଙ୍କ ନେତୃତ୍ୱରେ ଏକ ପ୍ରତିନିଧି ମଣ୍ଡଳ ପାଟଣାଠାରେ ସାଇମନ କମିଶନଙ୍କୁ ସ୍ୱାଗତ ଜଣାଇଥିଲେ । କନିକା ରାଜା ଲକ୍ଷ୍ମୀଧର ମହାନ୍ତିଙ୍କ ଦ୍ୱାରା ବିହାର ଓଡ଼ିଶା ଆସେମ୍ବ୍ଲି ପକ୍ଷରୁ ସାଇମନ କମିଶନଙ୍କୁ ସାକ୍ଷ୍ୟ ପ୍ରଦାନ, କମିଶନଙ୍କୁ ପାରଳା ମହାରାଜାଙ୍କ ନେତୃତ୍ୱରେ ମାନ୍ଦ୍ରାଜଠାରେ ଦାବିପତ୍ର ପ୍ରଦାନ ସାଙ୍ଗକୁ ଅଟ୍‌ଲି ସବ୍‌କମିଟିର ଅନୁମୋଦନ ଫଳରେ, ଦୀର୍ଘକାଳ ଧରି ଅବରୁଦ୍ଧ ରହିଥିବା ଦ୍ୱାର ଉନ୍ମୋଚିତ ହୋଇଥିଲା ଓ ସାଇମନ୍ କମିଶନ୍ ଓଡ଼ିଶା ପ୍ରଦେଶ ଗଠନର ଦାବିକୁ ସ୍ୱୀକୃତି ପ୍ରଦାନ କରିଥିଲେ । ଏହାକୁ କାର୍ଯ୍ୟକାରୀ କରିବାପାଇଁ ପାରଳା ମହାରାଜା, ମଧୁସୂଦନଙ୍କ ପ୍ରେରଣାରେ ୧୬.୧.୧୯୩୧ରେ ପ୍ରଥମ ଗୋଲଟେବୁଲ୍ ବୈଠକରେ ଦାବିପତ୍ର ଉପସ୍ଥାପନ କଲେ । ଏହା ପରେ ସୀମାନିର୍ଦ୍ଧାରଣପାଇଁ ଓଡ଼ନେଲ୍ କମିଟି ଗଠନ କରାଗଲା । ୭.୧୨.୧୯୩୨ରେ ତୃତୀୟ ଗୋଲଟେବୁଲ୍ ବୈଠକରେ ଖଲିକୋଟ ରାଜାଙ୍କର ଯୋଗଦାନ ପରେ, ଓଡ଼ିଶା ପ୍ରଦେଶର ଗଠନର ଐତିହାସିକ ଘୋଷଣାନାମା ୨୪.୧୨.୧୯୩୨ରେ ପ୍ରକାଶ ପାଇଥିଲା । ମାତ୍ର ୧୭.୩.୧୯୩୩ରେ ପ୍ରକାଶିତ ଶ୍ୱେତପତ୍ରରେ ପାରଳା ଓ ଜୟପୁର ଜମିଦାରିକୁ ପ୍ରସ୍ତାବିତ ସୀମା ମଧ୍ୟରୁ ବାଦ ଦିଆଯିବାଯୋଗୁ ନୈରାଶ୍ୟ ସୃଷ୍ଟି ହୋଇଥିଲା । ମାତ୍ର ମଧୁସୂଦନଙ୍କ ଦୃଢ଼ ଓ ଦିଗ୍‌ଦର୍ଶୀ ନିର୍ଦ୍ଦେଶରେ ଅନୁପ୍ରେରିତ ହୋଇ ପାରଳା ମହାରାଜାଙ୍କ ନେତୃତ୍ୱରେ ୩.୭.୧୯୩୩ରେ ଜଏଣ୍ଟ ପାର୍ଲାମେଣ୍ଟ କମିଟିରେ ଲଣ୍ଡନଠାରେ

ଦାବିପତ୍ର ଉପସ୍ଥାପନା ପରେ  ଓଡ଼ିଶା ପ୍ରଦେଶର ବର୍ତ୍ତମାନର ରୂପରେଖ ସ୍ଥିରୀକୃତ ହୋଇଥିଲା । ଏହି ସମୟରେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକ୍ ଡୋନାଲ୍‌ଡ଼ଙ୍କ ସହିତ ମଧୁସୂଦନଙ୍କ ପୂର୍ବ ପରିଚୟ ଥିଲା । ସେ ମଧୁବାବୁଙ୍କୁ ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ ବୋଲି ଆଖ୍ୟାୟିତ କରୁଥିଲେ । ବ୍ରିଟିଶ ପ୍ରଶାସନର ବହୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଅବସ୍ଥାପିତ ନେତୃବର୍ଗଙ୍କ ସହିତ ମଧୁସୂଦନଙ୍କ ଘନିଷ୍ଠ ପରିଚୟ, ଓଡ଼ିଶା ଗଠନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲା । ଶାରୀରିକ ଅସୁସ୍ଥତା ସତ୍ତ୍ୱେ ସେ ଓଡ଼ନେଲ କମିଟିକୁ  କଟକଠାରେ ନିଜ କୋଠରିରେ ଭବ୍ୟ ସମ୍ବର୍ଦ୍ଧନା  ପ୍ରଦାନ କରି, ବହୁ ଉପାନ୍ତ ଅଞ୍ଚଳରେ ବୁଲି ସାକ୍ଷ୍ୟ ପ୍ରଦାନ କରିଥିଲେ ।

ଜୁନ୍ ୧୯୩୩ରେ ଗଠିତ ଓଡ଼ିଶା ପ୍ରାଶାସନିକ କମିଟିର ବରିଷ୍ଠ ସଦସ୍ୟ ରୂପେ ମଧୁସୂଦନ, କିଛି ଉପାନ୍ତ ଅଞ୍ଚଳ ଭ୍ରମଣ କରି ଓଡ଼ିଶା ପ୍ରଦେଶର ପ୍ରାଶାସନିକ ରୂପରେଖ ପ୍ରସ୍ତୁତ କରିଥିଲେ । ଏହି ଅବସରରେ ସେ ୧୯୩୩  ଅକ୍ଟୋବର ମାସରେ ଆପଣାର ପ୍ରିୟ ସହର ବ୍ରହ୍ମପୁରକୁ ଶେଷ ଥରପାଇଁ ଆସି ଆପଣାର ଏକାନ୍ତ ଅନୁଗାମୀ ଶଶିଭୂଷଣ ରଥଙ୍କ  ଆତିଥ୍ୟ ଗ୍ରହଣ କରିଥିଲେ । ସବୁଠାରୁ ଉର୍ଦ୍ଧ୍ୱରେ ମଧୁସୂଦନ ପ୍ରାକୃତିକ ଓଡ଼ିଶାକୁ ଏକତାର ସୂତ୍ରରେ ବାନ୍ଧିବା ପାଇଁ ଯେଉଁ ଅବିରାମ ସଂଗ୍ରାମ ଚଳାଇଥିଲେ, ତାହାର ଶେଷ ଯୁଦ୍ଧଟି ସଂଚାଳିତ ହୋଇଥିଲା ବ୍ରହ୍ମପୁର ମାଟିରେ, ଯହିଁରେ ସେନାପତି ରୂପେ ଉଭା ହୋଇଥିଲେ କୃଷ୍ଣଚନ୍ଦ୍ର ଗଜପତି ଆଉ ମାର୍ଗଦର୍ଶନ କରିଥିଲେ ଜାତିପ୍ରାଣ ମଧୁସୂଦନ  । ଦକ୍ଷିଣ ଓଡ଼ିଶା ମଧୁସୂଦନଙ୍କର ଚିନ୍ତା ଚେତନାର କେନ୍ଦ୍ରବିନ୍ଦୁ ଥିଲା ଆଉ ମଧୁବାବୁଙ୍କ ପାଇଁ ଏଇ ମାଟିରେ ଆବିର୍ଭୂତ ଉପେନ୍ଦ୍ର ଭଞ୍ଜ  ଥିଲେ ଓଡ଼ିଆ ଜାତୀୟତାର ମହାନ ପ୍ରତୀକ । ମଧୁସୂଦନଙ୍କର ପ୍ରଖର ପୁରୋଦୃଷ୍ଟି, କ୍ରାନ୍ତିକାରୀ ଅନୁପ୍ରେରଣା ଓ ଗଜପତିଙ୍କର ଦେଶମାତୃକା ପ୍ରତି ଅଚଳା ଭକ୍ତି ପ୍ରରୋଚିତ କାର୍ଯ୍ୟଧାରା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲା ।

**ଦକ୍ଷିଣ ଓଡିଶାର ବ୍ୟକ୍ତିତ୍ୱ ଓ ମଧୁବାବୁ-**

ମଧୁସୂଦନଙ୍କର ଚେତନାର ଦିଗ୍‌ବଳୟ ମଧ୍ୟକୁ ଆସିଛନ୍ତି ଗଞ୍ଜାମ ବ୍ୟାଘ୍ର ଶଶି ଭୂଷଣ ରଥ  । ତାଙ୍କର ଅନୁପ୍ରେରଣାରୁ ଜୋତା ଶିଳ୍ପର ପରିସରକୁ ଘଟିଛି ତାଙ୍କର ପ୍ରବେଶ ।  ୧୯୦୫ରୁ ୧୯୦୮ ମଧ୍ୟରେ ବମ୍ବେଠାରେ ଜୋତା ଶିଳ୍ପରେ ବ୍ୟବସାୟ କରିବା ପରେ ୧୯୦୮ରେ ମଧୁବାବୁଙ୍କ ଟ୍ୟାନେରିରେ ମ୍ୟାନେଜର ରୂପେ କିଛିକାଳ ଅବସ୍ଥାପିତ ହୋଇଛନ୍ତି । ଏହି ସମୟରେ ମଧୁବାବୁଙ୍କ ହରିଜନ ତଥା ସମାଜର ଦଳିତ ବର୍ଗ ପ୍ରତି ଅନୁକମ୍ପାମୂଳକ ସୌହାର୍ଦ୍ଦ୍ୟ ଓ ସହୃଦୟତା, ଶଶିବାବୁଙ୍କ  ଦୃଷ୍ଟି ଆକର୍ଷଣ କରିଛି  । ଦେଶ ମିଶ୍ରଣ ଆନ୍ଦୋଳନର ମହନୀୟତା, ଓଡ଼ିଆମାନଙ୍କ ସ୍ୱାଭିମାନ ସଂପର୍କୀୟ ଦୃଷ୍ଟିଭଙ୍ଗୀ  ଓ  ଉଦ୍ଦାମ ଜାତୀୟତା ତାଙ୍କୁ ଆକୃଷ୍ଟ କରିଛି  ।

ମଧୁବାବୁଙ୍କ ଅନୁପ୍ରେରଣାରେ ଶଶିଭୂଷଣ ହରିଜନ ଶ୍ରେଣୀକୁ ଉପଯୁକ୍ତ ମାନ୍ୟତା ଦେବାପାଇଁ ଆଗୁସାର ହୋଇଛନ୍ତି  । ସରକାର ୧୯୨୩ରେ ଦଣ୍ଡାସୀ ଜାତିକୁ ଦାଗୀ ସଂପ୍ରଦାୟ ରୂପେ ଅଭିହିତ କରିଥିଲେ । ଏହାର ପ୍ରତିବାଦ ଜଣାଇ ଶଶିବାବୁ ୧୯୨୩ ମାର୍ଚ୍ଚ ୨୧ ତାରିଖ ଦିନ

ପୁରୁଷୋତ୍ତମପୁର ନିକଟସ୍ଥ ତାରାତାରିଣୀ ପୀଠରେ ଦଣ୍ଡାସୀ କୁଳର ମହାସଭା ଆହ୍ୱାନ କରି ଦଣ୍ଡାସି କୁଳ ମହାସଂଘ ପ୍ରତିଷ୍ଠା କରିଥିଲେ । କ୍ରମେ ସେମାନଙ୍କର ବ୍ୟବହାରରେ ବ୍ୟାପକ ପରିବର୍ତ୍ତନ ଅଣାଇ ସେମାନଙ୍କୁ ସାମାଜିକ ମାନ୍ୟତା ପ୍ରଦାନ କରିଥିଲେ । ଶଶିବାବୁଙ୍କ ପ୍ରଚେଷ୍ଟା ଫଳରେ ଦଣ୍ଡାସିମାନେ ବିଭିନ୍ନ ରାଜକର୍ମରେ ନିଯୁକ୍ତି ପାଇଥିଲେ । ସରକାରୀ ସ୍ତରରେ ନୁଯୁକ୍ତି ମଧ୍ୟ ମିଳିଥିଲା ।

ଏହଛଡ଼ା ମଧୁସୂଦନଙ୍କ ପ୍ରତି ମହାତ୍ମାଗାନ୍ଧୀଙ୍କର ଯେଉଁ ଶ୍ରଦ୍ଧାଞ୍ଜଳି ବିଭିନ୍ନ ପତ୍ରିକା (ହରିଜନ ଓ ୟଙ୍ଗ ଇଣ୍ଡିଆ)ରେ ପ୍ରକାଶ ପାଇଥିଲା, ତାହାକୁ ଆପଣାର 'ଆଶା' ପତ୍ରିକାରେ ମୁଦ୍ରିତ କରାଇ ମଧୁସୂଦନଙ୍କୁ ଏ ଯୁଗର ଜଣେ ଶ୍ରେଷ୍ଠ ଦିଗ୍‌ଦର୍ଶୀ ପୁରୁଷ ରୂପେ ତାଙ୍କର ଉଚ୍ଛ୍ୱସିତ ଶ୍ରଦ୍ଧା ଜ୍ଞାପନ କରିଥିଲେ ।

୧୯୩୪ ସାଲ ଫେବୃଆରି ୪ ତାରିଖରେ, ମଧୁସୂଦନଙ୍କର ମହାପ୍ରୟାଣରେ ଶଶିଭୂଷଣ ରଥ ନ୍ୟୁ ଓଡ଼ିଶା ପତ୍ରିକାରେ ୬.୨.୧୯୩୪ରେ ଯେଉଁ ଶୋକୋଚ୍ଛ୍ୱାସ ସମ୍ବଳିତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ ତାହା ପ୍ରଣିଧାନଯୋଗ୍ୟ-

''ପୂଜ୍ୟ ମଧୁସୂଦନ ଦାସଙ୍କର ମହାପ୍ରୟାଣରେ ସମଗ୍ର ଓଡ଼ିଶା ମର୍ମାହତ । ମାତ୍ର ମୋ'ପାଇଁ ଏହି ଦୁଃଖ ଅତ୍ୟନ୍ତ ମର୍ମନ୍ତୁଦ । ମୋର ସୌଭାଗ୍ୟ ଯେ ମୋତେ ସେ ତାଙ୍କର ଚେଲା (ଶିଷ୍ୟ) ରୂପେ ଗ୍ରହଣ କରିଥିଲେ । ବହୁତ ଦିନ ଆଗେ ତେଜୋଦୀପ୍ତ ତାଙ୍କର ପ୍ରଭାବର ବଳୟ ମଧ୍ୟକୁ ଆସିଥିଲି । ମୋ ପାଇଁ ସେ ସଖା, ଦିଗ୍‌ଦର୍ଶକ ଓ ଦାର୍ଶନିକ ଥିଲେ । ସେ ସାରଲ୍ୟ ଓ ଉତ୍ସର୍ଗର ପ୍ରତୀକ ଥିଲେ । ଯେତେବେଳେ ସର୍ବତ୍ର ଅବସାଦ ଓ ନୈରାଶ୍ୟର ଛାୟା ଘେରି ଆସିଥିଲା, ସେ ସେତେବେଳେ ଆଶାର କିରଣ ସଂପାତରେ ଦିଗ୍‌ବଳୟକୁ ପ୍ରଭାନ୍ୱିତ ଓ ଆଲୋକିତ କରିଥିଲେ ।

ମୁଁ ସର୍ବସାଧାରଣଙ୍କ ପାଇଁ ସେବାଦାନର ଶିକ୍ଷା ତାଙ୍କଠାରୁ ଗ୍ରହଣ କରିଥିଲି । ସେ ହିଁ, ମୋତେ ଦେଶ ସେବାରେ ନିଜକୁ ଉତ୍ସର୍ଗ କରିବାପାଇଁ ଅନୁପ୍ରାଣିତ କରିଥିଲେ, ଯାହାଙ୍କ ଯୋଗୁ ବିଧିର ନିର୍ଦ୍ଦେଶରେ ମୋତେ ଏହି ପରମ କର୍ତ୍ତବ୍ୟ ପ୍ରାପ୍ତ ହୋଇପାରିଛି । ଜୀବନର ବହୁ ଦୁଃଖଦ ପରିସ୍ଥିତିରେ ତାଙ୍କର ଚେତନା ମୋତେ ନିରନ୍ତର ଉତ୍ସାହ ପ୍ରଦାନ କରିଛି । ଏହା ମୋପାଇଁ ଏକ ସାନ୍ତ୍ୱନାର ବିଷୟ ଯେ ସେ ଯେତେବେଳେ ହବାକ୍ କମିଟିର ସଦସ୍ୟ ରୂପେ ବ୍ରହ୍ମପୁର ଆସିଥିଲେ, ସେ ଆଶା ଅଫିସ୍‌କୁ ଆସି ଉଭୟ ଆଶା ଓ ନ୍ୟୁ ଓଡ଼ିଶା ପତ୍ରିକା ପ୍ରତି ତାଙ୍କର ଆଶୀର୍ବାଦ ପ୍ରଦାନ କରିଥିଲେ ।''

ପ୍ରକୃତରେ ମଧୁସୂଦନ ଶଶିଭୂଷଣଙ୍କ ଜୀବନ ଯାତ୍ରାର ପ୍ରତ୍ୟେକ ପର୍ଯ୍ୟାୟର କାର୍ଯ୍ୟକଳାପ ପ୍ରତି ସଶ୍ରଦ୍ଧ ଦୃଷ୍ଟି ରଖୁଥିଲେ । ଯେତେବେଳେ କିଛି ଶିଥିଳତା ଦେଖାଦେଉଥିଲା ସେ କହୁଥିଲେ, ''ମୁଁ ତୁମକୁ ଦେଶ ସେବାରେ ଏକ କାର୍ଯ୍ୟବ୍ୟସ୍ତ ଜୀବନ ମଧ୍ୟରେ ସର୍ବଦା ଦେଖିବାକୁ ଚାହେଁ । ତୁମେ କ'ଣ ମୁନିଋଷିଙ୍କ ପରି ନୀରବତା ଅବଲମ୍ବନ କରୁଛ?'' ଏ ଥିଲା ଅନୁଗତ ଶିଷ୍ୟଙ୍କପାଇଁ ସ୍ୱାଭିମାନୀ ଗୁରୁଙ୍କ ନିର୍ଦ୍ଦେଶ, ଯାହା ପଥ ହୁଡ଼ିଥିବା ବିଶ୍ୱସ୍ତ ଶିଷ୍ୟଙ୍କ ପ୍ରତି ମାର୍ଗଦର୍ଶନର ନିର୍ଦ୍ଦେଶନାମା ।

ଦକ୍ଷିଣ ଓଡ଼ିଶା ସହିତ ଉତ୍ତର ଓଡ଼ିଶାର ସାଂସ୍କୃତିକ ସମ୍ବନ୍ଧକୁ ଅଧିକ ରସାଣିତ, ମାର୍ମିକ, ଆଉ ସମ୍ବେଦନଶୀଳ କରିବାପାଇଁ, ଏକ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ବିବାହ ସଂଯୋଜିତ ହୋଇଥିଲା ୧୯୨୫ ସାଲରେ। ତାହାଥିଲା ଦେଶ ମିଶ୍ରଣ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ଭୁବନାନନ୍ଦ ଦାସଙ୍କ ସହିତ ଆସିକାର ସତ୍ୟାଗ୍ରହୀ ନିରଞ୍ଜନ ପଟ୍ଟନାୟକଙ୍କର ଭଗିନୀ ରୁକ୍ମିଣୀ ଦେବୀଙ୍କର ଶୁଭ ପରିଣୟ ।

ଏହି ପରିଣୟ ମାଧ୍ୟମରେ, ନିରଞ୍ଜନ ପଟ୍ଟନାୟକ କଟକର ସାଂସ୍କୃତିକ ପରିବେଶରେ ଉଦ୍‌ଭାସିତ ହୋଇ ଉଠିଥିଲେ ଏକ ଜ୍ଞାନଦୀପ୍ତ ଯୁବ ପ୍ରତିଭା ରୂପେ ଆଉ ଆସି ପାରିଥିଲେ ମଧୁସୂଦନଙ୍କର ପ୍ରଭାମୟ ବଳୟ ମଧ୍ୟରେ । ସ୍ୱାମୀ ବିଚିତ୍ରାନନ୍ଦ ଓ ଭୁବନାନନ୍ଦ ଦାସ ଥିଲେ ମଧୁସୂଦନଙ୍କ ଅନ୍ତରଙ୍ଗ ପରିଧି ମଧ୍ୟରେ ଯେଉଁମାନଙ୍କ ପାଇଁ ଦେଶସେବା ଥିଲା ଏକ ସମର୍ପିତ ପ୍ରାଣର ନୈବେଦ୍ୟ । ଆଉ ନିରଞ୍ଜନ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରୁ ମାତ୍ର ଏକୋଇଶି ବର୍ଷ ବୟସରେ ସ୍ନାତକ ଡିଗ୍ରୀ ହାସଲ କଲାବେଳକୁ ଲେଖି ସାରିଥିଲେ ଭଞ୍ଜନଗର ଚକ୍ରପାଣି ପ୍ରଧାନଙ୍କ ସହଯୋଗିତାରେ ଓଡ଼ିଆ ଜାତିପାଇଁ 'ଓଡ଼ିଆ ମୁଭ୍‌ମେଣ୍ଟ' ନାମକ ତଥ୍ୟଭିତ୍ତିକ ପ୍ରାମାଣିକ ଗ୍ରନ୍ଥ ଅନବଦ୍ୟ ଇଂରାଜୀ ଶୈଳୀରେ, ଯାହାର ପଟ୍ଟାନ୍ତର ନାହିଁ । ଏହି ପୁସ୍ତକର ପ୍ରକାଶନ ଅତ୍ୟନ୍ତ ଅପରିହାର୍ଯ୍ୟ ଥିଲା, ଓଡ଼ିଶା ପ୍ରଦେଶ ଗଠନର ପ୍ରକ୍ରିୟା ମଧ୍ୟରେ, ସୀମାନିର୍ଦ୍ଧାରଣର ସୂଚୀ ମଧ୍ୟରେ ।

ତେଣୁ ମଧୁସୂଦନ ପୁସ୍ତକ ପ୍ରକାଶନର ସମସ୍ତ ଖର୍ଚ୍ଚ ଅକାତରେ ଯୋଗାଇ ଦେଇଥିଲେ, ଯେଉଁ ପୁସ୍ତକ ପରବର୍ତ୍ତୀ କାଳରେ ଓଡ଼ିଶା ପ୍ରଦେଶ୍ ଗଠନ ଲାଗି ସଂସ୍ଥାପିତ ସମସ୍ତ କମିଟି, କମିଶନ ଅଥବା ଅନୁସନ୍ଧାନ ଲାଗି ଗଠିତ ସଂସ୍ଥାର ସମକ୍ଷରେ ଉପସ୍ଥାପନ କରାଯାଇଥିଲା ।

ନିରଞ୍ଜନ ପଟ୍ଟନାୟକ କିଛିକାଳ ସତ୍ୟାଗ୍ରହୀର ଜୀବନ ବିତାଇଥିଲେ ମଧ୍ୟ ସେ ଥିଲେ ମୁଖ୍ୟତଃ ଓଡ଼ିଶା ପ୍ରଦେଶ ଗଠନର ଏକ ସୁଦକ୍ଷ ସେନାପତି, ଯେ ସମସ୍ତ ସଂକଟ ସମୟରେ ଆଗୁସାର ଥିଲେ ଓଡ଼ିଶାର ସ୍ୱାଭିମାନ ରକ୍ଷା କରିବାପାଇଁ । ଏ ଦିଗରେ ୧୯୨୮ ସାଲ ଜାତୀୟ କଂଗ୍ରେସର ଅଧିବେଶନରେ ତାଙ୍କର ବକ୍ତବ୍ୟ ଅବିସ୍ମରଣୀୟ । ମଧୁବାବୁଙ୍କ ସହିତ ତାଙ୍କର ସଂପର୍କ ଥିଲା ଅତ୍ୟନ୍ତ ଅନ୍ତରଂଗ ଆଉ ଘନିଷ୍ଠ ।

ତାଙ୍କର ଅନୁଗାମୀ ମଧ୍ୟ ଥିଲେ ଗଞ୍ଜାମରେ ଜନ୍ମଗ୍ରହଣ କରିଥିବା ପ୍ରଥମ କଂଗ୍ରେସ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ । ବିଶ୍ୱନାସ ଦାଶ କଟକରେ କଲେଜ ଶିକ୍ଷା, କଲିକତାରେ ଆଇନ ଅଧ୍ୟୟନ କଲାପରେ ମଧୁବାବୁଙ୍କ ଜୁନିଅର ଥିଲେ । ସେ ମଧୁବାବୁଙ୍କୁ ଉଚ୍ଛ୍ୱସିତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଯେଉଁ ସୁଦୀର୍ଘ ନିବନ୍ଧଟି ଲେଖିଥିଲେ, ତହିଁର କିଛି ଅଂଶ ଏଠାରେ ପ୍ରଦାନ କରାଯାଇଛି -

"ପରଲୋକଗତ ମହାନ ମଧୁସୂଦନ ଦାସ ଇତିହାସର ପୃଷ୍ଠାରେ ଚିରକାଳ ଲାଗି ଓଡ଼ିଶାର ଉଦ୍ଧାରକର୍ତ୍ତା ରୂପେ ବିଦିତ ରହିବେ । ସେ ଶିଳ୍ପ କ୍ଷେତ୍ରରେ ଅଗ୍ରଣୀ ଥିଲେ । ସେ ସର୍ବପ୍ରଥମେ ପ୍ରଜା ସଭା (କୃଷକ ସଂଗଠନ)ଆହୂତ କରିଥିଲେ ଯାହା ବର୍ତ୍ତମାନ ସୁଦ୍ଧା ଗୋଟିଏ ଶକ୍ତିଶାଳୀ ସଂସ୍ଥା

ରୂପେ ପରିଚିତ । ମଧୁସୂଦନ ଇତିହାସରେ ବ୍ରିଟିଶ ସାମ୍ରାଜ୍ୟବାଦର ଜଣେ ସର୍ବଶ୍ରେଷ୍ଠ ଅନମନୀୟ ସମାଲୋଚକ ଭାବେ ପ୍ରତିଷ୍ଠିତ ରହିବେ ।

ମୁଁ ତାଙ୍କର ମହିମାଦୀପ୍ତ ଜୀବନରୁ ଅନୁପ୍ରେରଣା ଲାଭ କରିଛି । ମୁଁ ସେହିଦିନକୁ ସ୍ମରଣରେ ରଖିଛି, ଯେଉଁଦିନ ମଧୁବାବୁ ମୋତେ ରାଜନୀତିକୁ ଆଶ୍ରୟକରି ଦେଶସେବାରେ ନିଜକୁ ସଂପୂର୍ଣ୍ଣରୂପେ ଉତ୍ସର୍ଗୀକୃତ କରିବା ପାଇଁ ଅନୁପ୍ରେରିତ କରିଥିଲେ । ମୁଁ ଆଜି ଯଦି କିଛି ହୋଇଥାଏ, ସେହି ଦିଗ୍‌ଦର୍ଶୀ ପୁରୁଷଙ୍କର ମୁଲାୟମ ସ୍ପର୍ଶ ମାଧ୍ୟମରେ ହୋଇଛି ।''

ବିଶ୍ୱନାଥ ଦାସ ମଧୁବାବୁଙ୍କର ସ୍ମୃତିରକ୍ଷାଲାଗି ମଧୁସ୍ମୃତିକୁ ସ୍ମାରକୀ ରୂପେ ପ୍ରତିଷ୍ଠା କରିବାପାଇଁ ପ୍ରଥମ ପ୍ରଚେଷ୍ଟା କରିଥିଲେ । ଏହି ଉଦ୍ଦେଶ୍ୟରେ ମଧୁସୂଦନ ଗ୍ରାମୋଦ୍ୟଗ ସଂସ୍ଥା ପ୍ରତିଷ୍ଠା କରିଥିଲେ । ମଧୁସୂଦନଙ୍କ ଅନୁପ୍ରେରଣାରେ ମହାତ୍ମାଗାନ୍ଧୀ ଯେଉଁ ମୌଳିକ ଶିକ୍ଷାର ପରିକଳ୍ପନା କରିଥିଲେ ବିଶ୍ୱନାଥ ଦାସ ତାହାର ପ୍ରୟୋଗ ଓ ପ୍ରସାର ଓଡ଼ିଶାରେ ପ୍ରଥମେ କରିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ରାମଚନ୍ଦ୍ର ମର୍ଦ୍ଧରାଜ, ହରିହର ପଣ୍ଡା, ଗୌରଚନ୍ଦ୍ର ଦେବ, ରାଜା ବିକ୍ରମ ବର୍ମା, ଦିବାକର ପଟ୍ଟନାୟକ, ଲିଙ୍ଗରାଜ ପାଣିଗ୍ରାହୀ, ଲାଲ୍‌ମୋହନ ପଟ୍ଟନାୟକ, ମଦନ ମୋହନ ସିଂହଦେବ, ମାନ୍‌ଧାତା ଗୋରାଚାନ୍ଦ ପଟ୍ଟନାୟକ, ମଧୁସୂଦନ ପାଣିଗ୍ରାହୀ, କୃପାମୟ ଦେବ ପ୍ରମୁଖ ମଧୁସୂଦନଙ୍କ ତେଜୋଦୀପ୍ତ ପ୍ରେରଣାରେ ଅନୁପ୍ରାଣିତ ହୋଇ ଓଡ଼ିଶାରେ ସ୍ୱତନ୍ତ୍ର ପ୍ରଦେଶ ଗଠନର ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ ।

''ଯେତେ କାଳ ଥିବ ଓଡ଼ିଆ ଜାତି ଇତିହାସରେ
ଥିବ ତୁମ୍ଭ ନାମ ଅଙ୍କିତ ହେମମୟ ଅକ୍ଷରେ
ଚାଲିଯିବେ ସର୍ବେ ରହିବେ ନାହିଁ କେହି ମହୀରେ
ଯଶୋଦେହେ ବଞ୍ଚି ରହିବେ ମାତ୍ର ନିସ୍ୱାର୍ଥବୀରେ''

-ପଲ୍ଲୀକବି ନନ୍ଦକିଶୋର



# ଓଡ଼ିଶା ପ୍ରଦେଶ ଗଠନର ଘୋଷଣାନାମା

ଓଡ଼ିଆ- ଭାଷୀ ଅଞ୍ଚଳର ମିଶ୍ରଣ ତଥା ଓଡ଼ିଶା ପ୍ରଦେଶ ଗଠନ ପ୍ରକ୍ରିୟାର ଶୁଭାରମ୍ଭ ହୋଇଥିଲା ୧୯୦୦ ସାଲର ଶରତ ଋତୁରେ ସିମଲାଠାରେ । ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସହିତ ମଧୁସୂଦନଙ୍କ ସାକ୍ଷାତକାର ଥିଲା ଏହାର ଭିତ୍ତିଭୂମି । ଏହା ପରେ ୧୯୦୩ରେ ଭାରତ ସରକାରଙ୍କ ପକ୍ଷରୁ ପ୍ରକାଶିତ ହୋଇଥିଲା ବିଧିବଦ୍ଧ ଘୋଷଣାନାମା 'ରିସ୍‌ଲେ ସର୍କୁଲାର' ନାମରେ । ଏହି ସର୍କୁଲାରକୁ ଆଧାର କରି ୧୯୦୫ ସାଲ ଅକ୍ଟୋବର ୧୬ ତାରିଖରେ । ପଶ୍ଚିମାଞ୍ଚଳ ସହିତ ପୂର୍ବାଞ୍ଚଳର ମିଶ୍ରଣ ହେଲା । ହେଲେ ଦକ୍ଷିଣ ଓଡ଼ିଶାର ମିଶ୍ରଣ ଲାଗି ଆହୁରି ତିରିଶି ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା ମାନ୍ଦ୍ରାଜ ସରକାରଙ୍କର ତୀବ୍ର ପ୍ରତିରୋଧଯୋଗୁଁ । ଭାରତ ଶାସନର ସଂସ୍କାର ଲାଗି ସାଇମନ୍ କମିଶନ ୧୯୨୭ ନଭେମ୍ବର ୨୭ ତାରିଖରେ ଗଠିତ ହୋଇଥିଲା । ମାତ୍ର ଏଥିରେ କୌଣସି ଭାରତୀୟ ସଭ୍ୟ ନଥିବାଯୋଗୁଁ ଭାରତୀୟ ଜାତୀୟ କଂଗ୍ରେସ ଏହାର ତୀବ୍ର ବିରୋଧ କରିଥିଲା । ତେବେ ଏହି କମିଶନର ସୁପାରିଶ କ୍ରମେ ଯେଉଁ ପ୍ରାଦେଶିକ ସ୍ତରର ସ୍ୱାତନ୍ତ୍ର୍ୟ ଓ ମନ୍ତ୍ରିମଣ୍ଡଳର ଗଠନ ବ୍ୟବସ୍ଥା ୧୯୩୬ ସାଲରୁ ପ୍ରବର୍ତ୍ତନ କରାଗଲା ,ତହିଁରେ ସହଯୋଗ କରିଥିଲା ଭାରତୀୟ ଜାତୀୟ କଂଗ୍ରେସ ।

୧୯୨୮ ସାଲ ଫେବ୍ରୁଆରି ମାସରେ ଜାତୀୟ କଂଗ୍ରେସର ନିର୍ଦ୍ଧାରିତ ରୀତି ଅନୁସାରେ ଓଡ଼ିଶାରେ ଉତ୍କଳମଣି ଗୋପବନ୍ଧୁଙ୍କ ନେତୃତ୍ୱରେ ସାଇମନ କମିଶନ ବିରୋଧରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା । ୧୯୨୮ ସାଲରେ ବିହାର ଓଡ଼ିଶା କାଉନ୍‌ସିଲ୍‌ର ପଣ୍ଡିତ ଲିଙ୍ଗରାଜ ଚରଣ ମିଶ୍ରଙ୍କର ନେତୃତ୍ୱରେ କଂଗ୍ରେସର ସଦସ୍ୟବୃନ୍ଦ ସାଇମନ କମିଶନକୁ ବିରୋଧ କରି ପ୍ରସ୍ତାବ ଆଗତ କରିଥିଲେ । ମାତ୍ର ଓଡ଼ିଶା ପ୍ରଦେଶର ପ୍ରାଣ ପ୍ରତିଷ୍ଠାତା ମଧୁସୂଦନଙ୍କର ଏ ଦିଗରେ ସ୍ୱତନ୍ତ୍ର ଦୃଷ୍ଟିଭଂଗୀ ଥିଲା । ସେ ଏ ସୁଯୋଗକୁ ହାତଛଡ଼ା କରିବାକୁ ଚାହୁଁ ନଥିଲେ । ବୋଧହୁଏ ବିଧିର ନିର୍ଦ୍ଦେଶରେ ଏହା ଥିଲା ଓଡ଼ିଆଭାଷୀଙ୍କ ପାଇଁ ଶେଷ ସୁଯୋଗ । ଅନ୍ୟଥା ଓଡ଼ିଶା ପ୍ରଦେଶ ଗଠନ ବିସ୍ମୃତିର ଗର୍ଭରେ ଲୀନ ହୋଇଯାଇଥା'ନ୍ତା । ମଧୁସୂଦନଙ୍କର ନିର୍ଦ୍ଦେଶରେ ବିହାର ଓଡ଼ିଶା

କାଉନ୍‌ସିଲ୍ ପକ୍ଷରୁ ରାୟ ବାହାଦୂର, ଲକ୍ଷ୍ମୀଧର ମହାନ୍ତି ଓ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ସାଇମନ କମିଶନଙ୍କୁ ସାକ୍ଷ୍ୟ ପ୍ରଦାନ ପାଇଁ ନିର୍ବାଚିତ ହୋଇଥିଲେ ।

୧୯୨୮ ସାଲ ଡିସେମ୍ବର ୧୨ ତାରିଖରେ ସାଇମନ କମିଶନ ପାଟନା ରେଲଷ୍ଟେସନ୍‌ଠାରେ ପହଞ୍ଚିଲାବେଳେ ବ୍ରଜସୁନ୍ଦର ଦାସଙ୍କ ନେତୃତ୍ୱରେ ଓଡ଼ିଶା ପକ୍ଷରୁ ତାଙ୍କୁ ସମ୍ବର୍ଦ୍ଧନା ପ୍ରଦାନ କରାଯାଇଥିଲା । ଏହାଥିଲା ମଧୁସୂଦନଙ୍କର ନିର୍ଦ୍ଦେଶ । ଗୋପାଳ ଚନ୍ଦ୍ର ପ୍ରହରାଜ, କନିକା ରାଜା, ବାରିଷ୍ଟର ବିଶ୍ୱନାଥ ମିଶ୍ର, ଭିକାରୀ ଚରଣ ପଟ୍ଟନାୟକ, ଲକ୍ଷ୍ମୀଧର ମହାନ୍ତି ପ୍ରମୁଖ ଏଥିରେ ସହଯୋଗ କରିଥିଲେ ।

ଏହାଛଡ଼ା ୧୯୨୮ ମଇ ୩୦ ତାରିଖରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ମାନ୍ଦ୍ରାଜ ପ୍ରଦେଶ ଓଡ଼ିଆ ଏସୋସିଏସନ୍ ପକ୍ଷରୁ ମାଡ୍ରାସଠାରେ ଏକ ଦାବିପତ୍ର ସାଇମନ କମିଶନଙ୍କୁ ପ୍ରଦାନ କରାଯାଇଥିଲା । ଫଳରେ ବହୁ ପ୍ରତୀକ୍ଷିତ ଆକାଙ୍‌କ୍ଷା ପୂରଣର ପ୍ରତିଶ୍ରୁତି ମଧ୍ୟ ମିଳିଲା ଓ ରୁଦ୍ଧଦ୍ୱାର ଉନ୍ମୋଚିତ ହେଲା । ସାଇମନ୍ କମିଶନ୍ ଓଡ଼ିଶା ପ୍ରଦେଶ ଗଠନର ବିଭିନ୍ନ ଦିଗ ସଂପର୍କରେ ଆଲୋଚନା କରିବାପାଇଁ ଅଟ୍‌ଲିଙ୍କ ନେତୃତ୍ୱରେ ଗୋଟିଏ ସବ୍ କମିଟି ଗଠନ କଲେ । ସୁର ବୁଦ୍ଧି, କନିକା ରାଜା ଓ ଲକ୍ଷ୍ମୀଧର ମହାନ୍ତି ସଭ୍ୟରୂପେ ଗୃହୀତ ହୋଇଥିଲେ । ଏହି ସବ୍ କମିଟିର ପରାମର୍ଶ କ୍ରମେ ସାଇମନ୍ କମିଶନ୍ ଓଡ଼ିଶା ପ୍ରଦେଶ ଗଠନ ଲାଗି ସୁପାରଶ କରିଥିଲେ ।

ସାଇମନ୍ କମିଶନ୍ ୧୯୩୦ ମଇ ମାସରେ ତାଙ୍କର ରିପୋର୍ଟ ଦାଖଲ କଲେ ଓ ଭାରତ ସରକାରଙ୍କର ଶାସନ ସଂସ୍କାର ସମ୍ପର୍କୀୟ ଗୁରୁତ୍ୱପୂର୍ଣ୍ଣ ଆଲୋଚନାଲାଗି ଲଣ୍ଡନଠାରେ ୧୯୩୦ ସାଲରୁ ୧୯୩୨ ସାଲ ମଧ୍ୟରେ ତିନୋଟି ଗୋଲ୍‌ଟେବୁଲ୍ ବୈଠକ ବସିଲା । ଏହି ଶାସନ ସଂସ୍କାର ମଧ୍ୟରେ ଓଡ଼ିଶା ପ୍ରଦେଶ ଗଠନଲାଗି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଥିଲା । ଏହି ପ୍ରସ୍ତାବକୁ ତ୍ୱରାନ୍ୱିତ କରିବାପାଇଁ ଗୋଲ୍‌ଟେବୁଲ୍ ବୈଠକରେ ଯୋଗଦାନ ଜରୁରୀ ଥିଲା ।

ଲଣ୍ଡନଠାରେ ପ୍ରଥମ ଗୋଲ୍‌ଟେବୁଲ୍ ବୈଠକ ୧୬.୧୧.୧୯୩୦ରୁ ୧୯.୧.୧୯୩୧ ପର୍ଯ୍ୟନ୍ତ ବସିଥିଲା । ଏହି ବୈଠକରେ ବିହାର ଓଡ଼ିଶା ଜମିଦାର ସଂଘର ପ୍ରତିନିଧି ରୂପେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୯୩୧ ମସିହାର ଜାନୁଆରି ୧୬ ତାରିଖରେ ଓଡ଼ିଶା ପ୍ରଦେଶ ଗଠନ ଲାଗି ବିଧିବଦ୍ଧ ପ୍ରସ୍ତାବ ଆଗତ କରିଥିଲେ । ଏହାକୁ ଆଧାର କରି ୧୮.୯.୧୯୩୧ରେ ଓଡ଼ନେଲ୍ କମିଟି ତାଙ୍କର ପ୍ରଥମ ବୈଠକ ପାଟନାଠାରେ ଆହ୍ୱାନ କରିଥିଲେ । ସମସ୍ତ ଉପାନ୍ତ ଅଞ୍ଚଳରେ ବୁଲି ସାକ୍ଷ୍ୟ ଗ୍ରହଣକରି ଓଡ଼ନେଲ୍ କମିଟି ୧୯୩୨ ମସିହା ଏପ୍ରିଲ୍ ମାସରେ ତାଙ୍କର ରିପୋର୍ଟ ଦାଖଲ କରିଥିଲେ । ଏହି ସମୟ କାଳ ମଧ୍ୟରେ ୭.୯.୧୯୩୧ରୁ ୭.୧୨.୧୯୩୧ ପର୍ଯ୍ୟନ୍ତ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ ମହାତ୍ମାଗାନ୍ଧୀ ଯୋଗଦାନ କରିଥିଲେ ।

ଭାରତୀୟ ଶାସନବିଧିର ସଂସ୍କାରପାଇଁ ଯେଉଁ ବ୍ୟବସ୍ଥା ରହିଥିଲା, ତାହାରି ଏକ ଅଂଶ ଥିଲା ଓଡ଼ିଶା ପ୍ରଦେଶ ଗଠନ । ତୃତୀୟ ଗୋଲ୍‌ଟେବୁଲ୍ ବୈଠକ ଆହୂତ



ରାଜ ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ



ସାଂସଦ ଭୁବନାନନ୍ଦ ଦାସ, ଭାରତୀୟ ସଂସଦର ପିତା

ହୋଇଥିଲା ୧୯.୧୧.୩୨ରୁ ୨୪.୧୨.୩୨ ମଧ୍ୟରେ । ଏହି ବୈଠକ ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଥିରେ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିବା ପାଇଁ ପ୍ରେରିତ ହୋଇଥିଲେ ଖଲିକୋଟର ରାଜା ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଓ ଇଂଲଣ୍ଡରେ ଇଞ୍ଜିନିୟରିଂ ଶିକ୍ଷାପ୍ରାପ୍ତ ଭୁବନାନନ୍ଦ ଦାସ । ଏ ଦୁହିଁଙ୍କ ଉପରେ ଓଡ଼ିଆ ଜାତିର ଗୁରୁ ଦାୟିତ୍ୱ ଅର୍ପିତ ହୋଇଥିଲା ।

ଲଣ୍ଡନରେ ଏହି ଗୋଲ୍‌ଟେବୁଲ୍ ବୈଠକ ଆରମ୍ଭ ହେବା ପୂର୍ବରୁ ଖଲିକୋଟର ରାଜା ରାମଚନ୍ଦ୍ର ଓ ଭୁବନାନନ୍ଦ ଦାସ ପହଞ୍ଚିଥିଲେ । ଭାରତ ସଚିବଙ୍କ ଅଫିସ୍‌ରେ ପ୍ରସ୍ତାବର ଉପସ୍ଥାପନା, ବିଧିବଦ୍ଧ ବିଶ୍ଳେଷଣ ତଥା ତଦାରଖ ସଂପର୍କୀୟ କାର୍ଯ୍ୟସୂଚୀର ପରିଧି ମଧ୍ୟରେ ସମ୍ଭାବ୍ୟ ଆଲୋଚନା ଲାଗି କ୍ଷେତ୍ର ପ୍ରସ୍ତୁତ କରିବାକୁ ପଡ଼ିଥିଲା । ଏ ସମସ୍ତ ପ୍ରାରମ୍ଭିକ ପ୍ରସ୍ତୁତି ପରେ ୭.୧୨.୧୯୩୨ ତାରିଖ ଦିନ ଗୋଲ୍‌ଟେବୁଲ୍ ବୈଠକରେ ରାମଚନ୍ଦ୍ର ମର୍ଦ୍ଦରାଜ ଓଡ଼ିଆ ଜାତି ପକ୍ଷରୁ ତାଙ୍କର ସାମଗ୍ରିକ ଦାବି ଉପସ୍ଥାପନ କରିଥିଲେ ଯାହା ତାତ୍ତ୍ୱିକ ଦୃଷ୍ଟିରୁ ଖୁବ୍ ପ୍ରଭାବଶାଳୀ ଥିଲା ।

ତୃତୀୟ ଗୋଲ୍‌ଟେବୁଲ୍ ବୈଠକର ଅନ୍ତିମ ପର୍ଯ୍ୟାୟରେ ୨୪.୧୨.୧୯୩୨ରେ ଲର୍ଡ଼ ସାଙ୍କିଙ୍କ ଅଧ୍ୟକ୍ଷତାରେ ବସିଥିବା ବୈଠକରେ ଭାରତର ସଚିବ ସାର୍ ସାମୁଏଲ୍ ହୋର୍‌ଙ୍କର ବକ୍ତବ୍ୟର କିଛି ଅଂଶ ଏହିପରି ଥିଲା -

"ଆମ୍ଭେମାନେ ଦୁଇ ବର୍ଷ ପୂର୍ବେ ଗୋଲ୍‌ଟେବୁଲ୍ ବୈଠକରେ ପ୍ରାରମ୍ଭିକ ଆଲୋଚନା ସମୟରୁ ସିନ୍ଧ୍ ପ୍ରଦେଶ ଗଠନ ବିଷୟରେ ବିଚାର କରିଅଛୁ । ଗଲାବର୍ଷଠାରୁ ପ୍ରଥମ କରି ଓଡ଼ିଶା ପ୍ରଦେଶ ଗଠନ ସଂପର୍କରେ ଉପସ୍ଥାପନା କରିଥିଲୁ । ଏ ମଧ୍ୟରେ ଉଭୟ ପ୍ରଦେଶ ସଂପର୍କରେ ବିଶେଷଜ୍ଞମାନଙ୍କ ଦ୍ୱାରା ତଦନ୍ତ ଓ ନିରୀକ୍ଷଣ ରିପୋର୍ଟମାନ ଆସି ପହଞ୍ଚି ସାରିଛି । ଏହି ରିପୋର୍ଟମାନଙ୍କୁ ଭିତ୍ତିକରି ମୁଁ ଏଠାରେ ଜଣାଇବାକୁ ଚାହେଁ ଯେ, ସିନ୍ଧ୍ ଓ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପରେ ଗଠିତ ହେବେ ।"

ଏହାଥିଲା ଓଡ଼ିଆ ଜାତିର ସ୍ଥିତିଲାଗି ଗୌରବମୟ ଐତିହାସିକ ଉଦ୍‌ଘୋଷଣା । ପ୍ରାୟ ଚାରିଶହ ବର୍ଷର ଅନ୍ତରାଳରେ ଓଡ଼ିଶା ଦାସତ୍ୱ ଶୃଙ୍ଖଳରୁ ମୁକ୍ତିଲାଭ କରିବାଲାଗି ଯେଉଁ ସଂଭାବନା ଆସି ପହଞ୍ଚି ଥିଲା, ତାହା ସମଗ୍ର ଓଡ଼ିଶାରେ ସୃଷ୍ଟି କରିଥିଲା ଏକ ଅଫୁରନ୍ତ ଆଉ ଉଲ୍ଲସିତ ଆଲୋଡ଼ନ । କିଭଳି ମହତ୍ୱପୂର୍ଣ୍ଣ ଥିଲା ଏହି ଉଦ୍‌ଘୋଷଣା, ତାହାର ମୂଲ୍ୟାୟନ କରିବା ଏଠାରେ ସମ୍ଭବ ନୁହେଁ । ଆନନ୍ଦ ଆଉ ଉଲ୍ଲାସର ଉଦ୍‌ବେଳନ ଛାଇଯାଇଥିଲା ସର୍ବତ୍ର ।

ଏହି ଉଦ୍‌ଘୋଷଣାର ମାତ୍ର ତିନୋଟି ଦିନ ପରେ୨୭.୧୨.୧୯୩୨ରେ ଲଣ୍ଡନଠାରୁ ଖଲିକୋଟର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଯେଉଁ ଇଂରାଜୀ ଚିଠିଟି 'ଆଶା'ର ସମ୍ପାଦକ ଶଶିଭୂଷଣ ରଥଙ୍କ ନିକଟକୁ ଲେଖିଥିଲେ, ତାହାର ଅନୁବାଦ ଏଠାରେ ଉପସ୍ଥାପନ କରାଗଲା । କିଭଳି ମାର୍ମିକ ଆଉ ହୃଦୟର ଆବେଗରେ ରସାଣିତ ଥିଲା ସେହି ତାତ୍ପର୍ଯ୍ୟପୂର୍ଣ୍ଣ ଚିଠିର ବିଷୟବସ୍ତୁ, ଯାହା କିଛିକାଳ ଲାଗି ପାଠକକୁ ସ୍ତବ୍ଧ କରିଦିଏ । ସଂକଳ୍ପପୂର୍ଣ୍ଣ ସିଦ୍ଧାନ୍ତର ଭାବଗାମ୍ଭୀର୍ଯ୍ୟ ଆବେଦନ ଘେନି ଯୁଝାଯାଇଥିଲା ଏହି ପ୍ରଦେଶ ଗଠନର ସଂଗ୍ରାମ ।

ଲଣ୍ଡନ

୨୭.୧୨.୧୯୩୨

ପ୍ରିୟ ଶଶିବାବୁ,

ମୁଁ ଏତେ ଉତ୍ତେଜିତ ହୋଇପଡ଼ିଛି ଯେ ଚିଠି ଖଣ୍ଡେ ଲେଖିପାରୁ ନାହିଁ । ଏହା ହେଉଛି ଗୋଲ୍‌ଟେବୁଲ୍ ବୈଠକର ସର୍ବଶ୍ରେଷ୍ଠ ଜୟ ସମ୍ବାଦ । ଉଦ୍‌ବେଗ ଆଉ ଉତ୍‌କଣ୍ଠା ମଧ୍ୟ ଶେଷ ସୀମାରେ ପହଞ୍ଚିଥିଲା । ଏ ସମସ୍ତ ଶ୍ରମ ଓ କ୍ଲାନ୍ତି ମଧ୍ୟରେ ମୁଁ ଦଶବର୍ଷ ବୁଢ଼ା ହୋଇଗଲା ପରି ଲାଗୁଛି । ସୀମା ବିଷୟ ଭାରତ ସରକାର ସ୍ଥିର କରିବେ । ଏ ବିଷୟ ମଧ୍ୟ ଏଠାରେ ଉଠାଇଥିଲି । କିନ୍ତୁ ଏଠାରେ ଏମାନେ ମାନଚିତ୍ର ନେଇ ବ୍ୟସ୍ତ ହେବାକୁ ରାଜି ନୁହଁନ୍ତି ।

ଏ ଦେଶର ଲୋକାଲ୍ ବୋର୍ଡ଼ ବିଷୟ ବୁଝିବାପାଇଁ ଅନେକଠାରୁ ନିମନ୍ତ୍ରଣ ଆସୁଛି । ଖ୍ରୀଷ୍ଟମାସ ପରେ ଏସବୁ ସ୍ଥାନକୁ ଯାଇ ଏଠାରେ ଲୋକାଲ୍ ବୋର୍ଡ଼ ପରିଚାଳନା ଦେଖିବି । ଜାନୁଆରି ଶେଷ ବେଳକୁ ୟୁରୋପ ଭ୍ରମଣରେ ବାହାରିବି । ଫେବୃଆରି ଶେଷ ବେଳକୁ ଦେଶ ଫେରିବି ।

ଏସବୁ ମୋତେ ସ୍ୱପ୍ନ ପରି ଲାଗୁଛି । ମୁଁ ଲଣ୍ଡନରେ ପହଞ୍ଚିବା ବେଳେ ସେମାନେ ସମସ୍ତେ ମତେ ଦେଖି ହସୁଥିଲେ । ଓଡ଼ିଶାପାଇଁ ସ୍ୱତନ୍ତ୍ର ପ୍ରଦେଶ ହେବ ବୋଲି ହାସ୍ୟ କରିଥିଲେ । ଏଠାରେ ଅନେକ ହିଡ଼ହଣା କାର୍ଯ୍ୟ କରିବାକୁ ପଡ଼ିଲା । ତରୁଣ ଓଡ଼ିଶାକୁ ମୋର ଅଭିନନ୍ଦନ ଜଣାଇବେ ।

ତମର ବିଶ୍ୱସ୍ତ

**ରାମଚନ୍ଦ୍ର ମର୍ଦ୍ଦରାଜ ଦେବ**

(୧୭.୧.୩୩ ସାପ୍ତାହିକ ଆଶାରୁ ଗୃହୀତ)

୧୯୩୨ ସାଲର ଶେଷ ଭାଗରେ ଓଡ଼ିଶା ପ୍ରଦେଶ ଗଠନ ସମ୍ବାଦ କେବଲ୍ ଯୋଗେ ଗୃହୀତ ହୋଇ 'ଆଶା' ଓ 'ସମାଜ'ରେ ପ୍ରକାଶିତ ହୋଇଥିଲା । ଏହି ଉଦ୍‌ଘୋଷଣାକୁ ସ୍ୱାଗତ କରିବାପାଇଁ ପୁରପଲ୍ଲୀରେ ସଭାମାନ ଅନୁଷ୍ଠିତ ହୋଇଥିଲା । ମୁଖ୍ୟ ସଭାଗୁଡ଼ିକ କଟକ, ବ୍ରହ୍ମପୁର, ପାଟଣା, କଲିକତା ଆଦି ସ୍ଥାନରେ ସଂଯୋଜିତ ହୋଇଥିଲା ।

ଏହି ପ୍ରଦେଶ ଗଠନର ଉଦ୍‌ଘୋଷଣା ସଂପ୍ରସାରିତ ହେବା ବେଳେ ଓଡ଼ିଆ ଜାତିର ପ୍ରାଣ ପ୍ରତିଷ୍ଠାତା ମଧୁସୂଦନ ଦାସ କଲିକତାର ଏକ ନିଭୃତ ନର୍ସିଂହୋମ୍‌ରେ ତାଙ୍କର ଦୁରାରୋଗ୍ୟ ଉଦର ଶୂଳବ୍ୟଥାରେ ପୀଡ଼ିତ ହୋଇ ଚିକିତ୍ସିତ ହେଉଥିଲେ । ଦାରୁଣ ଓ ଭୀତିପ୍ରଦ ବ୍ୟଥାରେ ତାଙ୍କର ଅନ୍ତଃସ୍ଥଳ ଯେପରି ଦୁହିଁ ହୋଇ ଯାଉଥିଲା ଓ ଉତ୍କଟ ବ୍ୟଥା ସହନ ସୀମା ଅତିକ୍ରମ କରିଥିଲା । ଆଉ ମଧୁବାବୁ ଯେପରି ମରଣାନ୍ତକ ପୀଡ଼ା ସହିତ ଯୁଝି ଚାଲିଥିଲେ । ଠିକ୍ ଏହି ଅବସ୍ଥାରେ ଆସି ପହଞ୍ଚିଲା ସେହି ନର୍ସିଂହୋମ୍‌ରେ ଦୈନିକ 'ଆଶା'ରେ ପ୍ରକାଶିତ ସେହି ତାତ୍ପର୍ଯ୍ୟପୂର୍ଣ୍ଣ ଘୋଷଣାନାମା "ଓଡ଼ିଶା ପ୍ରଦେଶ ଗଠନର ଉଦ୍‌ଘୋଷଣା ଆଜି ପ୍ରକାଶିତ ହେଲା ।"

ମଧୁସୂଦନଙ୍କର ସେହି ସମ୍ବାଦଟି ହଠାତ୍ ଦୃଷ୍ଟିଗୋଚର ହେଲା ! ଏ କ'ଣ ଯେ ହେଲା । ସେହି ସମ୍ବାଦଟି ଅବଗତ ହେବା ସଙ୍ଗେସଙ୍ଗେ ଆନନ୍ଦର ତରଙ୍ଗିତ ପ୍ଲାବନ ଯେପରି ତାଙ୍କର ହୃଦୟର ଅନ୍ତଃସ୍ଥଳକୁ ଆଚ୍ଛନ୍ନ କରି ରଖିଥିଲା । ଯେପରି ଏକ ଆଶ୍ୱସ୍ତିକର ମଦିରାର ଉତ୍‌ଫୁଲ୍ଲିତ ସମ୍ମୋହନ ପରିବ୍ୟାପ୍ତ ହୋଇଥିଲା ତାଙ୍କର ସମଗ୍ର ଶରୀରରେ ।

ହଁ,ସେ କିଛିକାଳ ଲାଗି ଉଦରକୁ ଛିନ୍‌ଭିନ୍ କରୁଥିବା ଦାରୁଣ ପୀଡ଼ାକୁ ଭୁଲି ଯାଇଥିଲେ ଆନନ୍ଦର ଆତିଶଯ୍ୟ ମଧ୍ୟରେ । ସମଗ୍ର ଜୀବନବ୍ୟାପୀ ସଂଗ୍ରାମର ଲକ୍ଷ୍ୟସ୍ଥଳ ଯେ ନିକଟବର୍ତ୍ତୀ ହୋଇପାରିଛି !

ଏହି ପର୍ଯ୍ୟାୟରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଥିଲା । ଲଣ୍ଡନରେ ଅବସ୍ଥାନ କରୁଥିବା କାଳରେ ଖଲିକୋଟର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ପୁନର୍ବାର ଗଞ୍ଜାମ ଜିଲ୍ଲାବୋର୍ଡ଼ର ସଭାପତି ରୂପେ ନିର୍ବାଚିତ ହେଲେ । ସେ ୧୯୨୨ ସାଲରୁ ନିରବଚ୍ଛିନ୍ନ ଭାବେ ଏହି ପଦବୀ ମଣ୍ଡନ କରି ଆସୁଥିଲେ । ଉପସଭାପତି ରୂପେ ନିର୍ବାଚିତ ହୋଇଥିଲେ ଡକ୍ଟର ରବର୍ଟ ସାହୁ ।

୧୯୩୩ ସାଲ ଜାନୁଆରି ୧୨ ତାରିଖରେ ରାମଚନ୍ଦ୍ର ମର୍ଦ୍ଦରାଜ, ଭାରତ ସଚିବ ସାର୍ ସାମୁଏଲ୍ ହୋର୍‌ଙ୍କୁ ସମ୍ବର୍ଦ୍ଧନା ଜଣାଇବାପାଇଁ ଲଣ୍ଡନର କ୍ଲାରିଜ୍ ହୋଟେଲ୍‌ରେ ଏକ ଭବ୍ୟ ଭୋଜିସଭାର ଆୟୋଜନ କରିଥିଲେ । ସମ୍ବର୍ଦ୍ଧନାର ଉତ୍ତର ଦେଇ ସାମୁଏଲ୍ ହୋର୍ କହିଲେ-

''ପ୍ରଥମେ ଦୁଇବର୍ଷ ପୂର୍ବେ ପାରଳାଖେମୁଣ୍ଡି ରାଜା ଓଡ଼ିଆଙ୍କ ବିଷୟ ଗୋଲ୍‌ଟେବୁଲ୍ ବୈଠକରେ ଉଠାଇଥିଲେ । ମାତ୍ର ଅତ୍ୟଳ୍ପ ଲୋକେ ତାହାର ଗୁରୁତ୍ୱ ବୁଝିଲେ । ସେ ଆମ ଉପରେ ଯାହା ପ୍ରଭାବ ପକାଇଲେ, ଖଲିକୋଟ ରାଜା ତାହାକୁ ବହୁଗୁଣିତ କଲେ । ଆମର ହୃଦ୍‌ବୋଧ ହେଲା ଯେ ଷୋଡ଼ଶ ଶତାବ୍ଦୀରୁ ଓଡ଼ିଆ ଜାତିକୁ ଯେପରି ଅଲଗା ଶାସନାଧୀନ କରାଯାଇଛି, ତାହା ଅସୁବିଧା ସୃଷ୍ଟି କରିଛି । ଏମାନଙ୍କୁ ଏକତ୍ରିତ କରିବାକୁ ହେବ ।

X X X

''ଯଦି କୋଟିଏ ଓଡ଼ିଆ ଏକତ୍ରିତ ହେବାରେ ପରମ ସନ୍ତୋଷ ଲାଭକଲେ, ତେବେ ତ ଆମେ ସଫଳତାର ସହିତ ସମ୍ମିଳନୀ (ଗୋଲ୍‌ଟେବୁଲ୍ ବୈଠକ) କାର୍ଯ୍ୟ କଲୁ ବୋଲି ଭାବିବୁ । ମୋର ଅନୁଭୂତିରୁ କହିପାରେ ,ଏହା ହିଁ ଗତ ପନ୍ଦର ବର୍ଷର ସନ୍ତୋଷପ୍ରଦ ଘଟଣା ।'' ଏହି ସମ୍ବର୍ଦ୍ଧନା ସଭା ପରେ ୧୯୩୩ ସାଲ୍ ଜାନୁଆରି ୧୫ ତାରିଖରେ ଖଲିକୋଟ ରାଜା ବିଲାତ ଭ୍ରମଣରେ ଚାଲିଗଲେ ।

ମାତ୍ର ଭୁବନାନନ୍ଦ ଦାସ ଏକମାସରୁ ଅଧିକ କାଳ ଲଣ୍ଡନରେ ରହି ଓଡ଼ିଶା ପ୍ରଦେଶ ଗଠନର ପରବର୍ତ୍ତୀ ପର୍ଯ୍ୟାୟର ତଦାରଖ କରିଥିଲେ । ସେ ଫେବୃଆରି ୧୦ ତାରିଖରେ କଟକ ଫେରି ପାରଳା ମହାରାଜାଙ୍କର ନିମନ୍ତ୍ରଣରେ ବ୍ରହ୍ମପୁର ଆସି ପରବର୍ତ୍ତୀ ପର୍ଯ୍ୟାୟର କାର୍ଯ୍ୟକ୍ରମର ଆଲୋଚନା କରିଥିଲେ । ଫେବୃଆରି ୩ ତାରିଖରେ ଖଲିକୋଟ ରାଜା ୟୁରୋପ ଗସ୍ତରୁ ଫେରିଲେ ।

ଏହା ଯେପରି ଥିଲା ଝଡ଼ ପୂର୍ବର ନିସ୍ତବ୍ଧତା । ଏହି ସଂଗ୍ରାମ ଚାଲିଥିଲା ନିରବଚ୍ଛିନ୍ନ ଭାବରେ ୧୯୩୬ ମସିହା ମାର୍ଚ୍ଚ ମାସ ପର୍ଯ୍ୟନ୍ତ । କିଛି ଦେଶପ୍ରାଣ ରାଜନ୍ୟ ମଣ୍ଡଳୀ ତଥା ନେତୃବର୍ଗ ଜୀବନକୁ ବାଜି ଲଗାଇ ଏହି ସଂଗ୍ରାମକୁ ଓହ୍ଲାଇ ପଡ଼ିଥିଲେ । ଓଡ଼ିଶା ପ୍ରଦେଶ ଗଠନର ପରବର୍ତ୍ତୀ ପର୍ଯ୍ୟାୟର ସଂଗ୍ରାମ ଥିଲା ଆହୁରି ବିପଦସଂକୁଳ ଆଉ ଆଶଙ୍କା ବିଜଡ଼ିତ ଏବଂ କିଛିପରିମାଣରେ ଭୀତିପ୍ରଦ ମଧ୍ୟ । ସମକାଳୀନ ପରିସ୍ଥିତିରେ ଭାରତର ଅଗ୍ରଗଣ୍ୟ ଆନ୍ଧ୍ରଭାଷୀ ନେତୃବର୍ଗ ମଧ୍ୟ ଆନ୍ଧ୍ରପ୍ରଦେଶ ଗଠନ ଲାଗି ଆପ୍ରାଣ ସଂଗ୍ରାମ ଚଳାଇଥିଲେ । ମାତ୍ର ନିର୍ଦ୍ଧାରିତ ସୀମା ମଧ୍ୟରେ ସଫଳତା ହାସଲ କରିପାରି ନଥିଲେ ।

ମାତ୍ର ମଧୁସୂଦନଙ୍କ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ୍‌ଦର୍ଶନ, ପାରଳା ଓ ଖଲିକୋଟ ରାଜାଙ୍କର କାର୍ଯ୍ୟନିର୍ବାହ, କନିକା ରାଜା, ଭୁବନାନନ୍ଦ ଦାସଙ୍କର କର୍ମ ତତ୍ପରତା, ବ୍ରଜ ସୁନ୍ଦର ଦାସ, ଶଶିଭୂଷଣ ରଥ, ନୀଳକଣ୍ଠ ଦାସ ପ୍ରମୁଖଙ୍କର ସହଯୋଗିତା ଆଉ ଅସଂଖ୍ୟ ନେତୃବର୍ଗଙ୍କର ଉତ୍ସର୍ଗୀକୃତ କର୍ମ ସଂପାଦନ ଫଳରେ ଓଡ଼ିଶା ପ୍ରଦେଶ ଗଠନ ସଂଭବ ହୋଇପାରିଥିଲା ଭାରତ ସଂସ୍କାରର ଏକ ଅଂଗୀଭୂତ କାର୍ଯ୍ୟକ୍ରମ ରୂପରେ ।

ଏକଥା ନିର୍ବିବାଦରେ ସତ୍ୟ ଯେ, ସ୍ୱାଧୀନତା ପୂର୍ବରୁ ୧୯୩୬ ସାଲରେ ଓଡ଼ିଶା ପ୍ରଦେଶ ଗଠିତ ହୋଇନଥିଲେ, ଏହାର ସଂଭାବନା ବିସ୍ମୃତିର ଗର୍ଭରେ ବିଲୀନ ହୋଇଯାଇଥାଆନ୍ତା । ଏହି ଦୃଷ୍ଟିରୁ ଓଡ଼ିଶାର ଅଧିବାସୀଙ୍କପାଇଁ ସ୍ୱାଧୀନତା ସଂଗ୍ରାମ ଅପେକ୍ଷା ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନର କ୍ରାନ୍ତିକାରୀ ଆନ୍ଦୋଳନ ଥିଲା ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ, ଯାହା ଯୁଗାନ୍ତକାରୀ ଆବେଦନରେ ଥିଲା ମହିମାନ୍ୱିତ ଓ ଆବେଗ ବିଜଡ଼ିତ ।



# ଅନ୍ତର୍ଦାହର ଜ୍ୱାଳାରେ ଷଢ଼େଇକଳା-ଖରସୁଆଁ

ଷଢ଼େଇକଳା ଓ ଖରସୁଆଁ- ଓଡ଼ିଶାର ଥିଲା ଅବିଚ୍ଛେଦ୍ୟ ଅଂଗ । ଓଡିଶାର ମହନୀୟ ପରମ୍ପରା, ସଂସ୍କୃତି ଓ ଜନଜୀବନର ଏହା ଏକ ଅବିଚ୍ଛିନ୍ନ ଧାରା । ନିଜସ୍ୱ ଐତିହ୍ୟ, କଳା ଓ ସଂସ୍କୃତିରେ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ । ମାତ୍ର ବର୍ତ୍ତମାନ ଏହାର ସ୍ଥିତି ଉପରେ ପ୍ରଶ୍ନବାଚୀର ଚିହ୍ନ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ତୀବ୍ର ଅନ୍ତର୍ଦାହର ଜ୍ୱାଳାରେ ଏହା ଯେପରି ମୂର୍ଚ୍ଛିତ ।

ବିଗତ ୨୦୦୦ ଜୁଲାଇ ୨୫ ତାରିଖରେ ପାର୍ଲାମେଣ୍ଟରେ ଝାଡ଼ଖଣ୍ଡ ବିଲ୍ ଉପସ୍ଥାପିତ ହେଲା, ଏହାକୁ ସେହି ରାଜ୍ୟର ସୀମା ମଧ୍ୟରେ ଅନ୍ତର୍ଭୁକ୍ତ କରି । ବିଗତ ୧୦.୭.୨୦୦୦ରେ ଓଡ଼ିଶାର ବିଧାନସଭାରେ ଦଳମତ ନିର୍ବିଶେଷରେ ଏକ ସ୍ୱରରେ ପ୍ରସ୍ତାବ ଗୃହୀତ ହୋଇଥିଲା ଷଢ଼େଇକଳା-ଖରସୁଆଁର ଓଡ଼ିଶାରେ ପୁନଃମିଶ୍ରଣପାଇଁ । ମାତ୍ର ପାର୍ଲାମେଣ୍ଟରେ ଜୁଲାଇ ୨୫ ତାରିଖରେ ଓଡ଼ିଶାର ସାଂସଦମାନଙ୍କ ମଧ୍ୟରେ ଏ ପ୍ରକାର ସହମତି ଓ ଏକତା ପ୍ରଦର୍ଶିତ ହୋଇ ନଥିଲା । ସମସ୍ତେ ଯେପରି ଥିଲେ ସଂଶୟ ଆଉ ଦ୍ୱିଧାଚ୍ଛନ୍ନ । ତାହାହିଁ ପୁନର୍ବାର ଅଭିନୀତ ହୋଇଥିଲା ପରବର୍ତ୍ତୀ ଅଗଷ୍ଟ ୨ ତାରିଖରେ, ଝାଡ଼ଖଣ୍ଡ ରାଜ୍ୟ ବିଲ୍ ପାର୍ଲାମେଣ୍ଟରେ ଗୃହୀତ ହେବା ବେଳେ । ଅବଶ୍ୟ ବିଜେଡ଼ି ପକ୍ଷରୁ ଏକ ପ୍ରସ୍ତାବ ଷଢ଼େଇକଳା ଓ ଖରସୁଆଁର ମିଶ୍ରଣ ଓଡ଼ିଶା ସହିତ କରିବା ଲାଗି ଉପସ୍ଥାପିତ ହୋଇଥିଲା, ଯାହା କାଟ ଖାଇବା ପରେ ସେହି ଦଳର ସାଂସଦମାନେ ପାର୍ଲିଆମେଣ୍ଟ କକ୍ଷତ୍ୟାଗ କରି ଚାଲିଯାଇଥିଲେ ।

ଏକ ବିବରଣୀରୁ ପ୍ରକାଶ ଯେ ଗୃହମନ୍ତ୍ରୀ ଲାଲ୍‌କୃଷ୍ଣ ଆଡ୍‌ଭାନି ସୂଚାଇଥିଲେ ଯେ, ଝାଡ଼ଖଣ୍ଡ ରାଜ୍ୟର ଗଠନ ପରେ, ଓଡ଼ିଶା ଓ ଝାଡ଼ଖଣ୍ଡର ରାଜ୍ୟ ଆପୋଷ ବୁଝାମଣାରେ ଏହି ସୀମାରେ ପରିବର୍ତ୍ତନ ଆଣି ପାରିବେ । ମାନ୍ୟବର ବାଚସ୍ପତି ଶରତ କରଙ୍କ ଅଧ୍ୟକ୍ଷତାରେ ଏକ କମିଟି,

ଭାରତର ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କୁ ଭେଟି ଏ ସଂପର୍କରେ ଦାବି ଉପସ୍ଥାପନା କରିଥିଲେ । ମାତ୍ର କେନ୍ଦ୍ରର ଅଭିଭାବକତ୍ୱରେ ଚିରକାଳ ଲାଗି ଓଡ଼ିଶାର ଭାଗ୍ୟ ଯେପରି ପଥର ତଳେ ଚାପି ହୋଇରହିଛି । ଖରସୁଆଁ ଓ ଷଢ଼େଇକଳା ଅନ୍ୟ ଗଡ଼ଜାତ ରାଜ୍ୟ ପରି ଓଡ଼ିଶା ଗଜପତିଙ୍କର ଏକ କରଦ ରାଜ୍ୟ ଥିଲା, ଯାହା ଜଗନ୍ନାଥ ସଂସ୍କୃତି ଓ ଗଜପତି ପରମ୍ପରା ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଏହି ପରମ୍ପରା ଓଡ଼ିଶାରେ ପ୍ରତିଷ୍ଠିତ , ଝାଡ଼ଖଣ୍ଡ ଓ ମଧ୍ୟପ୍ରଦେଶକୁ ମଧ୍ୟ ସଂପ୍ରସାରିତ । ବହୁ ଭାବରେ ଏହା ଥିଲା ଓଡ଼ିଶାର ସ୍ୱକୀୟ ପରମ୍ପରା । ମୂଳରୁ ଷଢ଼େଇକଳା ଗୋଟିଏ କରଦ ରାଜ୍ୟ ଥିଲା । ପରବର୍ତ୍ତୀକାଳରେ ଖରସୁଆଁର ସୃଷ୍ଟି, ଷଢ଼େଇକଳା ବିଭାଜିତ ହେବା ପରେ ।

ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ ମୁସଲମାନ, ମୋଗଲ ଓ ମରହଟ୍ଟା ଶାସନ କାଳରେ ବିନା ବାଧାରେ ଓଡ଼ିଶାର ମଧ୍ୟ ଓ ପଶ୍ଚିମାଞ୍ଚଳରେ ଏହି ଗଡ଼ଜାତ ରାଜ୍ୟମାନ ପ୍ରତିଷ୍ଠିତ ରହିଥିଲେ । ଅବଶ୍ୟ ମରହଟ୍ଟାମାନେ ଏମାନଙ୍କଠାରୁ କର ଆଦାୟ କରୁଥିଲେ । ଉତ୍ତର-ଓଡ଼ିଶା ୧୮୦୩ ସାଲରେ ଏବଂ ପଶ୍ଚିମ-ଓଡ଼ିଶା ୧୮୨୬ରେ ଗଡ଼ଜାତ ସହ ଇଂରେଜ ଶାସନର କର୍ତ୍ତୃତ୍ୱାଧୀନ ହେଲା । ଓଡ଼ିଶା ଡିଭିଜନର ଶାସକୀୟ ପରିସୀମାର ପରିବର୍ତ୍ତନ ପ୍ରକ୍ରିୟା ମଧ୍ୟରେ ୧୮୬୦ ବେଳକୁ ୧୯୪୭ରେ ଓଡ଼ିଶା ପ୍ରଶାସନ ମଧ୍ୟରେ ଥିବା ୨୬ଗୋଟି ଗଡ଼ଜାତ ଓଡ଼ିଶା ଡିଭିଜନର ଶାସକୀୟ ପରିସରରେ ଥିଲା । ଏ ମଧ୍ୟରେ ଥିଲା ଉଭୟ ଷଢ଼େଇକଳା ଓ ଖରସୁଆଁ । ମାତ୍ର ୧୮୬୨ ସାଲରେ ଭାଗ୍ୟଚକ୍ରର ଆବର୍ତ୍ତନରେ ପାଟଣା, କଳାହାଣ୍ଡି, ସୋନପୁର, ବାମଣ୍ଡା, ରେଢ଼ାଖୋଲ, ମଧ୍ୟପ୍ରଦେଶରେ ଅବସ୍ଥାପିତ ହେଲେ । ସେହି ବର୍ଷ ଗାଙ୍ଗପୁର, ବଣେଇ, ଷଢ଼େଇକଳା ଏବଂ ଖରସୁଆଁ ବିହାରର ଛୋଟନାଗପୁର ଡିଭିଜନ ସହିତ ସାମିଲ୍ ହେଲା । ତେଣୁ ବଳକା ୧୭ଟି ଗଡ଼ଜାତ ଓଡ଼ିଶା ଡିଭିଜନର ଅଧୀନରେ ରହିଥିଲା । ଏ ଥିଲା ୧୮୬୩ର ସ୍ଥିତି । ମାତ୍ର ୧୯୦୫ ଅକ୍ଟୋବର ୧୬ ତାରିଖରେ ମଧ୍ୟପ୍ରଦେଶରୁ କଳାହାଣ୍ଡି, ସୋନପୁର, ପାଟଣା, ରେଢ଼ାଖୋଲ ଓ ବାମଣ୍ଡା ଏବଂ ଛୋଟନାଗପୁର ଡିଭିଜନରୁ ଗାଙ୍ଗପୁର ଓ ବଣେଇ ଆସି ଓଡ଼ିଶା ଡିଭିଜନ୍ ସହିତ ମିଶିଲା ।

ଛୋଟନାଗପୁରର ଅନ୍ୟ ଗଡ଼ଜାତଗୁଡିକ ହେଲେଃ ସରଗୁଜା, ଯଶପୁର, ଉଦୟପୁର, କୋରିଆ, ଚଙ୍ଗଭରକର । ମଧ୍ୟପ୍ରଦେଶକୁ ସ୍ଥାନାନ୍ତରିତ କରାଯାଇଥିଲେ ମଧ୍ୟ, ଭ୍ରମବଶତଃ ଷଢ଼େଇକଳା-ଖରସୁଆଁ ଛୋଟନାଗପୁରରେ ରହିଯାଇଥିଲା । ମୂଳତଃ ଛୋଟନାଗପୁର କିମ୍ବା ବିହାରରେ ଗଡ଼ଜାତ ପରମ୍ପରା ନଥିବାରୁ; ଗଡ଼ଜାତସମୂହକୁ ଲର୍ଡ଼ କର୍ଜନ ଓଡ଼ିଶା ଓ ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନ ମଧ୍ୟରେ ସୀମିତ କରି ରଖିଥିଲେ । ୧୯୧୬ରେ ଏହି ଦୁଇ ଗଡ଼ଜାତକୁ ଓଡ଼ିଶା ଡିଭିଜନକୁ ହସ୍ତାନ୍ତରିତ କରି ସମ୍ବଲପୁର ପଲିଟିକାଲ୍ ଏଜେଣ୍ଟଙ୍କ ତଦାରଖରେ ରଖିବାପାଇଁ ଆଦେଶପ୍ରାପ୍ତ ହୋଇଥିଲେ ମଧ୍ୟ ଏହା କାର୍ଯ୍ୟକାରୀ ହୋଇନଥିଲା ।

ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଶାରେ ଅନ୍ୟସମସ୍ତ ଅଞ୍ଚଳର ମିଶ୍ରଣ ପରି ଷଢ଼େଇକଳା ଓ ଖରସୁଆଁର ମିଶ୍ରଣ ମଧୁସୂଦନ ଦାସଙ୍କର ପ୍ରଚେଷ୍ଟାରେ ହିଁ ସମ୍ଭବ ହୋଇଥିଲା ।

ଭାରତୀୟ ଶାସନବିଧିରେ ସଂସ୍କାର ଆଣିବାପାଇଁ ବ୍ରିଟିଶ ସରକାର ୧୯୨୭ରେ ସାଇମନ କମିଶନ ବ୍ରିଟିଶ ଶାସିତ ଅଞ୍ଚଳପାଇଁ ଏବଂ ଦେଶୀୟ ରାଜ୍ୟ ତଥା ଗଡ଼ଜାତମାନଙ୍କୁ ଶାସନ ପ୍ରକ୍ରିୟାରେ ସମ୍ପର୍କିତ କରି ଏକ ଫେଡେରାଲ୍ ରାଜ୍ୟ ଗଠନ କରିବା ଉଦ୍ଦେଶ୍ୟରେ ୧୯୨୭ରେ ବାଟଲାର କମିଟି ବସାଇଥିଲେ ।

ବ୍ରିଟିଶ ସରକାରଙ୍କ ଦ୍ୱାରା ଗଠିତ ବାଟଲାର କମିଟି ସମକ୍ଷରେ ଖରସୁଆଁ ଓ ଷଢ଼େଇକଳା ରାଜାଙ୍କ ପକ୍ଷରୁ ସାକ୍ଷ୍ୟ ଦେବାକୁ ମଧୁସୂଦନ ଦାସ ୧୯୨୮ ଏପ୍ରିଲ୍ ୧୫ ତାରିଖରେ ବମ୍ବେରେ ପହଞ୍ଚିଥିଲେ । ସାକ୍ଷ୍ୟ ପ୍ରଦାନ ସମୟରେ ମଧୁସୂଦନ ଦାସ ଷଢ଼େଇକଳା ଓ ଖରସୁଆଁକୁ ଓଡ଼ିଶା ଡିଭିଜନରେ ମିଶ୍ରଣ କରିବାକୁ ଦାବି ଉପସ୍ଥାପନ କରିଥିଲେ, ଯାହାକୁ ବାଟ୍‌ଲାର୍ କମିଟି ସ୍ୱୀକୃତି ପ୍ରଦାନ କରି ତାଙ୍କର ପ୍ରସ୍ତାବ ମଧ୍ୟରେ ଅନ୍ତର୍ଭୁକ୍ତ କରିଥିଲେ । ବାଟଲାର କମିଟିର ରିପୋର୍ଟ ୧୯୩୧ରେ ପ୍ରକାଶ ପାଇବା ପରେ ସରକାର ଓଡ଼ିଶା ସହିତ ଷଢ଼େଇକଳା-ଖରସୁଆଁର ମିଶ୍ରଣ କାର୍ଯ୍ୟକାରୀ କରିବା ପୂର୍ବରୁ ସାର୍ ଆର୍ଥର ଲୋଥିଏନିଙ୍କ ଦ୍ୱାରା ପୁନଃ ଅନୁସନ୍ଧାନ କରାଯାଇ ଷଢ଼େଇକଳା ଓ ଖରସୁଆଁର ମିଶ୍ରଣ ଲାଗି ସ୍ୱତନ୍ତ୍ର ନିର୍ଦ୍ଦେଶନାମା ଜାରି କରିଥିଲେ । ଏହିପରି ବହୁ କମିଟି, ସାକ୍ଷ୍ୟ ପ୍ରଦାନ ମଧ୍ୟରେ ବହୁବାର ଷଢ଼େଇକଳା ଓ ଖରସୁଆଁ ଓଡ଼ିଆ ସଂସ୍କୃତିର ଅଂଚଳ, ଯାହା ଓଡ଼ିଶା ସହିତ ମିଶ୍ରଣ ହେବାର ଉପଯୁକ୍ତ ବୋଲି ପ୍ରମାଣିତ ହୋଇଛି । ଓଡ଼ିଶା ପ୍ରଦେଶ ନିର୍ମାଣର ଅନ୍ୟତମ ବିନ୍ଧାଣୀ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଖରସୁଆଁରେ ଓ ଖଲ୍ଲିକୋଟର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ଷଢ଼େଇକଳା ରାଜବଂଶରେ ବିବାହ କରିଥିଲେ । ଏ ସମସ୍ତ ମଧ୍ୟରେ ଷଢ଼େଇକଳା, ଖରସୁଆଁରେ ଓଡ଼ିଆଭାଷୀ ଜନସଂଖ୍ୟା ଶତକଡ଼ା ୨୫ ଭାଗରୁ ଊର୍ଦ୍ଧ୍ୱ । ଏଠାର ମୁଖ୍ୟ ଅଧିବାସୀ ଆଦିବାସୀ ସଂପ୍ରଦାୟର । ସୁନ୍ଦରଗଡ଼ ଓ ବଣେଇ ଅଂଚଳ ତଥା କଳାହାଣ୍ଡି, କୋରାପୁଟ, ମୟୂରଭଞ୍ଜ ଅଞ୍ଚଳ ପରି ଏଠାରେ ଓଡ଼ିଆ ସଂସ୍କୃତି, ଆଦିବାସୀ ସଂସ୍କୃତି ସହିତ ମିଶ୍ରିତ ହୋଇ ଏକ ସମନ୍ୱିତ ସଂସ୍କୃତି ସୃଷ୍ଟି ହୋଇଛି, ଯାହା ମୁଖ୍ୟ ଓଡ଼ିଆ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଂଗ । ଏ ସମସ୍ତ ମଧ୍ୟରେ ବାଟ୍‌ଲାର କମିଟିର ସୁପାରିଶ ଓ ସାର ଅର୍ଥର ଲୋଥିଏନଙ୍କର ଅନୁସନ୍ଧାନ ପରେ ୧୯୩୩ ସାଲରେ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶା ଡିଭିଜନ ସହିତ ମିଶ୍ରିତ ହୋଇଥିଲା , ଯାହା ୧୯୩୫ ସାଲର ଭାରତ ଆଇନ ମଧ୍ୟରେ ସାମ୍ବିଧାନିକ ମାନ୍ୟତା ପାଇଥିଲା । ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଷଢ଼େଇକଳା ଓ ଖରସୁଆଁ ।

ସ୍ୱାଧୀନତା ପ୍ରାପ୍ତି ପରେ ୧୯୪୭ ଡିସେମ୍ବର ୧୪ ତାରିଖରେ ଷଢ଼େଇକଳା ଓ ଖରସୁଆଁକୁ ଶାସନ କରୁଥିବା ଦୁଇଜଣଯାକ ରାଜା, ସେମାନଙ୍କର ଗଡ଼ଜାତ ରାଜ୍ୟକୁ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ କରିଥିଲେ । ମାତ୍ର ମୟୂରଭଞ୍ଜ ମିଶି ନଥିବାରୁ ଓଡ଼ିଶା ପ୍ରଦେଶ ସହିତ ସଂଯୁକ୍ତିର ଅଭାବ ଦେଖାଇ ୧୮.୫.୧୯୪୮ ରେ ଏହି ଦୁଇଟି ରାଜ୍ୟକୁ ବିହାର ପ୍ରଦେଶ ସହିତ ମିଶାଇ ଦିଆଗଲା । ଏହାର କିଛିକାଳ ପରେ ୧.୧.୧୯୪୯ରେ ମୟୂରଭଞ୍ଜ ରାଜ୍ୟର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ହେବା ପରେ ମଧ୍ୟ ସ୍ଥିତି ଅପରିବର୍ତ୍ତିତ ରହିଲା । ୧୯୫୩ ସାଲର ଡିସେମ୍ବର ମାସରେ ରାଜ୍ୟ

ପୁନର୍ଗଠନ କମିଶନ ନିଯୁକ୍ତ ହେଲା । ଷଢ଼େଇକଳା ଓ ଖରସୁଆଁର ପୁନଃ ମିଶ୍ରଣ ଲାଗି ସବୁ ଦଳ ପକ୍ଷରୁ ଦାବି ଉପସ୍ଥାପନ ପରେ ମଧ୍ୟ ୧୦.୧୦.୧୯୫୫ରେ ରାଜ୍ୟ ପୁନର୍ଗଠନ କମିଶନ ଏହାକୁ ପ୍ରତ୍ୟାଖ୍ୟାନ କଲେ । ଫଳରେ ଏକ ବିସ୍ଫୋରକ ଅବସ୍ଥା ସୃଷ୍ଟି ହେଲା । ଏ ଥିଲା ମୁଖ୍ୟ ଘଟଣା ପ୍ରବାହ । ଏ ସମସ୍ୟାର ସମାଧାନ ଲାଗି ଆବଶ୍ୟକ ରାଜନୈତିକ ଦୂରଦୃଷ୍ଟିସମ୍ପନ୍ନ ନେତୃତ୍ୱ, ସମୟୋପଯୋଗୀ କାର୍ଯ୍ୟ ନିର୍ଦ୍ଧାରଣ ଆଉ ଜନଗଣଙ୍କ ପକ୍ଷରୁ ବିଧିବଦ୍ଧ ଦାବି ଉପସ୍ଥାପନ ଓ ଆନ୍ଦୋଳନ ।



# ଭାରତ ପୃଷ୍ଠଭୂମିରେ ଓଡ଼ିଶା ରାଜ୍ୟର ସ୍ଥାପନା

"ଓଡ଼ିଶା ଯାହା ଆଜି ଚିନ୍ତା କରେ ; ସମଗ୍ର ଦେଶ ପରଦିନ ହିଁ ତାହା ଚିନ୍ତା କରେ"-ଏହା ଥିଲା ମଧୁବାବୁଙ୍କ ଦୃଢୋକ୍ତି । ଅନ୍ୟ ଅର୍ଥରେ କହିଲେ,ଓଡ଼ିଶାର ହିଁ ଥିଲା ଏକ ଦିଗ୍‌ଦର୍ଶକର ଭୂମିକା ।

ଭାଷା-ଆଧାରରେ ପ୍ରଥମ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନକାଳରେ ଏବଂ ତାହାର ଅବ୍ୟବହିତ ପରେ, ବିଭିନ୍ନ ଭାଷାଭାଷୀ ଅଧିବାସୀମାନଙ୍କ ମନରେ ଏ ପ୍ରକାର ରାଜ୍ୟଗଠନଲାଗି ତୀବ୍ର ଅଭିଳାଷ ଓ ପ୍ରଚଣ୍ଡ ଜନ ଆନ୍ଦୋଳନ ଦେଖାଦେଲା । ଆନ୍ଧ୍ରର ପୋଟ୍ଟି ଶ୍ରୀ ରାମୁଲୁଙ୍କର ୧୫.୧୧.୧୯୫୨ରେ ଆତ୍ମୋତ୍ସର୍ଗ ଫଳରେ ହିଁ ୧.୧୦.୧୯୫୩ରେ ଆନ୍ଧ୍ରପ୍ରଦେଶ ଗଠିତ ହୋଇଥିଲା । ଏହା ସହିତ ରାଜ୍ୟ ପୁନର୍ଗଠନ କମିଶନ ମଧ୍ୟ ସଂସ୍ଥାପିତ ହୋଇଥିଲା ।

ଭୌଗୋଳିକ କାରଣରୁ ୧୮୭୪ ସାଲରେ ଆସାମ ପ୍ରଦେଶର ସୃଷ୍ଟି ପରେ ସମଗ୍ର ବ୍ରିଟିଶ ଶାସନ କାଳରେ ଏକମାତ୍ର ଓଡ଼ିଶା ରାଜ୍ୟ ଗଠିତ ହୋଇଥିଲା, ଯାହାର ପଶ୍ଚାତରେ ରହିଥିଲା ସୁଦୀର୍ଘ ସତୁରୀ ବର୍ଷ (୧୮୬୬-୧୯୩୬)ର ଅବିରାମ ସଂଗ୍ରାମ । ଲବଣ ଶିଳ୍ପର ଧ୍ୱଂସ, ସୂର୍ଯ୍ୟାସ୍ତ ଆଇନ, ବ୍ରିଟିଶ ପ୍ରଣୋଦିତ ଜମିଦାରି ପ୍ରଥାର ଧ୍ୱଂସକାରିତା, ନଅଙ୍କ ଦୁର୍ଭିକ୍ଷ (୧୮୬୬)ର କରାଳ ଗ୍ରାସ, ଓଡ଼ିଆ ଭାଷାର ବିଲୋପ ଲାଗି ଚକ୍ରାନ୍ତ (୧୮୬୬-୧୮୭୦), ଗଜପତି ଦିବ୍ୟସିଂହ ଦେବଙ୍କର ଦ୍ୱୀପାନ୍ତର (୧୮୭୭), ଶ୍ରୀମନ୍ଦିର ଅଧିଗ୍ରହଣ ପ୍ରଚେଷ୍ଟା (୧୮୮୭), ସମ୍ବଲପୁରରେ ଓଡ଼ିଆ ଭାଷାର ଉଚ୍ଛେଦ (୧୮୯୬-୧୯୦୨) ମଧ୍ୟରେ ଜାତୀୟବାଦୀ ସାହିତ୍ୟର ପ୍ରସ୍ତୁତି ମାଧ୍ୟମରେ ଓଡ଼ିଆ ଜାତୀୟତାର ଉଦ୍ରେକ ଘଟିଥିଲା । ଏହାର ପ୍ରସାର ଓ ବିସ୍ତାର ଥିଲା ଅଚିନ୍ତନୀୟ ।

୧୯୦୫ରେ ପୂର୍ବ ଓଡ଼ିଶା ସହିତ ପଶ୍ଚିମ ଓଡ଼ିଶାର ମିଶ୍ରଣ ଘଟିଥିଲେ ମଧ୍ୟ ମାନ୍ଦ୍ରାଜ ସରକାର ଏବଂ ତାହାର ଗଭର୍ଣ୍ଣର ଲର୍ଡ଼ ଏମ୍ପଥିଲଙ୍କର ପ୍ରତିରୋଧଯୋଗୁଁ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ଥିବା ଦକ୍ଷିଣ ଓଡ଼ିଶା ର ମିଶ୍ରଣ ସମ୍ଭବପର ହୋଇନଥିଲା । ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଓଡ଼ିଆମାନଙ୍କ ବ୍ୟତୀତ, ତେଲୁଗୁ, ତାମିଲ୍, କନ୍ନଡ଼ ଓ ମାଲାୟଲମ୍‌ଭାଷୀ ଜନସାଧାରଣ ବାସ କରୁଥିବାରୁ ଓଡ଼ିଆଭାଷୀଙ୍କ ମିଶ୍ରଣଯୋଗୁଁ ଅନ୍ୟଭାଷାଭାଷୀଙ୍କ ମଧ୍ୟରେ ସେମାନଙ୍କର ସ୍ୱତନ୍ତ୍ର ପ୍ରଦେଶ ପ୍ରତିଷ୍ଠା ଲାଗି ଆକାଂକ୍ଷା ଜାଗରିତ କରିବ ଓ ପରିଣାମରେ ମାନ୍ଦ୍ରାଜ ପ୍ରେସିଡେନ୍‌ସି ବିଭାଜିତ ହୋଇଯିବ ବୋଲି କାରଣ ଦର୍ଶା ଯାଇଥିଲା ।

ମଧୁସୂଦନ ଦାସ ପୁନର୍ବାର ୧୯୦୭ରେ ଲଣ୍ଡନ ଯାତ୍ରାକଲେ । ଭାରତ ସଚିବ ତଥା ତାଙ୍କର ବିଶାରଦଗଣଙ୍କ ସହିତ ଭେଟି ଓଡ଼ିଶା ପ୍ରଦେଶ ଗଠନର ପ୍ରକ୍ରିୟାକୁ ସେ ତ୍ୱରାନ୍ୱିତ କରିଥିଲେ । ମଧୁସୂଦନ ଦାସଙ୍କ ନେତୃତ୍ୱରେ ୧୧.୧୨.୧୯୧୭ରେ ଏକ ଓଡ଼ିଆ ପ୍ରତିନିଧି ଦଳ ମଣ୍ଟେଗୁ-ଚେମ୍‌ସଫୋର୍ଡ଼ ସଂସ୍କାର କମିଟିକୁ ଭେଟିଥିଲେ ମଧ୍ୟ କୌଣସି ସୁଫଳ ପାଇପାରି ନଥିଲେ ।

୧୯୨୧ରେ ଅସହଯୋଗର ଯୁଗ ଆରମ୍ଭ ହେଲା । ମାତ୍ର ଏହାର କର୍ଣ୍ଣଧାର ମହାତ୍ମାଗାନ୍ଧୀ ଗୁଜୁରାଟୀଭାଷୀ ଅଞ୍ଚଳରୁ ଆସିଥିବାରୁ ପରାଧୀନ ଭାରତରେ ମଧ୍ୟ ଓଡ଼ିଆଭାଷୀ ଅଞ୍ଚଳ ଗଠନ ଲାଗି କେବଳ ଅକୁଣ୍ଠ ସମର୍ଥନ ଜଣାଇ ନଥିଲେ, ସ୍ୱଦେଶୀ ଶିଳ୍ପର ଆଦ୍ୟ ପ୍ରବକ୍ତା ମଧୁସୂଦନ ଦାସଙ୍କୁ ନିଜର ଅନ୍ୟତମ ମାର୍ଗଦର୍ଶକ ରୂପେ ମାନ୍ୟତା ପ୍ରଦାନ କରିଥିଲେ । ମାତ୍ର ହିନ୍ଦୀ ଭାଷୀ ଅଞ୍ଚଳରୁ ଆସିଥିବା କଂଗ୍ରେସ ନେତୃବର୍ଗ ଓଡ଼ିଶା ପ୍ରଦେଶ ସ୍ଥାପନାର ତୀବ୍ର ବିରୋଧୀ ଥିଲେ । ଦକ୍ଷିଣ ଓଡ଼ିଶାରେ ୧୯୨୪ ଡିସେମ୍ବରରେ ଫିଲିପ୍ ଡଫ୍ କମିଶନର ସାକ୍ଷ୍ୟ ଗ୍ରହଣ ଆନ୍ଧ୍ରମାନଙ୍କୁ ବିବ୍ରତ କରିଥିଲା । ଏହାପରେ ମଧୁସୂଦନ ଦାସ ୧୫.୪.୧୯୨୮ରେ ବମ୍ବେଠାରେ ବଟଲାର୍ କମିଟିକୁ ଭେଟି ଷଢ଼େଇକଳା ଓ ଖରସୁଆଁର ମିଶ୍ରଣ ଲାଗି ଦାବି ଉପସ୍ଥାପନ କରିଥିଲେ ।

୪.୨.୧୯୩୪ରେ ମଧୁସୂଦନ ଦାସଙ୍କର ପରଲୋକ ଘଟିଲା । ମାତ୍ର ତାଙ୍କର ଏକନିଷ୍ଠ ଦାୟାଦ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୯୩୪ ସାଲର ମଇମାସରୁ ସୁଦୀର୍ଘକାଳ ଲଣ୍ଡନରେ ଅବସ୍ଥାନ କରି ଓଡ଼ିଶାର ସୀମା ନିର୍ଦ୍ଧାରଣ ସଂପର୍କରେ ଭାରତ ତଥା ମାନ୍ଦ୍ରାଜ ସରକାରଙ୍କ ତୀବ୍ର ପ୍ରତିରୋଧ ସତ୍ତ୍ୱେ ସନ୍ତୋଷଜନକ ଭାବେ ସୀମା ସ୍ଥିରୀକୃତ କରିବାରେ ସଫଳ ହୋଇଥିଲେ । ଇତି ମଧ୍ୟରେ ଜୟପୁର ଜମିଦାରି ଓ ପାରଳାଖେମୁଣ୍ଡି ଜମିଦାରିର ଏକ ଅଂଶ ଓଡ଼ିଶା ସୀମାର ଅନ୍ତର୍ଭୁକ୍ତ ହୋଇସାରିଥଲା । ଏହାପରେ ୩.୩.୧୯୩୬ରେ ବ୍ରିଟିଶ ପାର୍ଲାମେଣ୍ଟ ନିର୍ଦ୍ଦେଶନାମା ଅନୁସାରେ ଓଡ଼ିଶା ପ୍ରଦେଶ ୧.୪.୧୯୩୬ରେ ସ୍ଥାପିତ ହେଲା । ବହୁକାଳର ଆଶା ପରିପୂର୍ଣ୍ଣ ହେଲା । ଏହାର ପ୍ରଭାବ ସମଗ୍ର ଭାରତରେ ସୁଦୂରପ୍ରସାରୀ ଥିଲା । ଓଡ଼ିଶା ସ୍ଥାପନାର ପରିପ୍ରେକ୍ଷୀରେ ୨୧.୪.୧୯୩୮ରେ ମାନ୍ଦ୍ରାଜ ବିଧାନ ସଭାରେ ଆନ୍ଧ୍ର ତାମିଲ୍, କେରଳ, କର୍ଣ୍ଣାଟକ ନାମରେ ଚାରିଗୋଟି ସ୍ୱୟଂ ସଂପୂର୍ଣ୍ଣ ପ୍ରଦେଶ ଗଠନଲାଗି ପ୍ରସ୍ତାବ ଗ୍ରହଣ କରାଗଲା । ମାତ୍ର ଏହି ପ୍ରସ୍ତାବକୁ ଧରାଶାୟୀ କରିବାପାଇଁ ୨.୫.୧୯୩୮ରେ ବ୍ରିଟିଶ ପାର୍ଲାମେଣ୍ଟ (ହାଉସ୍ ଅଫ୍ କମନସ୍)ରେ , ନୂତନ ପ୍ରଦେଶ ସୃଷ୍ଟି ହେବ ନାହିଁ ବୋଲି ଘୋଷଣା କରାଗଲା । ଏଥିରୁ ଓଡ଼ିଆ ଜାତିର ସଂଗ୍ରାମର ଦୂରଦର୍ଶିତା ଅନୁମେୟ । ଏହାପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ଭାରତଛାଡ଼ ଆନ୍ଦୋଳନର ଘନଘଟା

ମଧ୍ୟରେ ବ୍ରିଟିଶ ଶାସନକାଳରେ ଆଉ କୌଣସି ଅଗ୍ରଗତି ହୋଇ ନଥିଲା । ମାତ୍ର ଭାରତର ସ୍ୱାଧୀନତା ପ୍ରାପ୍ତି ବେଳକୁ ନିରାଶାଗ୍ରସ୍ତ ଆନ୍ଧ୍ରପ୍ରଦେଶ ସମେତ ଭାରତର ବହୁ ଅଂଚଳରେ ଭାଷାଭିତ୍ତିରେ ପ୍ରଦେଶ ଗଠନର ଆଲୋଡ଼ନ, ଉଦ୍‌ବେଳନ ଆଉ ଚାପା ଉତ୍ତେଜନା ମଧ୍ୟରେ ବିସ୍ଫୋରକ ଅବସ୍ଥାକୁ ଚାଲି ଆସିଥିଲା । ଏହି ଅତୀବ ସ୍ପର୍ଶକାତର ପରିସ୍ଥିତିକୁ ଅନୁଧ୍ୟାନ କରି ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଭାଷାଭିତ୍ତିରେ ପ୍ରଦେଶ ଗଠନର ସିଦ୍ଧାନ୍ତର ଉଦ୍‌ଘୋଷଣା କରି ଏହି ଉଦ୍ଦେଶ୍ୟରେ କମିଶନ ଗଠନ କରିଥିଲେ । ମାତ୍ର ଏହି କମିଶନର ପ୍ରତିଶ୍ରୁତିରେ ନିରାଶାଜନକ ପ୍ରତିଫଳନ, ପରିସ୍ଥିତିକୁ ଅତ୍ୟନ୍ତ ବିଭ୍ରାନ୍ତ ଅବସ୍ଥାରେ ପହଞ୍ଚାଇଥିଲା । ପରିଣାମରେ ପଟ୍ଟି ଶ୍ରୀରାମୁଲଙ୍କର ଆତ୍ମୋତ୍ସର୍ଗ ଫଳରେ ୧.୧୦.୧୯୫୩ରେ ଆନ୍ଧ୍ର ପ୍ରଦେଶର ଗଠନ, ଆଉ ସେହି ବର୍ଷ ଅନ୍ତକାଳରେ ରାଜ୍ୟ ପୁନର୍ଗଠନ କମିଶନର ସ୍ଥାପନା ଓ ନିର୍ଦ୍ଧାରଣ କ୍ରମେ ୧.୧୧.୧୯୫୬ରେ ଭାରତର ଭାଷାଭିତ୍ତିକ ପ୍ରଦେଶମାନ ସ୍ଥାପନା ହେଲା । ପ୍ରକୃତରେ ମଧୁସୂଦନ ଦାସ ଯେଉଁ ହୋମାଗ୍ନି ପ୍ରଜ୍ୱଳନ କରିଥିଲେ ସେଥିରେ ମୁଖ୍ୟ ଆହୁତି ପ୍ରଦାନ କରିଥିଲେ ରାଜ୍ୟ ପୁନର୍ଗଠନ କମିଶନ ୧୯୫୬ ସାଲରେ ।



# ଶତାବ୍ଦୀର ନିଦ୍ରାଭଙ୍ଗ

ସ୍ମରଣୀୟ ୧୯୯୮ ଅଗଷ୍ଟ ପନ୍ଦର ତାରିଖରେ ଶୁଭାରଂଭ ହୋଇଛି ବହୁ ପ୍ରତୀକ୍ଷିତ 'ତପସ୍ୱିନୀ ଏକ୍ସପ୍ରେସ୍'ର ଯୁଗାଂତକାରୀ ଯାତ୍ରା ,ଓଡ଼ିଶାର ପଶ୍ଚିମାଞ୍ଚଳକୁ ପୂର୍ବାଞ୍ଚଳ ସହିତ କେବଳ ସଂଯୁକ୍ତ କରି ନୁହେଁ, ଭାବଗତ ଆଦାନ ପ୍ରଦାନ କ୍ଷେତ୍ରରେ ଗଭୀର ଭାବେ ସମନ୍ୱିତ କରି । ହେଲେ ଏହା ଥିଲା, ଓଡ଼ିଶାରେ ପ୍ରଥମ ରେଳଯାତ୍ରାର ଦୀର୍ଘ ଏକଶହ ବର୍ଷ ପରେ ଶତାବ୍ଦୀର ନିଦ୍ରାଭଙ୍ଗ ପରି ।

ଓଡ଼ିଶାର ମୁଖ୍ୟ ରେଳପଥ, କଲିକତା ସହିତ ମାନ୍ଦ୍ରାଜକୁ ସଂଯୋଗ କରି ,ଗତ ଏକଶହ ବର୍ଷ ଧରି ଓଡ଼ିଶାକୁ ଭାରତର ମାନଚିତ୍ରରେ କାହିଁକି ଭାରତୀୟ, ଜନମାନସରେ ଚିହ୍ନିତ କରି ଆସିଛି । ପ୍ରାୟ ଷୋଳ ଶହ କିଲୋମିଟର ଦୈର୍ଘ୍ୟବିଶିଷ୍ଟ ଏହି ରେଳପଥର କାର୍ଯ୍ୟ ଅତ୍ୟନ୍ତ କ୍ଷିପ୍ରତାର ସହ ଆରମ୍ଭ ହୋଇ ୧୮୯୫ଠାରୁ ୧୯୦୦ ସାଲ ମଧ୍ୟରେ ସମାପ୍ତ ହୋଇଥିଲା । କ୍ରିଷ୍ଣା, ଗୋଦାବରୀ, ମହାନଦୀ, ବ୍ରାହ୍ମଣୀ, ସୁବର୍ଣ୍ଣରେଖା ଆଦି ନଦୀଗୁଡିକୁ ଅତିକ୍ରମ କରିବାଲାଗି ଏଥିପାଇଁ ବ୍ୟୟବହୁଳ ବୈଜ୍ଞାନିକ କୌଶଳସଂବଳିତ ସେତୁନିର୍ମାଣର ଆବଶ୍ୟକତା ରହିଥିଲା । ୧୯୨୬ ସାଲରେ ନିର୍ଗୁଣ୍ଡିରୁ ଢେଙ୍କାନାଳ ଓ ତାଳଚେର ଗଡ଼ଜାତ ମଧ୍ୟ ଦେଇ ରେଳପଥ ତାଳଚେର ସହିତ ସଂଯୋଜିତ ହୋଇଥିଲା,ମୁଖ୍ୟତଃ କୋଇଲା ତଥା ଯାତ୍ରୀ ପରିବହନ ଲାଗି । ଏ କ୍ଷେତ୍ରରେ ମଧ୍ୟ ମଧୁସୂଦନଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ମାତ୍ର କୌଣସି ପ୍ରାକୃତିକ ପ୍ରତିବଂଧକ ନଥାଇ, ଅତ୍ୟାଧୁନିକ ବିଜ୍ଞାନଯୁଗରେ ତାଳଚେରରୁ ସଂବଲପୁର ପର୍ଯ୍ୟନ୍ତ ମାତ୍ର ୧୭୫ କିଲୋମିଟର ରେଳରାସ୍ତା ନିର୍ମାଣ କରିବାକୁ ଲାଗିଛି ସୁଦୀର୍ଘ ୧୫ ବର୍ଷରୁ ଅଧିକକାଳ । ବୋଧହୁଏ ରେଳପଥ ନିର୍ମାଣ କ୍ଷେତ୍ରରେ ଏହା ଶିଥିଳତାର ସର୍ବୋତ୍ତମ ରେକର୍ଡ଼ । ଏହି ରେଳପଥ ନିର୍ମାଣର ଶୁଭାରଂଭ ହୋଇଥିଲା ୧୯୮୩-୮୪ ସାଲରେ ।

ଓଡ଼ିଶାରେ ରେଳପଥ ନିର୍ମାଣ କ୍ଷେତ୍ରରେ ଯାହାଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ, ସେ ହେଉଛନ୍ତି ମଧୁସୂଦନ ଦାସ । ତାଙ୍କର କ୍ରମାଗତ ଅବିରାମ ପ୍ରଚେଷ୍ଟା ଆଉ ଅକ୍ଲାନ୍ତ ଉଦ୍ୟମରେ ଊନବିଂଶ

ଶତାବ୍ଦୀର ଶେଷପାଦରେ ଓଡ଼ିଶାର ମୁଖ୍ୟ ରେଳରାସ୍ତା ନିର୍ମିତ ହୋଇପାରିଥିଲା । ଅନ୍ୟଥା ଏହାର ପ୍ରତିଷ୍ଠା ପାଇଁ ଆହୁରି ଅନେକ କାଳ ଆମକୁ ଅପେକ୍ଷା କରିବାକୁ ପଡିଥା'ନ୍ତା !

ଭାରତରେ ରେଳପଥର ସାମଗ୍ରିକ ନିର୍ମାଣ ପରିପ୍ରେକ୍ଷୀରେ ଓଡ଼ିଶାର ଉପକୂଳ ଉପରେ କୌଣସି ପ୍ରାଧାନ୍ୟ ଆରୋପିତ ହୋଇ ନଥିଲା । ଗୁରୁତ୍ୱ ଦୃଷ୍ଟିରୁ ପ୍ରଥମେ କଲିକତାଠାରୁ ସମଗ୍ର ଉତ୍ତର ଭାରତରେ ସିମ୍ଲା, କଲିକତା, ମେଦିନୀପୁର, ନାଗପୁର ଦେଇ ରେଳପଥ ଯାଇଥିଲା । ମାନ୍ଦ୍ରାଜ, ବମ୍ବେ, ପୁନା, ହାଇଦ୍ରାବାଦ ଆଦି ବାଣିଜ୍ୟିକ ତଥା ପ୍ରାଶାସନିକ କେନ୍ଦ୍ରଗୁଡ଼ିକୁ ସଂଯୁକ୍ତ କରିବାଲାଗି ରେଳପଥ ନିର୍ମାଣର ପରିକଳ୍ପନା କରାଯାଉଥିବାବେଳେ ଓଡ଼ିଶା ଉପକୂଳପାଇଁ ଯୋଜନା କାହାରି ଚିନ୍ତାକୁ ସ୍ପର୍ଶ କରି ନଥିଲା । ତୀର୍ଥସ୍ଥାନଗୁଡ଼ିକୁ ରେଳରାସ୍ତାଦ୍ୱାରା ସଂଯୁକ୍ତ ଯୋଜନା ଲାଭଦାୟକ ବିବେଚିତ ହେଉଥିବା ପରିପ୍ରେକ୍ଷୀରେ ମଧୁସୂଦନ ୧୮୮୭-୮୮ ସାଲରେ ଉତ୍କଳସଭା (ଓଡ଼ିଶା ଆସୋସିଏସନ୍)ର ଅଧିବେଶନ ବାରମ୍ବାର ଆହ୍ୱାନ କରି କ୍ରମାଗତ ଭାବେ ବନାରସ-ପୁରୀ ରେଳପଥ ନିର୍ମାଣପାଇଁ ରେଳକର୍ତ୍ତୃପକ୍ଷ ତଥା ଭାରତ ସରକାରଙ୍କ ପାଖରେ ଦାବୀପତ୍ର ଉପସ୍ଥାପନ କରିଥିଲେ । ସେ ସୂଚାଇ ଥିଲେ ଯେ, ଜାହାଜଦ୍ୱାରା ଉପକୂଳ ବାଟେ ରେଳ ସଂରଜାମ ପରିବହନର ସୁବିଧା ଥିବା ଦୃଷ୍ଟିରୁ , ପୁରୀ-କଟକ ରେଳରାସ୍ତାର ନିର୍ମାଣ ପ୍ରଥମେ ହାତକୁ ନିଆଯାଉ । ଏହାର ତାତ୍ପର୍ଯ୍ୟ ହେଲା, ୧୮୮୦ ବେଳକୁ କଟକରୁ ପଟାମୁଣ୍ଡାଇ କେନାଲ ଓ ଚାନ୍ଦବାଲି ଦେଇ ଷ୍ଟିମର ଓ ଜାହାଜ ଦ୍ୱାରା କଲିକତାକୁ ଯିବାଲାଗି ୪୮ ଘଣ୍ଟାରୁ ଉର୍ଦ୍ଧ୍ୱ ସମୟ ଲାଗୁଥିଲା । କଟକ- ପୁରୀ ରେଳପଥ ନିର୍ମାଣ ପରେ ପୁରୀକୁ ଯାତ୍ରୀମାନେ ଅନାୟାସରେ ଯିବା ଆସିବା ସଂଭବ ହୋଇ ପାରିବ ବୋଲି ସେ ଦର୍ଶାଇଥିଲେ ।

ସେତେବେଳର ଗାଂଗପୁର (ବର୍ତ୍ତମାନ ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲା, ରାଜଗାଂଗପୁର) ରାଜ୍ୟ ଓ ବାମଣ୍ଡା ରାଜ୍ୟ ମଧ୍ୟ ଦେଇ ନିର୍ମିତ ହୋଇଥିବା ମେଦିନୀପୁର-ନାଗପୁର ରେଳପଥଦ୍ୱାରା ଓଡ଼ିଶା ଭୂଇଁକୁ ପ୍ରଥମେ ରେଳରାସ୍ତା ସ୍ପର୍ଶ କରିଥିଲା ୧୯୮୦ ରେ । ରାଜା ସୁଢ଼ଳ ଦେବ, ବାମଣ୍ଡାର ରାଜଧାନୀ ଦେବଗଡ଼ଠାରୁ ରେଳରାସ୍ତାକୁ ସଂଯୁକ୍ତ କରିବାପାଇଁ ସଡ଼କ ପଥ ନିର୍ମାଣ କରିଥିଲେ ।

ଏହାପରେ ଝାରସୁଗୁଡ଼ା- ସଂବଲପୁର ରେଳରାସ୍ତା ନିର୍ମାଣ ହୋଇ ରେଳ ଚଳାଚଳ ଆରଂଭ ହୋଇଥିଲା ୧୮୯୩ ସାଲ ଜାନୁଆରି ୨୮ ତାରିଖରେ । ନାଗପୁର ସହିତ ସଂବଲପୁର ରେଳରାସ୍ତା ଦ୍ୱାରା ସଂଯୁକ୍ତ ହୋଇଥିବାଯୋଗୁଁ ସଂବଲପୁରରେ ହିନ୍ଦୀ ଶିକ୍ଷା ଓ ଭାଷାର ପ୍ରସାର ପାଇଁ ମଧ୍ୟପ୍ରଦେଶ ସରକାର ସେତେବେଳେ ଯୁକ୍ତିବାଢ଼ିଥିଲେ । ସେ ଯାହାହେଉ ସଂବଲପୁରଠାରୁ କଟକକୁ ରେଳରାସ୍ତା ନିର୍ମାଣର ପରିକଳ୍ପନା କରାଯାଇଥିଲେ ମଧ୍ୟ, ମଧ୍ୟବର୍ତ୍ତୀ ଅଂଚଳରେ ଥିବା ଗଡ଼ଜାତ ରାଜାଂକର ପ୍ରତିରୋଧ ଫଳରେ ବୋଧହୁଏ ଏହା ସଂଭବ ହୋଇ ନଥିଲା । ଏଥିଲାଗି ଏକ ଶହ ବର୍ଷରୁ ଅଧିକ କାଳ ଅପେକ୍ଷା କରିବାକୁ ପଡ଼ିଛି । ଊନବିଂଶ ଶତାବ୍ଦୀରେ ପୂର୍ବାଞ୍ଚଳରେ ରେଳପଥ ନିର୍ମାଣର ଇତିହାସ ସଂପର୍କରେ ଅରୂପ ସୋମଙ୍କ ବିବରଣୀରେ ମଧୁସୂଦନଙ୍କ ଭୂମିକା ବିସ୍ତୃତ ଭାବେ ବର୍ଣ୍ଣନା କରାଯାଇଛି । ଶ୍ରୀ ଜଗନ୍ନାଥ ମନ୍ଦିର ମକଦ୍ଦମାରେ ୧୮୮୭ ସାଲରେ ମଧୁସୂଦନଙ୍କ ଅଭୂତପୂର୍ବ ସାଫଲ୍ୟ ପରେ, କଲିକତା ହାଇକୋର୍ଟରେ ଉପସ୍ଥାପିତ ଓଡ଼ିଶାର ମୁଖ୍ୟ କେଶ୍‌ଗୁଡ଼ିକ ମଧୁସୂଦନଙ୍କ

ହାତକୁ ଆସିଲା । ଏଥିପାଇଁ ମଧୁସୂଦନଙ୍କୁ ମାସକୁ ଅନ୍ତତଃ ଥରେ କଲିକତା ଯିବାକୁ ପଡୁଥିଲା । କାଳକ୍ରମେ ସେ ରେଳବାଇ କଂପାନିର ଅନ୍ୟତମ ଆଇନ ପରାମର୍ଶଦାତା ରୂପେ ଗୃହୀତ ହୋଇଥିଲେ । କଲିକତାରେ ମଧୁସୂଦନଙ୍କର ବୁଦ୍ଧିଜୀବୀ ତଥା ଏଭଳି ଅଭିଜାତ ସଂପ୍ରଦାୟ ସହିତ ଆନ୍ତରିକ ସଂପର୍କ ଥିଲା, ଯେଉଁମାନଙ୍କର ପୁରୀ ଓ ଭୁବନେଶ୍ୱର ପରିଦର୍ଶନ ଲାଗି ଏକ ଅହେତୁକ ଆକର୍ଷଣ ଥିଲା । ସେମାନଙ୍କ ଦ୍ୱାରା କଲିକତା-ପୁରୀ ରେଳରାସ୍ତା ନିର୍ମାଣପାଇଁ ମଧୁସୂଦନ ଚାପ ପ୍ରୟୋଗ କରିଥିଲେ । ଫଳରେ କଲିକତା-ପୁରୀ ରେଳପଥ ନିର୍ମାଣ ମଂଜୁରୀପ୍ରାପ୍ତ ହୋଇ ନିର୍ମାଣ କାର୍ଯ୍ୟ ୧୮୯୩-୯୪ ସାଲରୁ ଆରମ୍ଭ ହୋଇଥିଲା । ମଧୁସୂଦନ ୧୮୯୬ରେ ବଂଗଳା ବ୍ୟବସ୍ଥାପକ ସଭାର ସଦସ୍ୟ ଭାବରେ ଓଡ଼ିଶାର ରେଳପଥପାଇଁ ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଥିଲେ ।

ମଧୁସୂଦନଙ୍କ ପୂର୍ବରୁ ଉପସ୍ଥାପିତ ଯୋଜନା ଅନୁସାରେ ପ୍ରଥମେ ପୁରୀ-ବାରଂଗ ରେଳପଥ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇ ୧୮୮୬-୮୭ ବେଳକୁ ରେଳ ଚଳାଚଳ ଆରମ୍ଭ ହୋଇଥିଲା । ଏହା ସହିତ କଲିକତା ପଟୁ ରେଳନିର୍ମାଣ ଲାଗି କଲିକତା ଓ ଖଡ଼ଗପୁର ମଧ୍ୟରେ ରୂପନାରାୟଣ ନଦୀରେ ପୋଲ ନିର୍ମିତ ହୋଇ ନଥିବାରୁ ସେହି ନଦୀର ଅପରପାର୍ଶ୍ୱରେ ଥିବା କୋଲାଘାଟଠାରୁ କଟକ ପର୍ଯ୍ୟନ୍ତ ରେଳରାସ୍ତା ନିର୍ମାଣ ପ୍ରକ୍ରିୟା ଆରମ୍ଭ ହୋଇଥିଲା । ୧୮୯୭ ସାଲ ବେଳକୁ କୋଲାଘାଟଠାରୁ ଭଦ୍ରକ ତେଉଁ ଯାଜପୁର ରୋଡ଼ ସନ୍ନିକଟ ବୈତରଣୀ ନଦୀ ଅପରପାର୍ଶ୍ୱ ପର୍ଯ୍ୟନ୍ତ ରେଳପଥ ନିର୍ମାଣ ହୋଇ ରେଳ ଚଳାଚଳ ଆରମ୍ଭ ହୋଇ ଯାଇଥିଲା । ସେ ସମୟରେ ମଧୁସୂଦନଙ୍କର ଯାତ୍ରା ବିବରଣୀରୁ ଜଣାଯାଏ ଯେ, କଲିକତାଠାରୁ ଯାତ୍ରୀମାନେ ଷ୍ଟିମରରେ କୋଲାଘାଟ ଆସି ସେଠାରୁ ଟ୍ରେନ୍ ଧରି ଯାଜପୁର ରୋଡ଼ ପର୍ଯ୍ୟନ୍ତ ଆସୁଥିଲେ । ସେଠାରୁ ବୈତରଣୀ କେନାଲ୍ ଦେଇ ହାଇଲେବଲ୍ କେନାଲ୍ ମଧ୍ୟରେ ଷ୍ଟିମ୍ ଲଂଚ୍ (ଅଗ୍ନିବୋଟ୍) ଦ୍ୱାରା କଟକ ଆସୁଥିଲେ । ଏ ମଧ୍ୟରେ ଯାଜପୁର ରୋଡ଼ଠାରୁ ବାରଙ୍ଗ ପର୍ଯ୍ୟନ୍ତ ସମସ୍ତ ନଦୀରେ ପୋଲ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା । ଏ ଦିଗରେ ମାନ୍ଦ୍ରାସ ଓ ବିଶାଖା ପାଟଣାକୁ କଟକ ସହିତ ସଂଯୁକ୍ତ କରିବାପାଇଁ କୌଣସି ଯୋଜନା ନଥିଲେ ମଧ୍ୟ କଲିକତା-ପୁରୀ ରେଳପଥ ନିର୍ମାଣର ଅଗ୍ରଗତି ତଥା ମଧୁସୂଦନ ଆଦି ଜନନେତାଙ୍କର କ୍ରମାଗତ ଦାବି ଫଳରେ ଏହା ମଂଜୁରି ପ୍ରାପ୍ତ ହୋଇଥିଲା । ଦକ୍ଷିଣ ଦିଗରେ ୧୭.୫.୧୮୯୩ରେ କ୍ରିଷ୍ଣାନଦୀ ଉପରେ ପୋଲ ନିର୍ମାଣ ହୋଇ ପ୍ରଥମେ ମାନ୍ଦ୍ରାସ ବେଜୱାଡ଼ା ରେଳ ଚଳାଚଳ ଆରମ୍ଭ ହୋଇଥିଲା । ୧୮୯୪ ସାଲ ସେପ୍ଟେମ୍ବର ବେଳକୁ ରେଳ ରାଜମହେନ୍ଦ୍ରୀରୁ ବିଶାଖାପାଟଣା, ବିଜୟନଗର ଦେଇ ଶ୍ରୀକାକୁଲମ୍ ପର୍ଯ୍ୟନ୍ତ ଚାଲୁଥିଲା ଓ ଆଗକୁ ରେଳପଥ ନିର୍ମାଣ ସଂପ୍ରସାରିତ ହୋଇଥିଲା । ଏହାର ସୁଯୋଗ ନେଇ ସେହି ବର୍ଷ ସେପ୍ଟେମ୍ବର ଆଠ ତାରିଖରେ ମାନ୍ଦ୍ରାଜର ଗଭର୍ଣ୍ଣର ବେଲେର୍କ ସାହେବ ରେଳପଥରେ ସେତେବେଳର ଅବିଭକ୍ତ ଗଞ୍ଜାମ ଜିଲ୍ଲାକୁ ଆସି ଋଷିକୂଲ୍ୟା ପୟଃ ପ୍ରଣାଳୀର ନିର୍ମାଣ କାର୍ଯ୍ୟ ପରିଦର୍ଶନ କରିଥିଲେ । ଏହାପରେ ୧୮୯୬ ସାଲ ଜୁନ୍ ୬ ତାରିଖରେ ଖୋରଧା ରୋଡ଼ ମଧ୍ୟରେ ରେଳ ଚଳାଚଳ ଆରମ୍ଭ ହୋଇଥିଲା ।

ଏ ଦିଗରେ ଯାଜପୁର ରୋଡ଼ ଓ ବାରଙ୍ଗ ମଧ୍ୟରେ ପ୍ରଥମେ ବୈତରଣୀ ଓ ବ୍ରାହ୍ମଣୀ ନଦୀ ଉପରେ ସେତୁ ନିର୍ମାଣ ସରିଥିଲା । କାଠଯୋଡ଼ି କୁଆଖାଇରେ ଡିସେମ୍ବର ୧୮୯୭ ସାଲରେ

ପୋଲ ନିର୍ମାଣ ଆରମ୍ଭ ହୋଇ ୧୯୦୦ ସାଲ ମାର୍ଚ୍ଚ ମାସରେ ସମାପ୍ତ ହୋଇଥିଲା । ମହାନଦୀର ପୋଲ ନିର୍ମାଣ ୧୮୯୮ ସାଲ ଫେବ୍ରୁଆରି ମାସରେ ଆରଂଭ ହୋଇ ୧୯୦୦ସାଲ ମାର୍ଚ୍ଚ ଆଠ ତାରିଖରେ ଉଦ୍‌ଘାଟନ ହୋଇଥିଲା । ଏ ମଧ୍ୟରେ କୋଲାଘାଟ ସନ୍ନିକଟ ରୂପନାରାୟଣ ନଦୀରେ ପୋଲ ନିର୍ମାଣ ହୋଇ ୧୯୦୦ ସାଲ ଏପ୍ରିଲ ମାସ ସୁଦ୍ଧା ଶେଷ ହୋଇଥିବାରୁ ସେହି ବର୍ଷ ମେ ମାସରେ ପୁରୀ-ହାଓ୍ୱଡ଼ା ରେଲ ଚଳାଚଳ କରିଥିଲା ।

୧୯୦୦ ସାଲ ଜୁନ୍ ବେଳକୁ ଖୋର୍ଦ୍ଧାରୋଡ଼ ଓ କଟକ ବାଟଦେଇ ମାନ୍ଦ୍ରାଜ- ହାଓଡ଼ା ରେଳ ଚଳାଚଳ କଲା । ମାତ୍ର ଗୋଦାବରୀ ପୋଲ ନିର୍ମାଣ ସରି ନଥିବାରୁ ଯାତ୍ରୀମାନଙ୍କୁ ଗୋଦାବରୀ ନଦୀ ଷ୍ଟିମ୍ ଲଂଚ୍‌ଦ୍ୱାରା ପାରିହେବାକୁ ପଡୁଥିଲା । ଏହି ପୋଲ ୧୪.୧୨.୧୯୦୦ରେ ଲର୍ଡ଼ କର୍ଜନଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା ।

ହାଓ୍ୱଡ଼ା-ମାନ୍ଦ୍ରାଜ ରେଳରାସ୍ତାର ସୁଯୋଗ ନେଇ ମୟୂରଭଂଜ ମହାରାଜା ଓ ପାରଳାଖେମୁଣ୍ଡିର ରାଜା(ଜମିଦାର)ମାନେ ସେମାନଙ୍କ ଅଂଚଳକୁ ରେଳରାସ୍ତା ନିର୍ମାଣର ପ୍ରସ୍ତାବ ଦେଇଥିଲେ । ତାହା ମଂଜୁର ହୋଇ ରେଳରାସ୍ତା ନିର୍ମାଣ ଆରମ୍ଭ ହୋଇଯାଇଥିଲା । ପାରଳାଖେମୁଣ୍ଡି ରେଳରାସ୍ତା ୧୯୦୧ ସାଲରେ ସମାପ୍ତ ହୋଇଥିଲା ଓ ରୂପ୍‌ସା-ବାରିପଦା ରେଳପଥ ଖୋଲିଲା ୧୯୦୫ ସାଲରେ, ଯହିଁରେ ବଙ୍ଗଳାର ଗଭର୍ଣ୍ଣର ଏଣ୍ଡ୍ରୁ ଫ୍ରେଜର ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ବିଜୟନଗର-ରାୟପୁର ରେଳରାସ୍ତା ମଧ୍ୟ ୧୮୯୭ ସାଲ ଅକ୍ଟୋବର ୧୩ ତାରିଖରେ ପାର୍ଲାମେଣ୍ଟର ମଂଜୁରିପ୍ରାପ୍ତ ହୋଇଥିଲା । ଏ ସମସ୍ତ ବିବରଣୀରୁ ଜଣାଯାଏ, ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଓଡ଼ିଶାର ମୁଖ୍ୟ ରେଳପଥ ନିର୍ମାଣ କରାଯାଇ ତିମିରାଚ୍ଛନ୍ନ ଓଡ଼ିଶାକୁ ଆଧୁନିକ ଯୁଗରେ ପ୍ରବେଶ କରିବାପାଇଁ ପରମ ସୁଯୋଗ ପ୍ରଦାନ କରାଯାଇଥିଲା । ପରବର୍ତ୍ତୀ ଶହେ ବର୍ଷରେ, ଏହି ବିଂଶ ଶତାବ୍ଦୀରେ, ଓଡ଼ିଶା ରେଳନିର୍ମାଣ କ୍ଷେତ୍ରରେ କିପରି ବିଡ଼ମ୍ବିତ ହୋଇଛି, ତାହା ଚିନ୍ତା କଲେ କେନ୍ଦ୍ରର ଓଡ଼ିଶା ପ୍ରତି ଅବହେଳା ହିଁ ପୁରୋଭାଗରେ ପ୍ରତିଫଳିତ ହୁଏ ।

ସଂବଲପୁରକୁ ଉପକୂଳ ଅଂଚଳ ସହିତ ରେଳପଥଦ୍ୱାରା ସଂଯୁକ୍ତ କରିବା ମଧୁସୂଦନଙ୍କର ଏକ ସ୍ୱପ୍ନ ଥିଲା , ଯେଉଁଥିପାଇଁ ୧୯୧୫ ସାଲରେ ଇମ୍ପେରିଆଲ୍ କାଉନ୍‌ସିଲ୍‌ରେ ସେ ଦୃଢ଼ ଦାବି ଉପସ୍ଥାପନ କରିଥିଲେ । ଯାହାହେଉ ପ୍ରାୟ ଶହେ ବର୍ଷର ଅଂତରାଳରେ ମଧୁସୂଦନଙ୍କର ସେହି ସ୍ୱପ୍ନ ସାକାର ହୋଇଛି, ତାଙ୍କର ଦେଢ଼ଶହ ବର୍ଷ ଜୟନ୍ତୀ ଅବସରରେ ।



# ନୂତନ ଓଡ଼ିଶାର ଇତିହାସ ଓ ଲେଖନୀକାର

ସ୍ୱାଧୀନତା ସଂଗ୍ରାମ ଅପେକ୍ଷା, ଓଡ଼ିଶାର ପ୍ରଥମ ଭାଷାଭିତ୍ତିକ ପ୍ରଦେଶ ଗଠନର ପ୍ରକ୍ରିୟା ସମଗ୍ର ଭାରତକୁ ମାର୍ଗଦର୍ଶନ କରିଥିଲା । ଏହାର ରୋମାଞ୍ଚକର ଇତିହାସ ସଂକଳନ କରିବା ହେଉଛି ଓଡ଼ିଶା ସରକାରଙ୍କର ପ୍ରଥମ କର୍ତ୍ତବ୍ୟ । ମାତ୍ର ସେ ଦିଗରେ ସାମାନ୍ୟତମ ପ୍ରଚେଷ୍ଟା ମଧ୍ୟ ଆରମ୍ଭ ହୋଇ ନାହିଁ । ପରିଣାମରେ ଏ କ୍ଷେତ୍ରରେ ଥିବା ସମସ୍ତ ତଥ୍ୟାବଳୀ ତଥା ବିବରଣୀ ବର୍ତ୍ତମାନ ଅବଲୁପ୍ତ । ମାତ୍ର ସେ ଯୁଗର କର୍ତ୍ତବ୍ୟବୋଧର ଆହ୍ୱାନରେ ସେ କାଳର ଦୂରଦର୍ଶୀ ଲେଖନୀକାରମାନେ ସେମାନଙ୍କର ମହତ୍ତର ଅବଦାନମାନ ଛାଡ଼ିଯାଇଛନ୍ତି । ଏହାହିଁ ପରମ ଆଶ୍ୱାସନା ଓ ଆଶ୍ୱସ୍ତିର ବିଷୟ । ୧୮୬୬ ନଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସ ସମୟରୁ ନିରସ୍ତ୍ର ଓଡ଼ିଆ ଜାତି, ଓଡ଼ିଆ ଭାଷା ସଂରକ୍ଷଣର ସଂଗ୍ରାମ ଏବଂ ୧୯୩୬ ସାଲ ପର୍ଯ୍ୟନ୍ତ ଦୀର୍ଘ ସତୁରୀବର୍ଷ ଧରି ଓଡ଼ିଶା ପ୍ରଦେଶ ସ୍ଥାପନାଲାଗି ଯେଉଁ ବିରାମହୀନ ସଂଘର୍ଷ କରିଥିଲା, ତାହାର ସମଗ୍ର ବିସ୍ତାରିତ ବିବରଣୀ, ଓଡ଼ିଆ ଜାତିର ମହାନ ଭାଷ୍ୟକାର ଗୌରୀଶଙ୍କର ରାୟ ତାଙ୍କର ସଂପାଦିତ ଉତ୍କଳଦୀପିକା ପତ୍ରିକାରେ ୧୮୬୬ ସାଲରେ ଅତ୍ୟନ୍ତ ପ୍ରାଣବନ୍ତ ଓ ମାର୍ମିକ ଭାବରେ ଲିପିବଦ୍ଧ କରିଯାଇଛନ୍ତି ।୧୯୧୭ରେ ଗୌରୀଶଙ୍କର ରାୟଙ୍କର ତିରୋଧାନ ପରେ, ଏହାକୁ ପରବର୍ତ୍ତୀ ସଂପାଦକମାନେ ୧୯୩୬ ସାଲ ପର୍ଯ୍ୟନ୍ତ ପ୍ରକାଶିତ କରି ଏକ ମହାନ ଐତିହାସିକ କର୍ତ୍ତବ୍ୟ ସଂପାଦନ କରିଯାଇଛନ୍ତି । ଏ ସଂପର୍କରେ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ବଲପୁର ହିତୈଷିଣୀ ଏବଂ ଶଶିଭୂଷଣ ରଥଙ୍କ ସଂପାଦିତ ସାପ୍ତାହିକ ଆଶାରେ ଏ ସଂପର୍କୀୟ ବିବରଣୀମାନ ପ୍ରକାଶିତ ହୋଇଛି ।

ଓଡ଼ିଶାର ପଶ୍ଚିମାଞ୍ଚଳରେ 'ସମ୍ବଲପୁର ହିତୈଷିଣୀ', ବାମଣ୍ଡାର ମହାରାଜା ସୁଢ଼ଳ ଦେବଙ୍କର ପୃଷ୍ଠପୋଷକତାରେ ୧୮୮୯ ସାଲରୁ ସାପ୍ତାହିକ ପତ୍ରିକାରୂପେ ଦେବଗଡ଼ଠାରୁ କ୍ରମାନ୍ୱୟରେ ୧୯୨୩ ସାଲ ପର୍ଯ୍ୟନ୍ତ ମୁଦ୍ରିତ ହୋଇଥିଲା । ସେହିପରି ଦକ୍ଷିଣ ଓଡ଼ିଶାର ମୁଖ୍ୟ ସାଂସ୍କୃତିକ କେନ୍ଦ୍ର ବ୍ରହ୍ମପୁରଠାରୁ ଶଶିଭୂଷଣ ରଥଙ୍କଦ୍ୱାରା ଆଶା ପତ୍ରିକା ସାପ୍ତାହିକ ରୂପେ ୧୯୧୩ରୁ ୧୯୩୬ ସାଲ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା । ଏହି ସମସ୍ତ ପତ୍ରିକାର ପୁରାତନ ସଂଖ୍ୟାମାନ ( ଅଳ୍ପ କିଛି

ସଂଖ୍ୟା ବାଦ୍ ଦେଲେ) ଯହିଁରେ ଓଡ଼ିଶା ପ୍ରଦେଶ ସ୍ଥାପନାର ସବିଶେଷ ବିବରଣୀମାନ ସଂକଳିତ ହୋଇଥିଲା, ସେ ସମସ୍ତ ଓଡ଼ିଶା ରାଜ୍ୟ ଅଭିଲେଖାଗାର ଭୁବନେଶ୍ୱରରେ ସଂରକ୍ଷିତ ରହିଛି ।

ସେହିପରି ଉତ୍ତର ଓଡ଼ିଶାର ପ୍ରାଣକେନ୍ଦ୍ର ବାଲେଶ୍ୱରରୁ ପ୍ରକାଶିତ ହେଉଥିଲା ସାପ୍ତାହିକ 'ସମ୍ବାଦ ବାହିକା' । ଏହା ବ୍ୟାସକବି ଫକୀରମୋହନଙ୍କର ଆଶୀର୍ବାଦ ପ୍ରାପ୍ତ ହୋଇଥିଲା । ଏହାର ପୁରାତନ ସଂଖ୍ୟାଗୁଡ଼ିକ ୧୮୮୮ ସାଲରୁ ୧୯୨୩ ପର୍ଯ୍ୟନ୍ତ ଉତ୍କଳ ସାହିତ୍ୟ ସମାଜର ମଧୁସୂଦନ ପାଠାଗାରରେ ସଂରକ୍ଷିତ ରହିଛି । ସେହିପରି ମଧ୍ୟ ସଂରକ୍ଷିତ ରହିଛି ବାଲେଶ୍ୱରରୁ ପ୍ରକାଶିତ ସାପ୍ତାହିକ 'ଓଡ଼ିଆ ଓ ନବସଂବାଦ'ର ପୁରାତନ ସଂଖ୍ୟାଗୁଡ଼ିକ ।

ଏହି ସମସ୍ତ ପତ୍ରିକା ତଥା ଉତ୍କଳ ସାହିତ୍ୟ, ସହକାର, ଓ ନବୀନ ଆଦି ସାହିତ୍ୟଭିତ୍ତିକ ପତ୍ରିକାରେ ଓଡ଼ିଶା ପ୍ରଦେଶ ଗଠନଲାଗି ହୋଇଥିବା ସଂଗ୍ରାମର ବିସ୍ତୃତ ବିବରଣୀ ରହିଛି । ଏଗୁଡିକ ସଙ୍କଳିତ ହେବା ଏ ଯୁଗର ଚରମ ଆବଶ୍ୟକତା । ଏଥିପାଇଁ ସରକାରୀ ପ୍ରୋତ୍ସାହନ ଓ ପ୍ରଚେଷ୍ଟା ଏକାନ୍ତ ଆବଶ୍ୟକ । ଏହା ଜାତୀୟ ଜାଗରଣରେ ସହାୟକ ହୋଇ ପାରିବ ।

ଓଡ଼ିଶା ସରକାରଙ୍କର ପକ୍ଷରୁ ଏ ଦିଗରେ କୌଣସି ଉଦ୍ୟମ ଆରମ୍ଭ ହୋଇ ନଥିଲେ ମଧ୍ୟ ଓଡ଼ିଶା ଆଧାରରେ, ପରେ ଗଠିତ ହୋଇଥିବା ଆନ୍ଧ୍ର, ତାମିଲ୍‌ନାଡୁ, କର୍ଣ୍ଣାଟକ, ଗୁଜୁରାଟ ଓ ମହାରାଷ୍ଟ୍ରର ଭାଷାଭିତ୍ତିକ ପ୍ରଦେଶ ଗଠନର ଇତିହାସ ବହୁ ଖଣ୍ଡରେ କେବଳ ସଂକଳିତ ହୋଇ ନାହିଁ, ସଂଗ୍ରାମର ସାରଥିମାନଙ୍କ କର୍ମ କ୍ଷେତ୍ରକୁ ସ୍ମାରକୀରେ ପରିଣତ କରାଯାଇ ବିଭିନ୍ନ ପ୍ରତିଷ୍ଠାନମାନ ଗଠିତ ହୋଇଛି ଓ ସେମାନଙ୍କର ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତିମାନ ପ୍ରତିଷ୍ଠା କରାଯାଇଛି ।

ବାସ୍ତବିକ୍ ବର୍ତ୍ତମାନର ଓଡ଼ିଆ ଜାତୀୟତା ଅବଲୁପ୍ତିର ଶେଷ ପର୍ଯ୍ୟାୟରେ । ଲୁଣ୍ଠନଯୋଗୁଁ ଓଡିଶା ଦରିଦ୍ରରୁ ଦରିଦ୍ରତର ହେବାରେ ଲାଗିଛି । ବିପୁଳ ପ୍ରାକୃତିକ ବିଭବ ଓ ଖଣିଜ ସଂପଦରେ ସମନ୍ୱିତ ଦେଶ ନିରାଭରଣ ହେବାର ତ୍ୱରିତ ପର୍ଯ୍ୟାୟରେ । ଏଣୁ ଓଡ଼ିଆ ଜାତୀୟତାର ଆଧାରରେ ସମନ୍ୱିତ ଏହି ମହାନ ଗ୍ରନ୍ଥମାନଙ୍କର ଆଶୁ ସଂକଳନ ଓ ପ୍ରକାଶନ ଅପରିହାର୍ଯ୍ୟ ହୋଇପଡ଼ିଛି ।

ଦୁଃଖ ବିଷ ଜର୍ଜରିତ ଉତ୍କଳ ଦେହରେ
ସମ୍ମିଳନୀ ତୁହି ସିନା ଢାଳୁଛୁ ଅମୀୟ
ନୈରାଶ୍ୟ ସମୀର ଘୋର ଦୁର୍ଭେଦ୍ୟ ରାଜ୍ୟରେ
ତୁହି ସିନା ସଞ୍ଚାରିଲୁ ଉଜ୍ଜ୍ୱଳ ଆଲୁଅ ।
ଲକ୍ଷଲକ୍ଷ ଉତ୍କଳୀୟ ପଥଭ୍ରାନ୍ତ ହୋଇ
ଭ୍ରମୁଥିଲେ ଇତସ୍ତତଃ ଶୂନ୍ୟମନେ ଦିନେ
ତୋର ଆବିର୍ଭାବେ ସଭା ଚଇତନ୍ୟ ପାଇ
ଧାଇଁଲେଣି ସର୍ବେ ଆଜି କରମ ପ୍ରାଙ୍ଗଣେ ।''

**-ରତ୍ନରେଣୁ ବାଳକୃଷ୍ଣ ପଟ୍ଟନାୟକ**



# ରାଷ୍ଟ୍ରପତିଙ୍କ ସନ୍ଦେଶରେ ଓଡ଼ିଶା ଦିବସ

୨୦୦୨ ସାଲର ଏପ୍ରିଲ ପହିଲାରେ 'ଓଡ଼ିଶା ଦିବସ' କିଛି ଉଦ୍ଦୀପନା ମଧ୍ୟରେ, ଓଡ଼ିଶାର ପ୍ରଶାସନ, କେତେକ ସାଂସ୍କୃତିକ ଅନୁଷ୍ଠାନ, ଶିକ୍ଷାୟତନ, ଅନେକ ରାଜନୈତିକ ଦଳମାନଙ୍କ ପକ୍ଷରୁ ପାଳିତ ହୋଇଯାଇଛି । ଏହି ଅବିସ୍ମରଣୀୟ ଦିବସ ଉପଲକ୍ଷେ, ଦକ୍ଷିଣ ଭାରତରୁ ଆଗତ ମହାନ ପ୍ରଶାସନବିତ୍ ତଥା ପ୍ରଖ୍ୟାତ ସଂବିଧାନ ବିଶାରଦ, ଭାରତର ବିଦ୍ୱାନ ରାଷ୍ଟ୍ରପତି ଶ୍ରୀଯୁକ୍ତ କେ.ଆର୍.ନାରାୟଣନ୍‌ଙ୍କ ପକ୍ଷରୁ ଓଡ଼ିଶା ଦିବସ ଉପଲକ୍ଷେ ଯେଉଁ ମହତ୍ତ୍ୱପୂର୍ଣ୍ଣ ସନ୍ଦେଶ ପ୍ରସାରିତ ହୋଇଥିଲା, ତାହାର ପ୍ରଥମ କିଛି ପଙ୍‌କ୍ତି ଏହିପରି ଥିଲା -

Message of Sj. K.R. Narayanan
Hon'ble president of India
on the occasion of Odisha Day 2002

Odisha had had the distinction of many first to its credit. It was the first state in our country to have been created on basis of language. It constituted the fruition of a long cherished dream of our nationalist leaders for linguistic reoraganisation of states. x x x

ସମ୍ମାନୀୟ ରାଷ୍ଟ୍ରପତି କେ.ଆର୍.ନାରାୟଣନ୍‌ଙ୍କର 'ଓଡ଼ିଶା ଦିବସ' ୨୦୦୨ ଉପଲକ୍ଷେ ପ୍ରେରିତ ସନ୍ଦେଶ ।

''ଓଡ଼ିଶା ବହୁ କ୍ଷେତ୍ରରେ ପ୍ରଥମ ସ୍ଥାନ ଲାଭ କରିବାର ଗୌରବ ଅର୍ଜନ କରିପାରିଛି । ଏହା ଆମ ଦେଶର ପ୍ରଥମ ରାଜ୍ୟ ଯାହା ଭାଷାଭିତ୍ତିରେ ଗଠିତ ହୋଇଥିଲା । ଏହା ଆମ୍ଭମାନଙ୍କ ଜାତୀୟ ନେତାମାନଙ୍କର ଭାଷାଭିତ୍ତିରେ ପ୍ରଦେଶ ଗଠନ କରିବାପାଇଁ ଦୀର୍ଘକାଳର ଆକାଙ୍‌କ୍ଷିତ ସ୍ୱପ୍ନକୁ ସାକାର କରିପାରିଥିଲା ।

କେ.ଆର୍. ନାରାୟଣନ୍ (ମହାମହିମ ଭାରତର ରାଷ୍ଟ୍ରପତି), ମାର୍ଚ୍ଚ ୨୮,୨୦୦୨, ନୂଆଦିଲ୍ଲୀ

କିନ୍ତୁ ହେ ପାଠକ ବର୍ଗ ! ଆପଣମାନେ ଜାଣନ୍ତି କି ? ଓଡ଼ିଶାର କିଛି ତରୁଣ ଉଦୀୟମାନ କଂଗ୍ରେସ ନେତୃବର୍ଗ ସ୍ୱାଧୀନତା ପୂର୍ବରୁ ଓଡ଼ିଶା ପ୍ରଦେଶ ଗଠନକୁ କେବଳ ବିରୋଧ କରୁନଥିଲେ, ପ୍ରଦେଶ ଗଠନର ଘୋଷଣାପରେ ମଧ୍ୟ ଏହି ପ୍ରସ୍ତାବକୁ ପ୍ରତ୍ୟାଖାନ କରିବାପାଇଁ ଦୃଢ଼ ସ୍ୱରରେ ନିବେଦନ କରିଥିଲେ । ଏହି ତଥ୍ୟ -'ଦଶବର୍ଷର ଓଡ଼ିଶା' ପୁସ୍ତକରେ ସବିଶେଷ ଭାବେ ଲିପିବଦ୍ଧ ରହିଛି । ତେଣୁ ୧.୪.୧୯୩୬ରେ ଯେଉଁ ଓଡ଼ିଶା ପ୍ରଦେଶ ସ୍ଥାପନର ସମାରୋହ ହେଲା, ତହିଁରୁ ମୁଖ୍ୟ ରାଜନୈତିକ ଦଳ କଂଗ୍ରେସ ନିଜକୁ ଦୂରେଇ ରଖିଥିଲା । କେବଳ ସେହି ଦିନ ପାରଳା ମହାରାଜା ବାରବାଟୀ ଦୁର୍ଗରେ ଏକ ଭୋଜି ସଭାର ଆୟୋଜନ କରିଥିଲେ । ୧୫୬୮ ସାଲରେ ଓଡ଼ିଶାର ସ୍ୱାଧୀନତା ରବି ଅସ୍ତମିତ ହେବାପରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ଓଡ଼ିଶାର ଏକମାତ୍ର ଉପଲବ୍ଧି ଥିଲା । ମାତ୍ର ସମଗ୍ର ଭାରତର ପ୍ରଥମ ଭାଷାଭିତ୍ତିକ ପ୍ରଦେଶ ଭାବରେ ଏହା ସଂଶୟ ବିଜଡ଼ିତ ତଥା ତିମିରାଚ୍ଛାଦିତ ଥିଲା । ଏ ସଂପର୍କରେ ତତ୍କାଳୀନ ରାଷ୍ଟ୍ରପତି , ଦକ୍ଷିଣ ଭାରତୀୟ କେ.ଆର୍.ନାରାୟଣନ୍‌ଙ୍କୁ ସ୍ୱତନ୍ତ୍ର ନିବେଦନ କରିବାରୁ, ଏହି ଗୁରୁତ୍ୱପୂର୍ଣ୍ଣ ତଥ୍ୟଟି ୨୦୦୨ ସାଲର 'ଓଡ଼ିଶା ଦିବସ' ସନ୍ଦେଶରେ ସଂଯୋଜିତ ହୋଇଥିଲା ।

୧୯୩୬ ସାଲର ଏପ୍ରିଲ୍ ପହିଲାରେ ଓଡ଼ିଶା ପ୍ରଦେଶ ସ୍ଥାପନାର ସ୍ମୃତି, ପରବର୍ତ୍ତୀ ବର୍ଷମାନଙ୍କରେ ଲୋପ ପାଇ ଯାଇଥିଲା । ତେଣୁ 'ଓଡ଼ିଶା ଦିବସ' ପାଳନର ସ୍ମୃତି, ବିସ୍ମୃତିର ଗର୍ଭରେ କେବଳ ଲୋପ ପାଇ ଯାଇ ନଥିଲା, ଓଡ଼ିଆ ଜାତୀୟତାର ଅଧ୍ୟାୟରେ ପୂର୍ଣ୍ଣଚ୍ଛେଦ ଟଣାଯାଇଥିଲା, ଯାହା ଏବେ ମଧ୍ୟ ବଳବତ୍ତର ରହିଛି ।

ସ୍ୱାଧୀନତାର ପ୍ରାପ୍ତିପରେ, କ୍ଷମତାପୁଷ୍ଟ ରାଜନୈତିକ ନେତୃବର୍ଗ ଓଡ଼ିଆ ଜାତୀୟତାର ମୂଳୋତ୍ପାଟନ କରିଦେଲେ । ଦୀର୍ଘ କାଳ ଧରି ତୁଙ୍ଗ ଶିଖରୀ ଚୂଳ, କିମ୍ବା ବନ୍ଦେ ଉତ୍କଳ ଜନନୀର ଉଚ୍ଚାରିତ ସ୍ୱର ନୀରବ ହୋଇଗଲା । ସ୍ୱାଧୀନତାର ପରବର୍ତ୍ତୀ ବର୍ଷରେ ୧୯୪୮ ସାଲରେ, ନୂତନ ଓଡ଼ିଶାର ପ୍ରତିଷ୍ଠାତା ଜାତୀୟ ଗୌରବ ମଧୁସୂଦନ ଦାସଙ୍କ ଜନ୍ମ ଶତାବ୍ଦୀ ପାଳନର ଅବସର ଉପନୀତ ହୋଇଥିଲା । ଏହି ଉପଲକ୍ଷେ କିଛି ନିବେଦନ ପତ୍ର ଆମେ କିଛି ବନ୍ଧୁ, ସର୍ବତ୍ର ପ୍ରସାରିତ କରିଥିଲୁ । କେବଳ 'ସମାଜ' ପତ୍ରିକାରେ 'ମଧୁ ଶତାବ୍ଦୀ' ନାମକ ଏକ ସମ୍ପାଦକୀୟ ବ୍ୟତୀତ ନୀରବତା ମଧ୍ୟରେ ସମସ୍ତେ ଯେପରି ଶୋଇଯାଇଥିଲେ । ଜାତୀୟ ଅକୃତଜ୍ଞତା ଏଭଳି ଚରମ ବିପର୍ଯ୍ୟସ୍ତ ସ୍ଥିତିରେ ପହଞ୍ଚିପାରେ, ତାହା କେବଳ ଅକଳ୍ପନୀୟ ନଥିଲା, ଅଚିନ୍ତନୀୟ ମଧ୍ୟ ଥିଲା ।

ଜାତୀୟ ସ୍ଥାଣୁତାର ଏହି ପର୍ଯ୍ୟାୟରେ ୧୯୫୧ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ମର୍ଯ୍ୟାଦାବାନ 'ଉତ୍କଳ ଗୌରବ' ବୋଲି ପ୍ରକାଶିତ ହୋଇଥିଲା, ମଧୁସୂଦନଙ୍କ ପ୍ରତି ଏକ ନିବେଦିତ ଅର୍ଘ୍ୟ ରୂପରେ ନବକିଶୋର ଦାସଙ୍କ 'ଉତ୍କଳ ଗୌରବ ମଧୁସୂଦନ' । ପରବର୍ତ୍ତୀ ବର୍ଷ ଓଡ଼ିଆ ଜାତୀୟତା ଜାଗରଣର ପବିତ୍ର ପୀଠ, ୧୯୫୨ ସାଲରେ ମଧୁସୂଦନଙ୍କର ଉଦ୍ଧାମ କର୍ମଗୀତ ଓଡ଼ିଶାର ଦ୍ୱିତୀୟ ବାରବାଟୀ 'ମଧୁସ୍ମୃତି' ଶୈଳବାଳାଙ୍କ ଦତ୍ତ ପତ୍ର ଅନୁସାରେ ରହିଗଲା, ମହିଳା କଲେଜର ନିକ୍ଷିପ୍ତାଞ୍ଚଳରେ । ଏହି ଦତ୍ତ ପତ୍ରର ସର୍ତ୍ତାବଳୀରେ ଏହାକୁ ଜାତୀୟ ସ୍ମାରକୀ କରିବାପାଇଁ ସମସ୍ତ ସୁଯୋଗ ଥିବା ସତ୍ତ୍ୱେ ସରକାରୀ କଳର ନିଷ୍କ୍ରିୟତା ତଥା ଅନୁଦାରତା ଯୋଗୁଁ ଏହି ସ୍ମୃତିପୀଠ ଏବେ ବିପର୍ଯ୍ୟସ୍ତ ।

ପରବର୍ତ୍ତୀ କାଳରେ ୧୯୭୦ ଦଶକରେ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କର 'ଦେଶପ୍ରାଣ ମଧୁସୂଦନ'' ତଥା ସୁରେନ୍ଦ୍ର ମହାନ୍ତିଙ୍କର ଓଡ଼ିଆ ଜାତିର ମହାକାବ୍ୟ 'ଶତାବ୍ଦୀର ସୂର୍ଯ୍ୟ' ୧୯୭୧ ଓ ୧୯୭୦ ସାଲରେ ପ୍ରକାଶ ପାଇ ପ୍ରଚଣ୍ଡ ଉଦ୍‌ବେଳନ ସୃଷ୍ଟିକରିଥିଲା ଓ ଓଡ଼ିଆ ଚେତନାକୁ ଅଭିମନ୍ତ୍ରିତ କରିଥିଲା । ହେଲେ ରାଜନୈତିକ ଚେତନା ରହିଯାଇଥିଲା ସୁଷୁପ୍ତିର ପ୍ରଚଣ୍ଡ ଗ୍ରାସରେ। ୧୯୭୮ ସାଲରେ ସୁରେନ୍ଦ୍ର ମହାନ୍ତିଙ୍କ 'କୁଳବୃଦ୍ଧ' ମଧ୍ୟ ପ୍ରକାଶିତ ହୋଇଥିଲା ।

ରାଜ୍ୟ ପୁନର୍ଗଠନ କମିଶନଙ୍କର ସିଦ୍ଧାନ୍ତ ୧୯୫୬ ସାଲରେ ପ୍ରକାଶିତ ହେବାପରେ ଆନ୍ଧ୍ର, ତାମିଲ୍‌ନାଡ୍ରୁ, କର୍ଣ୍ଣାଟକ, କେରଳ, ମହାରାଷ୍ଟ୍ର ଆଦି ପ୍ରଦେଶମାନଙ୍କରେ ସେହି ଭାଷାଭିତ୍ତିକ ପ୍ରଦେଶ ସ୍ଥାପନାର ଦିବସ ପ୍ରତିବର୍ଷ ବିପୁଳ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ପାଳନ କରାଯାଉଥିବା ବେଳେ ଓଡ଼ିଶା ପାଇଁ ଏହା ରହିଯାଇଥିଲା ଅଶ୍ରୁତପୂର୍ବ ଏବଂ ଅଜ୍ଞାତ ହୋଇ । କେବଳ ରାଉରକେଲାରେ ସ୍ଥାପିତ 'ପ୍ରଗତି ଉତ୍କଳ ସଂଘ' ଯାହା ମଧୁସୂଦନଙ୍କର ସ୍ମୃତି ପୁନଃ ଜାଗରିତ କରିବାପାଇଁ ସମର୍ପିତ ଥିଲା, ତାହା ପ୍ରାୟ ୧୯୬୯ ସାଲରୁ 'ଓଡ଼ିଶା ଦିବସ ତଥା ମଧୁସୂଦନ ଜୟନ୍ତୀ'କୁ ଏପ୍ରିଲ ପହିଲା ଦିନ ନିରବଚ୍ଛିନ୍ନ ଭାବରେ ପାଳନ କରିଆସୁଛନ୍ତି । ଏଥିପାଇଁ ଯନ୍ତ୍ରୀ ଯଶସ୍ୱୀ ନରେଶ ଚନ୍ଦ୍ର ନାୟକଙ୍କର ମହତ୍ତ୍ୱପୂର୍ଣ୍ଣ ଭୂମିକା ଅବିସ୍ମରଣୀୟ ।

୧୯୭୫ ସାଲ ସମଗ୍ର ଭାରତ ପାଇଁ ଥିଲା ଏକ ଉଚ୍ଚାଟ ଆଉ ଉଦ୍‌ବେଳନର ବର୍ଷ । ଜୟପ୍ରକାଶଙ୍କର ସଂପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନ, ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପ୍ରଶାସନ ପ୍ରତି ଏକ ଦୁର୍ନିବାର ଶକ୍ତିରୂପେ ମଥା ଉତ୍ତୋଳନ କରି ପ୍ରଚଣ୍ଡ ବିଦ୍ରୋହୀ ଭୂମିକାରେ ଆବିର୍ଭାବ ହୋଇଥାଏ । ଜୟପ୍ରକାଶ ନାରାୟଣ ତାହାଙ୍କର ଓଡ଼ିଶା ଗସ୍ତସୂଚୀ ଅନୁସାରେ ୧.୪.୧୯୭୫ରେ ସଚିବାଳୟ ସମ୍ମୁଖ ପଡ଼ିଆ (ବର୍ତ୍ତମାନ ଇନ୍ଦିରାଗାନ୍ଧୀ ଉଦ୍ୟାନ)ରେ ଏକ ବିପୁଳ କ୍ରାନ୍ତିକାରୀ ଜନସମାବେଶର କାର୍ଯ୍ୟକ୍ରମ ଆହ୍ୱାନ କରିଥାନ୍ତି । ଏହା ସେ ବେଳର ଶ୍ରୀମତୀ ନନ୍ଦିନୀ ଶତପଥୀ ସରକାରଙ୍କ ପ୍ରତି ଏକ ସମ୍ଭାବ୍ୟ ବିପତ୍ତି ରୂପେ ଉଭା ହୋଇଥାଏ । ଏଣୁ ଏହା ଶ୍ରୀମତୀ ଶତପଥୀଙ୍କୁ ଗଭୀର ଆଶଙ୍କା ମଧ୍ୟକୁ ଟାଣି ନେଇଥାଏ । ଏହି ସ୍ଥିତିରେ ତାହାଙ୍କର କିଛି ପରାମର୍ଶଦାତା ଏହିପରି ଭାବରେ ମନ୍ତ୍ରଣା ପ୍ରଦାନ କଲେ, 'ମ୍ୟାଡ଼ାମ୍' ଆପଣ ଏଥିପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ଦୁଇଦିନ ପରେ ଏପ୍ରିଲ ପହିଲା, ଯେଉଁ ଦିବସରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପିତ ହୋଇଥିଲା । ରାଜ୍ୟ ସରକାରଙ୍କର ପକ୍ଷରୁ ସେହିଦିନ ପରେଡ଼ ପଡ଼ିଆରେ ଓଡ଼ିଶା ଦିବସ ପାଳନ କରନ୍ତୁ ଓ ଜୟପ୍ରକାଶଙ୍କର ସଭାକୁ ସ୍ଥାନାନ୍ତର କରିଦିଅନ୍ତୁ ।'' ଶ୍ରୀମତୀ ଶତପଥୀ ଏହି ପରାମର୍ଶ ଗ୍ରହଣକରି ୧.୪.୧୯୭୫ର ଅପରାହ୍ଣ ତଥା ସାୟଂକାଳରେ ପ୍ରଥମକରି ଆତସବାଜି ଓ ନୃତ୍ୟଗୀତ କାର୍ଯ୍ୟକ୍ରମ ମଧ୍ୟରେ 'ଓଡ଼ିଶା ଦିବସ' ପାଳନ କଲେ ଓ ଜୟପ୍ରକାଶଙ୍କ ସଭାକୁ ସ୍ଥାନାନ୍ତର କଲେ।

ବିଧିର ଏହି ଆଶ୍ଚର୍ଯ୍ୟଜନକ ବିଧାନ କ୍ରମେ ୧.୪.୧୯୭୫ରେ ଓଡ଼ିଶା ପ୍ରଦେଶ ସ୍ଥାପନାର ସୁଦୀର୍ଘ ୪୦ ବର୍ଷ ପରେ ଦ୍ୱିତୀୟ ଓଡ଼ିଶା ଦିବସ ପାଳିତ ହେଲା, ଯାହା ପରବର୍ତ୍ତୀ ବର୍ଷମାନଙ୍କରେ ତଥା ବର୍ତ୍ତମାନ ମଧ୍ୟ ପାଳିତ ହେଉଛି । ଅନ୍ୟଥା ତୁଚ୍ଛା ସଂକୀର୍ଣ୍ଣ ପ୍ରାଦେଶିକତାର ଆଳରେ ଆଜି

ମଧ୍ୟ ଏହାର ପାଳନର କୌଣସି ଆବଶ୍ୟକତା ନଥିଲା । ଏଥିରୁ ଓଡ଼ିଆ ପ୍ରାଦେଶିକତା କିପରି ଦୁର୍ବଳ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ, ସହଜେ ତାହା ଅନୁମେୟ ।

'ଓଡ଼ିଶା ଦିବସ' ବର୍ତ୍ତମାନ ପ୍ରତ୍ୟେକ ଜିଲ୍ଲାର ସଦର ମହକୁମାମାନଙ୍କରେ ପାଳନ କରାଯାଉଛି । ଅଥଚ ଗୋଟିଏ କିମ୍ବା ଦୁଇଟି ଜିଲ୍ଲାକୁ ଛାଡ଼ିଦେଲେ, ସଦର ମହକୁମାରେ ଓଡ଼ିଶା ପ୍ରଦେଶ ପ୍ରତିଷ୍ଠାତାଙ୍କର ପ୍ରତିମୂର୍ତ୍ତି ନାହିଁ । ଏହା ହିଁ ଓଡ଼ିଶା ଦିବସ ପାଳନର ତୀବ୍ର ବିରୋଧାଭାସ । ବହୁ ଆକୁଳ ନିବେଦନ, ବିକଳ ଆବେଦନ ତଥା ପଦାଙ୍କ ଅନୁସରଣ ପରେ ୧୯୯୮ ସାଲରେ ନୁହେଁ, ପରବର୍ତ୍ତୀ ବର୍ଷ ୧୯୯୯ରେ ଓଡ଼ିଶା ସରକାରଙ୍କ ପକ୍ଷରୁ ମଧୁସୂଦନଙ୍କର ଦେଢ଼ଶହ ବର୍ଷ ଜୟନ୍ତୀ ବିନା ଅର୍ଥ ସଂଯୋଜନାରେ ପାଳନ କରାଗଲା । ଅଥଚ ଓଡ଼ିଶା ପ୍ରଦେଶର ଅର୍ଦ୍ଧେକ ଭୂମିଭାଗ, ମଧୁସୂଦନଙ୍କର, ଓଡ଼ିଶାର ଜନସାଧାରଣଙ୍କ ଲାଗି ପ୍ରତିଶ୍ରୁତିବଦ୍ଧତାର ଦାନ । ମଧୁସୂଦନଙ୍କର ଦେଢ଼ଶହ ବର୍ଷ ଜୟନ୍ତୀ ପାଳନ ଅବସରରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଓଡ଼ିଶାର ତିରିଶି ଗୋଟି ଜିଲ୍ଲାରେ ୩୦ ଗୋଟି ପୂର୍ଣ୍ଣାଙ୍ଗ ଅଥବା ଆବକ୍ଷ ପ୍ରତିମୂର୍ତ୍ତି ପାଇଁ ୩୫ ଲକ୍ଷ ଟଙ୍କାର ନିର୍ମାଣ ବ୍ୟବସ୍ଥା ରହିଥିଲା, ତାହା ପ୍ରଶାସନର ତୁଙ୍ଗ ଅଧିକାରୀଙ୍କ ଅନାଗ୍ରହତାଯୋଗୁଁ ରୂପାୟିତ ହୋଇ ପାରିଲା ନାହିଁ କି ମଧୁସୂଦନଙ୍କର ବାସଭବନ 'ମଧୁସ୍ମୃତି' ଜାତୀୟ ସ୍ମାରକୀରେ ପରିଣତ ହୋଇ ପାରିଲା ନାହିଁ । ତେଣୁ ଓଡ଼ିଶାର ପ୍ରଶାସନପାଇଁ ମଧୁସୂଦନ ଚିରକାଳ ଲାଗି ରହିଗଲେ ଅପାଙ୍‌କ୍ତେୟ, ଅବାଞ୍ଛିତ ଆଉ ଅନନୁଗ୍ରହୀତ ଅଥଚ ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ପାଇଁ ମଧୁସୂଦନ ଥିଲେ ଟଲଷ୍ଟୟଙ୍କ ପରି ଅନ୍ୟତମ ମହାନ ମାର୍ଗଦର୍ଶକ ।



# ମଧୁସୂଦନ ଏବଂ ଶ୍ୱେତ ଆଉ ମାଟିଆ ସାମ୍ରାଜ୍ୟବାଦ

ନବ ଓଡ଼ିଶା ପ୍ରଦେଶ ଗଠନର ଇତିହାସ ଏ ପର୍ଯ୍ୟନ୍ତ ଯେପରି ଅସଂକଳିତ, ସେହିପରି ରହିଯାଇଛି ସଂଶୟ ବିଜଡ଼ିତ ଆଉ ରହସ୍ୟାବୃତ । ସ୍ୱତନ୍ତ୍ର ଓଡ଼ିଶାର ସ୍ଥାପନା କ୍ଷେତ୍ରରେ ଓଡ଼ିଆମାନଙ୍କୁ ବ୍ରିଟିଶ ପ୍ରଶାସନର ନିର୍ଯ୍ୟାତନା ଆଉ ଶୋଷଣ ବିରୁଦ୍ଧରେ ଯେଉଁପରି ସଂଗ୍ରାମ ସଂଚାଳିତ କରିବାକୁ ପଡୁଥିଲା, ତାହାଠାରୁ ଅଧିକ ପରିମାଣରେ ସଂଘର୍ଷ ସଂଯୋଜିତ କରିବାକୁ ପଡୁଥିଲା, ପଡ଼ୋଶୀ ପ୍ରଦେଶର ନେତୃବର୍ଗଙ୍କ ବିପକ୍ଷରେ । ଏହି ନେତୃବର୍ଗଙ୍କ ଅଧୀନରେ ଥିବା ବିଭାଜିତ ଓଡ଼ିଆଭାଷୀ ଅଂଚଳକୁ ସେମାନେ ଉପନିବେଶରେ ପରିଣତ କରି ଦାସତ୍ୱର ବନ୍ଧନରେ ନିବଦ୍ଧ କରିଥିଲେ । ନବ ଓଡ଼ିଶାର ଅନ୍ୟତମ ବିନ୍ଧାଣୀ ଭୁବନାନନ୍ଦ ଦାସ ଏମ୍.ପିଙ୍କ ଅନୁଶୀଳନ ହେଉଛି: ଜାତୀୟ ଗୌରବ ମଧୁସୂଦନ ଦାସ, ଭାରତୀୟମାନଙ୍କୁ ଅର୍ଥନୈତିକ ଓ ରାଜନୈତିକ ଶୋଷଣରୁ ଉଦ୍ଧାର କରିବାପାଇଁ, ଶ୍ୱେତ ସାମ୍ରାଜ୍ୟବାଦ(ଶ୍ୱେତ ବର୍ଣ୍ଣର ଇଂରେଜ ପ୍ରଶାସକ) ବିପକ୍ଷରେ ଯେପରି ସଂଗ୍ରାମ କରୁଥିଲେ, ସେହିପରି ମାଟିଆ ସାମ୍ରାଜ୍ୟବାଦର ଚକ୍ରାନ୍ତ (ପଡ଼ୋଶୀ ପ୍ରଦେଶର ମାଟିଆ ରଂଗର ଭାରତୀୟ ନେତୃବର୍ଗଙ୍କ ଓଡ଼ିଆଭାଷୀ ଅଂଚଳକୁ ବିଖଣ୍ଡିତ ରଖିବାପାଇଁ ଉଦ୍ୟମ) ବିରୁଦ୍ଧରେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମଧ୍ୟ ସଂଘର୍ଷ ଜାରି ରଖିଥିଲେ ।

ମଧୁସୂଦନ ଦାସ ୧୮୯୮ ସାଲରେ ଶ୍ୱେତ ସାମ୍ରାଜ୍ୟବାଦର ନିକ୍ଷେପଣ ବିରୋଧରେ ବଂଗୀୟ ଯୁବକମାନଙ୍କୁ ସରଳା ଦେବୀ ଚୌଧୁରୀ, ବିଭୂତି ଭୂଷଣ ଦତ୍ତରାୟ ଆଦିଙ୍କ ମାଧ୍ୟମରେ ଉଗ୍ରବାଦୀ ଭୂମିକାରେ ଅବତୀର୍ଣ୍ଣ କରାଇଥିଲେ । ଏମାନଙ୍କ ସହିତ ଋଷି ଅରବିନ୍ଦ ପରବର୍ତ୍ତୀ କାଳରେ ବୈପ୍ଳବିକ ଭୂମିକା ଗ୍ରହଣ କରିଥିଲେ । ସେହିପରି ମଧୁସୂଦନ, ସମଗ୍ର ଭାରତରେ ସର୍ବ ପ୍ରଥମେ ୧୯୦୦ ସାଲଠାରୁ ବିଦେଶୀ ବର୍ଜନ ଓ ସ୍ୱଦେଶୀ ନିୟୋଜନ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ପଣ୍ଡିତ ନୀଳକଣ୍ଠ ଦାସଙ୍କର ବକ୍ତବ୍ୟ ଅନୁସାରେ ଉଦଗ୍ର ଶପଥ ପାଠ ମାଧ୍ୟମରେ ଦେଶକୁ

ଅଭିମନ୍ତ୍ରିତ କରିଥିଲେ । ଏତଦ୍‌ବ୍ୟତୀତ ୧୯୧୩ରୁ ୧୯୧୬ ସାଲ ମଧ୍ୟରେ ମଧୁସୂଦନ, କେନ୍ଦ୍ର ଇମ୍ପିରିଆଲ୍ କାଉନ୍‌ସିଲ୍‌ର ସଦସ୍ୟ ରୂପେ ବ୍ରିଟିଶ୍ ତଥା ୟୁରୋପୀୟ ଶିଳ୍ପାୟନ କାର୍ଯ୍ୟକ୍ରମକୁ ଭାରତର 'ରକ୍ତ ଶୋଷଣ' ପ୍ରକ୍ରିୟା ବୋଲି ବଜ୍ର କଣ୍ଠରେ ଆଖ୍ୟାୟିତ କରଥିଲେ । ବହୁ ହଜାର ମାଇଲ୍ ଦୂରରେ କାର୍ଯ୍ୟରତ ୟୁରୋପୀୟ ଶିଳ୍ପ, ଭାରତକୁ ନିଃଶେଷିତ କରୁଥିଲା ବୋଲି ଉଗ୍ର ଜଟୁକ୍ତି ମାଧ୍ୟମରେ ସେ ତିରସ୍କାର କରୁଥିଲେ। ଆଜି ଏକବିଂଶ ଶତାବ୍ଦୀରେ ଅନ୍ୟ ପ୍ରକ୍ରିୟା ମାଧ୍ୟମରେ ବୋଧହୁଏ ଏହାର ପୁନାରବୃତ୍ତି ଆରମ୍ଭ ହୋଇଛି ।

ଅନ୍ୟ ପକ୍ଷରେ ୧୮୬୬ ସାଲର ନଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସ ପରେ ଇଂଲଣ୍ଡରେ ଭାରତ ସଚିବ ସାର୍ ଷ୍ଟାଫୋର୍ଡ଼ ନର୍ଥ କୋଟ ୨.୮.୧୮୬୭ରେ ବିଖଣ୍ଡିତ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନାପାଇଁ ସ୍ୱୀକୃତି ପ୍ରଦାନ କରିଥିଲେ । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ୧୮୭୪ ସାଲରେ ଆସାମ ଏବଂ ପରେ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ନିରପତ୍ତାର ସୁରକ୍ଷା ଦୃଷ୍ଟିରୁ ଗଠିତ ହୋଇଥିଲେ ମଧ୍ୟ ପଡ଼ୋଶୀ ପ୍ରଦେଶମାନଙ୍କର ନେତୃବର୍ଗଙ୍କର ତୀବ୍ର ମାଟିଆ ସାମ୍ରାଜ୍ୟବାଦ ବିରୋଧ ଯୋଗୁଁ ଓଡ଼ିଶା ପ୍ରଦେଶର ସ୍ଥାପନା ଆକାଶ କୁସୁମରେ ପରିଣତ ହୋଇଥିଲା । ଏଥିଲାଗି ମଧୁସୂଦନ ୧୮୯୭ ସାଲରେ ଲଣ୍ଡନରେ ଭାରତର ସଚିବ ଜର୍ଜ ହାମିଲ୍‌ଟନ୍‌ଙ୍କ ସହିତ ସାକ୍ଷାତ କରିଥିଲେ । ପରେ ୧୯୦୦ ସାଲ ଅକ୍ଟୋବର ଦ୍ୱିତୀୟ ସପ୍ତାହରେ ଭାରତର ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ ସାକ୍ଷାତ ପରେ ରିସ୍‌ଲେ ସର୍କୁଲାର ପ୍ରକାଶ ପାଇଥିଲା ଓ ପଶ୍ଚିମାଞ୍ଚଳର ମିଶ୍ରଣ ସମ୍ଭବପର ହୋଇଥିଲା ୧୬.୧୦.୧୯୦୫ରେ । ମାତ୍ର ମାନ୍ଦ୍ରାସ ପ୍ରଦେଶର ଭାରତୀୟ ନେତୃବର୍ଗଙ୍କର ତୀବ୍ର ମାଟିଆ ସାମ୍ରାଜ୍ୟବାଦର ପ୍ରବର୍ତ୍ତନ ଫଳରେ ନାଗାବଳୀ ନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ବୃହତ ଗଂଜାମ ଜିଲ୍ଲା ଓ ଜୟପୁର ଜମିଦାରୀର ମିଶ୍ରଣ, ଓଡ଼ିଶା ଡିଭିଜନ ସହିତ ସମ୍ଭବପର ହୋଇନଥିଲା ।

ପରବର୍ତ୍ତୀ ପର୍ଯ୍ୟାୟରେ, ୧୮.୯.୧୯୩୧ରେ ସାମୁଏଲ୍ ଓଡ଼ନେଲ୍‌ଙ୍କ ନେତୃତ୍ୱରେଯେଉଁ ଓଡ଼ିଶା ପ୍ରଦେଶ ସୀମା ନିର୍ଦ୍ଧାରଣ କମିଟି ଗଠିତ ହେଲା ସେଥିରେ ଓଡ଼ନେଲ୍‌ଙ୍କ ଛଡ଼ା ଏଚ୍.ଏମ୍.ମେହେଟା, ଟି.ଆର୍ ଫୁକନ୍ ସଦସ୍ୟ ଆଉ ବିହାର ପକ୍ଷରୁ ସଚ୍ଚିଦାନନ୍ଦ ସିହ୍ନା, ମାନ୍ଦ୍ରାସ ପକ୍ଷରୁ ସି.ଭି.ଏସ୍ ନାରାୟଣ ରାଜୁ, ଓଡ଼ିଶା ପକ୍ଷରୁ ପାରଳା ମହାରାଜା ପ୍ରତିନିଧିତ୍ୱ କରିଥିଲେ । ଏହି କମିଟି ୭.୧୧.୧୯୩୧ରେ ପାଟନାଠାରେ କାର୍ଯ୍ୟ ଆରମ୍ଭ କରି କ୍ରମାନ୍ୱୟରେ ଜାମସେଦପୁର, ଚାଇଁବସା, ସମ୍ବଲପୁର, ରାୟପୁର, ମେଦିନୀପୁର, ଗୋପାଳପୁର, ୱାଲ୍‌ଟିଆର୍, କୋକନାଡ଼ା ଓ ଶେଷରେ କଟକ ପରିଦର୍ଶନ କରି ୪୧୦ ବ୍ୟକ୍ତିଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରି ତାହାଙ୍କର ଅନୁସନ୍ଧାନ ୧୮.୧.୧୯୩୨ରେ ସମାପ୍ତ କରିଥିଲେ ।

ଏହି ଅନୁସନ୍ଧାନରେ ଭାଗ ନେଇଥିବା ଭୁବନାନନ୍ଦ ଦାସ ପାର୍ଲାମେଣ୍ଟ ସଦସ୍ୟ ୩୦.୧୨.୧୯୩୧ରେ ନବୀନ ପତ୍ରିକାରେ ପ୍ରକାଶିତ ସ୍ୱତନ୍ତ୍ର ନିବନ୍ଧରେ ଦର୍ଶାଇଛନ୍ତି ଯେ, "ସୀମା କମିଶନରଙ୍କ ଅନୁସନ୍ଧାନ ବେଳେ ଓଡ଼ିଆଙ୍କ ବିପକ୍ଷରେ ପଡ଼ୋଶୀ ପ୍ରଦେଶର ନେତୃବର୍ଗ ଉଗ୍ର ମାଟିଆ ସାମ୍ରାଜ୍ୟବାଦ ପ୍ରଦର୍ଶନ କରିଥିଲେ । ଏପରିକି ବିହାର କଂଗ୍ରେସର ନିଷେଧାତ୍ମକ ଆଦେଶ

ପରେ ପଣ୍ଡିତ ନୀଳକଣ୍ଠ ଦାସ ୧୦.୧.୧୯୩୨ରେ ରାଞ୍ଚିଠାରେ ଓଡ଼ନେଲ୍ କମିଟି ସମ୍ମୁଖରେ ତାହାଙ୍କର ସାକ୍ଷ୍ୟ ପ୍ରଦାନ କରିପାରି ନଥିଲେ ।''

ଏପରିକି ମହାତ୍ମାଗାନ୍ଧୀଙ୍କର ଅକୁଣ୍ଠ ସମର୍ଥନ ସତ୍ତ୍ୱେ ୧୯୨୮ ଡିସେମ୍ବରରେ ଅନୁଷ୍ଠିତ କଲିକତା କଂଗ୍ରେସରେ ସିନ୍ଧ ଓ କର୍ଣ୍ଣାଟକ ପ୍ରଦେଶ ଗଠନକୁ ସମର୍ଥନ ଦିଆଯାଇଥିଲେ ମଧ୍ୟ ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରାଯାଇଥିଲା । ଏଣୁ ସମଗ୍ର ଭାରତୀୟ ନେତୃବର୍ଗଙ୍କର ତୀବ୍ର ବିରୋଧ ଯୋଗୁଁ ଓଡ଼ିଆମାନଙ୍କୁ ଓଡ଼ିଶା ପ୍ରଦେଶ ଗଠନ ଲାଗି ନିଜ ଶିଙ୍ଗରେ ନିଜେ ମାଟି ଖୋଳିବାକୁ ପଡ଼ିଥିଲା ।

ଭୁବନାନନ୍ଦ ଦାସ ତାହାଙ୍କର ନିବନ୍ଧରେ ଉଲ୍ଲେଖ କରିଛନ୍ତି ଯେ ମାନ୍ଦ୍ରାସ ପ୍ରଦେଶର ନେତୃବର୍ଗ ଏହି ପରିଦର୍ଶନ ବେଳେ ଦାବି କରିଥିଲେ ଯେ ''ଆମେ ଓଡ଼ିଶା ପ୍ରଦେଶ ଗଠନକୁ ବିରୋଧ କରୁ, ଏହାକୁ ପ୍ରତ୍ୟାଖାନ କରାଯାଉ ।'' ପୁଣି ସେମାନେ ସୂଚାଇ ଥିଲେ ଯେ, ''ଗଂଜାମ ଜିଲ୍ଲା ଓ ଜୟପୁର ଜମିଦାରି ନିଅଣ୍ଟିଆ ଥିବାରୁ ତାହାକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ସହିତ ସଂଯୁକ୍ତ କରାନଯାଉ ।'' ଉପସଂହାରରେ ଭୁବନାନନ୍ଦ ଦାସ ଲେଖିଥିଲେ, ''ମେଦିନୀପୁରର ବିରେନ ସାସମଲମାନେ, ମାନ୍ଦ୍ରାସ ପ୍ରଦେଶର ନରସିଂହ ରାଜୁମାନେ ଓ ବିହାର ପ୍ରଦେଶର ପ୍ରସାଦମାନେ ଏକ ପକ୍ଷରେ ବ୍ରିଟିଶ ପ୍ରଶାସନର ଶ୍ୱେତ ସାମ୍ରାଜ୍ୟବାଦ ବିରୋଧରେ ଉଗ୍ର ସଂଗ୍ରାମ ସଂଚାଳିତ କରୁଥିବାବେଳେ , ସେମାନେ ବିଛିନ୍ନ ଓଡ଼ିଆଭାଷୀ ଅଞ୍ଚଳ ପ୍ରତି ମାଟିଆ ସାମ୍ରାଜ୍ୟବାଦର ଉଗ୍ର ଶୋଷଣ ପ୍ରକ୍ରିୟାକୁ ଜାରି ରଖି ଦାସତ୍ୱ ବନ୍ଧନରେ ଆବଦ୍ଧ କରିଛନ୍ତି ।''

ସୀମା ନିର୍ଦ୍ଧାରଣ କମିଟି, ତାହାଙ୍କର ପରିଦର୍ଶନର ଶେଷ ପର୍ଯ୍ୟାୟରେ ୧୯୩୨ ସାଲର ପ୍ରଥମ ସପ୍ତାହରେ କଟକରେ ଅବସ୍ଥାନ କରି, ମଧୁସୂଦନ ଦାସ ପ୍ରମୁଖ ଓଡ଼ିଆ ଜାତୀୟବାଦୀ ନେତୃବର୍ଗଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରିଥିଲେ ଏବଂ ବିଦାୟର ଶେଷ ବେଳରେ ମଧୁସୂଦନ ଦାସ ଓଡ଼ନେଲ୍ କମିଟିକୁ ନିଜର ବାସ ଭବନରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ ।

ଓଡ଼ନେଲ୍ କମିଟି ରିପୋର୍ଟ ୧୯୩୨ ସାଲର ଜୁନ ପ୍ରଥମ ସପ୍ତାହରେ ପ୍ରକାଶ ପାଇଲା, ଯହିଁରେ ଗଂଜାମର ପାରଳାଖେମୁଣ୍ଡି ସମେତ ବହୁ ଅଞ୍ଚଳକୁ ବାଦ୍‌ଦେଇ ଜୟପୁର ଜମିଦାରି ସଂଯୁକ୍ତ ରହିଥିଲା । ପରିଣାମରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଆୟତନ ୩୩୦୦୦ ବର୍ଗ ମାଇଲ ଆଉ ଜନସଂଖ୍ୟା ୮୨,୦୦,୦୦୦ରେ ସ୍ଥିରୀକୃତ ହୋଇଥିଲା । ଏଥିରେ ସିଂହଭୂମି, ମଞ୍ଜୁଷା, ଟିକାଲୀ ଆଦି ବହୁ ଅଞ୍ଚଳ ବାଦ ପଡ଼ିଥିଲା ।

ଭୁବନାନନ୍ଦ ଦାସ ଇଂଲଣ୍ଡର ଗ୍ଲାସ୍‌ଗୋଠାରେ ଇଂଜିନିୟରିଂ ଅଧ୍ୟୟନ କରିବା ସହିତ ଇଂଲଣ୍ଡର ବିଭିନ୍ନ ଅଞ୍ଚଳ ସହିତ ପରିଚିତ ଥିଲେ । ଏଣୁ ତୃତୀୟ ଗୋଲ୍‌ଟେବୁଲ୍ ବୈଠକରେ ଖଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ସହ ଭୁବନାନନ୍ଦ ଦାସ ୭.୧୨.୧୯୩୨ରେ ସାକ୍ଷ୍ୟ ପ୍ରଦାନ କରିଥିଲେ । । ପରିଣାମରେ ୨୪.୧୨.୧୯୩୨ରେ ଗୋଲ୍‌ଟେବୁଲ୍ ବୈଠକର ଶେଷ ଦିବସରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଉଦ୍‌ଘୋଷିତ ହେଲା । ମାତ୍ର ଓଡ଼ିଶା ପ୍ରଦେଶ ଗଠନର ଶେଷ ପର୍ଯ୍ୟାୟଟି ଅତ୍ୟନ୍ତ ସଂଘର୍ଷପୂର୍ଣ୍ଣ ଓ ଦୁଃଖଦ ଥିଲା ।

ଓଡ଼ିଆ ନେତୃବର୍ଗଙ୍କ ସହିତ ଆନ୍ଧ୍ର ନେତୃବର୍ଗ ତିନିଗୋଟି ଗୋଲଟେବୁଲ୍ ବୈଠକରେ ଯୋଗଦାନ କରି ସ୍ୱତନ୍ତ୍ର ଆନ୍ଧ୍ରପ୍ରଦେଶ ଗଠନର ଦାବି ଉଠାଇଥିଲେ । ଏହାପରେ ୧୮.୩.୩୩ରେ ବ୍ରିଟିଶ ସରକାରଙ୍କ ପକ୍ଷରୁ ଯେଉଁ ଶ୍ୱେତପତ୍ର ପ୍ରକାଶ ପାଇଲା, ସେଥିରେ ସମ୍ଭାବ୍ୟ ଓଡ଼ିଶା ପ୍ରଦେଶରୁ ଜୟପୁର ଜମିଦାରି ଓ ପାରଳାଖେମୁଣ୍ଡି ଜମିଦାରି ବାଦ୍ ଦିଆଯାଇଥିଲା । ଏବଂ ଓଡ଼ିଶା ପ୍ରଦେଶର ଆୟତନ ୩୩,୦୦୦ ବର୍ଗମାଇଲରୁ ହ୍ରାସପାଇ ମାତ୍ର ୨୧,୫୪୫ ବର୍ଗମାଇଲରେ ସୀମିତ ରହିଲା । ଅନ୍ୟ ଅର୍ଥରେ ଏକ ତୃତୀୟାଂଶ ସମୃଦ୍ଧ ଅଂଶ ବାଦ୍ ପଡ଼ିଗଲା, ଯାହା ଅତ୍ୟନ୍ତ ନୈରାଶ୍ୟପୂର୍ଣ୍ଣ ଓ ମର୍ମନ୍ତୁଦ ଥିଲା । ଏହି ବିଷାଦାଚ୍ଛନ୍ନ ଓ ଶୋକଗ୍ରସ୍ତ ମୁହୂର୍ତ୍ତରେ ଜାତିର ଅନନ୍ୟ ସାରଥି ମଧୁସୂଦନ, ପାରଳା ମହାରାଜାଙ୍କ ଅଧିନାୟକତ୍ୱରେ ଏକ ଓଡ଼ିଆ ପ୍ରତିନିଧି ଦଳ ଯାଇ ଜଏଣ୍ଟ ପାର୍ଲାମେଣ୍ଟାରି କମିଟି ଆଗରେ ସାକ୍ଷ୍ୟପ୍ରଦାନ ପାଇଁ ଅନୁରୋଧ କରିଥିଲେ । ପରିଣାମରେ ୭.୪.୧୯୩୩ରେ ପାରଳା ମହାରାଜଙ୍କ ନିକଟରେ ଖଲ୍ଲିକୋଟ ରାଜା, ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ ପ୍ରମୁଖ ଲଣ୍ଡନ ଯାତ୍ରା କରି ୩.୭.୧୯୩୩ରେ ଜଏଣ୍ଟ ପାର୍ଲାମେଣ୍ଟାରି କମିଟି ଆଗରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ଏହାପରେ ଆନ୍ଧ୍ର ପ୍ରତିନିଧି ଦଳ ମଧ୍ୟ ସାକ୍ଷ୍ୟ ପ୍ରଦାନ କରିଥିଲେ । ଏହି ପର୍ଯ୍ୟାୟ ପରେ କମିଟି ଓଡ଼େନେଲଙ୍କଠାରୁ ୭.୧୧.୧୯୩୩ରେ ତାହାଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ବକ୍ତବ୍ୟକୁ ଅନୁଶୀଳନ କରିଥିଲେ । ପାରଳା ମହାରାଜା ୧୨.୮.୧୯୩୩ରେ ଓଡ଼ିଶା ଫେରିଥିଲେ ମଧ୍ୟ ତାହାଙ୍କର ଦାବି ଉପସ୍ଥାପନା ପାଇଁ ପୁନରାୟ ୨୨.୫.୧୯୩୪ରେ ଲଣ୍ଡନ ଯାଇ ଦୀର୍ଘ ଛଅମାସ ଅବସ୍ଥାନ କରି ୮.୧୧.୧୯୩୪ରେ ଓଡ଼ିଶା ଫେରିଥିଲେ ।

ସେହି ଗୁରୁତ୍ୱପୂର୍ଣ୍ଣ ବେଳାରେ ମାଡ୍ରାସ ସରକାର ତଥା ବଡ଼ଲାଟଙ୍କର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ତାତ୍ପର୍ଯ୍ୟପୂର୍ଣ୍ଣ ଅନ୍ତିମ ପର୍ଯ୍ୟାୟରେ ଇଂଲଣ୍ଡନର ମଧୁସୂଦନଙ୍କର ଇଂରେଜୀ ସୁହୃଦ୍‌ବର୍ଗ ତଥା ବିହାର ବିଧାନସଭାରେ ମଧୁସୂଦନଙ୍କର ଅନ୍ତରଙ୍ଗ ବନ୍ଧୁ ସଚ୍ଚିଦାନନ୍ଦ ସିହ୍ନା ପ୍ରମୁଖ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନା ଲାଗି ଅନୁକୂଳ ପ୍ରସ୍ତାବ ଗ୍ରହଣ କରି ଶ୍ୱେତ ଓ ମାଟିଆ ସାମ୍ରାଜ୍ୟବାଦର ବିଭେଦ ଭୁଲି ଅଯାଚିତ ସାହାଯ୍ୟ ପ୍ରଦାନ କରିଥିଲେ ।

ଅବଶେଷରେ ୨୨.୧୧.୧୯୩୪ରେ ପ୍ରକାଶିତ ଜଏଣ୍ଟ ପାର୍ଲାମେଣ୍ଟାରି କମିଟିର ସର୍ବଶେଷ ସିଦ୍ଧାନ୍ତ ଅନୁସାରେ ଜୟପୁର ଜମିଦାରି ଓ ପାରଳା ଜମିଦାରରିର ଏକ ତୃତୀୟାଂଶ ଓଡ଼ିଶା ପ୍ରଦେଶ ସହିତ ସଂଯୁକ୍ତ ହେବାପରେ ଶ୍ୱେତପତ୍ରରେ ଉଲ୍ଲିଖିତ ଆୟତନ ତୁଳନାରେ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ଆୟତନ ଅର୍ଦ୍ଧାଧିକ ବୃଦ୍ଧି ପାଇଥିଲା । ଅବଶେଷରେ ଓଡ଼ିଶା ପ୍ରଦେଶର ଆୟତନ ୩୨,୬୯୫ ବର୍ଗ ମାଇଲକୁ ବୃଦ୍ଧି ପାଇଥିଲା ଆଉ ଓଡ଼ିଶାର ଜନସଂଖ୍ୟା ପ୍ରାୟ ୮୦ ଲକ୍ଷଥିଲା । ଏହାଥିଲା ସମଗ୍ର ଓଡ଼ିଶା ଇତିହାସର ସବୁଠାରୁ ଗୌରବୋଜ୍ଜ୍ୱଳ ଅଧ୍ୟାୟ ।

ପାରଳା ମହାରାଜ ୧୨.୮.୧୯୩୩ରେ ଇଂଲଣ୍ଡରୁ ଫେରି ସିଂହଭୂମିର ନେତୃପୁରୁଷ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କୁ ଲେଖିଥିଲେ, "ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଶ୍ରେୟ, ରିସ୍‌ଲେ ସାର୍କୁଲାର, ଯାହା ମଧୁସୂଦନଙ୍କର ପ୍ରଚେଷ୍ଟାରେ କର୍ଜନଙ୍କ ଦ୍ୱାରା ପ୍ରଚାରିତ ହୋଇଥିଲା, ତାହାଙ୍କୁ ପ୍ରାପ୍ୟ । ଏହା ହିଁ ଅବଶେଷରେ ନିର୍ଣ୍ଣାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା ।"

ପ୍ରକୃତରେ ୧୯୦୦ ସାଲର ଶୀର୍ଣ୍ଣ ଓଡ଼ିଶା ଡିଭିଜନ ତୁଳନାରେ ୧୬.୧୦.୧୯୦୫ରେ ଆଉ ୧.୪.୧୯୩୬ରେ ଯେଉଁସବୁ ଅଞ୍ଚଳ ଓଡ଼ିଶା ସହିତ ସଂଯୁକ୍ତ ହୋଇଥିଲା, ତାହା ଏହି ପ୍ରଦେଶକୁ ଅକଳନ ପ୍ରାକୃତିକ ବିଭବ, ଅମାପ ଜଳ, ଅରଣ୍ୟ ଆଉ ଖଣିଜ ସଂପଦରେ ଭରିଦେଇ ଓଡ଼ିଶାକୁ ସମୃଦ୍ଧିଶାଳୀ ଆଉ ପ୍ରାଥମିକ ଭାଷାଭିତ୍ତିକ ପ୍ରଦେଶରେ ପ୍ରମାଣିତ କରିଛି । ମାତ୍ର ଓଡ଼ିଆ ଜାତିର ଏହି ସ୍ୱର୍ଣ୍ଣିମ ଅଧ୍ୟାୟ ଆଜି ରହିଯାଇଛି, ବିସ୍ମୃତ ଆଉ ଅକୁତୋଭୟ ସଂଗ୍ରାମୀ ନେତୃବର୍ଗ ରହିଯାଇଛନ୍ତି ଅଜ୍ଞାତ ଆଉ ଅପାଂକ୍ତେୟ । ଏହା ହିଁ ଏହି ଜାତିର ଚରମ ଦୁର୍ଦ୍ଦଶା ଓ ଅଭିସଂପାତ ।



# ଉପନିବେଶବାଦ ବିରୁଦ୍ଧରେ ସଂଗ୍ରାମରତ ମଧୁସୂଦନ

ଜାତୀୟ ଗୌରବ ମଧୁସୂଦନ ଦାସଙ୍କର ଜୀବନର ପ୍ରତିଟି ମୁହୂର୍ତ୍ତ ନିୟୋଜିତ ହୋଇଥିଲା ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ଅଘୋଷିତ ସଂଗ୍ରାମ ମଧ୍ୟରେ । ବାହ୍ୟ ଆବରଣରୁ ସେହି ସଂଗ୍ରାମର ତୀବ୍ରତା ଉପଲବ୍ଧ ହେଉନଥିଲେ ମଧ୍ୟ, ତାହାର ପ୍ରଖରତା କମ୍ ନଥିଲା । ତାହା ଥିଲା ବ୍ରିଟିଶ ସାମ୍ରାଜ୍ୟବାଦକୁ ମୂଳରୁ ଉଖାଡ଼ି ଦେବା ପାଇଁ ଏକ ଅବଦମିତ ସଂକଳ୍ପବଦ୍ଧ ଦୁର୍ଦ୍ଦମନୀୟ ପ୍ରଚେଷ୍ଟା ।

ପରାଧୀନତାର ନିଷ୍ପେଷଣ ମଧ୍ୟରେ ଓଡ଼ିଆ ଜାତୀୟତା ବହୁ ପରିମାଣରେ ବାଧା ପ୍ରାପ୍ତ ହୋଇଥିଲେ ମଧ୍ୟ ବହୁକାଳ ଧରି ତା'ର ନିଜସ୍ୱ ସଂସ୍କୃତି ଅକ୍ଷୁଣ୍ଣ ରଖି ପାରିଥିଲା । ଅନ୍ତଃସ୍ରୋତା ଫଲ୍‌ଗୁ ପରି ଓଡ଼ିଆ ସାହିତ୍ୟଧାରା ବହି ଚାଲିଥିଲା ଅପ୍ରତିହତ ଭାବରେ ଓ କେବେକେବେ ତାହା ଉତ୍ତାଳ ବନ୍ୟାର ରୂପ ନେଇଥିଲା । ମାତ୍ର ବ୍ରିଟିଶ ଉପନିବେଶବାଦର ପ୍ରଚଣ୍ଡ ଆଘାତ ଓଡ଼ିଆ ଜାତୀୟତାକୁ ଭୂଲୁଣ୍ଠିତ କରି ନିଶ୍ଚିହ୍ନ କରି ଦେଇଥିଲା । ତାହାର ଅର୍ଥନୀତି ହୋଇ ଯାଇଥିଲା ବିପନ୍ନ । ଗ୍ରାମ୍ୟ ଶିଳ୍ପ, ବାଣିଜ୍ୟ ଓ କୃଷିଠାରୁ ଆରମ୍ଭ କରି ବସ୍ତ୍ରଶିଳ୍ପ, ଲବଣ ଶିଳ୍ପ ଆଦି ସମସ୍ତ ଶିଳ୍ପ ହୋଇଥିଲା ଧୂଳିସାତ୍ । କୃଷକ ହୋଇଥିଲା ନିରନ୍ନ ଆଉ ବାସ୍ତୁହରା । ଅର୍ଥନୈତିକ ଦିଗଠାରୁ ଆରମ୍ଭ କରି ସାଂସ୍କୃତିକ କ୍ଷେତ୍ର ପର୍ଯ୍ୟନ୍ତ, ଭାଷାର ସୌଷ୍ଠବତାଠାରୁ ଆରମ୍ଭ କରି ସାମାଜିକ ଚଳଣିର ଗଭୀରତମ ପର୍ଯ୍ୟାୟ ପର୍ଯ୍ୟନ୍ତ ପ୍ରତିଟି କ୍ଷେତ୍ରରେ ଓଡ଼ିଆ ଜାତୀୟତା କେବଳ ବିପନ୍ନ ହୋଇ ନଥିଲା, ହୋଇଥିଲା ବିଦୀର୍ଣ୍ଣ ଆଉ ବିପର୍ଯ୍ୟସ୍ତ । ସମସ୍ତ କ୍ଷେତ୍ରରେ ଏକ ବିରାଟ ଶୂନ୍ୟତା ହିଁ ରାଜୁତି କରୁଥିଲା ।

ଏହି ସମଗ୍ର କ୍ଷେତ୍ରରେ ମଧୁସୂଦନଙ୍କର ସଂଗ୍ରାମ ଥିଲା ଭୂମିଲଗ୍ନ, ତୀବ୍ର ଆଉ ଅବଦମିତ । ଜୀବନର ସାୟାହ୍ନରେ ଆପଣାର କାର୍ଯ୍ୟାବଳୀର ସାମଗ୍ରିକ ମୂଲ୍ୟାୟନ କରି ଜାତି ପ୍ରତି ଅନ୍ତିମ

ଭାଷଣରେ ୧୯୩୩ ସାଲ ଫେବ୍ରୁଆରି ୧୨ ତାରିଖରେ ଶ୍ରୀରାମଚନ୍ଦ୍ର ଭବନରେ ମଧୁସୂଦନ ବଜ୍ର ନିର୍ଘୋଷ କଣ୍ଠରେ କହିଥିଲେ-

''ଏହି ଆନ୍ଦୋଳନ ଆରମ୍ଭ କରିବା ଦିନୁ ଆମକୁ ବହୁ ଦୁଃସମୟ ମଧ୍ୟରେ ଗତି କରିବାପାଇଁ ପଡ଼ିଛି । ଧନବଳ ଓ ବୁଦ୍ଧିବଳରେ ମୋ'ଠାରୁ ଶକ୍ତିଶାଳୀ ବ୍ୟକ୍ତିଙ୍କ ସହିତ ମୋତେ ଏଥିପାଇଁ ମୁକାବିଲା କରିବାକୁ ପଡ଼ିଛି । କିନ୍ତୁ ଅନ୍ତରରେ ବିବେକ ଓ ଉପରେ ଭଗବାନଙ୍କୁ ସାକ୍ଷୀ ରଖି ମୁଁ ଏକାକୀ ସବୁ ପ୍ରତିକୂଳ ପରିସ୍ଥିତି ବିରୁଦ୍ଧରେ ସଂଗ୍ରାମ କରି ଆସିଛି । ଦିନେ ମୋର ମନରେ ଏହି ଭାବ ଜାଗ୍ରତ ହେଲା ଯେ, ମୁଁ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ହୋଇଥିବାରୁ ଏ ଜାତିକୁ ଏକତ୍ର କରିବାପାଇଁ ଭାବନା, ଭଗବାନ ମୋ ହୃଦୟରେ ଜାଗ୍ରତ କରାଇଛନ୍ତି । ମୁଁ ଏ ସଂପର୍କରେ ଚିନ୍ତାକଲି ଓ ଆଲୋଚନା କଲି । ସେଥିରୁ ମୋର ଦୃଢ଼ ପ୍ରତ୍ୟୟ ଜନ୍ମିଲା, ଓଡ଼ିଆ ଜାତିର ଇତିହାସ ଘେନି ଯେ କୌଣସି ଜାତି ଯଥାର୍ଥରେ ଗର୍ବିତ ହୋଇପାରେ । ମୋ ଜାତିପାଇଁ ମୋତେ କିଛି କରିବାକୁ ପଡ଼ିବ, ମାତ୍ର ମୁଁ ଯେ ଏକାକୀ ।''

ଏ ଥିଲା ବ୍ରିଟିଶ ଉପନିବେଶବାଦ ବିରୋଧରେ ସଂଗ୍ରାମ କରିବାର ମାନସିକ ପ୍ରସ୍ତୁତି । ହଁ ସମଗ୍ର ବିଶ୍ୱରେ ଉପନିବେଶବାଦର ସ୍ୱରୂପ କ'ଣ? ତାହାର ଚକ୍ରାନ୍ତ କିଭଳି କାର୍ଯ୍ୟକାରୀ ହୁଏ ?

ଜଣେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଦକ୍ଷିଣ ଆଫ୍ରିକୀୟ ନେତା ଆମ୍ବିଲେନ୍ କାବରାଇ, ୟୁନେସ୍କୋର 'ପରାଜିତ' ନାମକ ଗ୍ରନ୍ଥରେ ତାହାର ବିଶଦ ବ୍ୟାଖ୍ୟା କରିଛନ୍ତି ।

ସାମ୍ରାଜ୍ୟବାଦ, ପରାଧୀନ ସଂସ୍କୃତିକୁ ନିଷ୍ପେଷିତ କରିବାପାଇଁ ଚକ୍ରାନ୍ତ ଆରମ୍ଭ କରେ, ମାତ୍ର ପରାଧୀନ ଜନଗୋଷ୍ଠୀ, ଅନ୍ୟ ଦିଗରେ ମୁକ୍ତି ସଂଗ୍ରାମକୁ ବଞ୍ଚାଇ ରଖିବାପାଇଁ ନିଷ୍ପେଷଣ ବିରୋଧରେ ସଂସ୍କୃତିର ଆଶ୍ରା ନିଏ । ପରାଧୀନ ଜନଗୋଷ୍ଠୀ ସାମରିକ ଶକ୍ତିବିହୀନ ହୋଇ ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟରେ ସାମ୍ରାଜ୍ୟବାଦ ବିରୁଦ୍ଧରେ ତାହାର ସଂଗ୍ରାମ ଜାରି ରଖେ ,ଯେଉଁ ସଂଗ୍ରାମ ତାହାର ସାଂସ୍କୃତିକ ଜୀବନ ଧାରା ମଧ୍ୟରେ ପ୍ରତିଫଳିତ ହୁଏ ।

ଏ ସମସ୍ତ ତଥ୍ୟର ପରିପ୍ରେକ୍ଷୀରେ ମଧୁସୂଦନଙ୍କର ବକ୍ତବ୍ୟ ଓ କାର୍ଯ୍ୟଧାରା ମୂଲ୍ୟାୟନ କରାଯାଇପାରେ ।

୧୮୫୭ ସାଲର ସିପାହୀ ବିଦ୍ରୋହ ପରେ, ଅସ୍ତ୍ର ଉତ୍ତୋଳନ କରି ସଂଗ୍ରାମ ବା ବିଦ୍ରୋହ କରିବାର ଶକ୍ତି ଭାରତୀୟମାନଙ୍କଠାରୁ ଲୋପ ପାଇଯାଇଥିଲା । ସୁରେନ୍ଦ୍ର ସାଏ, ଚକରା ବିଶୋୟୀ ଅଥବା ବକ୍ସି ଜଗବନ୍ଧୁଙ୍କ ପରି ଦୁର୍ଦ୍ଧର୍ଷ ସଂଗ୍ରାମୀମାନଙ୍କର ଆତ୍ମୋତ୍ସର୍ଗ ଓ ବଳିଦାନ ଯାହାପାଇଁ ପ୍ରତ୍ୟେକ ଓଡ଼ିଆ ଗର୍ବିତ ତାହାର ଆଉ ଆବଶ୍ୟକତା ନଥିଲା । ଅସ୍ତ୍ରର ରଣଝଙ୍କାର ଅପେକ୍ଷା, ପ୍ରଚଣ୍ଡ ବିଦ୍‌ବତ୍ତା, ଶାଣିତ ଓ ପ୍ରଖର ବୁଦ୍ଧିମତ୍ତା, ଗଭୀର ପୁରୋଦୃଷ୍ଟି ସମ୍ପନ୍ନ ବ୍ୟକ୍ତିତ୍ୱ, ନିଜର ଜାତିର ମହିମାନ୍ୱିତ ଗାଥାରେ ଉଦ୍‌ବୁଦ୍ଧ, ମଧୁସୂଦନଙ୍କ ପରି ଏକ ଦିଗ୍‌ଦର୍ଶୀ ଜନନାୟକଙ୍କ ଅପେକ୍ଷାରେ ଓଡ଼ିଆ ଜାତି ଉଦ୍‌ଗ୍ରୀବ ହୋଇ ବସି ରହିଥିଲା

ପ୍ରଖ୍ୟାତ ଆଇନଜୀବୀ ବିମଳକୃଷ୍ଣ ପାଲ, ମଧୁବାବୁଙ୍କ କୃତିର ମୂଲ୍ୟାୟନ କରି କହନ୍ତି-

''ମଧୁସୂଦନ ଦେଶର ପରିସ୍ଥିତି, ପ୍ରତିରୋଧ, ବିକେନ୍ଦ୍ରୀକରଣ, ଶକ୍ତିର ତାଡ଼ନା ଯାହାକୁ ଅନୁଧ୍ୟାନ କରିବାର ଆବଶ୍ୟକତା ରହିଥିଲା, ସେ ପ୍ରତି ଗଭୀର ଭାବେ ସଚେତନ ଥିଲେ । ସେ ଜନଗୋଷ୍ଠୀର ଦୁର୍ବଳତା ତଥା ସେମାନଙ୍କର ଅନ୍ତର୍ନିହିତ ଶକ୍ତିକୁ ଭଲଭାବେ ଉପଲବ୍ଧି କରିଥିଲେ ।

ସେ ତାଙ୍କର କାର୍ଯ୍ୟଧାରା ଅତ୍ୟନ୍ତ ଦକ୍ଷତାର ସହିତ ସଞ୍ଚାଳିତ କରିଥିଲେ ଆଉ କାହା ପ୍ରତି ଆଘାତ ନପହଞ୍ଚାଇ, ସମସ୍ତଙ୍କ ସହିତ ମିତ୍ରତା ସ୍ଥାପନା କରିଥିଲେ । ମାତ୍ର ଗୋଟିଏ ମୁହୂର୍ତ୍ତପାଇଁ ନିଜ କର୍ତ୍ତବ୍ୟକୁ ଭୁଲି ଯାଇ ନଥିଲେ କିମ୍ବା କର୍ତ୍ତବ୍ୟରୁ ବିଚ୍ୟୁତ ହୋଇ ନଥିଲେ । ସେହି କର୍ତ୍ତବ୍ୟଟି ଥିଲା ବିଚ୍ୟୁତ ହୋଇଯାଇଥିବା ଓଡ଼ିଆ ଜାତିର ପରିଚୟକୁ ପୁନରୁଦ୍ଧାର କରି ପୁନଃ ସଂସ୍ଥାପିତ କରିବା । ସେହି ଓଡ଼ିଆ ପରିଚୟର ଦିଗନ୍ତ ହେଉଛି, ତାହାର ସାଂସ୍କୃତିକ ପରମ୍ପରା, ତାହାର ପୁରାଣ, ଚାରୁକଳା, ତାହାର ହସ୍ତଶିଳ୍ପ, ଲୋକଗୀତି ଓ କାହାଣୀର ଅନବଦ୍ୟ ସମ୍ଭାର ଆଉ ତାହାର ଯାତ୍ରା ଏବଂ ଉତ୍ସବ । ସେ ବିରୋଧୀ ଶକ୍ତିକୁ ଭୀତତ୍ରସ୍ତ ନକରି ଓଡ଼ିଆ ସଂସ୍କୃତି ଏବଂ ଭାଷାର ପୁନରୁଦ୍ଧାର ଏବଂ ଅଭିବୃଦ୍ଧି ପାଇଁ କାର୍ଯ୍ୟକରି ଚାଲିଥିଲେ ।'' କିଭଳି ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା ପାଲ୍‌ଙ୍କର ଏହି ଉକ୍ତି । ସେ ପ୍ରକୃତରେ ସ୍ଥିତିଶୂନ୍ୟତାର ଘନ ଅନ୍ଧକାରରୁ ଓଡ଼ିଆ ଜାତିର ପୁନରୁଦ୍ଧାର କରିଥିଲେ ।

ବ୍ରିଟିଶ ସାମ୍ରାଜ୍ୟବାଦ ସହିତ ତାହାଙ୍କର ସିଧାସଳଖ ମୁକାବିଲା ହୋଇଥିଲା ସ୍ୱଦେଶୀ ଶିଳ୍ପ ମାଧ୍ୟମରେ । ସେ ସମଗ୍ର ଭାରତର ସ୍ୱଦେଶୀ ଶିଳ୍ପ ଆନ୍ଦୋଳନର ଆଦ୍ୟ ପ୍ରବର୍ତ୍ତକ କେବଳ ନଥିଲେ, ସେ ଅବାରିତ ଭାବେ ଗ୍ରାମ ଗ୍ରାମ, ସହର ସହର ବୁଲି ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ସଂଗ୍ରାମ ଜାରି ରଖିଥିଲେ । ଏଇଥିପାଇଁ ସ୍ୱତନ୍ତ୍ର ଭାବେ ସମସ୍ତ ନାଗରିକଙ୍କଠାରୁ ସାରା ଜୀବନ ଧରି କେବଳ ସ୍ୱଦେଶୀ ଉତ୍ପାଦିତ ଦ୍ରବ୍ୟର ବ୍ୟବହାର ପାଇଁ ଶପଥ ପାଠ କରାଉଥିଲେ ।

ଏଣୁ ଏ ସମସ୍ତ ନିଃସନ୍ଦେହରେ ଥିଲା ଅର୍ଥନୈତିକ କ୍ଷେତ୍ରରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ତାତ୍ପର୍ଯ୍ୟପୂର୍ଣ୍ଣ ସଂଗ୍ରାମ । ଏ ସଂଗ୍ରାମର ବହୁ ଦିଗନ୍ତରେ ମଧୁସୂଦନ ତାଙ୍କର ସଂଗ୍ରାମ ଅପ୍ରତିହତ ରଖିଥିଲେ । ଏ ସମସ୍ତର ପୁରୋଭାଗରେ ଥିଲା ଓଡ଼ିଆ ଜାତୀୟତାର ପୁନରୁଦ୍ଧାର ଆଉ ପୁନଃ ସଂସ୍ଥାପନ । ଅନ୍ୟଥା ଏକ ସମୃଦ୍ଧ ସାହିତ୍ୟ ପରମ୍ପରା ଘେନି ଗର୍ବିତ ମୈଥିଳୀ ସଂପ୍ରଦାୟ ବିହାର ଭୂମିରେ ବିସ୍ଥାପିତ ହେଲାପରି ଓଡ଼ିଶାର ସ୍ଥିତି ଓ ପରମ୍ପରା ବିସ୍ମୃତିର ଗର୍ଭରେ ଲୀନ ହୋଇଯାଇଥାନ୍ତା ।

ଏହିଠାରେ ହିଁ ମଧୁସୂଦନଙ୍କର କାଳଜୟୀ ବ୍ୟକ୍ତିତ୍ୱର ପରାକାଷ୍ଠା ଓ ଗରିମାମୟ ପ୍ରଖରତାର ଦୀପ୍ତି ଉଦ୍‌ଭାସିତ ହୁଏ ।



# ଓଡ଼ିଶା ପ୍ରଦେଶର ସ୍ଥାପନା: ଏକ ବିସ୍ମୟକର ଉପଲବ୍ଧି

କ୍ରମଶଃ ତ୍ୱରିତ ଗତିରେ ଅବଲୁପ୍ତ ହୋଇଯାଉଥିବା ଓଡ଼ିଆଭାଷୀ ଗୋଷ୍ଠୀ ଚାରିଗୋଟି ବୃହତ ରାଜ୍ୟରେ ଉପହସିତ ଆଉ ନିର୍ଯ୍ୟାତିତ ହୋଇ ନ୍ୟୂନତମ ସଂଖ୍ୟାଲଘୁ ଗୋଷ୍ଠୀରେ ପରିଣତ ହୋଇଯାଇଥିଲା । ବିହାର ଓ ଓଡ଼ିଶା ପ୍ରଦେଶର ଅବହେଳିତ ପଞ୍ଚମ ଡିଭିଜନ ଥିଲା ଓଡ଼ିଶା ଡିଭିଜନ, ଯାହା ଓଡ଼ିଶାର ଏକମାତ୍ର ପରିଚୟ ଥିଲା । ସେହି ଓଡ଼ିଶା ମଧ୍ୟ ବ୍ରିଟିଶ ଶାସିତ (ମୋଗଲ ବନ୍ଦୀ) ଆଉ ସଂଲଗ୍ନ ୨୬ଟି ଗଡ଼ଜାତ ରାଜ୍ୟ ମଧ୍ୟରେ ବହୁଧା ବିଭାଜିତ ହୋଇଥିଲା । ଏଠାରେ ସୂଚାଇ ଦିଆଯାଉଛି ଯେ ଓଡ଼ିଶା ଡିଭିଜନ ଛଡ଼ା ବିହାରରେ ଅପେକ୍ଷାକୃତ ଚାରିଗୋଟି ବୃହତ ସମୃଦ୍ଧିଶାଳୀ ହିନ୍ଦୀଭାଷୀ ଡିଭିଜନଗୁଡ଼ିକ ହେଲା ତିରହୁତ, ଭାଗଲପୁର, ପାଟନା ଆଉ ଛୋଟନାଗପୁର । ୧୯୩୧ ସାଲର ଭାଷାଭିତ୍ତିକ ଜନଗଣନା ଆଧାରରେ ସମଗ୍ର ଭାରତରେ ଓଡ଼ିଆ ଭାଷାଗୋଷ୍ଠୀ ନବମ ସ୍ଥାନରେ ରହି ମାତ୍ର ୧.୧୦କୋଟି ଜନସଂଖ୍ୟା ମଧ୍ୟରେ ସୀମିତ ରହିଥିବାବେଳେ ସେହି ବର୍ଷର ଜନଗଣନା ପରିସଂଖ୍ୟାନର ଆଧାରରେ କ୍ରମିକ ରୀତିରେ ଅନ୍ୟ ଆଠଗୋଟି ବୃହତ ଭାଷାଭାଷୀ ଗୋଷ୍ଠୀଙ୍କର ସଂଖ୍ୟା ନିମ୍ନରେ ପ୍ରଦତ୍ତ ହେଲା ।

ହିନ୍ଦୀଭାଷୀ- ୪୧.୪୨ କୋଟି, ବଂଗଭାଷୀ-୫,୩୪ କୋଟି, ତେଲୁଗୁଭାଷୀ- ୨.୬୩ କୋଟି, ମରାଠୀ--୨.୦୮ କୋଟି, ପଞ୍ଜାବୀ ୧.୫୮କୋଟି, ଗୁଜୁରାଟୀ-୧.୧୩ କୋଟି, ଆଉ କନ୍ନଡ଼ଭାଷୀ ୧.୧୬କୋଟି, ପରିଶେଷରେ ଓଡ଼ିଆ ମାତ୍ର ୧.୧୦ କୋଟି ।

ପଶ୍ଚିମରେ ସୁବିସ୍ତାରିତ ହିନ୍ଦୀଭାଷୀ ଅଞ୍ଚଳ, ଆଉ ଉତ୍ତର ଏବଂ ଦକ୍ଷିଣରେ ଦୁଇଟି ସର୍ବ ବୃହତ ଭାଷୀ ବଂଗଳା ଓ ତେଲୁଗୁଭାଷୀଙ୍କ ମଧ୍ୟରେ ସଂକୁଚିତ ରହି ନବମ ସ୍ଥାନରେ ସ୍ଥିତ ଓଡ଼ିଆ ଜାତି ନିଜର ସତ୍ତା ହରାଇବାକୁ ବସିଥିବାବେଳେ କେଉଁ ପ୍ରଚଣ୍ଡ ଅବଦମିତ ଆସ୍ପର୍ଦ୍ଧା ଘେନି ସର୍ବପ୍ରଥମ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶର ସ୍ଥାପନା ଲାଗି କ୍ରମାଗତ ଭାବେ ୧୮୬୬ ସାଲରୁ

ସତୁରି ବର୍ଷ କାଳର ସୁଦୀର୍ଘ ବିରାମହୀନ ସଂଗ୍ରାମର ଧାରା ସଂଚାଳିତ କରି ରଖିଥିଲା, ତାହା ବର୍ତ୍ତମାନ ସମୟରେ ଅଚିନ୍ତନୀୟ ।

ପରାଧୀନ ଭାରତରେ ସବୁଠାରୁ ଦୟନୀୟ ଆଉ ପରିତାପର ବିଷୟ ହେଲା ଯେ, ମହାତ୍ମାଗାନ୍ଧୀଙ୍କ ବ୍ୟତିରେକେ, ପ୍ରାୟ ସମସ୍ତ ସର୍ବଭାରତୀୟ ନେତୃବର୍ଗ ଆଉ ରାଜନୈତିକ ଦଳ, ଓଡ଼ିଶା ପ୍ରଦେଶ ଗଠନର ପ୍ରକ୍ରିୟାକୁ ତୀବ୍ର ଭାବରେ ପ୍ରତିରୋଧ କରୁଥିଲେ ।

ଭାରତୀୟ କେନ୍ଦ୍ରୀୟ ବିଧାନ କାଉନ୍‌ସିଲରେ, ମଧୁସୂଦନ ଦାସ, ସଚ୍ଚିଦାନନ୍ଦ ସିହ୍ନା, ନୀଳକଣ୍ଠ ଦାସ ଆଉ କନିକା ରାଜା ପ୍ରମୁଖ ଓଡ଼ିଶା ପ୍ରଦେଶର ଆଶୁ ଗଠନ ଲାଗି ଉଦାତ୍ତ ଆଉ ଓଜସ୍ୱିନୀ ସ୍ୱରରେ ପ୍ରଖର ଭାବରେ ସେମାନଙ୍କର ଦାବିକୁ ଉତ୍ତୋଳିତ କରିଥିଲେ । ଏହି କାଉନସିଲ୍‌ରେ ଜଣେ ପ୍ରଭାବଶାଳୀ ସଦସ୍ୟରୂପେ ୧୯୨୪ ସାଲରେ ଭୁବନାନନ୍ଦ ଦାସଙ୍କର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ଏହି ସମସ୍ତ ଦେଶ ହିତୈଷୀ ନେତୃବର୍ଗଙ୍କର ସମନ୍ୱିତ ଉଦ୍ୟମ ଆଉ ସମ୍ମିଳିତ ପ୍ରଚେଷ୍ଟାରେ ବିଭିନ୍ନ ପ୍ରଦେଶରେ ସ୍ଥିତ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣରେ ନିମ୍ନଲିଖିତ ଭାବରେ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ତାହାର ହିସାବ ଏହିପରି କରାଯାଉଛି ।

ଓଡ଼ିଶା ପ୍ରଦେଶ ସ୍ଥାପନାର ବର୍ଷ ୧୯୩୬ ସାଲର ପ୍ରାରମ୍ଭରେ ବିହାର ଓ ଓଡ଼ିଶା ପ୍ରଦେଶର ଓଡ଼ିଶା ଡିଭିଜନର ଆୟତନ (ଗଡ଼ଜାତ ବ୍ୟତୀତ) ଥିଲା ୧୩,୭୦୬ ବର୍ଗମାଇଲ । ମାଡ୍ରାସ ପ୍ରଦେଶରୁ ଆସିଲା ୧୭,୪୦୦ ବର୍ଗମାଇଲ, ମଧ୍ୟପ୍ରଦେଶରୁ ଆସିଲା ୧,୫୮୯ ବର୍ଗମାଇଲ । ତେଣୁ ୧୯୩୬ ସାଲ ଏପ୍ରିଲ୍ ପହିଲାରେ ନୂତନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଆୟତନ (ଗଡ଼ଜାତ ବ୍ୟତୀତ)ହେଲା, ୩୨,୬୯୫ ବର୍ଗମାଇଲ ଆଉ ଜନସଂଖ୍ୟା ୮୦,୪୩,୬୮୬ । ନିମ୍ନୋକ୍ତ ବିବରଣୀ ଦ୍ରଷ୍ଟବ୍ୟ ।

| କ୍ରନଂ | ପ୍ରଦେଶ | ଆୟତନ(ବର୍ଗ.ମା) | ଜନସଂଖ୍ୟା |
|---|---|---|---|
| ୧ | ମାଡ୍ରାସ | ୧୭,୪୦୦ | ୨୫,୫୨,୮୭୪ |
| ୨ | ମଧ୍ୟପ୍ରଦେଶ | ୧,୫୮୯ | ୧,୮୪,୬୬୫ |
| ୩ | ବିହାର ଓ ଓଡ଼ିଶା | ୧୩,୭୦୬ | ୫୩,୦୬,୧୪୭ |
| | ମୋଟ | ୩୨,୬୯୫ | ୮୦,୪୩,୬୮୬ |

ପ୍ରତ୍ୟେକ ଓଡ଼ିଆ ପ୍ରଗାଢ଼ ହୃଦୟବତ୍ତା ସହିତ ଅବହିତ ହେବା ଆବଶ୍ୟକ ଯେ ୧୯୩୬ ସାଲରେ ଓଡ଼ିଶା ପ୍ରଦେଶ ଗଠିତ ହୋଇ ନଥିଲେ, ପରବର୍ତ୍ତୀ କାଳରେ ୧୯୩୯ ସାଲରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରାରମ୍ଭ ଯୋଗୁଁ କିମ୍ବା ୧୯୪୨ର ଭାରତଛାଡ଼ ଆନ୍ଦୋଳନ ଯୋଗୁଁ ଓଡ଼ିଶା ପ୍ରଦେଶ ଗଠନର କୌଣସି ସମ୍ଭାବନା ନଥିଲା । ଓଡ଼ିଶା ପ୍ରଦେଶ ଗଠିତ ହୋଇ ନଥିଲେ, ସ୍ୱାଧୀନ ଭାରତର ସଂବିଧାନ ପ୍ରସ୍ତୁତି କାଳରେ ବିହାରୀ ନେତୃବର୍ଗଙ୍କର ଅଖଣ୍ଡ ପ୍ରତାପ ଯୋଗୁଁ ବିହାର ଓଡ଼ିଶା ପ୍ରଦେଶର ପାଞ୍ଚଗୋଟି ଡିଭିଜନରେ ଓଡ଼ିଶା ପଞ୍ଚମ ଡିଭିଜନ ଥିବାରୁ, ବିହାର ଓ ଓଡ଼ିଶା ନାମରୁ ଓଡ଼ିଶା ଶବ୍ଦକୁ ଚିରକାଳ ଲୋପ କରି ଦିଆଯାଇ ଓଡ଼ିଆଭାଷୀ ଅଞ୍ଚଳକୁ ବିହାର ପ୍ରଦେଶରେ

କବଳିତ କରି ରଖାଯାଇପାରିଥାନ୍ତା । ଏହି କ୍ଷେତ୍ରରେ ବିହାରର କିଛି ନେତୃବର୍ଗଙ୍କର ଚକ୍ରାନ୍ତର ବହୁଳ ପ୍ରମାଣ ରହିଛି । ସେହିପରି ସ୍ୱାଧୀନତା ପ୍ରାପ୍ତିବେଳକୁ ଓଡ଼ିଶା ଓ ଛତିଶିଗଡ଼ର ଗଡ଼ଜାତମାନେ ମିଶି ପୂର୍ବାଞ୍ଚଳ ଦେଶୀୟ ଗଡ଼ଜାତ ସଂଘ ଗଠିତ କରିଥିବାରୁ ଅବଶେଷରେ ତାହା କିଭଳି ପରିସ୍ଥିତିରେ ପହଞ୍ଚିଥାନ୍ତା ତାହା ମଧ୍ୟ ଅଚିନ୍ତନୀୟ । ଶେଷରେ ଓଡ଼ିଆଭାଷୀ ଅଞ୍ଚଳ ସବୁ ବିଘଟନ ଆଉ ବିଭାଜନ ପରିସ୍ଥିତି ମଧ୍ୟରେ କ୍ରମଶଃ ନିଶ୍ଚିହ୍ନ ସ୍ଥିତିକୁ ପ୍ରାପ୍ତ ହୋଇଥାନ୍ତା ।

ବିଂଶ ଶତାବ୍ଦୀର ଶେଷ ବେଳକୁ ୨୦୦୧ ସାଲରେ ଓଡ଼ିଆଭାଷୀ ବ୍ୟକ୍ତିମାନଙ୍କର ସଂଖ୍ୟା ଶତକଡ଼ା ହାରରେ, ୧୯୩୧ ସାଲର ତୁଳନାରେ ପ୍ରାୟ ରହିଛି ଅପରିବର୍ତ୍ତିତ । ନୂତନ ଓଡ଼ିଶା ପ୍ରଦେଶ ସ୍ଥାପନାବେଳକୁ ଓଡ଼ିଆଭାଷୀ ଜନସଂଖ୍ୟା ନବମ ସ୍ଥାନରେ ରହିଥିଲା ବେଳେ, ବିଂଶ ଶତାବ୍ଦୀ ଶେଷବେଳକୁ ଦେଶର ଓଡ଼ିଆଭାଷୀ ଜନସଂଖ୍ୟା ପ୍ରାୟ ଦଶମ ସ୍ଥାନରେ ରହିଛି । ତାହା ଶତକଡ଼ା ହିସାବରେ ପ୍ରଦତ୍ତ କରାଯାଉଛି ।

(୧) ହିନ୍ଦୀ-୪୦.୨୨%, (୨)ବଂଗାଳୀ-୮.୩୦%, (୩)ତେଲୁଗୁ-୭.୮୭%, (୪) ମରାଠୀ-୪.୮୫%, (୫) ତାମିଲ୍-୬.୩୨%, (୬) ଉର୍ଦ୍ଦୁ-୬.୧୮%, (୭) ଗୁଜୁରାଟୀ-୪.୮୫%, (୮) କନ୍ନଡ଼-୩.୯୧%, (୯) ମାଲାୟଲମ୍-୩.୬୨%, (୧୦) ଓଡ଼ିଆ ୩.୩୫%, (୧୧) ପଞ୍ଜାବୀ-୨.୭୯%

ଏହା ସମସ୍ତ ବିସ୍ମୟ ମଧ୍ୟରେ ସବୁଠାରୁ ବିସ୍ମୟାତୀତ ବିସ୍ମୟ ଯେ ପରାଧୀନ ଭାରତରେ, ଓଡ଼ିଆଭାଷୀ ଜନସଂଖ୍ୟା, ଅନ୍ୟଭାଷୀ ସଂଖ୍ୟାଙ୍କ ତୁଳନାରେ ଦଶମ ସ୍ଥାନରେ ରହିଥିଲା ବେଳେ ୧୯୩୬ ସାଲରେ ଓଡ଼ିଶା ପ୍ରଥମ ଭାଷାଭିତ୍ତିକ ରାଜ୍ୟର ମାନ୍ୟତା ପାଇ ପ୍ରତିଷ୍ଠିତ ହୋଇଥିଲା । ଓଡ଼ିଆଭାଷୀ ସଂଖ୍ୟାଠାରୁ ତେଲୁଗୁ, ମରାଠୀ, ତାମିଲ, ଗୁଜୁରାଟୀ, କନ୍ନଡ଼ ଆଉ ମାଲାୟଲମ୍ଭାଷୀ ଜନସଂଖ୍ୟା ବହୁପରିମାଣରେ ଅଧିକ ହୋଇଥିଲେ ମଧ୍ୟ, ସେମାନଙ୍କଦ୍ୱାରା ଅଧ୍ୟୁଷିତ ରାଜ୍ୟ ଆନ୍ଧ୍ର, ମହାରାଷ୍ଟ୍ର, ତାମିଲ୍ନାଡୁ, କର୍ଣ୍ଣାଟକ ଆଉ କେରଳ ଏପରିକି ପଞ୍ଜାବ ରାଜ୍ୟ ମଧ୍ୟ ସ୍ୱାଧୀନତା ପ୍ରାପ୍ତିର ବହୁ ବର୍ଷ ପରେ ସ୍ଥାପିତ ହୋଇଥିଲା । ଏହାହିଁ ଦେଶ ମିଶ୍ରଣ ନେତୃବର୍ଗଙ୍କର ଅଦ୍ଭୁତ ପରାକାଷ୍ଠା, ଯୁଗୋପଯୋଗୀ ସାମର୍ଥ୍ୟ, ଗରିମାଦୀପ୍ତ ନେତୃତ୍ୱକୁ ପ୍ରତିପାଦନ କରେ ।

ମୁଖ୍ୟତଃ ମଧୁସୂଦନ ଦାସ, ପାରଳା ମହାରାଜା, ଧରଣୀଧର ମିଶ୍ର ଆଦି ବହୁ ଉତ୍ସର୍ଗୀକୃତ ଗରିମାମୟ ନେତୃପୁରୁଷଙ୍କର ସମନ୍ୱିତ ଉଦ୍ୟମ ଯୋଗୁଁ ବିଭିନ୍ନ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣରେ ୧୯୩୬ ସାଲରେ ଯେଉଁ ଓଡ଼ିଶା ପ୍ରଦେଶ ସୃଷ୍ଟିହେଲା, ତାହାରି ଫଳରେ ଏହି ପ୍ରଦେଶ ବିପୁଳ ଖଣି, ଜଳ, ଅରଣ୍ୟ ଆଦି ପ୍ରାକୃତିକ ସମ୍ପଦର ଅଧିକାରୀ ହୋଇପାରିଲା । ସେହି ଉଦ୍ଦୀପ୍ତ ନେତୃବର୍ଗଙ୍କର ଅଧିନାୟକତ୍ୱରେ ସଂଚାଳିତ ତାତ୍ପର୍ଯ୍ୟପୂର୍ଣ୍ଣ ଦେଶ ମିଶ୍ରଣର ପ୍ରକ୍ରିୟା ଯୋଗୁଁ ରତ୍ନଗର୍ଭା ଓଡ଼ିଶାର ଭୂମିତଳେ ଭାରତର ସର୍ବାଧିକ ପରିମାଣର ବକ୍ସାଇଟ୍, ମାଙ୍ଗାନିଜ୍, କୋଇଲା ଆଉ ଲୁହାପଥର ଗଚ୍ଛିତ ହୋଇ ରହିଛି ।





ଜାତୀୟ ଗୌରବ ମଧୁସୂଦନ ଦାସ



ବ୍ୟାସକବି ଫକୀରମୋହନ



କବିବର ରାଧାନାଥ ରାୟ



ସ୍ୱଭାବକବି ଗଙ୍ଗାଧର ମେହେର



ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ



ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ



ଉତ୍କଳମଣି ଗୋପବନ୍ଧୁ ଦାସ



ପଣ୍ଡିତ ନୀଳକଣ୍ଠ ଦାସ

# ମାତୃଭାଷା ଆଉ ମାତୃଭୂମି

ନୂତନ ସହସ୍ରାବ୍ଦର ପ୍ରାରମ୍ଭ ବର୍ଷରେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ ପାଳିତ ହୋଇଯାଇଛି ଜାତିସଂଘର ଆବାହକତ୍ୱରେ ସାରା ବିଶ୍ୱରେ 'ମାତୃଭାଷା' ଦିବସ ୨୦୦୦ ସାଲର ଫେବ୍ରୁଆରି ୨୧ ତାରିଖରେ ।

ଏହି ଉପଲକ୍ଷେ, ଆମର ପ୍ରତିବେଶୀ ରାଜ୍ୟ ପଶ୍ଚିମ ବଙ୍ଗ ଆଉ ଆନ୍ତର୍ଜାତିକ ସୀମାରେଖା ସେପାରିର ସମଗ୍ର ବାଂଲା ଦେଶକୁ ଆବରିତ କରି କଲିକତା ଆଉ ଢ଼ାକାରେ ଏକ ସମୟରେ ବାଜି ଉଠିଥିଲା ଐକ୍ୟତାନିକ ମୂର୍ଚ୍ଛନା, ଭ୍ରାତୃତ୍ୱବୋଧର ଉଦ୍‌ଘୋଷଣାକରି, ଦୁଇଟି ଅଂଚଳ ମଧ୍ୟରେ ବହୁ ବିଭେଦ, ପ୍ରତିବନ୍ଧକ ଆଉ ଅନ୍ତରାୟ ମଧ୍ୟରେ । ଏହି ସମୟକୁ ଅତିକ୍ରମ କରି, ଆନ୍ତର୍ଜାତିକ ସୀମାରେଖାର ଉଭୟ ପାର୍ଶ୍ୱରେ ସେଦିନ ଏହି ଆହ୍ୱାନରେ ସମ୍ମିଳିତ ହୋଇଥିଲେ ୨୨କୋଟି ବଙ୍ଗଳାଭାଷୀ ଜନସଂପ୍ରଦାୟ, ମାନସିକ ସମନ୍ୱୟତାର ନିବିଡ଼ ବନ୍ଧନରେ- ଯେପରି ମାତୃଭାଷା ହିଁ ଥିଲା ସେମାନଙ୍କର ଏକମାତ୍ର ପରିଚୟ । ସେହି ମାତୃଭାଷାର ସମସ୍ତ ଆଞ୍ଚଳିକତା ଓ ତାରତମ୍ୟ ସତ୍ତ୍ୱେ ସବୁରି ଉର୍ଦ୍ଧ୍ୱରେ ଗୌରବର ଦୀପ୍ତିରେ ଯେପରି ଦଣ୍ଡାୟମାନ ହୋଇ ରହିଥିଲା ବଙ୍ଗଳା ଭାଷା । ୧୯୫୨ ସାଲର ଫେବ୍ରୁଆରି ୨୧ ତାରିଖଟି ଥିଲା, ବଳିଦାନର ରକ୍ତମୁଖା ଦିବସ ଯେଉଁଦିନ ମାତୃଭାଷାର ସୁରକ୍ଷା ଲାଗି ଯୁଝାଯାଇଥିଲା ଦୁର୍ଦ୍ଦମନୀୟ ସଂଗ୍ରାମ ବାଂଲାଦେଶରେ । ଏହି ଅବିସ୍ମରଣୀୟ ଦିବସର ସ୍ମୃତିକୁ ଉଜାଗର ରଖିବାପାଇଁ ବାଂଲାଦେଶର ପ୍ରଧାନମନ୍ତ୍ରୀ ମହିୟସୀ ହାସିନାଙ୍କର ଆବେଦନରେ ପାଳିତ ହୋଇଥିଲା ମାତୃଭାଷାର ଦିବସ ସମଗ୍ର ବିଶ୍ୱରେ ଜାତିସଂଘର ଆହ୍ୱାନରେ ।

ସ୍ୱାଧୀନତାର ବହୁ ପରବର୍ତ୍ତୀ କାଳରେ ୧୯୭୧ ସାଲରେ ବାଂଲାଦେଶ ଜନ୍ମଲାଭ କରିଥିଲା, ମାତ୍ର ଏହାର ସଂଯୋଜନାର ଭ୍ରୂଣ ସଂସ୍ଥାପିତ ହୋଇଥିଲା ୧୯୫୨ ସାଲର ଫେବ୍ରୁଆରି ୨୧ ତାରିଖରେ । ତାହାରି ସାକ୍ଷ୍ୟ ବହନ କରେ ଇତିହାସର ବହୁ ବିରଳ ପୃଷ୍ଠା ।

୧୯୪୭ ସାଲର ଅଗଷ୍ଟ ୧୪ ତାରିଖରେ ଭାରତର ବିଭାଜନ ପରେ ସୃଷ୍ଟି ହୋଇଥିଲା ପାକିସ୍ତାନ । ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପରେ ପାକିସ୍ତାନର ଉର୍ଦ୍ଦୁ ଆଉ ଇଂରାଜୀକୁ ରାଷ୍ଟ୍ରଭାଷା

ରୂପେ ଗ୍ରହଣ କରାଯାଇଥିଲା । ମାତ୍ର ୧୯୪୮ ସାଲରେ ଜଣେ ବଂଗଳାଭାଷୀ ହିନ୍ଦୁ ରାଷ୍ଟ୍ରୀୟ ବିଧାନ ସଭାରେ ଇଂରାଜୀ ଆଉ ଉର୍ଦ୍ଦୁ ସହିତ ବଂଗଳା ଭାଷାକୁ ରାଷ୍ଟ୍ରୀୟଭାଷା ରୂପେ ଗ୍ରହଣ କରିବାପାଇଁ ପ୍ରସ୍ତାବ ଆଗତ କରିଥିଲେ । ମାତ୍ର ଏହାର ପ୍ରତିକ୍ରିୟା ଥିଲା କି ଭୟାବହ, ସେ ଯୁଗରେ ପାକିସ୍ତାନର ପରିପ୍ରେକ୍ଷୀରେ ।

୧୯୪୮ ସାଲର ଫେବୃଆରି ମାସରେ ଏହି ପ୍ରସ୍ତାବ ଆଗତ ହେବା ସଂଗେ ସଂଗେ ଦୃଢ଼ ପ୍ରତିବାଦ ଜଣାଇ ପାକିସ୍ତାନର ପ୍ରଧାନମନ୍ତ୍ରୀ ଲିଆକତ ଅଲ୍ଲୀ ଖାଁ ତୀବ୍ର ବିଦ୍ୱେଷଭରା କଣ୍ଠରେ କହିଲେ, ''ପାକିସ୍ତାନର ସୃଷ୍ଟି ଲାଗି ଯେଉଁ ଶହଶହ ବର୍ଷ ଲାଗିଥିଲା, ସେହି ସଂଗ୍ରାମୀମାନଙ୍କର ଭାଷା ଉର୍ଦ୍ଦୁ । ଏହି ପାକିସ୍ତାନରେ ଗୋଟିଏ ମାତ୍ର ରାଷ୍ଟ୍ର ଭାଷା ରହିବ । ତାହା ଉର୍ଦ୍ଦୁ ବିନା କିଛି ହୋଇ ନପାରେ ।''

ଠିକ୍ ଏହାର ଅବ୍ୟବହିତ ପରେ ପାକିସ୍ତାନର ନିର୍ମାତା ତଥା ରାଷ୍ଟ୍ରପତି, କ୍ୟୁଆଦ ଆଜଦ୍ ଜିନ୍ନା ତୀବ୍ର ମନ୍ତବ୍ୟ ପ୍ରକାଶ କରି କହିଥିଲେ, ''ମୁଁ ଏ କ୍ଷେତ୍ରରେ ପରିଷ୍କାର କରି କହିଦେବାକୁ ଚାହେଁ ଯେ, ପାକିସ୍ତାନର ରାଷ୍ଟ୍ର ଭାଷା କେବଳ ଉର୍ଦ୍ଦୁ । ଯେଉଁମାନେ ଏ କ୍ଷେତ୍ରରେ ସଂଶୟ ସୃଷ୍ଟି କରୁଛନ୍ତି, ସେମାନେ ଏ ଦେଶର ଶତ୍ରୁ ।''

ଏହି ସମସ୍ତ ବକ୍ତବ୍ୟରେ ସତ୍ୟର ଅପଳାପ ହିଁ କରାଯାଇଥିଲା । ସେତେବେଳେ ଧରି ନିଆଯାଇଥିଲା, ପ୍ରତ୍ୟେକ ପାକିସ୍ତାନୀ ମୁସଲମାନଙ୍କର ଭାଷା ହେଉଛି ଉର୍ଦ୍ଦୁ । ବାସ୍ତବ କ୍ଷେତ୍ରରେ ଏହାର ସ୍ଥିତି ସଂପୂର୍ଣ୍ଣ ଅଲଗା ଥିଲା । ପୂର୍ବ ପାକିସ୍ତାନରେ ସଂଖ୍ୟାଧିକ ମୁସଲମାନମାନଙ୍କର ମାତୃଭାଷା ଉର୍ଦ୍ଦୁ ନୁହେଁ । ତାହା ଥିଲା ମାତୃ ସ୍ତନ୍ୟରୁ ଉତ୍ତରିତ ଦୁଗ୍ଧ ଭଳି ମାଆ କଣ୍ଠର ଭାଷା-ବଂଗଳା । ଢାକାରେ ଉଚ୍ଚାରିତ ବଙ୍ଗଳା ଆଉ କଲିକତାରେ କୁହାଯାଉଥିବା ବଙ୍ଗଳା ମଧ୍ୟରେ ଆଙ୍ଗିକରେ ବହୁ ବିଭେଦତା, ଉଚ୍ଚାରଣ ଆଉ ପ୍ରକାଶଭଂଗୀରେ ତାରତମ୍ୟ ସତ୍ତ୍ୱେ ପୂର୍ବ ପାକିସ୍ତାନ ଜନଗୋଷ୍ଠୀର ଭାଷା ଥିଲା ବଂଗଳା ।

ସେତେବେଳେ ସମଗ୍ର ପୂର୍ବ ଆଉ ପଶ୍ଚିମ ପାକିସ୍ତାନରେ ପରିସଂଖ୍ୟାନ ଅନୁଯାୟୀ ମାତୃଭାଷାର ଭିତ୍ତି ଉପରେ ଜନ ସଂଖ୍ୟାର ବିନ୍ୟାସ ଥିଲା ଏହିଭଳି । ବଙ୍ଗଳାଭାଷୀ- ୫୪.୮%, ପଞ୍ଜାବୀ-୨୮.୪%, ଉର୍ଦ୍ଦୁ-୭.୨୧%, ସିନ୍ଧୀ-୫.୮%, ଆଉ ଇଂରାଜୀ ୧.୧% ।

ସମଗ୍ର ପାକିସ୍ତାନରେ ଏହି ପରିସଂଖ୍ୟାନ ଭିତ୍ତିରେ ସର୍ବବୃହତ୍ ଗୋଷ୍ଠୀ ବଙ୍ଗଳା ଭାଷା କହୁଥିଲେ ମଧ୍ୟ ତାହା ରାଜ ଦରବାରର ସ୍ୱୀକୃତି ପାଇପାରି ନଥିଲା । ବଂଗଳା ଭାଷାକୁ ସଂସ୍ଥାପିତ କରିବା ପାଇଁ ଏକ ଚାପା ବିଦ୍ରୋହ ଯେପରି ସର୍ବତ୍ର ଗୁଞ୍ଜରିତ ହେଉଥିଲା, ଚାରିଆଡ଼େ ଛାଇ ଯାଇଥିଲା ଏକ ଅସନ୍ତୋଷ । ଏକ ବିଷାଦଗ୍ରସ୍ତ ଅନ୍ତର୍ଦାହର ଶାଣିତ ଜ୍ୱାଳା ଯେପରି ଆକ୍ରାନ୍ତ କରି ରଖିଥିଲା ପୂର୍ବ ପାକିସ୍ତାନକୁ । ଏହିଭଳି କଣ୍ଟାଗ୍ରତ ପରିସ୍ଥିତିରେ ସୁଦୀର୍ଘ ଚାରୋଟି ବର୍ଷର ଭାରାକ୍ରାନ୍ତ ସମୟ ବିତିଗଲା ।

ସ୍ୱାଧୀନତା ପ୍ରାପ୍ତି ପରେ ପୂର୍ବ ପାକିସ୍ତାନର ପ୍ରଥମ ବଂଗଳାଭାଷୀ ମୁଖ୍ୟମନ୍ତ୍ରୀ ଖ୍ୱାଜା ନିଜାମୁଦ୍ଦିନ୍, ୧୯୫୨ ସାଲରେ ସମଗ୍ର ପାକିସ୍ତାନର ପ୍ରଧାନ ମନ୍ତ୍ରୀ ପଦରେ ଅଧିଷ୍ଠିତ ଥିଲେ । ୧୯୫୨ ସାଲର

ଫେବ୍ରୁଆରି ୨୧ ତାରିଖରେ ପ୍ରଧାନମନ୍ତ୍ରୀ ଖ୍ୱାଜା ନିଜାମୁଦ୍ଦିନ୍ ଢ଼ାକା ବିଶ୍ୱବିଦ୍ୟାଳୟରେ ଛାତ୍ର ସମାଜକୁ ଭାଷଣ ପ୍ରଦାନ କରିବାକୁ ଆସିଥିଲେ ଆଉ ଛାତ୍ର ସମାଜର ପ୍ରଧାନ ଦାବି ଥିଲା ସମଗ୍ର ପାକିସ୍ତାନ ଭୂଖଣ୍ଡର ପ୍ରଭାବଶାଳୀ ପ୍ରଧାନମନ୍ତ୍ରୀ ଖ୍ୱାଜା ନିଜାମୁଦ୍ଦିନ୍‌ଙ୍କ ପାଖେ ବଙ୍ଗଳାକୁ ଅନ୍ୟତମ ରାଷ୍ଟ୍ରଭାଷା ରୂପେ ସ୍ୱୀକୃତି ଦେବାପାଇଁ । ସେହି ପ୍ରଧାନମନ୍ତ୍ରୀଙ୍କଠାରୁ ଏକ ଐତିହାସିକ ଘୋଷଣାର ପ୍ରତୀକ୍ଷାରେ କେବଳ ରହି ନଥିଲେ ଢ଼ାକା ବିଶ୍ୱବିଦ୍ୟାଳୟର ଛାତ୍ର ସମାଜ, ରହିଥିଲେ ସମଗ୍ର ପୂର୍ବ ପାକିସ୍ତାନର ଅଧିବାସୀ । ସମସ୍ତ ପରିସ୍ଥିତିରେ ଛାଇଯାଇଥିଲା ଏକ ଅପେକ୍ଷମାଣ ପ୍ରତ୍ୟାଶା ଏବଂ ତୀବ୍ର ଉତ୍କଣ୍ଠା, ଯାହା କିଛି ପରିମାଣରେ ବିସ୍ଫୋରକ ଅବସ୍ଥାରେ ପହଞ୍ଚିଥିଲା ।

ମାତ୍ର ପ୍ରଧାନମନ୍ତ୍ରୀଙ୍କ ଉଦ୍‌ଘୋଷଣାର ଅନ୍ତିମ ପଙ୍‌କ୍ତି ଥିଲା, ''ଚିରକାଳ ଲାଗି ସମସ୍ତ ପାକିସ୍ତାନରେ ଉର୍ଦ୍ଦୁଭାଷା ହିଁ ଏକମାତ୍ର ରାଷ୍ଟ୍ର ଭାଷା ରୂପେ ବ୍ୟବସ୍ଥିତ ରହିବ, ଯାହା ସବୁକାଳ ଲାଗି ରହିବ ଅପରିବର୍ତ୍ତନୀୟ ।''

ଉଦ୍‌ଘୋଷଣାର ସମାପ୍ତି ପୂର୍ବରୁ ପରିସ୍ଥିତି ଥିଲା ଅଗ୍ନିଗର୍ଭ ଆଉ ଜ୍ୱଳନଶୀଳ । ସେଥିରେ ଯେପରି ଅଗ୍ନି ସଂଯୋଗ ହେଲା ତତ୍‌କ୍ଷଣାତ୍ । ଏକ ବିରାଟ ଶୋଭାଯାତ୍ରା ସ୍ୱତଃ ଆୟୋଜିତ ହୋଇଗଲା ଢାକା ବିଶ୍ୱବିଦ୍ୟାଳୟରେ, ପ୍ରଧାନମନ୍ତ୍ରୀଙ୍କ ଘୋଷଣାର ତୀବ୍ର ପ୍ରତିକ୍ରିୟା ଜଣାଇ । ଢାକା ବିଶ୍ୱବିଦ୍ୟାଳୟ ପରିସର ଡେଇଁ ଛାତ୍ରସମାଜ ପହଞ୍ଚିଲେ ଜନପଦରେ ଆଉ ସମ୍ମୁଖୀନ ହେଲେ ପୁଲିସ୍‌ର ସଂଗିନ ଗୁଳିମାଡ଼ରେ । ରକ୍ତରଂଜିତ ହୋଇଗଲା ରାଜପଥ । ଅଗଣିତ ଛାତ୍ର ସହିଦ ହୋଇଗଲେ । ଇତିହାସର ପୃଷ୍ଠା ଲେଖାଗଲା ରକ୍ତରେ । ଜୀବନ୍ୟାସ ଦିଆଗଲା ଏକ ଗଣ ସଂଗ୍ରାମକୁ । ସେହି ୧୯୫୨ ସାଲ ଫେବ୍ରୁଆରି ୨୧ ତାରିଖରେ, ଯାହାର ଅନ୍ତିମ ପରିଣତିରେ ସୃଷ୍ଟି ହେଲା ବାଂଲାଦେଶ । ଭାଷାଭିତ୍ତିରେ ଆନ୍ତର୍ଜାତିକ କ୍ଷେତ୍ରରେ ଏହି ନୂତନ ଦେଶ ସୃଷ୍ଟି ହେଲା ।

ମୁସଲମାନ ଧର୍ମର ଭ୍ରାତୃତ୍ୱବୋଧ ଓ ସାଂପ୍ରଦାୟିକ ଆବେଦନ ସତ୍ତ୍ୱେ, ଭାଷାର ଆକର୍ଷଣ ଓ ଆହ୍ୱାନରେ ଗଢ଼ାଯାଇଥିଲା ବାଂଲାଦେଶ ।

ସ୍ୱାଧୀନତାର ପୂର୍ବବର୍ତ୍ତୀ ଭାରତରେ ଓଡ଼ିଆ ଭାଷାର ଆହ୍ୱାନକୁ ଆଧାର କରି ସୃଷ୍ଟି ହୋଇଥିଲା ପ୍ରଥମ ଭାଷାଭିତ୍ତିକ ରାଜ୍ୟ ଓଡ଼ିଶା । ଏହି ଓଡ଼ିଆ ଭାଷା ମଧ୍ୟ ଚକ୍ରାନ୍ତର ସମ୍ମୁଖୀନ ହୋଇଥିଲା ୧୮୯୫ ସାଲରେ ଯେତେବେଳେ ସମ୍ବଲପୁର ଅଞ୍ଚଳରେ ହିନ୍ଦୀଭାଷାକୁ ଲଦି ଦିଆଯାଇଥିଲା । ସେତେବେଳେ ଏହି ଭାଷା ସଂଗ୍ରାମର ଅନ୍ୟତମ ରଥୀ ସ୍ୱଭାବ କବି ଗଂଗାଧର ମେହେର ଲେଖିଥିଲେ-

''ନିଜ ଘରେ ବସି ନିର୍ବାସନ ଦୁଃଖ,
ଏ ଆମ କପାଳ ଲିଖନ''

ଅଥବା ପରବର୍ତ୍ତୀ କାଳରେ ଲେଖିଥିଲେ-

''ମାତୃଭୂମି ମାତୃ ଭାଷାର ମମତା ଯା ହୃଦେ ଜନମି ନାହିଁ,
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ।''

ତେଣୁ ବିଭାଜିତ ବିଖଣ୍ଡିତ ଓଡ଼ିଶା, ଯାହା ଚାରୋଟି ପ୍ରାନ୍ତରେ ଅବହେଳିତ ଉପାଙ୍ଗ ଭଳି ଝୁଲି ରହିଥିଲା ଅପାଙ୍‌କ୍ତେୟ ଭାବରେ, ସେହି ଓଡ଼ିଆଭାଷୀ ଜନସଂପ୍ରଦାୟପାଇଁ ସ୍ୱାଧୀନତାର ବହୁ ପୂର୍ବବର୍ତ୍ତୀ ଯୁଗରେ ସ୍ୱାଧୀନତା ଆନ୍ଦୋଳନ ଅପେକ୍ଷା ଭାଷାପାଇଁ ସଂଗ୍ରାମ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଅନ୍ୟଥା ଓଡ଼ିଆଭାଷୀ ଅଂଚଳରେ, ସ୍ୱାଧୀନତା ପୂର୍ବବର୍ତ୍ତୀ ଯୁଗରେ ଭାଷାର ସଂଗ୍ରାମ ବିନା, ସମସ୍ତ ଉଦ୍ୟମ ଯଦି ସ୍ୱାଧୀନତା ଆନ୍ଦୋଳନ ମଧ୍ୟରେ ସୀମିତ ରହିଥା'ନ୍ତା, ତା' ହେଲେ ଓଡ଼ିଶାର ସ୍ଥିତି ଓ ପରିଚୟ କେବଳ ହତାଶଭରା ପ୍ରଶ୍ନବାଚୀ ଚିହ୍ନରେ ପରିଣତ ହୋଇଥାନ୍ତା । ନିର୍ବିବାଦରେ ଓଡ଼ିଶାପାଇଁ ସ୍ୱାଧୀନତା ଆନ୍ଦୋଳନ ଅପେକ୍ଷା ଭାଷା ଆନ୍ଦୋଳନ ଥିଲା ତାତ୍ପର୍ଯ୍ୟପୂର୍ଣ୍ଣ ।

ଓଡ଼ିଶା ସୀମାନ୍ତର ମେଦିନୀପୁରଠାରୁ ଆରମ୍ଭ କରି ଉତ୍ତରର ହିମାଳୟ ସୀମାନ୍ତର ସିଲିଗୁଡ଼ି, ଦାର୍ଜିଲିଂ ଆଦି ନେଇ ପଶ୍ଚିମବଂଗର ସମସ୍ତ ଅଞ୍ଚଳ ଆଉ ବାଂଲଦେଶର ପରିବ୍ୟାପ୍ତ ସୀମା ଘେନି, ଏହି ସୁବିଶାଳ ଭୂଖଣ୍ଡରେ ବାସ କରୁଥିବା ୨୨ କୋଟି ଅଧିବାସୀ ନିଜକୁ ବଂଗାଳୀ ବୋଲି ଅଭିହିତ କରି ଏକ ଭାବଗତ ଏକତ୍ୱର ବନ୍ଧନରେ ବାନ୍ଧିହୋଇ ରହିଥିବା ବେଳେ ଓଡ଼ିଶାର ସାଢ଼େ ତିନିକୋଟି ଅଧିବାସୀଙ୍କ ମଧ୍ୟରେ ବିଭେଦର ସ୍ୱର ଗୁଞ୍ଜରିତ ହେବାକୁ ଲାଗିଲାଣି । ଏଥିପାଇଁ ବଂଗଳାଭାଷୀ ଅଧିବାସୀଙ୍କର ଆଦର୍ଶ କ'ଣ ସ୍ମରଣଯୋଗ୍ୟ ନୁହେଁ । କେବଳ ଏବେକାର ବାଂଲାଦେଶ ନୁହେଁ, ଧର୍ମ ସଂପ୍ରଦାୟ ଆଉ ବଂଗାଳୀ ଭାଷାର ତାରତମ୍ୟର ଆଧାରରେ ୧୯୦୫ ସାଲରେ ଯେଉଁ ବଂଗ ପ୍ରଦେଶର ବିଭାଜନ ହୋଇଥିଲା, ତାହାରି ବିରୁଦ୍ଧରେ ଶ୍ରୀଅରବିନ୍ଦଙ୍କର 'ବନ୍ଦେ ମାତରମ୍' ଆଉ ସୁରେନ୍ଦ୍ରନାଥଙ୍କର ସ୍ୱଦେଶୀ ଆନ୍ଦୋଳନ ଫଳରେ ବଂଗ ପ୍ରଦେଶ ପୁଣି ଏକତ୍ର ହୋଇ ଶକ୍ତିଶାଳୀ ରାଜ୍ୟରେ ପରିଣତ ହୋଇଥିଲା ।

ତେଣୁ ଅବଲୁପ୍ତିର ଚରମ ମୁହୂର୍ତ୍ତରେ ମାତୃଭାଷା ଆଉ ମାତୃଭୂମିର ପରମ ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ମଧୁସୂଦନ ଓଡ଼ିଶାର ନୂତନ ପରିଚୟ ପ୍ରଦାନ କରି ଏହାକୁ ଏକ ସଂସ୍କୃତି ସମ୍ପନ୍ନ ପ୍ରଦେଶରେ ପରିଣତ କରିଥିଲେ ।

ଏହି ପରିପ୍ରେକ୍ଷୀରେ ଏବେ ସ୍ମରଣରେ ଆସେ ଫକୀରମୋହନଙ୍କର ଆପ୍ତ ବଚନ-

''ମାତୃଭୂମି ମାତୃଭାଷା ଉଭୟେ ଜନନୀ<br>
ଭକ୍ତିଭରେ ସେବ ତାଙ୍କୁ ଦିବସ ରଜନୀ ।''



# ଓଡ଼ିଶାରେ ଗାନ୍ଧୀ

୧ꞏ ୧୯୨୧ ମାର୍ଚ୍ଚ ୨୩-୨୯

କଟକ, ଭଦ୍ରକ, ସତ୍ୟବାଦୀ, ପୁରୀ, ବ୍ରହ୍ମପୁର

୨ꞏ ୧୯୨୫ ଅଗଷ୍ଟ ୧୯-୨୦

କଟକ

୩ꞏ ୧୯୨୭ ଡିସେମ୍ବର ୪-୨୧

ବ୍ରହ୍ମପୁର, ଛତ୍ରପୁର, ବୋଲଗଡ, ବାଣପୁର, ଖୋର୍ଦ୍ଧା, ଜଟଣୀ, ପୁରୀ, ବାଲେଶ୍ୱର, ଭଦ୍ରକ, କଟକ

୪ꞏ ୧୯୨୭ ଡିସେମ୍ବର-୩୦

ରମ୍ଭା

୫ꞏ ୧୯୨୮ ଡିସେମ୍ବର ୨୨

ଝାରସୁଗୁଡ଼ା, ସମ୍ବଲପୁର (ସମ୍ବଲପୁରକୁ ଦିନିକିଆ ଗସ୍ତ)

୬ꞏ ୧୯୩୪ ମେ ୫ ଜୁନ୍-୬

ଝାରସୁଗୁଡ଼ା, ସମ୍ବଲପୁର, ଆଠମଲ୍ଲିକ, ଅନୁଗୁଳ, ହିନ୍ଦୋଳ, ମେରାମଣ୍ଡଳୀ, ପୁରୀ, ପୁରୀରୁ ପଦଯାତ୍ରା ହରେକୃଷ୍ଣପୁର, ଚନ୍ଦନପୁର, ବୀରଗୋବିନ୍ଦପୁର, ଦାଣ୍ଡମୁକୁନ୍ଦପୁର, ବାଲିଅନ୍ତା, ପିପିଲି, ବାଲକାଟି, ସତ୍ୟଭାମାପୁର, ତେଲେଙ୍ଗାପେଣ୍ଠ, କାଜିପାଟଣା, କଟକ (୧୯୩୪ ମେ ୨୧ ପଦଯାତ୍ରାର ଦ୍ୱିତୀୟ ପର୍ଯ୍ୟାୟ) ବୈରୀ, ଚମ୍ପାପୁର ହାଟ, ଭେଡ଼ା, ଲକ୍ଷ୍ମଣପୁର, ଗୋପୀନାଥପୁର, ସତ୍ୟଭାମାପୁର, ବହୁକୁଦ, ଲକ୍ଷ୍ମୀନାରାୟଣପୁର, ଶିଶୁଆ, ପାଟପୁର, କେନ୍ଦୁପାଟଣା, ନିଶ୍ଚିନ୍ତକୋଇଲି, କାକଡିଆ, ସଲାର, ଭଗବତୀପୁର, କେନ୍ଦ୍ରାପଡ଼ା, ବାରିମୂଳ, ଇନ୍ଦୁପୁର, ଅଙ୍ଗେଇସପୁର, କଲ୍ୟାଣପୁର, କଳାମାଟିଆ, କାଇପଡ଼ା, ବରି, ସାହସପୁର, ନେଉଳା, ପୁରୁଷୋତ୍ତମପୁର, ବୁଢ଼ାଘାଟ, ଯାଜପୁର, ମଞ୍ଜୁରୀ, ତୋଡ଼ଙ୍ଗ, ଗରଦପୁର, ଭଦ୍ରକ, ମାର୍କୋଣା, ଖନ୍ତାପଡ଼ା, ସୋର, ବାଲେଶ୍ୱର, ହଳଦୀପଡ଼ା, ଅମର୍ଦା, ଜଳେଶ୍ୱର (ରେଳରେ)

୭ꞏ ୧୯୩୮ ମାର୍ଚ୍ଚ ୨୫-୩୧

ବେରବୋଇ (ଡେଲାଙ୍ଗ)- ଗାନ୍ଧୀ ସେବାସଂଘ ସମ୍ମିଳନୀ

୮ꞏ ୧୯୪୬ ଜାନୁଆରି ୨୦ (ରେଳରେ ଗୌହାଟୀରୁ ମାନ୍ଦ୍ରାଜ ଯିବାବେଳେ)

ବାଲଶ୍ୱର, ଭଦ୍ରକ, କଟକ, ବ୍ରହ୍ମପୁର

# ଗାନ୍ଧିଜୀଙ୍କ ପଥପ୍ରଦର୍ଶକ ମଧୁସୂଦନ ଦାସ

ମହାତ୍ମାଗାନ୍ଧୀ ଓ ମଧୁସୂଦନ ଦାସଙ୍କ ମଧ୍ୟରେ ନିବିଡ଼ ଆନ୍ତରିକତା ସ୍ଥାପିତ ହୋଇଥିଲା । ଋଷି ଲିଓ ଟଲଷ୍ଟୟ ଅଥବା ଗୋପାଳକୃଷ୍ଣ ଗୋଖ୍‌ଲେଙ୍କ ପରି ଅନ୍ୟ ଏକ ପର୍ଯ୍ୟାୟରେ ଜାତିପ୍ରାଣ ମଧୁସୂଦନ ମହାତ୍ମାଗାନ୍ଧୀଙ୍କ ଜୀବନରେ ପଥପ୍ରଦର୍ଶକର ଭୂମିକାରେ କେବଳ ଅବତୀର୍ଣ୍ଣ ହୋଇ ନଥିଲେ, ୧୯୨୪ ସାଲରୁ ପ୍ରାରମ୍ଭ କରି, ସ୍ୱଦେଶୀ ଶିଳ୍ପ ଆନ୍ଦୋଳନ, ହରିଜନ ସଂସ୍ଥାପନ, ଗ୍ରାମ୍ୟ ଉନ୍ନୟନ, ମୌଳିକ ଶିକ୍ଷାର ପ୍ରବର୍ତ୍ତନ ଆଦି କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କର ଚିନ୍ତାଧାରାକୁ ଗଭୀର ଭାବେ ପ୍ରଭାବିତ ଓ ଆଲୋଡ଼ିତ କରି ରଖିଥିଲେ ।

ମହାତ୍ମାଗାନ୍ଧୀଙ୍କ ସହିତ ସ୍ୱଳ୍ପକାଳ ଲାଗି ମଧୁସୂଦନଙ୍କ ସାକ୍ଷାତ ଘଟିଥିଲା ୧୯୨୦ ସାଲରେ । ପରବର୍ତ୍ତୀ ସାକ୍ଷାତ୍ କେବେ ଘଟିଥିଲା, ତାହାର ବିବରଣୀ ଜଣାପଡ଼ିନଥିଲେ ମଧ୍ୟ ଶୈଳବାଳାଙ୍କ ଆତ୍ମଚରିତରୁ ଜଣାଯାଏ ଯେ, ୧୯୨୪ ରେ ମଧୁସୂଦନ ସାବରମତୀ ଆଶ୍ରମକୁ ଯାଇ କିଛିକାଳ ଅବସ୍ଥାନ କରି ମହାତ୍ମାଗାନ୍ଧୀଙ୍କୁ ଗ୍ରାମ୍ୟ ତଥା ହରିଜନ ଉନ୍ନୟନର ବିଭିନ୍ନ ବିଷୟରେ ମାର୍ଗଦର୍ଶନ ଦେବା ସହିତ ଚମଡ଼ା ଓ ଅନ୍ୟାନ୍ୟ ଗ୍ରାମ୍ୟ ଶିଳ୍ପ ସଂପର୍କରେ ଅନୁଧ୍ୟାନ କରିବାପାଇଁ କଟକ ଆସିବା ସକାଶେ ନିମନ୍ତ୍ରଣ କରିଥିଲେ । ମଧୁବାବୁଙ୍କର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା, ମହାତ୍ମାଗାନ୍ଧୀଙ୍କର ପ୍ରଭାବଶାଳୀ ବ୍ୟକ୍ତିତ୍ୱ ମାଧ୍ୟମରେ ଉତ୍କଳ ଟ୍ୟାନେରିର ପୁନରୁଦ୍ଧାର । ଏହି ଅନୁରୋଧ ରକ୍ଷାକରି ମହାତ୍ମାଗାନ୍ଧୀ ୧୯ ଅଗଷ୍ଟ ୧୯୨୫ରେ କଟକ ଆସି ମଧୁସ୍ମୃତିରେ ଦୁଇଦିନ ଅବସ୍ଥାନ କରି ଉତ୍କଳ ଟ୍ୟାନେରି ପରିଦର୍ଶନ କରିଥିଲେ । ଶୈଳବାଳାଙ୍କର ଆତ୍ମଚରିତରୁ ଜଣାଯାଏ ଯେ, ୧୯୨୭ ଡିସେମ୍ବର ୧୮ ତାରିଖରୁ ୨୧ ତାରିଖ ପର୍ଯ୍ୟନ୍ତ ମହାତ୍ମାଗାନ୍ଧୀ ମଧୁସ୍ମୃତିରେ, ମଧୁସୂଦନଙ୍କ ସାନ୍ନିଧ୍ୟରେ ଅବସ୍ଥାନ କରିଥିଲେ । ଏହି ତଥ୍ୟ ବହୁକାଳ ଧରି ଅଜ୍ଞାତ ରହିଥିଲା ।

କେବଳ ସେତିକି ନୁହେଁ, ୧୯୨୫ରୁ ୧୯୩୮ ମଧ୍ୟରେ ବିଭିନ୍ନ ସଭା ସମ୍ମେଳନରେ, ଉଦ୍‌ଘାଟନୀ ମଂଚରେ, ସମ୍ବର୍ଦ୍ଧନା ସଭାରେ ତାଙ୍କର ନିଜସ୍ୱ ପତ୍ରିକା ୟଙ୍ଗ୍ ଇଣ୍ଡିଆ, ହରିଜନ, ନବଜୀବନ ଓ ହରିଜନ ବଂଧୁ ଆଦି ପ୍ରଖ୍ୟାତ ପତ୍ରିକାମାନଙ୍କରେ ପ୍ରକାଶିତ ବିଭିନ୍ନ ନିବନ୍ଧରେ ତଥା ହିନ୍ଦୁ ଆଉ

ବମ୍ବେର କ୍ରନିକାଲରେ ପ୍ରକାଶିତ ବିଭିନ୍ନ ଭାଷଣ ଓ ବକ୍ତବ୍ୟ ମାଧ୍ୟମରେ, ମହାତ୍ମାଗାନ୍ଧୀ ମଧୁସୂଦନଙ୍କ ପ୍ରତି ଯେଉଁ ଉଚ୍ଛ୍ୱସିତ ଆଉ ଆବେଗ ବିଜଡ଼ିତ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଚାଲିଥିଲେ, ତାହା ପ୍ରତି ଓଡ଼ିଶାର ପାଠକଶ୍ରେଣୀଙ୍କ ଦୃଷ୍ଟି ଆକର୍ଷଣ କରାଯାଇ ନାହିଁ । ଏହା ଏ ପର୍ଯ୍ୟନ୍ତ ରହିଯାଇଛି ଅଜ୍ଞାତ ।

ମଧୁସୂଦନ ପ୍ରଚଳିତ ଶିକ୍ଷାର ଦୃଢ଼ ବିରୋଧୀ ଥିଲେ ଏବଂ ବୃତ୍ତିଭିତ୍ତିକ ମୌଳିକ ଶିକ୍ଷାର ସମର୍ଥକ ଥିଲେ । ୧୮୯୭ ସାଲରୁ ସେ ପ୍ରାଥମିକ ସ୍କୁଲ୍‌ମାନଙ୍କରେ କୃଷି ଓ ଗ୍ରାମ୍ୟଶିଳ୍ପକୁ ଏକ ବାଧ୍ୟତାମୂଳକ ବିଷୟ ମଧ୍ୟରେ ଅନ୍ତର୍ଭୁକ୍ତ କରିବାପାଇଁ ବଂଗଳା ବ୍ୟବସ୍ଥାପକ ସଭାରେ ବାରଂବାର ଦାବି ଉପସ୍ଥାପନ କରିଥିଲେ। ଏ ସଂପର୍କରେ ୨ ଏପ୍ରିଲ୍ ୧୯୧୦ ରେ ବଂଗଳା ବ୍ୟବସ୍ଥାପକ ସଭା କକ୍ଷରେ ବିପୁଳ ହର୍ଷଧ୍ୱନି ମଧ୍ୟରେ ଏକ ଉଦ୍‌ବେଳିତ କଣ୍ଠରେ କହିଥିଲେ-

''ହେ ମହାଭାଗ ! ହେ ବିଶାରଦ ମଣ୍ଡଳି ! କିମ୍ବଦନ୍ତୀ କହେ ଯେ, ଯେତେବେଳେ କଳାପାହାଡ଼ ଧ୍ୱଂସଲୀଳା ସଂଗଠିତ କରିବାପାଇଁ ତାର ଅଭିଯାନ ଅବ୍ୟାହତ ରଖିଥିଲା, ତାହର ଭୀତିପ୍ରଦ ଆକ୍ରମଣାତ୍ମକ ଅଗ୍ରଗତିର ସୂଚନାପ୍ରାପ୍ତି ହେବା ମାତ୍ରେ ଓଡ଼ିଶାର ମନ୍ଦିର ଗାତ୍ରରେ ସ୍ଥାପିତ ମୂର୍ତ୍ତିମାନଙ୍କରୁ ଆତଙ୍କରେ ଶିହରିତ ହସ୍ତ ସବୁ ଖସିପଡୁଥିଲା । ସେହିପରି ବର୍ତ୍ତମାନର ପ୍ରଚଳିତ ଶିକ୍ଷା ଯେତେବେଳେ ଗ୍ରାମ ମଧ୍ୟରେ ପ୍ରବେଶ କରିବାର ଉପକ୍ରମ କରେ, ସେତେବେଳେ ଗ୍ରାମର କୁଶଳୀ କାରିଗରଙ୍କ ସୂକ୍ଷ୍ମକଳାରେ ପ୍ରଶିକ୍ଷିତ ହସ୍ତସବୁ ଆପେଆପେ ଖସିପଡୁଛି ।'' ଏ ଥିଲା ମଧୁସୂଦନଙ୍କର ଦିଗ୍ ଦର୍ଶନ, ଯାହା ଗଭୀର ଭାବେ ଆଚ୍ଛନ୍ନ କରିଥିଲା ମହାତ୍ମାଗାନ୍ଧୀଙ୍କୁ । ଶିକ୍ଷା ବୃତ୍ତିଭିତ୍ତିକ ହେବା ଆବଶ୍ୟକ, ଯାହା ଛାତ୍ରମାନଙ୍କୁ ସ୍ୱାବଲମ୍ବୀ କରିବା ସହିତ ଶିକ୍ଷାଦାନର ଖର୍ଚ୍ଚ ମଧ୍ୟ ସ୍ୱୟଂ ବହନ କରିବାକୁ ସକ୍ଷମ ହୋଇପାରିବ । ନବଜୀବନ ପତ୍ରିକାରେ ୨୩ ସେପ୍ଟେମ୍ବର ୧୯୨୮ରେ ଜାତୀୟ ସ୍କୁଲ୍ ସଂପର୍କରେ ମହାତ୍ମାଗାନ୍ଧୀ ଲେଖିଥିଲେ ଯେ, ଯେତେବେଳେ ଜଣେ ଛାତ୍ର କାରିଗରୀ ଶିଳ୍ପ ଶିକ୍ଷାକରେ ତାହାର ସଂଯୋଜନା ମଧ୍ୟରେ ବିଦ୍ୟାଳୟଟି ତାହାର ପରିଚୟ ପାଇଁ ଆର୍ଥିକ ସଂବଳ ସ୍ୱତଃ ସଂଗ୍ରହ କରିଥାଏ । ମଧୁସୂଦନ ଦାସ ଏହିଭଳି ଏକ ପ୍ରକଳ୍ପର ସଂଯୋଜନା କରି କଟକଠାରେ ଗୋଟିଏ ଟ୍ୟାନେରି ସ୍ଥାପନା କରିଥିଲେ । ଏହି ସଂଯୋଜନାର ଭିତ୍ତିଭୂମି ଅତ୍ୟନ୍ତ ଚମତ୍କାର ଥିଲା ।

୧୯୨୫ରେ କଟକଠାରେ ଉତ୍କଳ ଟ୍ୟାନେରି ପରିଦର୍ଶନ ପରେ ମହାତ୍ମାଗାନ୍ଧୀ ଏପରି ଅନୁପ୍ରାଣିତ ହୋଇଥିଲେ ଯେ, ୧୯୨୮ ସାଲରେ ସେ ସାବରମତି ଆଶ୍ରମରେ ଏକ ଟ୍ୟାନେରି ପ୍ରତିଷ୍ଠା କରିବା ପରେ ସବିଶେଷ ମାର୍ଗଦର୍ଶନ ଲାଭ କରିବାପାଇଁ ନିଜର ଗୁରୁ ସ୍ଥାନୀୟ ମଧୁସୂଦନ ଦାସଙ୍କ ପାଖକୁ ଏକ ଚିଠି, ମାର୍ଚ୍ଚ ୧୬ ତାରିଖ ୧୯୨୮ରେ ଲେଖିଥିଲେ । ଏହା ଯେପରି ପତ୍ରମାଧ୍ୟମରେ ଶିକ୍ଷାଲାଭର ଏକ ବିଧିବଦ୍ଧ କାର୍ଯ୍ୟକ୍ରମ ଥିଲା ।

ହଁ, ମହାତ୍ମାଗାନ୍ଧୀଙ୍କ ଜୀବନର ବହୁ ବିଭବ ଓ ବିଭାଗକୁ ପରିବ୍ୟାପ୍ତ କରି ଏକ ଆଲୋକବର୍ତ୍ତିକା ପରି ମାର୍ଗଦର୍ଶନ କରି ଛିଡ଼ା ହୋଇଥିଲେ ପ୍ରଜ୍ଞାପୁରୁଷ ମଧୁସୂଦନ ଦାସ । ତେଣୁ ଗାନ୍ଧିଜୀଙ୍କର ଚିନ୍ତାଧାରା ଓ କାର୍ଯ୍ୟକ୍ରମରେ ମଧୁସୂଦନଙ୍କ ପ୍ରତି ତାଙ୍କର ଶ୍ରଦ୍ଧାଂଜଳି ଅର୍ପଣ କରିଥିଲେ, ବହୁ ନିବନ୍ଧ, ବକ୍ତବ୍ୟ ଓ ରଚନା ମାଧ୍ୟମରେ ।



# ତଳିଆ ସମାଜ ନିଶ୍ଚେଷ୍ଟତା ଓ ମଧୁସୂଦନ

ମହାତ୍ମାଗାନ୍ଧୀଙ୍କର ହରିଜନ କର୍ମୀଙ୍କୁ ଉପଦେଶଃ- ''ତୁମେ ଚମଡ଼ା ପଦାର୍ଥ ସବୁ ଉତ୍ପାଦନ କରିବାକୁ ପରିକଳ୍ପନା କରିଅଛ । ମୁଁ ମଧ୍ୟ ଚମଡ଼ା କାର୍ଯ୍ୟ କରିବାକୁ ଖୁବ୍ ଭଲପାଏ । ତୁମେ ଏହାର ସମସ୍ତ କାର୍ଯ୍ୟ ମଧ୍ୟ ଶିଖିନାହଁ । ତୁମେ କେବଳ ଚପଲ (ଚଟି) ତିଆରି କରି ସନ୍ତୁଷ୍ଟ ହୁଅନାହିଁ । ତୁମକୁ ମଧ୍ୟ ଚମଡ଼ା କଷେଇକାର୍ଯ୍ୟ କରିବାକୁ ହେବ । ତୁମେ ଯଦି ଏହି କାର୍ଯ୍ୟରେ ଦକ୍ଷତା ହାସଲ କର, ତୁମର ଓ ମୋର କାର୍ଯ୍ୟ ସୁଗମ ହୋଇଯିବ । ଆମ୍ଭମାନଙ୍କୁ ବଡ଼ବଡ଼ କାରଖାନା ସବୁ ସ୍ଥାପନା କରିବାକୁ ପଡ଼ିବ ନାହିଁ । ତୁମର ମଧ୍ୟ ଉଦ୍ୟମ କରିବା ଉଚିତ, ଯେପରି ଗାଁ ଗହଳରେ ଉନ୍ନତ ଧରଣର ଚମଡ଼ା- କଷେଇ ଶିଳ୍ପ ସ୍ଥାପନ କରିବା ସଂଭବପର ହୋଇପାରିବ । ମଧୁସୂଦନ ଦାସ କଣ କରୁଥିଲେ ? ସେ ଉତ୍କଳର ସମସ୍ତ ଚମଡ଼ାକଷେଇ କାରିଗରଙ୍କୁ ଏକତ୍ର କରିଥିଲେ । ସେମାନେ କିପରି ଚମଡ଼ାକଷେଇ କାର୍ଯ୍ୟ କରୁଥିଲେ, ତାହା ସେ ଅଧ୍ୟୟନ କରିଥିଲେ । ମାତ୍ର ଏଥିରେ ସେ ସନ୍ତୁଷ୍ଟ ହୋଇ ନଥିଲେ । ତେଣୁ ସେ ଜର୍ମାନ ଗଲେ ଓ ସେଠାରେ ଚମଡ଼ା ଶିଳ୍ପ ବିଷୟରେ ଗଭୀର ଅନୁଧ୍ୟାନ କଲେ । ସେ କ୍ରମେ ଜଣେ ଜର୍ମାନୀ ଚମଡ଼ା ବିଶାରଦଙ୍କୁ ଆଣି ଗୋଟିଏ ଚମଡ଼ା କାରଖାନା ପ୍ରତିଷ୍ଠା କରିଥିଲେ । ମାତ୍ର ଏହି କାରଖାନା ମଧୁସୂଦନ ଦାସଙ୍କର ଅଧୀନରେ ନାହିଁ । ମୁଁ ତାହାର ବର୍ତ୍ତମାନର ସ୍ଥିତି ଜାଣେ ନାହିଁ । ବହୁତ ହରିଜନ ମଧୁସୂଦନ ଦାସଙ୍କର ତତ୍ତ୍ୱାବଧାନରେ ରହି ଏହି ଚମଡ଼ାଶିଳ୍ପର କାର୍ଯ୍ୟ ସଫଳତାର ସହ ଶିକ୍ଷା କରିଥିଲେ । ମଧୁସୂଦନ ଦାସଙ୍କ ପରି ତୁମେ ମଧ୍ୟ ଏହି କାର୍ଯ୍ୟରେ ପାରଦର୍ଶିତା ଲାଭକର ।'' (ହରିଜନ ୩.୯.୧୯୩୩) । ମହାତ୍ମାଗାନ୍ଧୀ, ମଧୁସୂଦନ ଦାସଙ୍କ ଜୀବଦ୍ଦଶାରେ, ଓଡ଼ିଶାରେ ହରିଜନ ପଦଯାତ୍ରା ସମାହିତ କରିବାପାଇଁ ମନସ୍ଥ କରିଥିଲେ । ମାତ୍ର ମଧୁସୂଦନ ଦାସଙ୍କର ମହାପ୍ରୟାଣ ଘଟିଥିଲା ତା ୪.୨.୧୯୩୪ରେ । ଏହାର କିଛିକାଳ ପରେ ମହାତ୍ମାଗାନ୍ଧୀ ୧୯୩୪ ମସିହା ମେ ମାସ ୮ରୁ ଜୁନ୍ ମାସ ୮ ପର୍ଯ୍ୟନ୍ତ ଓଡ଼ିଶାରେ ହରିଜନ ପଦଯାତ୍ରା ସଂଚାଳିତ କରିବା ଅବକାଶରେ ତା ୨୩.୫.୧୯୩୪ରେ ମଧୁସୂଦନ ଦାସଙ୍କର ଜନ୍ମପୀଠ ସତ୍ୟଭାମାପୁରଠାରେ ଗୋଟିଏ



ସତ୍ୟଭାମାପୁର ଯିବା ରାସ୍ତାରେ ମହାତ୍ମାଗାନ୍ଧୀଙ୍କ ହରିଜନ ବସ୍ତି ପରିଦର୍ଶନ

ରାତ୍ରିଯାପନ କରି ସେ ମହାନ ଆତ୍ମାଙ୍କ ପ୍ରତି ତାଙ୍କର ଭକ୍ତି ଅର୍ଘ୍ୟ ଅର୍ପଣ କରିଥିଲେ । ଏହି ଅବିସ୍ମରଣୀୟ ପଦଯାତ୍ରାର ଅବ୍ୟବହିତ ପରେ ତା ୭.୯.୧୯୩୪ରେ ହରିଜନ ପତ୍ରିକାରେ ମଧୁସୂଦନ ଦାସଙ୍କର ଅମ୍ଳାନ ସ୍ମୃତିବହନ କରୁଥିବା ନିମ୍ନଲିଖିତ ପ୍ରବନ୍ଧଟି ଲେଖିଥିଲେ-

"ଗୋଟିଏ ଅତ୍ୟନ୍ତ ମନ୍ଦ ସମୟ ଏହି ଦେଶକୁ ଆଚ୍ଛନ୍ନ କରି ରଖିଥିଲା, ଯେତେବେଳେ ଶ୍ରମକୁ କେବଳ ଘୃଣା କରାଗଲା ନାହିଁ, ଏହାକୁ ମଧ୍ୟ ହତାଦର କରାଗଲା । ଦେଶର କୋଟି କୋଟି ଲୋକ ଯେଉଁମାନେ ଧରିତ୍ରୀ ସ୍ୱରୂପ ତାତ୍ପର୍ଯ୍ୟପୂର୍ଣ୍ଣ ଓ ମହୀୟାନ , ଯାହାଙ୍କର ଶ୍ରମ ଉପରେ ଏହି ଦେଶ ତିଷ୍ଠି ରହିଛି, ସେମାନଙ୍କୁ ନିମ୍ନବର୍ଗ ବୋଲି ଚିହ୍ନଟ କରାଗଲା । ଦେଶର କ୍ଷୁଦ୍ରାତିକ୍ଷୁଦ୍ର ବିଳାସୀ ଲୋକମାନେ ସମ୍ଭ୍ରାନ୍ତ ଶ୍ରେଣୀ ରୂପେ ପରିଚିତ ହେଲେ । ଏହାର ଦୁଃଖଦାୟକ ପରିଣତିରେ ଭାରତର ନୈତିକ ତଥା ବୈଷୟିକ ଦିଗସବୁ ବିପର୍ଯ୍ୟସ୍ତ ହୋଇପଡ଼ିଲା । ଏଣୁ ଖଟିଖିଆ କୃଷକ ଓ କାରିଗରମାନେ ଦାରିଦ୍ର୍ୟର ରସାତଳକୁ ଖସିପଡ଼ିଲେ ଏବଂ ନିର୍ବେଦତା ଓ ନିଶ୍ଚେଷ୍ଟତା ସେମାନଙ୍କୁ ଗ୍ରାସ କଲା । ଚମତ୍କାର ସ୍ୱାସ୍ଥ୍ୟପ୍ରଦ ଜଳବାୟୁ, ଉତ୍ତୁଙ୍ଗ ପର୍ବତମାଳା, ଭୂଗର୍ଭକୁ କ୍ଷରିତ କରି ବହିଯାଉଥିବା ମହାନ ନଦୀ ପ୍ରବାହ, କ୍ରମାଗତ ଭାବେ ବିସ୍ତାରିତ ସମୁଦ୍ରର ଉପକୂଳ, ସୀମାହୀନ ସଂପଦରେ ପରିପୂର୍ଣ୍ଣ ଭାରତ ଏହି ସମସ୍ତ ସଂପତ୍ତିର ସମୁଚିତ ବିନିଯୋଗରେ ଦାରିଦ୍ର୍ୟର ଯନ୍ତ୍ରଣାକୁ ଦୂରୀଭୂତ କରିପାରିଥାନ୍ତା । ମାତ୍ର ଏହି ଦେଶରେ ଚିନ୍ତାଶକ୍ତି ଓ ଶାରୀରିକ ଶ୍ରମର ଅଭାବ ଆମ୍ଭମାନଙ୍କୁ ପୃଥିବୀ ପୃଷ୍ଠରେ ସବୁଠାରୁ ନିର୍ଦ୍ଧନ ଓ ସ୍ୱଳ୍ପାୟୁ ଜାତିରେ ପରିଣତ କରିଛି । ଏହି ଦେଶର ଗ୍ରାମ୍ୟ ଚମଡ଼ାକଷେଇ ଶିଳ୍ପର ଦୟନୀୟ ସ୍ଥିତି ଏହାର ପ୍ରକୃଷ୍ଟ ନିଦର୍ଶନ । ମଣିଷ ସମାଜର ଏକ ଅଂଶ ପ୍ରତି ଆମେ ଯେଉଁ ଅବିଚାର କରିଚାଲିଛେ, ସ୍ୱର୍ଗତ ମଧୁସୂଦନ ଦାସ ସେ ସଂପର୍କରେ ମୋର ଆଖି ଖୋଲି ଦେଇଥିଲେ ଆଉ ଆମେ ଯେଉଁ ଅପରାଧ କରି ଚାଲିଛେ, ତାହାର ପ୍ରାୟଶ୍ଚିତ୍ତ

ଓ ନିରାକରଣପାଇଁ ସେ ଗୋଟିଏ ଶିକ୍ଷାମୂଳକ ଟ୍ୟାନେରି (ଚମଡ଼ା କଷେଇ କାରଖାନା) ଖୋଲିଥିଲେ । ତାଙ୍କର ଏହି ଉଦ୍ୟୋଗ ଆଶାତୀତ ସଫଳତା ହାସଲ କରିନଥିଲେ ମଧ୍ୟ ସେ କଟକର ଶହ ଶହ ଜୋତା କାରିଗରଙ୍କୁ ଉନ୍ନତ ଜୀବନ ଧାରଣର ପନ୍ଥା ଯୋଗାଇବାପାଇଁ ଗୁରୁଦାୟିତ୍ୱ ବହନ କରି ଚାଲିଗଲେ ।

**ଅନ୍ୟ ଏକ ବକ୍ତବ୍ୟ**

ଭାରତର ସହରୀକରଣ, ଗ୍ରାମୀଣ ସମାଜ ତଥା ଗ୍ରାମମାନଙ୍କୁ ମୃତ୍ୟୁ ମୁଖକୁ ଠେଲି ଦେଇଛି । ସହରୀକରଣ ଦେଶର ସତୁରି ହଜାର ଗ୍ରାମରେ ବାସକରୁଥିବା ଶତକଡ଼ା ୯୦ ଭାଗ ଲୋକଙ୍କ ପାଇଁ କର୍ମସଂସ୍ଥାନ ଯୋଗାଇ ପାରିବ ନାହିଁ । ଗ୍ରାମମାନଙ୍କରୁ ମୁଖ୍ୟତଃ ଚମଡ଼ା କଷେଇ ଶିଳ୍ପ ଓ ଅନ୍ୟ ଶିଳ୍ପଗୁଡ଼ିକୁ ବହିଷ୍କାର କରିବା ଫଳରେ ମଣିଷର କଳାତ୍ମକ ହସ୍ତ ଓ ମସ୍ତିଷ୍କର ସମନ୍ୱିତ ସଂଯୋଗରେ ଉପାର୍ଜନ କରିବାପାଇଁ ଯେଉଁ ଅପୂର୍ବ ସୁଯୋଗ ରହିଥିଲା, ତାହା ମଧ୍ୟ ନିର୍ବାସିତ ହୋଇଯାଇଛି । ମଧୁସୂଦନ ଦାସ କହିଥିଲେ ଯେ, '' ଗ୍ରାମଗୁଡ଼ିକରୁ ଯେତେବେଳେ ହସ୍ତଶିଳ୍ପ ସବୁ ଲୁପ୍ତ ହେଲା, ଗ୍ରାମବାସୀମାନେ କ୍ଷେତରେ ଗୋରୁମାନଙ୍କ ସହିତ କାର୍ଯ୍ୟ କରିବା ସହିତ ବର୍ଷରେ କେବଳ ଚାରିରୁ ଛଅମାସ ସମୟ ଆଳସ୍ୟ ଓ ନିଶ୍ଚେଷ୍ଟତାରେ ବିତାଉ ଥିବାରୁ ଏବଂ ସେମାନେ ପଶୁମାନଙ୍କ ସହ ଜୀବନଯାପନ କରୁଥିବାରୁ ପଶୁତ୍ୱର ସ୍ତରକୁ ଖସିପଡ଼ନ୍ତି । ସେମାନଙ୍କର ମନ ଆଉ ଶରୀର ଅର୍ଦ୍ଧଭୁକ୍ତ ଅବସ୍ଥାରେ କେବଳ ଜୀଇଁ ରହେ । ଏଣୁ ସେହିମାନଙ୍କର ଜୀବନରୁ ଆଶା ଓ ଆନନ୍ଦ ବର୍ଜିତ ହୋଇଯାଏ ଏବଂ ନିରାଶାର ଘନ ଅଂଧକାର କେବଳ ସେମାନଙ୍କୁ ଛାଇ ରହିଥାଏ । '' (ହରିଜନ ୭.୯.୧୯୩୪)

**ଏକ ବକ୍ତୃତା**

ଗାନ୍ଧିଜୀଙ୍କ ନେତୃତ୍ୱରେ ୧୯୩୪ ମସିହା ମେ ଆଉ ଜୁନ୍ ମାସରେ ସଂଚାଳିତ ହୋଇଥିବା ହରିଜନ ପଦଯାତ୍ରାର ମାତ୍ର ୮ ମାସ ପରେ ତା ୨୩.୨.୧୯୩୫ରେ ମହାତ୍ମାଗାନ୍ଧୀ ନାଗପୁରର ଚିଟନିସ୍ ପାର୍କରେ ଏକ ବିଶାଳ ଜନସଭାକୁ ସମ୍ବୋଧିତ କରିବା ଅବସରରେ ଏହି ପଦଯାତ୍ରାର ତାତ୍ପର୍ଯ୍ୟ ଓ ମହତ୍ତ୍ୱ ଉପରେ ନିମ୍ନଲିଖିତ ଭାଷଣଟି ପ୍ରଦାନ କରିଥିଲେ । ଓଡ଼ିଶାରେ ହରିଜନ ପଦଯାତ୍ରା କରିବା ସମୟରେ ମୋର ମନକୁ ଆସିଲା, ଯଦି ଖଦି ପରିଧାନ ସାର୍ବଜନୀନ ହୁଏ, ତାହାହେଲେ ଗ୍ରାମ୍ୟଶିଳ୍ପକୁ ସାର୍ବଜନୀନ କରିବାକୁ ପଡ଼ିବ । ମୁଁ ଏହି ଯାତ୍ରା ରେଳ କିମ୍ବା କାର୍‌ରେ କରିଥିଲେ ଏହା ଜାଣିପାରି ନଥାନ୍ତି ।

ସ୍ୱର୍ଗତ ମଧୁସୂଦନ ଦାସ କହିଥିଲେ, ଆମର ଗ୍ରାମବାସୀମାନେ ଜନ୍ତୁ କିମ୍ବା ପଶୁର ସ୍ତରକୁ ଖସିପଡୁଛନ୍ତି । ଯେଉଁ ଜନ୍ତୁଙ୍କ ସହିତ ସେମାନେ କେବଳ ଅଂଗାଗୀ ହୋଇ କାର୍ଯ୍ୟ କରୁନାହାନ୍ତି, ବରଂ ଜୀବନର ଦୀର୍ଘ ସମୟ ସେହି ଜନ୍ତୁମାନଙ୍କ ସହ ଅବସ୍ଥାନ କରିବା ଅବସରରେ ଓ ଗାଁ ଗହଳିରେ ଶିଳ୍ପର ବିଲୁପ୍ତି ପରେ ଆଳସ୍ୟ ଓ ନିଶ୍ଚେଷ୍ଟତାରେ ସେମାନଙ୍କ ସମୟ ବିତାଉଛନ୍ତି, ଏହା ଯଦି ଅପରିବର୍ତ୍ତିତ ରହେ, ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ, ଭାରତର କୌଣସି ଉନ୍ନତି ଘଟିବାର ସଂଭାବନା ନାହିଁ । ତେଣୁ ମୋ ଜୀବନର ସାୟାହ୍ନରେ ଗାଁ ଗହଳରେ ଥିବା ନିଶ୍ଚେଷ୍ଟତା ଓ ସ୍ଥାଣୁତା

ଦୂର କରିବାପାଇଁ ସାହସିକତା ଓ ବୀରତ୍ୱ ସହକାରେ ଏହି କାର୍ଯ୍ୟକ୍ରମକୁ ଗ୍ରହଣ କରିବାକୁ ଦୃଢ଼ ସଂକଳ୍ପ କରିଛି । ଏହା ଦୁଃସାହସିକ ଓ ଲୋମହର୍ଷକ ମନେ ହୋଇପାରେ, ମାତ୍ର ମୋର ଦୃଢ଼ ବିଶ୍ୱାସ ଯେ, ଜଣେ ଯଦି ଭଗବାନଙ୍କ ଉପରେ ଦୃଢ଼ ଆସ୍ଥା ସ୍ଥାପନା କରି କାର୍ଯ୍ୟ ଆରମ୍ଭ କରେ, ଜୀବନର ଅନ୍ତିମ ବେଳାରେ ତାହା ବୃଥା ଯିବ ନାହିଁ । ମୁଁ ନିଶ୍ଚିତ ଯେ ମୁଁ ଯେଉଁ କାର୍ଯ୍ୟ ଆରମ୍ଭ କରିଛି ତାହା ମୋର ନୁହେଁ, ଭଗବାନଙ୍କର ।

ଆମ୍ଭେମାନେ ଗ୍ରାମବାସୀମାନଙ୍କ ପ୍ରତି ରକ୍ତସ୍ରାବୀ କ୍ଷତର ଆଘାତ ପ୍ରଦାନ ପରି ମାରାତ୍ମକ ଅନ୍ୟାୟ କରି ଆସିଛେ । ଏହି ଅପରାଧର ପ୍ରାୟଶ୍ଚିତ୍ତ କରିବାପାଇଁ ଏକମାତ୍ର ପଂଥା ରହିଛି । ତାହା ହେଉଛି, ବିଲୁପ୍ତ ହେଉଥିବା ଗ୍ରାମ୍ୟଶିଳ୍ପ ଉଦ୍ୟୋଗମାନଙ୍କର ପୁନରୁତ୍ଥାନ ସହିତ ଏଥିରୁ ପ୍ରସ୍ତୁତ ହେଉଥିବା ସଂପୂର୍ଣ୍ଣ ପଦାର୍ଥମାନଙ୍କର ନିଶ୍ଚିତ ବିପଣନ ବା ବିକ୍ରୟର ବ୍ୟବସ୍ଥା ଗ୍ରହଣ କରିବା । ଭଗବାନଙ୍କଠାରୁ ବଳି ସହିଷ୍ଣୁ ଓ କ୍ଷମାପ୍ରଦାୟୀ ଆଉ କେହି ନୁହଁନ୍ତି । ମାତ୍ର ତାଙ୍କର ମଧ୍ୟ ଧୈର୍ଯ୍ୟର ସୀମା ଅଛି । ଆମ୍ଭେମାନେ ଯଦି ଗ୍ରାମବାସୀଙ୍କ ପ୍ରତି କର୍ତ୍ତବ୍ୟରେ ଅବହେଳା କରୁ, ତାହେଲେ ଆମେ ଧ୍ୱଂସର ଗହ୍ୱରକୁ ଖସି ପଡ଼ିବୁ । (ହରିଜନ ୧.୩.୧୯୩୫) ।

ହରିଜନ ପତ୍ରିକାରେ ୧୯୩୩, ୧୯୩୪, ୧୯୩୫ ବର୍ଷରେ ପ୍ରକାଶିତ ତିନୋଟି ସଂଖ୍ୟାରେ ପ୍ରକାଶିତ, ମଧୁସୂଦନ ଦାସଙ୍କ ପ୍ରତି ଶ୍ରଦ୍ଧାଂଜଳି ରୂପରେ ଲିଖିତ ତିନୋଟି ଲେଖାର ନିର୍ବାଚିତ ଅନୂଦିତ ଅଂଶ ଏଠାରେ ଉପସ୍ଥାପନ କରାଗଲା । ବର୍ତ୍ତମାନ ପ୍ରାୟ ହରିଜନ ଶବ୍ଦଟି ବ୍ୟବହୃତ ହେଉନାହିଁ । ମାତ୍ର ମହାତ୍ମାଗାନ୍ଧୀଙ୍କ ମୂଳ ଲେଖାରେ ଏହି ଶବ୍ଦ ସନ୍ନିବେଶିତ ହୋଇଥିବାରୁ ତାହାକୁ ଗ୍ରହଣ କରିବାକୁ ବାଧ୍ୟ ହେଲୁ ।



# ମୋପାଇଁ ଦ୍ୱିତୀୟ ଟଲଷ୍ଟୟ: ମଧୁସୂଦନ ଦାସ

**୨୨.୧୦.୧୯୩୭ରେ ସେବାଗ୍ରାମଠାରେ ଅନୁଷ୍ଠିତ ଅଖିଳ ଭାରତ ଶିକ୍ଷା ସମ୍ମିଳନୀରେ ମହାତ୍ମାଗାନ୍ଧୀଙ୍କ ପ୍ରଦତ୍ତ ବକ୍ତୃତା**

ମୋର ନିଧାର୍ଯ୍ୟ ଭାବରେ ମତ ହେଉଛି ଯେ, ବର୍ତ୍ତମାନର ପ୍ରଚଳିତ ପ୍ରାଥମିକ ଶିକ୍ଷା କେବଳ ବ୍ୟୟବହୁଳ ନୁହେଁ, ଏହା ମଧ୍ୟ ଅତୀବ ଭାବରେ ହାନିକର । ଏହି ଶିକ୍ଷା ଫଳରେ ବାଳକଗଣ, ପିତାମାତାଙ୍କଠାରୁ କେବଳ ବିଚ୍ଛିନ୍ନ ହୋଇ ଯାଆନ୍ତି ନାହିଁ, ସେମାନଙ୍କର ମୌଳିକ ବ୍ୟବସାୟ, ଯାହା ପରିବାରର ଏକମାତ୍ର ଅବଲମ୍ବନ, ତହିଁରୁ ମଧ୍ୟ ବିଚ୍ୟୁତ ହୋଇଯାଆନ୍ତି । ଏ ସମସ୍ତର ପ୍ରତିକାରପାଇଁ ଦକ୍ଷିଣ ଆଫ୍ରିକାର ଟଲଷ୍ଟୟ ଆଶ୍ରମ (କୃଷିଫାର୍ମ)ରେ ଅନ୍ୟ ପିଲାମାନଙ୍କ ସହିତ ମୋର ପୁଅମାନଙ୍କୁ ମଧ୍ୟ ବଢ଼େଇ କାମ ତଥା ଯୋତା ତିଆରି ବୃତ୍ତିଭିତ୍ତିକ କାର୍ଯ୍ୟର ଶିକ୍ଷା ପ୍ରଦାନ କରିଥିଲି ।

ବର୍ତ୍ତମାନ କାକାସାହେବ ଦପ୍ତର ଶିକ୍ଷା ସଂପର୍କରେ ଆଲୋଚନା କରିଛନ୍ତି । ଏ ସଂପର୍କରେ ମଧୁସୂଦନ ଦାସଙ୍କର ବକ୍ତବ୍ୟର ଉପସ୍ଥାପନା କରୁଅଛି । ମଧୁସୂଦନ ଦାସ ଜଣେ ଆଇନଜୀବୀ ଥିଲେ । ତାଙ୍କର ଦୃଢ଼ ଆତ୍ମପ୍ରତ୍ୟୟ ଓ ସିଦ୍ଧାନ୍ତ ଥିଲା ଯେ, ଆମ୍ଭମାନଙ୍କର ହାତ ଓ ପାଦ ବିଧିବଦ୍ଧ ଭାବରେ ଯଦି ନିୟୋଜିତ ନହୁଏ, ତାହାହେଲେ ଆମ୍ଭମାନଙ୍କ ମସ୍ତିଷ୍କସବୁ ସ୍ଥାଣୁ ଓ ନିର୍ବେଦ ପାଲଟିଯିବ । ଯଦିବା ଏହି ସ୍ଥିତିରେ ବହିଃମସ୍ତିଷ୍କ କାର୍ଯ୍ୟକରେ, ତାହାହେଲେ ତାହା ସଇତାନର ଆଡ଼୍ଡ଼ାସ୍ଥଳୀରେ ପରିଣତ ହେବ । ଟଲଷ୍ଟୟ ମଧ୍ୟ ଏହି ବାର୍ତ୍ତା ବା ସନ୍ଦେଶକୁ ତାଙ୍କ ରଚିତ ଅସଂଖ୍ୟ ଗଳ୍ପମାନଙ୍କରେ ପ୍ରଚାରିତ କରିଯାଇଛନ୍ତି । (ହରିଜନ ୩୧.୧୦.୧୯୩୭)

ଏହାଥିଲା ୨୨.୧୦.୧୯୩୭ରେ ୱାର୍ଦ୍ଧାର ସେବାଗ୍ରାମଠାରେ ଆହୂତ ସର୍ବଭାରତୀୟ ଶିକ୍ଷା ସମ୍ମିଳନୀର ଉଦ୍‌ଘାଟନୀ ଉତ୍ସବରେ ମହାତ୍ମାଗାନ୍ଧୀଙ୍କ ଭାଷଣର ଉପସଂହାର । ଭାରତରେ ୧୯୩୭ ସାଲରେ ଅନୁଷ୍ଠିତ ନିର୍ବାଚନରେ ସାତଗୋଟି ପ୍ରଦେଶରେ କଂଗ୍ରେସ କ୍ଷମତାସୀନ ହେବା ପରେ, ସେହିସବୁ ରାଜ୍ୟରେ ବୃତ୍ତିଭିତ୍ତିକ ମୌଳିକ ଶିକ୍ଷା ପ୍ରଚଳନ କରିବା ନିମିତ୍ତ ମହାତ୍ମାଗାନ୍ଧୀ ଏହି

ଯୁଗାନ୍ତକାରୀ ବକ୍ତବ୍ୟରେ, ମଧୁସୂଦନ ଦାସଙ୍କୁ ନିଜର ଆଦ୍ୟଗୁରୁ ଟଲଷ୍ଟୟଙ୍କର ନାମ ସହିତ କେବଳ ସଂପୃକ୍ତ କରିନାହାନ୍ତି, ତାଙ୍କୁ ସେହି ମହିମାଦୀପ୍ତ ସ୍ତରକୁ ଉନ୍ନୀତ କରି ଯାଇଛନ୍ତି । ଟଲଷ୍ଟୟଙ୍କ ସଂପର୍କରେ ମହାତ୍ମାଗାନ୍ଧୀ କହିଥିଲେ ଯେ, "ଐଶ୍ୱରୀୟ ନିୟମ ହେଉଛି, ଜଣେ ବ୍ୟକ୍ତି ତାହାର ଖାଦ୍ୟ ନିଜର ହସ୍ତର ଶ୍ରମ ମାଧ୍ୟମରେ ଉପାର୍ଜନ କରିବାକୁ ହେବ । ଋଷୀୟ ଲେଖକ ଟି.ଏମ୍ ଜନ୍ ତର୍ଫି ଏହି ସନ୍ଦେଶ ଉପରେ ଗୁରୁତ୍ୱ ଆରୋପ କରିଥିଲେ, ଯାହାକୁ ପରବର୍ତ୍ତୀ କାଳରେ ଟଲଷ୍ଟୟ ବହୁତ ଭାବରେ ପ୍ରଚାରିତ କରିଥିଲେ । ମାତ୍ର ମଧୁସୂଦନ ଦାସଙ୍କର ବାର୍ତ୍ତା ଏହିପରି ଥିଲା- "ଜଣେ ବ୍ୟକ୍ତି ଯେଉଁ ହାତରେ ରୁଟି (ଖାଦ୍ୟ) ଖାଏ, ସେହି ହାତରେ ହିଁ ସେହି ରୁଟି (ଖାଦ୍ୟ)କୁ ଉପାର୍ଜନ କରିବାକୁ ପଡ଼ିବ ।"(୧୯୨୪ରେ ପାଟନାଠାରେ ପ୍ରଦତ୍ତ ଭାଷଣର କିଛି ଅଂଶ) । ଭାରତୀୟ ପରିସ୍ଥିତିରେ, ମଧୁସୂଦନ ଦାସଙ୍କର ସୁବିସ୍ତୃତ ଅଭିଜ୍ଞତାରୁ ଉପଲବ୍ଧ ଆପ୍ତବଚନ ଭଳି ଏହି ଅବିସ୍ମରଣୀୟ ଉକ୍ତି ଯାହା ମହାତ୍ମାଗାନ୍ଧୀଙ୍କୁ ବାରମ୍ବାର ମଧୁସୂଦନ ଦାସଙ୍କର ନିକଟକୁ ଆକର୍ଷିତ କରି ଆଣିଥିଲା । ମଧୁସୂଦନ ଦାସଙ୍କର ମହାତ୍ମାଗାନ୍ଧୀଙ୍କ ସହିତ ୧୯୨୦ ସାଲରେ ସାକ୍ଷାତ ହେଲା, ୧୯୨୪ରେ ମନ୍ତ୍ରିତ୍ୱ ତ୍ୟାଗ ପରେ ମଧୁସୂଦନ ସାବରମତୀ ଆଶ୍ରମରେ କିଛିଦିନ ଅବସ୍ଥାନ କରି ମହାତ୍ମାଗାନ୍ଧୀଙ୍କୁ ନିଜର ସୃଜନଶୀଳ ଚିନ୍ତାଧାରା ଏବଂ ଅପରୂପ ଦୃଷ୍ଟିଭଂଗୀ ସଂପର୍କରେ ଅବଗତ କରାଇଥିଲେ । ଏହାପରେ ମହାତ୍ମାଗାନ୍ଧୀ କଟକର ମଧୁସ୍ମୃତିରେ ୧୯୨୫ ଓ ୧୯୨୭ ସାଲରେ ଅବସ୍ଥାନ କରି ମଧୁସୂଦନଙ୍କଠାରୁ ଯେଉଁ ଜ୍ଞାନ ଲାଭ କରିଥିଲେ ତାହାକୁ ସେ ପରବର୍ତ୍ତୀ କାଳରେ ପ୍ରଦତ୍ତ ଅସଂଖ୍ୟ ବକ୍ତବ୍ୟରେ ଉଦ୍‌ଘୋଷଣା କରିଚାଲିଥିଲେ । ସେଥିରୁ କିଛି ଉଦ୍ଧୃତି ନିମ୍ନରେ ପ୍ରଦତ୍ତ ହେଲା ।

**୩.୭.୧୯୨୭ରେ ବାଙ୍ଗାଲୋର ଖଦୀ ପ୍ରଦର୍ଶନୀରେ ଗାନ୍ଧିଜୀଙ୍କ ଭାଷଣଃ** ମୋତେ ବାଙ୍ଗାଲୋରର ଏହି ଖଦୀ ପ୍ରଦର୍ଶନକୁ ଉଦ୍‌ଘାଟନ କରିବାପାଇଁ ସୁଯୋଗ ମିଳିଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ହଁ, ମଧୁସୂଦନ ଦାସ କଟକର ଜଣେ ତେଜସ୍ୱୀ ଓକିଲ ରୂପେ ପରିଚିତ । ଏ ଦେଶର ଦାରିଦ୍ର୍ୟ ତାହାଙ୍କୁ ସ୍ୱପ୍ନର ସୁଷୁପ୍ତି ମଧ୍ୟରୁ ଜାଗରିତ କରିଥିଲା । ସେ ଉପଲବ୍ଧି କରିଥିଲେ ଯେ, ଆମ୍ଭେମାନେ କେବଳ କ୍ଷେତରେ ବଳଦ ଓ ଲଂଗଳ ଧରି କିଛିକାଳ କାର୍ଯ୍ୟ କରିବା ସାଥିରେ ଯଦି ହସ୍ତ କୌଶଳର ଚାତୁର୍ଯ୍ୟ ସମ୍ବଳିତ କୌଣସି କ୍ଷୁଦ୍ର ଓ ହସ୍ତଶିଳ୍ପ କାର୍ଯ୍ୟରେ ବିନିଯୁକ୍ତ ନହେଉ, ତାହାହେଲେ ଆମ୍ଭେମାନେ କାର୍ଯ୍ୟରେ ବ୍ୟବହାର କରୁଥିବା ଗୋରୁମାନଙ୍କ ଭଳି ପଶୁତ୍ୱ ସ୍ତରକୁ ଖସିପଡ଼ିବା । ଏଣୁ ଏହାର ନିରାକରଣପାଇଁ ମଧୁସୂଦନ ଦାସ ହସ୍ତର କମନୀୟ କଳା ବିନ୍ୟାସ ପ୍ରୟୋଗ କ୍ଷେତ୍ରରେ ଏପରି ପାରଦର୍ଶିତା ହାସଲ କରିଥିଲେ ଯେ, ସେ ଜଣେ ନିପୁଣ କଳାପ୍ରାଣ କୁଶଳୀ କାରିଗରରେ ପରିଣତ ହୋଇଯାଇଛନ୍ତି । ଅନୁଧ୍ୟାନ କରିବାର କଥା ଯେ ଭାରତର ସର୍ବଶ୍ରେଷ୍ଠ ବୁଦ୍ଧିଜୀବୀଙ୍କ ଗହଣରେ ଏହି ସମ୍ମିଳନୀରେ ମହାତ୍ମାଗାନ୍ଧୀ କିଭଳି ଭାବରେ ମଧୁସୂଦନ ଦାସଙ୍କର ବକ୍ତବ୍ୟକୁ ମର୍ଯ୍ୟାଦା ପ୍ରଦର୍ଶନ ମଧ୍ୟରେ ଉପସ୍ଥାପନ କରିଥିଲେ ।

**ନବଜୀବନ ପତ୍ରିକାରେ ୨୩.୯.୧୯୨୮ରେ ଗାନ୍ଧିଜୀଙ୍କର ରଚନା**

**ବମ୍ବେର ଜାତୀୟ ବିଦ୍ୟାଳୟ**:- ଦେଶର ଯେଉଁ କେତୋଟି ଜାତୀୟ ବିଦ୍ୟାଳୟ ବର୍ତ୍ତମାନ ସୁଦ୍ଧା ତିଷ୍ଠି ରହିଛି, ସେମାନଙ୍କ ମଧ୍ୟରେ ବମ୍ବେଠାରେ ସ୍ଥାପିତ ଜାତୀୟ ବିଦ୍ୟାଳୟ ଅନ୍ୟତମ ।

ଦେଶରେ ଗୋଟିଏ ଶିଳ୍ପସୁଲଭ ଜଳବାୟୁର ଆବଶ୍ୟକତା ରହିଅଛି । ଆମ୍ଭମାନଙ୍କ ଦେଶରେ ଶିକ୍ଷାପ୍ରଣାଳୀ ମଧ୍ୟରେ କୃଷିଭିତ୍ତିକ ଶିକ୍ଷା ପ୍ରଦାନ ବ୍ୟବସ୍ଥା ପ୍ରମୁଖ ସ୍ଥାନ ଅଧିକାର କରିବାପାଇଁ ସର୍ବଦା ଏକ ଯୁକ୍ତିଯୁକ୍ତ ଆବଶ୍ୟକତା ରହିଆସିଛି । ଯଦି ଏହା ସଂଭବ ହୁଏ, ତାହେଲେ ଛାତ୍ରମାନେ ଗୋଟିଏ ବୃତ୍ତିଗତ କଳାଶିକ୍ଷା କରିବା ସହିତ କ୍ରମଶଃ ଏହି ଶିକ୍ଷା ପ୍ରଦାନ କରୁଥିବା ବିଦ୍ୟାଳୟକୁ ମଧ୍ୟ ଅଚିରେ ସ୍ୱାବଲମ୍ବୀ କରିପାରିବେ । ମଧୁସୂଦନ ଦାସ କଟକରେ ତାଙ୍କଦ୍ୱାରା ସ୍ଥାପନ କରିଥିବା ଟ୍ୟାନେରି ମାଧ୍ୟମରେ ଏହିଭଳି ଏକ ବିରଳ ସଂଯୋଜନାର ପରିକଳ୍ପନା କରିଥିଲେ । ସେହି ପରିକଳ୍ପନାଟି ଅତ୍ୟନ୍ତ ଚମତ୍କାର ଥିଲା । ମାତ୍ର ଦେଶର ପ୍ରଚଳିତ ଜଳବାୟୁ ଏଥିପାଇଁ ଉତ୍ସାହପ୍ରଦ-ଉଦ୍ଦୀପନା ଯୋଗାଇ ପାରିନଥିଲା । (ନବଜୀବନ-୨୩.୯.୧୯୨୮)

ଏହି ଲେଖାଟିକୁ ମହାତ୍ମାଗାନ୍ଧୀ ଟଲଷ୍ଟୟଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ଗୁଜୁରାଟୀ ଭାଷାରେ ରଚନା କରି ନବଜୀବନ ପତ୍ରିକାରେ ପ୍ରକାଶ କରିଥିଲେ ।

**ଓଡ଼ିଶାର ଡେଲାଙ୍ଗଠାରେ ଭାଷଣ**:- ମଧୁସୂଦନ ଦାସ ଏହିପରି ପ୍ରକାଶ କରୁଥିଲେ ଯେ, ପଶୁ ଓ ମଣିଷମାନଙ୍କ ମଧ୍ୟରେ ମୁଖ୍ୟ ପ୍ରଭେଦ ହେଉଛି, ସେମାନଙ୍କର ଦେହର ଅବୟବର ଗଠନ ପ୍ରଣାଳୀ । ମଣିଷର ହାତ ଓ ପାଦ ରହିଛି ଓ ତାହା ସହିତ ସଂଯୁକ୍ତ ହୋଇ ରହିଛନ୍ତି ସୃଜନଶୀଳ ନମନୀୟ ଅଂଗୁଳିଗୁଡ଼ିକ । ଆଉ ମଣିଷ ସେହି ଅଂଗୁଳିଗୁଡ଼ିକୁ ବୁଦ୍ଧିମତ୍ତାର ସହ କଳାରେ ସାମଗ୍ରିକ ଭାବରେ ସୃଜନର ନିଦର୍ଶନ ନଦେଇ କେବଳ କୃଷି ଉପରେ ଯଦି ନିର୍ଭର କରି ରହେ, ତାହାହେଲେ ଭଗବାନ ପ୍ରଦତ୍ତ ନିପୁଣତାରେ ପରିପୂର୍ଣ୍ଣ ଅଂଗୁଳିଗୁଡ଼ିକୁ ସଦ୍‌ବ୍ୟବହାର କରାଗଲା ବୋଲି କୁହାଯାଇପାରିବ କି ? ଆହୁରି ମଧ୍ୟ କୃଷି ଆମ୍ଭମାନଙ୍କୁ ସ୍ୱାବଲମ୍ବୀ କରିପାରିବ ନାହିଁ , ଯଦି ତାହା ସହିତ ହାତର ଅଂଗୁଳିଗୁଡ଼ିକ ଦ୍ୱାରା ଉତ୍ପାଦିତ ଦ୍ରବ୍ୟ ସଂଯୁକ୍ତ ନହୁଏ । ଆମ୍ଭେମାନେ ଏହି ପ୍ରଦର୍ଶନୀରେ ଦେଖିପାରିବା, କିପରି ହାତର ସୃଷ୍ଟିଶୀଳ ଅଂଗୁଳିମାନଙ୍କ ଦ୍ୱାରା ଉତ୍ପାଦିତ ପଦାର୍ଥ ରାଶିର ବିକ୍ରୟଲବ୍ଧ ଅର୍ଥ କୃଷିର ଆୟ ସହିତ ଯୁକ୍ତ ହୋଇପାରିବ । ମୁଁ ଆପଣମାନଙ୍କୁ ଏହି ପ୍ରଦର୍ଶନୀକୁ ବାରମ୍ବାର ପ୍ରଦର୍ଶନ କରିବାପାଇଁ ନିବେଦନ କରୁଛି , ଯେପରି ଆପଣମାନେ ସ୍ୱ ନିର୍ବାଚିତ ଏକ ହସ୍ତଶିଳ୍ପକୁ ଗ୍ରହଣ କରି ଏହି ଭୂମିକୁ ଦାରିଦ୍ର୍ୟର ଶୃଙ୍ଖଳରୁ ମୁକ୍ତ କରିପାରିବେ । (ହରିଜନ- ୨.୪.୧୯୩୮)

ଏହାଥିଲା ଡେଲାଙ୍ଗଠାରେ ୧୯୩୮ ସାଲର ମାର୍ଚ୍ଚ ଶେଷ ସପ୍ତାହରେ ଗାନ୍ଧୀ ସେବାସଂଘର ଚତୁର୍ଥବାର୍ଷିକୀ ଅଧିବେଶନରେ ଗ୍ରାମ୍ୟଶିଳ୍ପ ପ୍ରଦର୍ଶନୀ ଉଦ୍‌ଘାଟନ ଅବସରରେ ମହାତ୍ମାଗାନ୍ଧୀଙ୍କ ପ୍ରଦତ୍ତ ଅବିସ୍ମରଣୀୟ ଅଭିଭାଷଣର ଅନ୍ତିମ ଅଂଶ ।



# ମଧୁସୂଦନଙ୍କୁ ପ୍ରେରିତ ଗାନ୍ଧିଜୀଙ୍କ ପତ୍ରାବଳୀ

ମହାତ୍ମାଗାନ୍ଧୀଙ୍କ ସହିତ ମଧୁସୂଦନ ଦାସଙ୍କର ବ୍ୟକ୍ତିଗତ ସଂପର୍କ ଗଢ଼ି ଉଠିଥିଲା ୧୯୨୦ ସାଲରୁ ୧୯୨୮ ସାଲ ମଧ୍ୟରେ । ଏହି ସ୍ୱଳ୍ପକାଳ ମଧ୍ୟରେ ମହାତ୍ମାଗାନ୍ଧୀ ମଧୁସୂଦନଙ୍କୁ ଦୁଇଟି ତାତ୍ପର୍ଯ୍ୟପୂର୍ଣ୍ଣ ପତ୍ର ଲେଖିଥିଲେ । ମଧୁସୂଦନ ମନ୍ତ୍ରୀପଦକୁ ଅବୈତନିକ କରିବା ଦାବିରେ ଇସ୍ତଫା ପ୍ରଦାନ ପରେ ୧୭.୨.୧୯୨୪ରେ ପାଟନାରେ ଶ୍ରମର ମର୍ଯ୍ୟାଦା ଉପରେ ଯେଉଁ ବକ୍ତୃତା ପ୍ରଦାନ କରିଥିଲେ, ତାହା ମହାତ୍ମାଗାନ୍ଧୀଙ୍କ ଚେତନାକୁ ବିଶେଷ ଭାବେ ଆକର୍ଷିତ କରିଥିଲା, ଯାହାର ସବିଶେଷ ଉଲ୍ଲେଖ ମହାତ୍ମାଗାନ୍ଧୀ ''ୟଙ୍ଗ୍ ଇଣ୍ଡିଆ'' ପତ୍ରିକାରେ କରିଥିଲେ । ଜେଲ୍‌ରୁ ଖଲାସ ହୋଇ ମହାତ୍ମାଗାନ୍ଧୀ ୪.୨.୧୯୨୪ରୁ ସାବରମତୀଠାରେ ଅବସ୍ଥାନ କରୁଥିବାବେଳେ ମଧୁସୂଦନ ସେହି ବର୍ଷ ସାବରମତୀ ଆଶ୍ରମରେ ତାଙ୍କୁ ଭେଟି ନିଜର ମତାଦର୍ଶ ତଥା ଦେଶର ସାମଗ୍ରିକ ଉନ୍ନୟନ ସଂପର୍କରେ ତାଙ୍କ ସହିତ ଆଲୋଚନା କରିଥିଲେ, ଯାହା ଗାନ୍ଧୀଙ୍କ ଚିନ୍ତାରାଜ୍ୟକୁ ଗଭୀର ଭାବେ ଆଲୋଡ଼ିତ କରିଥିଲା । ଗାନ୍ଧିଜୀଙ୍କ ସହିତ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ସ୍ଥାପନାର ଆଲୋଚନା ଅବକାଶରେ ଦଳିତମାନଙ୍କୁ ଅର୍ଥନୈତିକ କ୍ଷେତ୍ରରେ ସଂସ୍ଥାପନ କରିବା ଉଦ୍ଦେଶ୍ୟରେ କଟକରେ ସର୍ବାଧୁନିକ କୌଶଳରେ ପ୍ରତିଷ୍ଠିତ ଉତ୍କଳ ଟ୍ୟାନେରି ପରିଦର୍ଶନ ପାଇଁ ନିମନ୍ତ୍ରଣ ଜଣାଇଲେ । ଚିତ୍ତରଂଜନ ଦାସଙ୍କର ପରଲୋକ ପରେ କଲିକତା ଆଗମନ ଅବକାଶରେ ମହାତ୍ମାଗାନ୍ଧୀ ଜାମସେଦପୁର ଯାଇ ସିଂହଭୂମିରେ ଓଡ଼ିଆମାନଙ୍କ ସ୍ଥିତି ସଂପର୍କରେ ଅନୁଧ୍ୟାନ କରି ସିଂହଭୂମିକୁ ଓଡ଼ିଶା ସହ ମିଶ୍ରଣ ଲାଗି ଆପାତତଃ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ଏହାପରେ କଲିକତାରେ ଅବସ୍ଥାନ କରିବା ସମୟରେ କଟକ ପରିଦର୍ଶନପାଇଁ ମଧୁସୂଦନଙ୍କୁ ଟେଲିଗ୍ରାମ ପ୍ରେରଣ କରିଥିଲେ । ସେହି ଟେଲିଗ୍ରାମର ଉତ୍ତର ପାଇବା ପରେ ମହାତ୍ମାଗାନ୍ଧୀ ମଧୁସୂଦନଙ୍କୁ ନିମ୍ନଲିଖିତ ପତ୍ରଟି ଲେଖିଥିଲେ ।

୧୪୮ ରସାରୋଡ଼, କଲିକତା

୧୨.୮.୧୯୨୫

ପ୍ରିୟବନ୍ଧୁ,

ମୋର ତାର ବାର୍ତ୍ତାର ତୁରନ୍ତ ଉତ୍ତର ଆପଣଙ୍କଠାରୁ ପାଇଲି । ମୁଁ ଆପଣଙ୍କୁ ହିଁ ଅନବରତ ଭାବି ଚାଲିଛି । ମୁଁ ଜାମସେଦପୁରରେ ପହଞ୍ଚିଲା ପର୍ଯ୍ୟନ୍ତ କଟକ ଯାଇ ଆପଣଙ୍କ ଉଦ୍ୟୋଗକୁ ଦେଖିପାରିବି ବୋଲି ଚିନ୍ତା କରିପାରିନଥିଲି । ଜାମସେଦପୁରରେ ପହଞ୍ଚିଲା ପରେ ମୋର ବିବେକ ମତେ ବାରମ୍ବାର ଦଂଶନ କଲା ଆଉ ଚେତେଇ ଦେଲା ଯେ, ମୁଁ ଯେପରି କଟକ ଯାଇ ଆପଣଙ୍କ ଟ୍ୟାନେରି ପରିଦର୍ଶନ କରେ । ମୁଁ ଏଠାରୁ ମଂଗଳବାର ଦିନ ପୁରୀ ଏକ୍ସପ୍ରେସ୍‌ରେ ବାହାରିବି । ତାହା, ମୁଁ ଯେପରି ବୁଝିଛି, କଟକରେ ପାହାନ୍ତିଆ ୪ଟାରେ ପହଞ୍ଚିବ । ମୁଁ ସେଠାରେ ମାତ୍ର ଦୁଇଦିନ ରହିବି । ମୁଁ ଜାଣେ, ଆପଣ ମୋର ପରିଦର୍ଶନକୁ ଗୁପ୍ତ ରଖିପାରିବେ ନାହିଁ । ମାତ୍ର ମୁଁ ଆପଣଙ୍କ ଉପରେ ଗୋଟିଏ ଭାରି କାର୍ଯ୍ୟକ୍ରମ ଲଦିଦେବାକୁ ଚାହେଁ ନାହିଁ । ମୁଁ ଚାହେଁ, ଟ୍ୟାନେରି ସଂପର୍କରେ ତଥା ଆପଣଙ୍କର ଆବଶ୍ୟକତା ଉପରେ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରିବି । ଏବଂ ଆପଣଙ୍କୁ ସାହାଯ୍ୟ ଦେଇ ପାରିବି କି ନାହିଁ ସେ ସଂପର୍କରେ ଚିନ୍ତା କରିବି ।

ମୁଁ ଆପଣଙ୍କ ପାଖେ ହିଁ ଆଗ୍ରହର ସହ ରହିବି, ମାତ୍ର ମୋ ସାଥିରେ ରଂଗଲାଲ୍ ଓ ସତୀଶ ଚନ୍ଦ୍ର ଦାସଗୁପ୍ତ ଆସୁଛନ୍ତି । ପ୍ରଥମ ବ୍ୟକ୍ତି ଜଣେ ମାରୁଆଡ଼ି ଭଦ୍ରବ୍ୟକ୍ତି, ଯାହାଙ୍କୁ ମୁଁ ଗୋରକ୍ଷା ସଂପର୍କରେ ଅନୁପ୍ରେରିତ କରୁଛି । ଦ୍ୱିତୀୟ ବ୍ୟକ୍ତିଙ୍କୁ ଆପଣ ଜାଣନ୍ତି ଆଉ ତୃତୀୟ ବ୍ୟକ୍ତି ହେଉଛନ୍ତି ମହାଦେବ ଦେଶାଇ, ଯାହାଙ୍କୁ ଆପଣ ମଧ୍ୟ ଜାଣନ୍ତି । ବର୍ତ୍ତମାନ ଆପଣ ମୋତେ ଯେଉଁଠାରେ ରଖିପାରନ୍ତି । ମୁଁ ସେଠାରେ ବଂଗାଳୀ ବଂଧୁମାନଙ୍କଠାରୁ ଦେଶବଂଧୁ ଚିତ୍ତରଞ୍ଜନଙ୍କ ସ୍ମୃତିପାଇଁ କିଛି ଅର୍ଥ ସଂଗ୍ରହ କରିବାକୁ ଚାହେଁ । ହଁ ଆପଣ ମୋତେ ଉତ୍କଳରେ କିପରି ଚରଖାର ବାର୍ତ୍ତା ପ୍ରଚାର କରାଯିବ, ସେ ସଂପର୍କରେ ଶିକ୍ଷା ଦେବେ । ଯଦିଓ କଂଗ୍ରେସ ସେଠାରେ ଏ ଦିଗରେ ପାଣି ଭଳି ଅର୍ଥ ବ୍ୟୟ କରିଛି, ମାତ୍ର ପ୍ରକୃତରେ କିଛି ଅଗ୍ରଗତି ହୋଇନାହିଁ । ଅବଶ୍ୟ ଏଥିଲାଗି ମୁଁ ବ୍ୟଥିତ ନୁହେଁ ।

ଆପଣଙ୍କର ଅନ୍ତରଙ୍ଗ

**ଏମ୍.କେ.ଗାନ୍ଧୀ**

ମହାତ୍ମାଗାନ୍ଧୀ ୧୯.୮.୧୯୨୫ରେ ମଧୁସୂଦନଙ୍କର ଅତିଥି ରୂପେ ମଧୁସ୍ମୃତିରେ ଅବସ୍ଥାନ କାଳରେ ଉତ୍କଳଟ୍ୟାନେରି ପରିଦର୍ଶନ କରି କେବଳ ଅଭିଭୂତ ହୋଇଯାଇ ନଥିଲେ, ଜାତୀୟ କଂଗ୍ରେସର ରଚନାତ୍ମକ କାର୍ଯ୍ୟକ୍ରମରେ ଦଳିତ ଜାତିର ଉନ୍ନତି ପରିପ୍ରେକ୍ଷୀରେ ଟ୍ୟାନେରିର କାର୍ଯ୍ୟଧାରାକୁ ଅନ୍ତର୍ଭୁକ୍ତ କରିଥିଲେ । ସେହିଦିନ ମଧୁସ୍ମୃତିଠାରେ ଅନୁଷ୍ଠିତ କଂଗ୍ରେସ କର୍ମୀ ଅଧିବେଶନକୁ ସମ୍ବୋଧିତ କରି ମହାତ୍ମାଗାନ୍ଧୀ କହିଥିଲେ- ଓଡ଼ିଶାର କଂଗ୍ରେସ କର୍ମୀମାନେ ଚରଖା ଚଳାଇ ରଚନାତ୍ମକ କାର୍ଯ୍ୟ କରିବା ଯେତିକି ଗୁରୁତ୍ୱପୂର୍ଣ୍ଣ, ସିଂହଭୂମିର ଓଡ଼ିଶା ସହିତ ମିଶ୍ରଣପାଇଁ

ପ୍ରଚେଷ୍ଟା କରିବା ସେହିପରି ଗୁରୁତ୍ୱପୂର୍ଣ୍ଣ । ମହାତ୍ମାଗାନ୍ଧୀ ୨୦.୮.୧୯୨୫ ସଂଧ୍ୟାରେ କଟକ ଛାଡ଼ିଥିଲେ । ହେଲେ ହାୟ ! ମହାତ୍ମାଗାନ୍ଧୀଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିବା ଉତ୍କଳ ଟ୍ୟାନେରିଟି ୨୨.୧୧.୧୯୨୬ରେ ନିଲାମରେ ଉଠିଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ୧୯୨୭ ସାଲ ଡିସେମ୍ବର ମାସରେ ଉଚ୍ଚ ରକ୍ତଚାପ ରୋଗରେ ଆକ୍ରାନ୍ତ ହୋଇ ମହାତ୍ମାଗାନ୍ଧୀ କଟକର ମଧୁସ୍ମୃତିରେ ମଧୁସୂଦନଙ୍କର ଶୁଶ୍ରୂଷାରେ ଦୁଇଟି ଦିନ ବିତାଇଥିଲେ । ଏହାପରେ ମହାତ୍ମାଗାନ୍ଧୀ ଦ୍ୱିତୀୟ ଚିଠିଟି ଲେଖିଥିଲେ ।

**ସତ୍ୟାଗ୍ରହ ଆଶ୍ରମ, ସାବରମତୀ**

**ମାର୍ଚ୍ଚ ୧୬, ୧୯୨୮**

ପ୍ରିୟବଂଧୁ,

ଅନେକ ଚିନ୍ତା ଓ ଉଦ୍‌ବେଗ ପରେ ମୁଁ ଆଶ୍ରମରେ ଗୋଟିଏ ଛୋଟିଆ ନାମମାତ୍ର ଟ୍ୟାନେରି ପ୍ରତିଷ୍ଠା କରିଛି । ଏଥିରେ ଶକ୍ତିଚାଳିତ ଯଂତ୍ରପାତି ଖଂଜାଯାଇ ନାହିଁ କି କୌଣସି କୁଶଳୀ କାରିଗର ମଧ୍ୟ ନାହାନ୍ତି । କେବଳ ଆମେରିକାରେ ଏ ସଂପର୍କରେ ସାମାନ୍ୟ ଅଭିଜ୍ଞତା ଲାଭ କରିଥିବା ମୋ ଭଳି ମୋଟାବୁଦ୍ଧିଆ ଜଣେ ବ୍ୟକ୍ତି ଅଛନ୍ତି । ମୁଁ ସେହି ମହାନ ଜାତୀୟ ଉଦ୍ୟୋଗର ଭାର ଆପଣଙ୍କ କାନ୍ଧରୁ ଉତାରି ପାରିଲି ନାହିଁ କି ଆପଣଙ୍କର ଅସୁବିଧାରେ ଭାଗିଦାର ହୋଇପାରିଲି ନାହିଁ । ହେଲେ ଆପଣଙ୍କର ପ୍ରେରଣା ହିଁ ପରୋକ୍ଷରେ ଆଶ୍ରମରେ ଏହି ଟ୍ୟାନେରି ପ୍ରତିଷ୍ଠାପାଇଁ ଦାୟୀ । ଆପଣ ଏ ବିଷୟରେ ଥିବା ସାହିତ୍ୟର ଏକ ତାଲିକା ଦେଇ ପାରିବେ କି ? ଚମଡ଼ା କଷେଇ ସଂପର୍କରେ କିଛି ପ୍ରବେଶିକା ବହି ଅଛି କି ? ଯଦି ଏ ସଂପର୍କରେ ଇଂରେଜୀରେ କିଛି ଲେଖା ନଥାଏ, ଆପଣଙ୍କର ବିସ୍ତୃତ ଓ ପରିବ୍ୟାପ୍ତ ଅଭିଜ୍ଞତାରୁ କିଛି ଲେଖି ପଠାନ୍ତୁ , ଯାହା ଜ୍ଞାତବ୍ୟ ବିଷୟ ରୂପେ ବ୍ୟବହୃତ ହେବ । କିଛି ଟିପ୍ପଣୀ ହେଲେ ମଧ୍ୟ ଚଳିବ । ଆପଣଙ୍କର ଟ୍ୟାନେରିରେ କଣ ହେଉଛି ? କିଏ ତାହାର ଦାୟିତ୍ୱରେ ଅଛନ୍ତି?

ମୁଁ ଚାହେଁ ଯେ ଏହି ଆଶ୍ରମର ଟ୍ୟାନେରି ଏକ ଆଦର୍ଶ ରୂପେ ପ୍ରତିଷ୍ଠିତ ହେବ, ଯେପରି ଗ୍ରାମବାସୀମାନେ ସେମାନଙ୍କ ମଲାଗୋରୁକୁ ଉପଯୋଗ କରି ଚମଡ଼ାକୁ ନିଜେ ବ୍ୟବହାର କରିପାରିବେ । ମଲାଗୋରୁର ଚମଡ଼ା କିପରି ଛଡ଼ାଯିବ ଏ ସଂପର୍କରେ ଅନେକଙ୍କୁ ପ୍ରଶ୍ନ ପଚାରିଛି, ମାତ୍ର ଉତ୍ତର କିଛି ପାଇନାହିଁ । ସମସ୍ତେ ଚମଡ଼ା କଷେଇ ବିଷୟରେ ସାମାନ୍ୟ କିଛି ଜାଣନ୍ତି । ମୁଁ ଚାହେଁ ମଲାଗୋରୁର ଚମଡ଼ା କିପରି ଛଡ଼ାଯିବ ଓ ତାହାର ମାଂସ ଅନ୍ତପୁଟା ଆଦି କିଭଳି ସାର ବା ଖତ ରୂପେ ବ୍ୟବହୃତ ହେବ, ସେ ସଂପର୍କରେ ମତେ ଜଣାଇବେ ।

ଆପଣଙ୍କର ଅନ୍ତରଂଗ

**ଏମ୍. କେ. ଗାନ୍ଧୀ**

ଏ ଥିଲା ମଧୁସୂଦନଙ୍କର ଦିଗ୍ ଦର୍ଶନ ଲାଭପାଇଁ ମହାତ୍ମାଗାନ୍ଧୀଙ୍କର ଏକ ବିନମ୍ର ନିବେଦନ । ବହୁ କ୍ଷେତ୍ରରେ ମଧୁସୂଦନ ମହାତ୍ମାଙ୍କୁ ମାର୍ଗପ୍ରଦର୍ଶନ କରିଥିଲେ । ଏଣୁ ମହାତ୍ମାଗାନ୍ଧୀ ୟଙ୍ଗ୍ଇଣ୍ଡିଆ, ହରିଜନ, ହିନ୍ଦୁ, ବମ୍ବେ କ୍ରନିକଲ୍ ପତ୍ରିକାରେ ୧୯୨୫ ସାଲରୁ ୧୯୩୮ ସାଲ ମଧ୍ୟରେ ମଧୁସୂଦନଙ୍କ ପ୍ରତି ତାଙ୍କର ଉଚ୍ଛ୍ୱସିତ ଶ୍ରଦ୍ଧାଂଜଳି କ୍ରମାନ୍ୱୟରେ ପ୍ରକାଶିତ କରିଥିଲେ ।

ମହାତ୍ମାଗାନ୍ଧୀଙ୍କଠାରୁ ତୃତୀୟ ଚିଠିଟି ମଧୁସୂଦନ ଦାସଙ୍କ ତିରୋଧାନର ଅବ୍ୟବହିତ ପରେ ଶ୍ରଦ୍ଧାଂଜଳି ରୂପେ ମଧୁସ୍ମୃତିରେ ପହଞ୍ଚିଥିଲା । ତାହାର କିଛି ଅଂଶ ଏହିପରି ଥିଲା । '' ସ୍ୱର୍ଗତ ମଧୁସୂଦନ ଦାସଙ୍କୁ ଭେଟିବାର ପରମ ସୁଯୋଗ ମତେ ମିଳିପାରିଥିଲା । ସେ ଜଣେ ମହାନ ଦେଶବତ୍ସଳ ଜନନାୟକ ଥିଲେ । X X X ଦେଶର ତରୁଣମାନଙ୍କୁ ଶ୍ରମର ମର୍ଯ୍ୟାଦା ସଂପର୍କରେ ଶିକ୍ଷା ଦେବାକୁ ଯାଇ ନିଜକୁ ନିଃଶେଷ କରିଦେଇଥିଲେ । ଶ୍ରମ ମର୍ଯ୍ୟାଦାର ପ୍ରାମାଣିକ ଶିକ୍ଷା ପ୍ରଦାନପାଇଁ ଅସୀମ ସ୍ୱାର୍ଥତ୍ୟାଗ ମଧ୍ୟରେ କଟକଠାରେ ଏକ ଟ୍ୟାନେରି ପ୍ରତିଷ୍ଠା କରିଥିଲେ ।''



# ଗାନ୍ଧିଜୀଙ୍କ ଉପରେ ମଧୁସୂଦନଙ୍କ ପ୍ରଭାବ

୧୯.୮.୧୯୨୫ତାରିଖ , ଭାଦ୍ରବର ଏକ କାନ୍ତ କମନୀୟ ଶୁଭ୍ର ସକାଳ । କଟକ ରେଲ୍‌ୱେ ଷ୍ଟେସନର ସେପାରିରେ ଉତ୍କଳ ଟ୍ୟାନେରି ସମ୍ମୁଖସ୍ଥ ସୁବିସ୍ତୀର୍ଣ୍ଣ ବନରାଜି ପରିବେଷ୍ଟିତ ପ୍ରାନ୍ତରରେ ସଜ୍ଜିତ ହୋଇ ରହିଛି ମହାତ୍ମାଗାନ୍ଧୀଙ୍କ ପାଇଁ ଭବ୍ୟ ଅଭ୍ୟର୍ଥନା ମଣ୍ଡପ । ଶ୍ୱେତ ଖଦୀ ଆଚ୍ଛାଦିତ ମଣ୍ଡପ ଉପରେ ଶୋଭା ପାଉଛି ଘନ ଉଜ୍ଜ୍ୱଳ ବାଦାମୀ ରଂଗର ମହାବଳ ବାଘର ସୁଦୃଶ୍ୟ ଛାଲ । ଆଉ ମଣ୍ଡପ ପଶ୍ଚାତରେ ରହିଛି ଉତ୍କଳ ଟ୍ୟାନେରିରେ ପ୍ରସ୍ତୁତ ଚମଡ଼ାରେ ତିଆରି ହସ୍ତକଳା ନୈପୁଣ୍ୟର କୃତି ସବୁ । ହଠାତ୍ ଆସି ପହଞ୍ଚିଲେ ମହାତ୍ମାଗାନ୍ଧୀ, ଯାହାଙ୍କୁ ବାଟ କଢ଼େଇ ନେଉଥିଲେ କୁଳବୃଦ୍ଧ ମଧୁସୂଦନ ଦାସ । ସେମାନଙ୍କ ପଛରେ ଅନୁଧାବନ କରୁଥିଲେ ସତୀଶ ଚନ୍ଦ୍ର ଦାସଗୁପ୍ତ, ରଂଗଲାଲ୍ ମୋଦି ଆଉ ମହାଦେବ ଦେଶାଇ । ମହାତ୍ମାଗାନ୍ଧୀ ଆସି ପହଞ୍ଚିଲେ ଅଭ୍ୟର୍ଥନା ମଣ୍ଡପ ସମ୍ମୁଖରେ । ଘନ ଚୁମ୍ବକୀୟ ଆକର୍ଷଣରେ ଟାଣି ହୋଇଗଲା ପରି ତାହାଙ୍କର ଚକ୍ଷୁ ସ୍ୱତଃ ଆକର୍ଷିତ ହୋଇଗଲା ମଣ୍ଡପରେ ସଜ୍ଜିତ ଘନ, ଗାଢ଼ ରଂଗର ବର୍ତ୍ତୁଳ ବାଘ ଛାଲର ଝଲସା ଆସ୍ତରଣ ଉପରେ । ତାହାଙ୍କର ଆଖି ଉଜ୍ଜଳି ଉଠିଲା । କେଡ଼େ ଜୀବନ୍ତଥିଲା, ସେହି କୃତ୍ରିମ ମୁଣ୍ଡଲଗା ଅନନ୍ୟ ବାଘ ଛାଲଟି । ସତେ ଯେପରି ତାହା ତଡ଼ିତ୍ ବେଗରେ ଲମ୍ଫ ଦେବାକୁ ଉଦ୍ୟତ ହେଉଛି । ଗାନ୍ଧିଜୀ ହତଚକିତ ଆଉ ଆଚମ୍ବିତ ହେଲେ । କିଛିକାଳ ଲାଗି ସମ୍ମୋହିତ ହୋଇ ଚାହିଁ ରହିଲେ । କ୍ଷଣକ ପରେ ପ୍ରକୃତିସ୍ଥ ହେଲେ । ପୁଣି ଥରେ ନିରେଖି ଚାହିଁଲେ । ଏ କଣ ? ତାହାଙ୍କର ସ୍ୱପ୍ନର ଭାରତ ଲାଗି ଏକମାତ୍ର ଅବଲମ୍ବନ, ଖଦୀର ବସ୍ତ୍ର ଉପରେ ରହିଛି ମହାବଳ ବାଘର ଅପରୂପ ଛାଲଟି । ସତେ ଏହା କଣ ଖଦୀ ବସ୍ତ୍ର ପ୍ରତି ଅବମାନନା ନୁହେଁ ? ସେ ହଠାତ୍ କହିପକାଇଲେ, ମିଷ୍ଟର ଦାସ ! ଭାରତର ଜାତୀୟତାର ଏକମାତ୍ର ଆଶ୍ରୟ ଖଦୀ ବସ୍ତ୍ର ଉପରେ ସଜ୍ଜିତ ହୋଇ ରହିଛି ମହାବଳ ବାଘର ଛାଲ । ଏମିତି କାହିଁକି ? ପ୍ରତ୍ୟୁତ୍ପନ୍ନମତି ମଧୁସୂଦନ ତତ୍‌କ୍ଷଣାତ୍ ବୁଝିନେଲେ ମହାତ୍ମାଗାନ୍ଧୀଙ୍କର ଅଭିମାନଭରା ଛଳଛଳ ଅଭିବ୍ୟକ୍ତିକୁ । ସେ ସଂଗେସଂଗେ କହିଉଠିଲେ- 'ହଁ, ସମଗ୍ର ଭାରତୀୟ ସମାଜର ମୁକ୍ତିର ଆଧାର ହେଉଛି ଚରଖା ଆଉ ଖଦୀ ବସ୍ତ୍ର । ମାତ୍ର ସ୍ୱଳ୍ପବସ୍ତ୍ର

ପରିଧାନ କରୁଥିବା ଦଳିତ ସମାଜ ମଧ୍ୟରେ ଯେଉଁଠାରେ ଖଦୀ ବସ୍ତ୍ରର ବିଶେଷ ଅନୁପ୍ରବେଶ ଘଟିନାହିଁ, ସେଠାରେ ଖଦୀ ବସ୍ତ୍ର ସହିତ ରହିଛି ଅନ୍ୟ ଏକ ଆୟର ପନ୍ଥା । କଷେଇ ଚମଡ଼ା, ତହିଁରୁ ତିଆରି ହେଉଥିବା ଜୋତା ଆଉ ଅନ୍ୟାନ୍ୟ ହସ୍ତଶିଳ୍ପ ସବୁ ହେଲେ ସେମାନଙ୍କ ଉପାର୍ଜନର ମାଧ୍ୟମ । ସେହି ଦଳିତ ସମାଜର ହସ୍ତର ଚାତୁରୀରେ କଷା ଯାଇଥିବା ଏହି ବାଘ ଛାଲଟି ହେଉଛି ଏହି ଅଲଭ୍ୟ କଳାକୃତି ।' ମଧୁସୂଦନ ଉତ୍ତର ଦେଲେ । ନିର୍ବାକ ହୋଇ ଚାହିଁ ରହିଲେ ମହାତ୍ମାଗାନ୍ଧୀ । ମନେମନେ ସେ କଥାଟିର ଗୁରୁତ୍ୱ ଉପଲବ୍ଧି କରୁଥିଲେ ।

ସେଦିନ ବାଟ କଢ଼େଇ ନେଉଥିଲେ କୁଳବୃଦ୍ଧ ମଧୁସୂଦନ । ଆଗକୁ ଆଗକୁ ଚାଲିଲେ ମହାତ୍ମାଗାନ୍ଧୀଙ୍କ ସମେତ ପରିଦର୍ଶକ ଦଳ । ସ୍ୱଦେଶୀ ଶିଳ୍ପ ପରିକ୍ଷଣର ଏକ ଅନନ୍ୟ ପୀଠସ୍ଥଳ ହେଉଛି ଉତ୍କଳ ଟ୍ୟାନେରି । ଉତ୍କଳ ଟ୍ୟାନେରି କୋଠାଘରେ ଚମଡ଼ା ଆସି ପହଞ୍ଚିବାଠାରୁ ଉତ୍ପାଦନର ଶେଷ ପର୍ଯ୍ୟାୟରେ ପହଞ୍ଚିବା ପର୍ଯ୍ୟନ୍ତ ସମସ୍ତ ପ୍ରକ୍ରିୟାକୁ କ୍ରମାନ୍ୱୟରେ ସମସ୍ତଙ୍କୁ ଦେଖେଇ ଚାଲିଥିଲେ ମଧୁସୂଦନ । ପ୍ରଥମେ ପହଞ୍ଚିଲେ ଚମଡ଼ା କଷେଇ ବିଭାଗରେ ।

ବିଦ୍ୟୁତ୍ ଆଉ ଗ୍ୟାସ୍‌ରେ ସଂଚାଳିତ ଏହି ବିଭାଗଟି, ସେହି ସମୟର ସର୍ବାଧୁନିକ ଯାନ୍ତ୍ରିକ ବ୍ୟବସ୍ଥା ସମନ୍ୱିତ ଥିଲା । ସମଗ୍ର ବିଶ୍ୱରେ ଜୀବନ୍ତ ଗୋରୁ କିମ୍ବା ଜନ୍ତୁଙ୍କୁ ହତ୍ୟା କରାଯାଇ ତାହାର ଛାଲକୁ କଷାଯିବା ସହିତ ଚମଡ଼ାକୁ ପାଗ କରାଯାଇ ତହିଁରୁ ଯୋତା ଆଦି ବସ୍ତୁ ସବୁ ପ୍ରସ୍ତୁତ କରାଯାଉଥିଲା ବେଳେ ଉତ୍କଳ ଟ୍ୟାନେରିରେ ପ୍ରାକୃତିକ ପରିସ୍ଥିତିରେ ମରୁଥିବା ଜନ୍ତୁମାନଙ୍କଠାରୁ ସଂଗୃହୀତ ଚମଡ଼ାକୁ କଷାଇ ଜୋତା ଆଦି ବସ୍ତୁ ପ୍ରସ୍ତୁତ କରାଯାଉଥିଲା । ଏହି ପ୍ରକ୍ରିୟାର ଅନ୍ୱେଷଣରେ ସାରା ୟୁରୋପ ପରିଭ୍ରମଣ ପରେ ମଧୁସୂଦନ ଏହାକୁ ଜର୍ମାନୀରେ ଠାବ କରିଥିଲେ । ସେହିଭଳି ପ୍ରକ୍ରିୟାକରଣ ଏବଂ ପ୍ରସ୍ତୁତିର ଶୈଳୀକୁ ଓଡ଼ିଶାକୁ ଆଣି ବିଭିନ୍ନ ଗଛର ଛାଲିର ପ୍ରୟୋଗରେ ମଧୁସୂଦନ ଏକ ସର୍ବଶ୍ରେଷ୍ଠ ଚମଡ଼ା କଷେଇ ଉତ୍ପାଦନ ପ୍ରକ୍ରିୟାର ପଦ୍ଧତି ଆରମ୍ଭ କରିଥିଲେ । ମହାତ୍ମାଗାନ୍ଧୀ ତାହାଙ୍କ ରଚନାରେ ମଧୁସୂଦନଙ୍କ ଜୀବନର ଏହି ଅଂଶଟି ନିମ୍ନଲିଖିତ ଭାବେ ସ୍ଥାନିତ କରିଯାଇଛନ୍ତି ।

ମଧୁସୂଦନ ଦାସ କଣ କଲେ ? ସେ ଉତ୍କଳର ସମସ୍ତ ଚମଡ଼ା କଷେଇ କାରିଗରଙ୍କୁ ସମ୍ମିଳିତ କରି ସେମାନଙ୍କର ଚମଡ଼ା କଷେଇ ପ୍ରଣାଳୀ ଅଧ୍ୟୟନ କଲେ । ମାତ୍ର ସେ ସେଥିରେ ପରିତୃପ୍ତ ହେଲେ ନାହିଁ । ସେ ଜର୍ମାନୀ ଗଲେ ଓ ସେଠାରେ ଚମଡ଼ାଶିଳ୍ପକୁ ନିକଟରୁ ନିରୀକ୍ଷଣ କଲେ । ତାପରେ ସେ ଜର୍ମାନୀର ବିଶେଷଜ୍ଞଙ୍କୁ ଆଣି କଟକରେ କାରଖାନାଟିଏ ସ୍ଥାପନା କଲେ ।

**(ହରିଜନ ବଂଧୁ ପତ୍ରିକା ୩.୯.୧୯୩୩)**

ଉତ୍କଳଟ୍ୟାନେରିରେ ଉତ୍ପାଦନର ମାନ ବିଶ୍ୱପ୍ରସିଦ୍ଧ ଥିଲା, ଯାହାର ଉତ୍ପାଦିତ ଯୋତାମାନ ପିନ୍ଧି ବ୍ରିଟିଶ୍ ପଦାତିକ ସୈନିକମାନେ ପ୍ରଥମ ବିଶ୍ୱମହାଯୁଦ୍ଧରେ ସଂଗ୍ରାମକୁ ଓହ୍ଲାଇ ଥିଲେ । ମହାତ୍ମାଗାନ୍ଧୀ ଟ୍ୟାନିଂ ବା କଷେଇ ଆଦି ବିଭିନ୍ନ ବିଭାଗର ପରିଦର୍ଶନ ପରେ ଅବଶେଷରେ ପହଞ୍ଚିଲେ ଅନନ୍ୟ କଳାନୈପୁଣ୍ୟର ଅପୂର୍ବ ପାରଦର୍ଶିତା ବହନ କରୁଥିବା ହସ୍ତକଳାଶିଳ୍ପ ବିଭାଗରେ, ଯହିଁରେ ପ୍ରସ୍ତୁତ ହେଉଥିଲା ଯୋତା ବ୍ୟତିରେକେ ମୁଖ୍ୟତଃ ବିଦେଶକୁ ରପ୍ତାନି

କରାଯାଉଥିବା ବ୍ୟବହାର୍ଯ୍ୟ ସାମଗ୍ରୀ ଯଥା- ଭେନିଟି ବ୍ୟାଗ୍ ସମେତ ବିଭିନ୍ନ ପ୍ରକାର ବ୍ୟାଗ୍, ବେଲ୍ଟ, ଚମଡ଼ା, ଜ୍ୟାକେଟ୍, ଶିରସ୍ତ୍ରାଣ, ଟୋପି, କାନ୍ଥକୁ ସଜାଇବା ପାଇଁ ଚାରୁକଳା ସନ୍ନିବେଶିତ ବିଭିନ୍ନ ସାମଗ୍ରୀ । କାରିଗରଙ୍କ ହସ୍ତ ଅଂଗୁଳିର ଯାଦୁକରୀ ସ୍ପର୍ଶଦ୍ୱାରା ସୃଷ୍ଟ ଏହି ବିସ୍ମୟକର ବସ୍ତୁରାଜି ଦେଖି ଗାନ୍ଧିଜୀ ବିସ୍ମୟାଭିଭୂତ ହୋଇପଡ଼ିଲେ । ତାଙ୍କ ପଛରେ ସମସ୍ତଙ୍କ ଅଲକ୍ଷରେ ଦଣ୍ଡାୟମାନ ହୋଇ ରହିଥିଲେ ମଧୁସୂଦନ, ଯାହାଙ୍କର ଅଲଂଘ୍ୟ ବିଦ୍‌ବତ୍ତା ଆଉ ରସାଣିତ ପ୍ରଜ୍ଞା ଏହି ଅଦ୍‌ଭୂତ ଚମତ୍କାରିତା ସଂପାଦନ କରିଥିଲା ।

ଅବଶେଷରେ ମହାତ୍ମାଗାନ୍ଧୀ ପହଞ୍ଚିଲେ ସେହି ବୈଚିତ୍ର୍ୟମୟ ଅଭ୍ୟର୍ଥନା ମଣ୍ଡପରେ । ଏହି ଅଭ୍ୟର୍ଥନା ସଭାରେ ଓଡ଼ିଶାରେ ବୁଦ୍ଧିଜୀବୀ ଗୋଷ୍ଠୀଙ୍କ ସହ ଏକ ଶହ କୁଶଳୀ ମୋଚି କାରିଗର ଆଉ ପାରଦର୍ଶିତା ଅର୍ଜନ କରିଥିବା ତିନିଶହ ମେହନ୍ତର ଯୋଗ ଦେଇଥିଲେ । ସେହି ଶ୍ରମଜୀବୀଙ୍କ ପକ୍ଷରୁ ଜଣେ ଉଦୀୟମାନ ମେହନ୍ତର ତରୁଣ ତାହାର ସୁକୁମାର କଣ୍ଠରେ ମାନପତ୍ର ପାଠକରି ମହାତ୍ମାଗାନ୍ଧୀଙ୍କୁ ସମ୍ବର୍ଦ୍ଧିତ କରିଥିଲା, ତାହାର ପ୍ରଭାବ ବେଶ୍ ଗମ୍ଭୀର ଥିଲା ।

ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଐତିହାସିକ ପରିଦର୍ଶନ କାଳରେ ମହାତ୍ମାଗାନ୍ଧୀ ଅନୁଧ୍ୟାନ କରିଥିଲେ ଯେ, ଗୋଟିଏ ଦିଗରେ ସେ ଯୁଗର ସର୍ବାଧୁନିକ ଯାଂତ୍ରିକ ଓ ରାସାୟନିକ ପ୍ରଣାଳୀରେ ପ୍ରସ୍ତୁତ ହୋଇ ରହିଛି ବିଶ୍ୱମାନର ଚମଡ଼ାରେ ପ୍ରସ୍ତୁତ ବିଭିନ୍ନ ବସ୍ତୁ ଓ ଅନ୍ୟଦିଗରେ ରହିଛି ସ୍ୱଦେଶୀ ହସ୍ତଶିଳ୍ପ ପ୍ରଣାଳୀରେ ପ୍ରସ୍ତୁତ ହୋଇଥିବା ଜୋତା ଆଉ ଭିନ୍ନଭିନ୍ନ କଳାନୈପୁଣ୍ୟବିମଣ୍ଡିତ ରୁଚିପୂର୍ଣ୍ଣ ବସ୍ତୁରାଜି । ଏହାହିଁ ମହାତ୍ମାଗାନ୍ଧୀଙ୍କ ଚିନ୍ତାରାଜ୍ୟକୁ ଗଭୀର ଭାବେ କେବଳ ଆଲୋଡ଼ିତ କରିନଥିଲା, ତାଙ୍କର ସ୍ୱଦେଶୀ ଶିଳ୍ପର ପରିକଳ୍ପନାରେ ଏକ ବିରାଟ ପରିବର୍ତ୍ତନ ଆଣିଥିଲା ।

ଏହିଠାରେ ଅନୁଧ୍ୟାନ କରିବାର କଥା ଯେ ମଧୁସୂଦନଙ୍କ ଯାଦୁକରୀ ଚିନ୍ତା ଓ ପରିକଳ୍ପନା, ବିଦ୍‌ବତ୍ତା ଓ ବୁଦ୍ଧିମତ୍ତାର ଅପୂର୍ବ ସଂସ୍ପର୍ଶରେ ଆସି ମହାତ୍ମାଗାନ୍ଧୀ ତାଙ୍କ ପ୍ରଣୋଦିତ ସ୍ୱଦେଶୀ ଶିଳ୍ପନୀତିର ଆଭିମୁଖ୍ୟରେ କେବଳ ଏକ ବିରାଟ ପରିବର୍ତ୍ତନ ଆଣି ନଥିଲେ, ଦଳିତ ଜାତିର ଆର୍ଥିକ ସଂସ୍ଥାପନ କ୍ଷେତ୍ରରେ ଟ୍ୟାନିଂ ବା ଚମଡ଼ା କଷେଇବାକୁ ତାଙ୍କ ରଚନାତ୍ମକ କାର୍ଯ୍ୟର ଏକ ବିଧିବଦ୍ଧ ଅଂଶ ରୂପେ ଗ୍ରହଣ କରିଥିଲେ ।

ହଁ, ଏହିଠାରେ ହିଁ ରହିଛି ମଧୁସୂଦନଙ୍କ ଉଦ୍ଦାମ ବ୍ୟକ୍ତିତ୍ୱ ଓ ପ୍ରଖର ବୁଦ୍ଧିମତ୍ତାର ପରିପ୍ରକାଶ, ଯହିଁରେ ସମନ୍ୱିତ ରହିଥିଲା ପରିକଳ୍ପନା, ପର୍ଯ୍ୟବେକ୍ଷଣ ସହିତ ଦୂରଦୃଷ୍ଟିର ଅପୂର୍ବ ସମନ୍ୱୟ ଏବଂ ପ୍ରୟୋଗ । ଯଥାର୍ଥରେ ଗାନ୍ଧିଜୀଙ୍କ ଉପରେ ମଧୁସୂଦନ ଛାଡ଼ିଦେଇଥିଲେ ଏକ ଗଭୀର ପ୍ରଭାବ ।

(ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ମହେନ୍ଦ୍ର ମୋହନ ମହାନ୍ତିଙ୍କ ସହିତ ବାର୍ତ୍ତାଳାପ ଓ ମହାତ୍ମାଗାନ୍ଧୀଙ୍କର ରଚନାବଳୀ ଉପରେ ଆଧାରିତ । )



# ଅସମାହିତ ବିରୋଧାଭାସରେ ଗାନ୍ଧିଜୀ

ମହାତ୍ମାଗାନ୍ଧୀଙ୍କ ଉପରେ ମଧୁସୂଦନଙ୍କର ପ୍ରଭାବ ଅକଳ୍ପନୀୟ ଆଉ ଅଚିନ୍ତନୀୟ ଥିଲା । ସ୍ୱଦେଶୀ ଶିଳ୍ପାୟନରେ ମଧୁସୂଦନ ଅଗ୍ରଜ ଆଉ ବରିଷ୍ଠ ଥିଲେ । ମଧୁସୂଦନ, ବ୍ରିଟିଶ ନିଷ୍କେଷଣର ଦାରୁଣ ବିପର୍ଯ୍ୟସ୍ତ ଭୂମିକା ସଂପର୍କରେ ବାଲ୍ୟକାଳରୁ ସଚେତନ ଥିଲେ । ମାତ୍ର ୧୮୯୪ ସାଲରୁ ସେ ସିଦ୍ଧାନ୍ତ ଗ୍ରହଣ କରିଥିଲେ ଯେ, ତାଙ୍କର ବ୍ୟବହୃତ ସମସ୍ତ ପଦାର୍ଥ ସ୍ୱଦେଶୀ ହେବା ଆବଶ୍ୟକ, କିନ୍ତୁ ଏହା ତ୍ୱରିତ ରୀତିରେ ସମାହିତ ହେବା ସଂଭବ ନୁହେଁ । ତେଣୁ ସେ ପ୍ରଥମେ ତାଙ୍କର ପଦଦେଶରେ ପରିଧାନ ଜୋତାକୁ ସ୍ୱଦେଶୀ କରିବାପାଇଁ ସଂକଳ୍ପ କଲେ ଏବଂ ଅବଶେଷରେ ପହଞ୍ଚିଲେ ଚମଡ଼ା କଷେଇ ଶିଳ୍ପରେ । ସେହି ୧୮୯୫-୯୬ ସାଲ ବେଳକୁ ଓଡ଼ିଶାର ସର୍ବୋଚ୍ଚ ରପ୍ତାନି ଥିଲା ମୃତଜନ୍ତୁର ଚମଡ଼ା ଆଉ ଶିଙ୍ଗ । ମଧୁସୂଦନ କୌଣସି ଭାବପ୍ରବଣତାର ବଶବର୍ତ୍ତୀ ହୋଇ ଚମଡ଼ା ଶିଳ୍ପକୁ ଆଦରି ନେଇ ନଥିଲେ, ସେ ଓଡ଼ିଶାର ସର୍ବୋଚ୍ଚ ପରିମାଣର ରପ୍ତାନି ଦ୍ରବ୍ୟକୁ ସ୍ୱଦେଶରେ ବିନିଯୋଗପାଇଁ ଚମଡ଼ା କଷେଇ ଶିଳ୍ପକୁ ଗ୍ରହଣ କରିଥିଲେ । ମାତ୍ର ଓଡ଼ିଶାରେ କିମ୍ବା ଭାରତରେ ମୃତ ଜନ୍ତୁର ଚମଡ଼ାରୁ କଷେଇ ଯୋତା ତିଆରି କରିବାର କୌଣସି ପ୍ରକ୍ରିୟା ଉପଲବ୍ଧ ନଥିଲା ।

ଏଠାରେ ସୂଚାଇ ଦିଆଯାଇପାରେ ଯେ, ଓଡ଼ିଶାର ପଶ୍ଚିମାଞ୍ଚଳ ଓ ଗଡ଼ଜାତରେ ମୃତ ଗୋରୁ ଓ ଅନ୍ୟ ଗୃହପାଳିତ ବା ମୃତ ବନ୍ୟଜନ୍ତୁ ଆଦିଙ୍କ ଚମଡ଼ା ନୌକାରେ ମହାନଦୀ କିମ୍ବା ବ୍ରାହ୍ମଣୀ ନଦୀରେ ଆଣି ପାରାଦ୍ୱୀପ ଅଥବା ଚାନ୍ଦବାଲିବାଟେ କଲିକତା ଦେଇ ବିଦେଶକୁ ରପ୍ତାନି କରାଯାଉଥିଲା । ମାତ୍ର ଏହି ଚମଡ଼ାକୁ କଷେଇ କରିବାପାଇଁ କୌଣସି କୌଶଳ ଉପଲବ୍ଧ ନଥିଲେ ମଧ୍ୟ ମଧୁସୂଦନ ଏହାର ଅନ୍ୱେଷଣରେ ଲାଗି ପଡ଼ିଥିଲେ । ୧୮୯୭ ସାଲରେ ସେ ୟୁରୋପ ଭ୍ରମଣ କାଳରେ, ଜର୍ମାନୀରେ ଥିବା ବୃହତ ଚମଡ଼ା ଶିଳ୍ପରେ , ଚମଡ଼ା ପ୍ରସ୍ତୁତି କୌଶଳ ସନ୍ଦର୍ଶନ କରି ହତଚକିତ ହୋଇ ଯାଇଥିଲେ । ସେହିଠାରେ ସେହି କୌଶଳର ପ୍ରୟୋଗବିଧି ସଂପର୍କରେ ତଥ୍ୟ ଆହରଣ କରି, ଜର୍ମାନୀରେ ପ୍ରସ୍ତୁତ ସେହି ଅତୀବ ଉନ୍ନତ ପ୍ରକ୍ରିୟାର ଯନ୍ତ୍ରପାତି ଆମଦାନି

କରି ୧୯୦୫ ସାଲରେ ଉତ୍କଳ ଟ୍ୟାନେରିର ସ୍ଥାପନା କରିଥିଲେ । ଏହି କଳ ଆଉ ଯନ୍ତ୍ରପାତି ବିଦ୍ୟୁତ୍ ଆଉ ଗ୍ୟାସ୍ ଶକ୍ତିଦ୍ୱାରା ସଂଚାଳିତ ହେଉଥିଲା । ଏହାକୁ ଚଳାଇବାପାଇଁ ଜର୍ମାନୀରୁ ବିଦେଶୀ ଇଂଜିନିୟର ଆଉ ବିଶେଷଜ୍ଞଙ୍କୁ ଆଣି ନିଯୁକ୍ତି ଦେଇଥିଲେ । ଏହି ଟ୍ୟାନେରିରେ ୧୦୦ ମୋଚି ଆଉ ପ୍ରାୟ ୨୦୦ରୁ ଊର୍ଦ୍ଧ୍ୱ ମେହେନ୍ତର କାର୍ଯ୍ୟ କରୁଥିଲେ । ଏହା ଦଳିତ ଜାତିର ଆର୍ଥିକ କ୍ଷେତ୍ରରେ ସଂସ୍ଥାପନ ପାଇଁ ସମଗ୍ର ଭାରତର ବୃହତ୍ତମ ପ୍ରକଳ୍ପ ଥିଲା ।

ଏହି ଉତ୍କଳ ଟ୍ୟାନେରି ସ୍ଥାପନାର କୋଡ଼ିଏ ବର୍ଷ ପରେ ମହାତ୍ମାଗାନ୍ଧୀ ୧୯୨୫ ସାଲରେ ଏହାକୁ ପରିଦର୍ଶନ କରି ହତଚକିତ ହୋଇ ଯାଇ ଥିଲେ । ମହାତ୍ମାଗାନ୍ଧୀଙ୍କର ଅଧ୍ୟୟନ କ୍ଷେତ୍ର ଥିଲା ଇଂଲାଣ୍ଡ ଓ ଶିଳ୍ପ ବହୁଳ ନଗର ଲଣ୍ଡନ । ସେ କିଛି ପରିମାଣରେ ଯାନ୍ତ୍ରିକ ଶିଳ୍ପ ପ୍ରକ୍ରିୟା ସଂପର୍କରେ ଅବହିତ ଥିଲେ । ଏହି ଶିଳ୍ପର ପ୍ରକ୍ରିୟା ମଧ୍ୟ ଅବାରିତ ଭାବରେ ପ୍ରୟୋଗ ହୋଇଥିଲା ଦକ୍ଷିଣ ଆଫ୍ରିକାର ବହୁ କଳକାରଖାନାରେ । ଉତ୍କଳ ଟ୍ୟାନେରି ପରିଦର୍ଶନ କରି ମହାତ୍ମାଗାନ୍ଧୀ ଅବହିତ ହେଲେ ଯେ ଦଳିତ ଜାତିକୁ ଆର୍ଥିକ କ୍ଷେତ୍ରରେ ସଂସ୍ଥାପନ ପାଇଁ ଚମଡ଼ା କଷେଇ ବା ଟ୍ୟାନେରି ଗୋଟିଏ ଉପଯୁକ୍ତ ମାଧ୍ୟମ । ଏ କ୍ଷେତ୍ରରେ ମଧୁସୂଦନ ଯେଉଁ ଅଗ୍ରଗାମୀ ଭୂମିକାରେ ଅବତୀର୍ଣ୍ଣ ଥିଲେ ତାହା ଅତୁଳନୀୟ ଥିଲା । ମହାତ୍ମାଗାନ୍ଧୀଙ୍କୁ ଏହା ଗଭୀର ଭାବରେ ସ୍ତମ୍ଭୀଭୂତ କରିଥିଲେ ମଧ୍ୟ ତାଙ୍କୁ ଏକ ଅଲଂଘ୍ୟ ସମସ୍ୟାର ମୁକାବିଲା କରିବାକୁ ପଡ଼ିଥିଲା । ଉତ୍କଳ ଟ୍ୟାନେରି ଉତ୍ପାଦନର ବହୁ ବିଭାଗ ହସ୍ତ ଚାଳନା ପ୍ରକ୍ରିୟାରେ ସମନ୍ୱିତ ଥିଲେ ମଧ୍ୟ ମୂଳ ଟ୍ୟାନିଂ ବା ଚମଡ଼ା କଷେଇ ବିଧି, ଅତ୍ୟନ୍ତ ସୂକ୍ଷ୍ମ ଯାନ୍ତ୍ରିକ କୌଶଳ ପ୍ରକ୍ରିୟାରେ ସମାହିତ ହେଉଥିଲା । ଏହା କ'ଣ ସ୍ୱଦେଶୀ ଶିଳ୍ପାୟନ ପ୍ରକ୍ରିୟାର ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହୋଇପାରିବ ? ଏହି ଚିନ୍ତା ମହାତ୍ମାଗାନ୍ଧୀଙ୍କୁ ବହୁକାଳ ଧରି ଆକ୍ରାନ୍ତ କରିଥିଲା । ଆଉ ସାବରମତୀ ଆଶ୍ରମରେ ଏହିଭଳି ଏକ କ୍ଷୁଦ୍ର ଟ୍ୟାନେରି ପ୍ରତିଷ୍ଠାପାଇଁ ସେ କୃତ ସଂକଳ୍ପ ଥିଲେ । ମାତ୍ର ଏହି ଟ୍ୟାନିଂ ବା ଚମଡ଼ା କଷେଇ ପ୍ରକ୍ରିୟା ଅତ୍ୟାଧୁନିକ ଯାନ୍ତ୍ରିକ ଶିଳ୍ପୀକରଣର ପ୍ରକ୍ରିୟା ବ୍ୟତୀତ ସ୍ୱଦେଶୀ ଶିଳ୍ପାୟନର ପ୍ରକ୍ରିୟାରେ ସହଜ ସାଧ୍ୟ ଆଉ ଲାଭଦାୟକ ବିବେଚିତ ହୋଇନଥିଲା । ଏ ସଂପର୍କରେ ମହାତ୍ମାଗାନ୍ଧୀ ମଧୁସୂଦନଙ୍କ ସହିତ ବ୍ୟାପକ ଆଲୋଚନା ଆଉ ବାର୍ତ୍ତାଳାପ କରିଥିଲେ ।

ଅନ୍ୟ ଦିଗରେ ମଧୁସୂଦନ ମହାତ୍ମାଗାନ୍ଧୀଙ୍କୁ ସୂଚାଇ ଥିଲେ ଯେ ଭାରତରୁ ପ୍ରାୟ ନଅକୋଟି ଟଂକାର ମୃତ ଗାଈ ଗୋରୁଙ୍କ ଛାଲ ସବୁ ବିଦେଶକୁ ରପ୍ତାନି ହେଉଛି । ଏବଂ ସେଥିରୁ ପ୍ରସ୍ତୁତ ବ୍ୟବହାରଯୋଗ୍ୟ ପଦାର୍ଥ ରୂପେ ପୁନରାୟ କିଛି ପରିମାଣରେ ଆମ ଦେଶକୁ ଆମଦାନି ହେଉଛି । ମହାତ୍ମାଗାନ୍ଧୀଙ୍କର ଏ କ୍ଷେତ୍ରରେ ଅନୁସନ୍ଧିତ୍ସା ଆଉ ପର୍ଯ୍ୟାଲୋଚନା କିଛିକାଳ ପର୍ଯ୍ୟନ୍ତ ବ୍ୟାପ୍ତ ରହିଲା । ଅବଶେଷରେ ମହାତ୍ମାଗାନ୍ଧୀ ଏହି ସମସ୍ୟା ସମାଧାନର ଅନ୍ୱେଷଣରେ ଉତ୍କଳ ଟ୍ୟାନେରି ପରିଦର୍ଶନର ଆଧାରରେ ସେ ସଂପକୀୟ ସ୍ୱୟଂସଂପୂର୍ଣ୍ଣ ନିଷ୍ପତ୍ତିରେ ପହଞ୍ଚିଥିଲେ । ଏଥିପାଇଁ ସେ ମଧୁସୂଦନ ଦାସଙ୍କୁ ଏହାର ଶ୍ରେୟ ପ୍ରଦାନ କରିଛନ୍ତି । ମହାତ୍ମାଗାନ୍ଧୀ ଏହି ସଂପର୍କିତ ଲେଖାଟି ୧୯.୭.୧୯୨୭ରେ ନବଜୀବନ ପତ୍ରିକାରେ ସ୍ୱଦେଶୀ ଆଉ ବିଦେଶୀ ଶୀର୍ଷକରେ ପ୍ରକାଶ କରିଛନ୍ତି । ସେହି ଲେଖାର ଭାବାନୁବାଦ ନିମ୍ନରେ ପ୍ରଦତ୍ତ ହେଲା ।

**ସ୍ୱଦେଶୀ ଆଉ ବିଦେଶୀ**

ବହୁ କୋଟି ଟଙ୍କାର କଞ୍ଚାମାଲ୍ ଆମଦେଶରେ ଉତ୍ପାଦିତ ହେଉଛି । ମାତ୍ର ଗଭୀର ଅବସାଦ ଆଉ ପ୍ରବଞ୍ଚନାର ବିଷୟ ଏହି ଯେ; ଆମ୍ଭମାନଙ୍କର ଅଜ୍ଞତା, ନିଷ୍ଚେଷ୍ଟତା, ଆଳସ୍ୟ ଆଉ ସର୍ବୋପରି ଉଦ୍‌ଭାବନର ସ୍ଥାଣୁତାଯୋଗୁଁ ବହୁ ପରିମାଣରେ ଏଗୁଡିକ ବିଦେଶକୁ ରପ୍ତାନି ହୋଇ ଯାଉଛି ।

ଶେଷରେ ସେ କହିଛନ୍ତି ଯେ, ଆମେମାନେ ପଶୁମାନଙ୍କ ପରି ଅଜ୍ଞତା ମଧ୍ୟରେ ନିବଦ୍ଧ ରହୁ , ଆମ୍ଭମାନଙ୍କର ହାତଗୁଡ଼ିକ କଳା ନୈପୁଣ୍ୟ ଆଉ କୌଶଳର ପ୍ରୟୋଗ କ୍ଷେତ୍ରରେ ପ୍ରଶିକ୍ଷିତ ହୁଅନ୍ତି ନାହିଁ । ଆଉ ମସ୍ତିଷ୍କ ମଧ୍ୟ ଯେପରି ବିକଶିତ ହେବାର କଥା ସେହିପରି ହୁଏନାହିଁ । ଅବଶେଷରେ ଅତୀବ ପ୍ରାଣବନ୍ତ କଳା ଆଉ ତହିଁର ପାରଦର୍ଶିତା ଆମର ଦେଶରୁ ଲୋପ ପାଇଯାଇଛି । ଆଉ ଆମେ କେବଳ ପାଶ୍ଚାତ୍ୟର ଅନ୍ଧାନୁସରଣ କରି ସନ୍ତୁଷ୍ଟ ହୋଇ ରହିଛୁ ।

ଯେଉଁ ପର୍ଯ୍ୟନ୍ତ ଆମ୍ଭେମାନେ ମୃତ ଗାଈଗୋରୁଙ୍କର ନଅକୋଟି ଟଂକାର ଛାଲକୁ କଷେଇବାପାଇଁ ବ୍ୟବହାରଯୋଗ୍ୟ କଳକବ୍‌ଜା ଓ ଯନ୍ତ୍ରପାତି ତିଆରି କରିପାରି ନାହୁଁ , ମୁଁ କଳକବ୍‌ଜା ବା ଯନ୍ତ୍ରପାତି ପୃଥିବୀର ଯେ କୌଣସି ଅଂଚଳରୁ ଆମଦାନି କରିବାକୁ ପ୍ରସ୍ତୁତ ଅଛି । ଆଉ ଏହି ପରି କରିବା ସହିତ ମୁଁ ବିଶ୍ୱାସ କରେ ଯେ, ଏହା ସହିତ ମୁଁ ସ୍ୱଦେଶୀ ବ୍ରତର ପାଳନ କରିବାପାଇଁ ଯେଉଁ ପ୍ରତିଜ୍ଞା ଗ୍ରହଣ କରିଛି ତାହାର ସାମାନ୍ୟ ମାତ୍ର ବିରୁଦ୍ଧାଚରଣ କରୁନାହିଁ, ଅନ୍ୟ ଦିଗରେ ତାହାକୁ ପରିପୂର୍ଣ୍ଣ ଭାବରେ ପାଳନ କରୁଛି । ଅନ୍ୟ ପକ୍ଷରେ ଏହିପରି କଳକବ୍‌ଜା ସବୁକୁ ଆମଦାନି କରିବାକୁ ଯଦି ମୁଁ ପ୍ରତ୍ୟାଖ୍ୟାନ କରେ ତେବେ ବୁଝିବି ଯେ, ମୋର ଚରମ ଅବୋଧତା ଯୋଗୁଁ ମୁଁ ଏହିପରି ନିଷେଧାତ୍ମକ କାର୍ଯ୍ୟ କରୁଛି ।

ଏହାଥିଲା ମହାତ୍ମାଗାନ୍ଧୀଙ୍କର ରଚିତ '' ସ୍ୱଦେଶୀ ଆଉ ବିଦେଶୀ'' ନିବନ୍ଧର କିଛି ନିର୍ବାଚିତ ଅଂଶର ଭାବାନୁବାଦ । ଏହା ଥିଲା ସମସ୍ୟା ସମାଧାନର ଉଦାତ୍ତ ଉତ୍ତର ଯାହା ଗବେଷଣାର ଆଧାରରେ ଉପଲବ୍ଧ ହୋଇଥିଲେ ମଧ୍ୟ ଏଥିରେ ମଧୁସୂଦନଙ୍କର କ୍ରାନ୍ତିକାରୀ ଭୂମିକା ଥିଲା ଅନସ୍ୱୀକାର୍ଯ୍ୟ । ମଧୁସୂଦନ ହିଁ ମହାତ୍ମାଗାନ୍ଧୀଙ୍କର ସ୍ୱଦେଶୀ ବ୍ରତ ପାଳନର ସୀମାବଦ୍ଧତା ଆଉ ସଂକୀର୍ଣ୍ଣତାର ଉର୍ଦ୍ଧ୍ୱକୁ ଉତ୍ତୋଳିତ କରି ଆବଶ୍ୟକ କ୍ଷେତ୍ରରେ କୁଶଳୀ କଳକବ୍‌ଜା ସମନ୍ୱିତ ବୃହତ ଶିଳ୍ପକୁ ସ୍ୱଦେଶୀ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରିଥିଲେ । ମଧୁସୂଦନଙ୍କର ପ୍ରଖର ବୁଦ୍ଧିମତ୍ତାର ଆଧାରରେ ଏହିପରି ଭାବରେ ଗାନ୍ଧିଜୀ ଏକ ଦୁର୍ବାର ଅସମାହିତ ବିରୋଧାଭାସ ସଂପର୍କିତ ସମସ୍ୟାର ନିଷ୍ପିତ ସମାଧାନର ଦ୍ୱାରଦେଶରେ କେବଳ ଉପନୀତ ହୋଇ ନଥିଲେ, ଆଗାମୀ ଯୁଗ ଲାଗି ଉଦାତ୍ତ ସମୃଦ୍ଧିର ମାର୍ମିକ ପ୍ରତିଶ୍ରୁତି ବହନ କରୁଥିବା ଏକ ଗରିମାମୟ ଭବିଷ୍ୟତର ପରିକଳ୍ପନା କରି ଚାଲିଥିଲେ ।

ଏହାହିଁ ହେଉଛି ମଧୁସୂଦନଙ୍କର ଗାନ୍ଧିଜୀଙ୍କ ପ୍ରତି ପ୍ରଦର୍ଶିତ ମହିମାନ୍ୱିତ ମାର୍ଗଦର୍ଶନର ମର୍ମଗାଥା ।



# ପଦଯାତ୍ରାର ପଥେପଥେ ମଧୁତୀର୍ଥ

ଘଟଣାଟି ଏପରି ଘଟିଥିଲା, ଯାହାଥିଲା ଏକାନ୍ତ ଆକସ୍ମିକ । ଜୀବନର ମଧ୍ୟଭାଗରେ ଥରେ ଏକ ଦୂରନ୍ତ ଆକର୍ଷଣର ବଶବର୍ତ୍ତୀ ହୋଇ ମଧୁସୂଦନଙ୍କର ଜନ୍ମପୀଠ ମଧୁତୀର୍ଥ ସତ୍ୟଭାମାପୁରରେ ପହଞ୍ଚିଲି । ମୁଁ ସେଠାରେ ହଠାତ୍ ଏକ ମଣ୍ଡପରେ ମହାତ୍ମାଗାନ୍ଧୀଙ୍କର ଏକ ପାର୍ଶ୍ୱରେ, ତାହାଙ୍କର ଆଦର୍ଶର ପ୍ରତିପକ୍ଷ ବୋଲି ବିବେଚନା କରୁଥିବା ମଧୁସୂଦନଙ୍କର ପ୍ରତିମୂର୍ତ୍ତି ଦେଖିଲି । କେବଳ ଦେଖିଲି ନାହିଁ ଅତ୍ୟନ୍ତ ଆଚମ୍ବିତ ହୋଇ ରହିଲି । ମୋର ମନରେ ଉଦ୍ଭୁତ ହୋଇଥିବା ଦୁର୍ବାର ପ୍ରଶ୍ନ ପଚାରିବାର ଅବକାଶ ନଥିଲା । ଉତ୍ତର ମିଳିବା ମଧ୍ୟ ଅସମ୍ଭବ ଥିଲା । ଏଣୁ ଅନୁତ୍ତରିତ ହୋଇ ବାହୁଡ଼ି ଆସିଲି । ସେତେବେଳକୁ ଏ ଦିଗରେ ମୋର ଅଧ୍ୟୟନ ସ୍ୱଳ୍ପ ଥିଲା ।

ମାତ୍ର ମଧୁସୂଦନଙ୍କର ଦେଢ଼ଶହ ବର୍ଷ ଜୟନ୍ତୀ ଅବକାଶରେ ୧୯୯୮ ସାଲରେ ଏ ସଂପର୍କରେ କିଛି ପଢ଼ା ପଢ଼ି କଲି । ହଁ, ୧୮୯୭ ସାଲରେ ମଧୁଜୟନ୍ତୀ ଉପଲକ୍ଷ୍ୟେ ପ୍ରଖ୍ୟାତ ସାମ୍ବାଦିକ ସ୍ୱର୍ଗତଃ ବଳରାମ ମହାନ୍ତିଙ୍କର ମଧୁସୂଦନଙ୍କ ଉପରେ ଗୋଟିଏ ଲେଖା ଦୈନିକ ସମାଜରେ ପ୍ରକାଶିତ ହୋଇଥାଏ । ସେଥିରେ ମହାତ୍ମାଗାନ୍ଧୀଙ୍କର ମଧୁସୂଦନଙ୍କ ଉପରେ ପ୍ରଦତ୍ତ ଶ୍ରଦ୍ଧାଞ୍ଜଳିର ଓଡ଼ିଆ ଅନୁବାଦ ବୋଧହୁଏ ଏହିପରି ଥିଲା । '' ସମାଜର ଏକ ଅଂଶ ପ୍ରତି ଆମେ ଯେଉଁ ଅପରାଧ କରିଚାଲିଛେ, ସ୍ୱର୍ଗତ ମଧୁସୂଦନ ଦାସ, ସେହି ସଂପର୍କରେ ମୋର ଆଖି ଖୋଲି ଦେଇଥିଲେ ।'' ମୁଁ ଏହି ଲେଖା ପଢ଼ିସାରିଲା ପରେ ସ୍ତମ୍ଭୀଭୂତ ଆଉ ନିର୍ବାକ୍ ହୋଇ ଘଡ଼ିଏ ଚାହିଁ ରହିଲି । ଉତ୍ତର ଆଉ ପ୍ରତ୍ୟୁତ୍ତରର ସେହି ବକ୍ତବ୍ୟ ମଧ୍ୟରେ ବିଲୀନ ହୋଇ ଦିଗହଜା ହୋଇଗଲି । ତେଣିକି କେବଳ ରହିଲା, ସ୍ତବ୍ଧତାର ସୀମାହୀନ ନିବିଡ଼ ପରିପ୍ରକାଶ ମଧ୍ୟରେ ନିମଜ୍ଜମାନ ହୋଇ ରହିବାର ବିରଳ ଅନୁଚ୍ଚାରିତ ଅନୁଭୂତି ।

ତାହାରି ପରବର୍ଷ ମଧ୍ୟ ପାଳିତ ହେଉଥିଲା ମଧୁସୂଦନଙ୍କର ଦେଢ଼ଶହ ବର୍ଷ ଜୟନ୍ତୀ ସମ୍ବତ୍ସର । ମୁଁ ମଧୁସୂଦନଙ୍କ ଉପରେ ଗୋଟିଏ କ୍ଷୁଦ୍ର ନିବନ୍ଧଭିତ୍ତିକ ପୁସ୍ତକ ଇଂରାଜୀରେ ଲେଖିବା ପାଇଁ ବ୍ରତୀ ରହିଲି । ମାତ୍ର ବଳରାମ ମହାନ୍ତିଙ୍କର ରଚନାରେ ଗାନ୍ଧିଜୀଙ୍କର ମଧୁସୂଦନଙ୍କ ଉପରେ

ଶ୍ରଦ୍ଧାଞ୍ଜଳି ମତେ ଅହରହ ବିଧୂରିତ କରୁଥାଏ । ଏହା କଣ ସମ୍ଭବ ? ମଧୁସୂଦନ କଣ ଗାନ୍ଧିଜୀଙ୍କର ଚକ୍ଷୁ ଉନ୍ମୀଳନ କରିଥିଲେ ? ସେହି ଉଦ୍ଧୃତିର ପ୍ରକୃତ ଇଂରାଜୀ ବକ୍ତବ୍ୟର ଅନୁସନ୍ଧାନରେ ପହଞ୍ଚିଲି ରାଜ୍ୟ ଅଭିଲେଖାଗାରଠାରେ । ସେଠି ପୁସ୍ତକାଗାରର ଗଚ୍ଛିତ ଭଣ୍ଡାରକୁ ଯାଇ ପୁସ୍ତକ ପରିଦର୍ଶନ କରିବା ପାଇଁ ଅନୁମତି ମିଳିଲା ନାହିଁ । ସେଠାରୁ ଯାଇ ସୂଚନା ଭବନର ପାଠାଗାରରେ ପହଞ୍ଚିଲି । ସେହି ଗ୍ରନ୍ଥାଗାରର ଏକ ଆଲମିରାରେ ସୁରକ୍ଷିତ ହୋଇ ରହିଥାଏ "Collected works of Mahatma Gandhi" ।ପ୍ରାୟ ୮୦ ଖଣ୍ଡ ପୁସ୍ତକ । ସବିନୟ ନିବେଦନ ପରେ ସୂଚନାଭବନର ଗ୍ରନ୍ଥାଗାରିକଙ୍କଠାରୁ ସେହି ଆଲମିରାର ଚାବିନେଇ ସେଥିରେ ଗଚ୍ଛିତ ଥିବା ଉକ୍ତ ଗ୍ରନ୍ଥାବଳୀର ୧୯୨୪ ରୁ ୧୯୩୮ ପର୍ଯ୍ୟନ୍ତ ସମସ୍ତ ଗ୍ରନ୍ଥର ପରିଶିଷ୍ଟ ସବୁ ଦେଖିଲି ।ଏଥିରେ ସେହି ଗ୍ରନ୍ଥରେ ସୂଚିତ ଥିବା ସମସ୍ତ ବ୍ୟକ୍ତିଙ୍କର ତାଲିକା ରହିଥାଏ । ୧୯୨୫ ସାଲର ଗ୍ରନ୍ଥଠାରୁ ପରିଶିଷ୍ଟ ସବୁ ଖୋଲି ଦେଖିଲି । ଏହା ଥିଲା ଲିଭିଂଷ୍ଟୋନ୍‌ଙ୍କର ଆଫ୍ରିକା ଆବିଷ୍କାର ପରି ଅତ୍ୟନ୍ତ ରୋମାଂଚକର ଆଉ ହର୍ଷ ଉଲ୍ଲାସ ବିଜଡ଼ିତ ଅଭିଜ୍ଞତା, ଯାହାଥିଲା ଅତୀବ ବିସ୍ମୟକର । ମହାତ୍ମାଗାନ୍ଧୀଙ୍କର ସଂକଳିତ ଗ୍ରନ୍ଥାବଳୀରେ ୧୯୨୫ ସାଲଠାରୁ ପ୍ରତି ବର୍ଷେ ଆଉ ଦୁଇବର୍ଷ ଅନ୍ତରାଳରେ ମହାତ୍ମାଗାନ୍ଧୀଙ୍କର, ପ୍ରାଜ୍ଞ ମଧୁସୂଦନଙ୍କ ଉପରେ ଉଚ୍ଛ୍ୱସିତ ଶ୍ରଦ୍ଧାଂଜଳି ରୂପରେ ନିବନ୍ଧଭିତ୍ତିକ ବକ୍ତବ୍ୟ ସବୁ ସଂକଳିତ ହୋଇଥିଲା, ୧୯୩୮ ସାଲ ପର୍ଯ୍ୟନ୍ତ । ବଳରାମ ମହାନ୍ତି, ଗାନ୍ଧିଜୀଙ୍କ ଯେଉଁ ମନ୍ତବ୍ୟର ସୂଚନା ଦେଇଥିଲେ, ତାହାର ମୂଳ ଇଂରାଜୀ ଲେଖା ଏହିପରିଥିଲା ।

"The divorce of intellect from body labour has made us perhaps,shortest lived, most resourceless and most exploited nation on earth. The state of village tannery is perhaps the best proof of my indictment. It was late Madhusudan Das, who opened my eyes to the great crime against a part of humanity. He sought to make reparation by opening what might be called an educational tannery."

"ମାତ୍ର ଏହି ଦେଶର ଶରୀର ଶ୍ରମରୁ, ଚିନ୍ତାଶକ୍ତିର ବହିଷ୍କାର ଆମ୍ଭମାନଙ୍କୁ ପୃଥିବୀ ପୃଷ୍ଠରେ ସବୁଠାରୁ ସ୍ୱଳ୍ପାୟୁ, ନିର୍ଦ୍ଧନ ଆଉ ନିଷ୍ପେଷିତ ଜାତିରେ ପରିଣତ କରିଛି । ଏହି ଦେଶର ଗ୍ରାମ୍ୟ ଚମଡ଼ା କଷେଇ ଶିଳ୍ପର ଦୟନୀୟ ସ୍ଥିତି ଏହାର ପ୍ରକୃଷ୍ଟ ନିଦର୍ଶନ । ମଣିଷ ସମାଜର ଏକ ଅଂଶ ପ୍ରତି ଆମେ ଯେଉଁ ନିର୍ଘାତ ଅପରାଧ କରିଚାଲିଛେ, ସେ ସଂପର୍କରେ ସ୍ୱର୍ଗତଃ ମଧୁସୂଦନ ଦାସ ମୋର ଚକ୍ଷୁ ଉନ୍ମୀଳନ କରିଦେଇଥିଲେ । ଏ କ୍ଷେତ୍ରରେ ଅବାରିତ ଭାବେ ଆମେ ଯେଉଁ ଅପରାଧ କରିଚାଲିଛେ, ତାହାର ପ୍ରାୟଶ୍ଚିତ୍ତ ଆଉ ନିରାକରଣ କରିବାପାଇଁ ମଧୁସୂଦନ ଦାସ ଗୋଟିଏ ଶିକ୍ଷାମୂଳକ ଟ୍ୟାନେରି ଖୋଲିଥିଲେ ।"

କିଭଳି ସମ୍ବେଦନାପୂର୍ଣ୍ଣ ଉଚ୍ଛ୍ୱସିତ ବିହ୍ୱଳତାର ଉକ୍ତି ଏହାଥିଲା, ମହାତ୍ମାଗାନ୍ଧୀଙ୍କର ମଧୁସୂଦନଙ୍କ ପ୍ରତି ! ପ୍ରାୟ ୧୯୨୫ ସାଲରୁ ୧୯୩୮ ସାଲ ଯାଏ ମହାତ୍ମାଗାନ୍ଧୀଙ୍କ ସଂକଳିତ ଗ୍ରନ୍ଥାବଳୀରେ, କୋଡ଼ିଏରୁ ଊର୍ଦ୍ଧ୍ୱ ବକ୍ତବ୍ୟସଂବଳିତ ନିବନ୍ଧ ଆଉ ପତ୍ରାବଳୀ ସନ୍ଦର୍ଶନ କରି ହତ ଚକିତ

ହୋଇଯାଇଥିଲି । ପ୍ରତିଟି ବକ୍ତବ୍ୟରେ ମହାତ୍ମାଗାନ୍ଧୀ ମଧୁସୂଦନଙ୍କୁ ନିଜର ଅନ୍ୟତମ ମାର୍ଗଦର୍ଶକ ରୂପେ ଶ୍ରଦ୍ଧାଂଜଳି ବାଢ଼ି ଚାଲିଥିଲେ ପ୍ରଗାଢ଼ କୃତଜ୍ଞତା ଭରା ଉଦ୍ଦୀପନାର ବଶବର୍ତ୍ତୀ ହୋଇ ।

ଗାନ୍ଧିଜୀଙ୍କର ଅବିସ୍ମରଣୀୟ ଐତିହାସିକ ପଦଯାତ୍ରା ମଧ୍ୟରେ ୧୯୩୦ ସାଲର ଲବଣ ସତ୍ୟାଗ୍ରହ ଜନିତ ଦାଣ୍ଡିଯାତ୍ରା, ୧୯୩୪ ସାଲର ହରିଜନ ଶିକ୍ଷାମୂଳକ ପଦଯାତ୍ରା ଆଉ ୧୯୪୭ ସାଲର ସାଂପ୍ରଦାୟିକ ସଦ୍‌ଭାବ ସମନ୍ୱିତ ନୂଆଖାଲିର ପଦଯାତ୍ରାକୁ ଅତୀବ ମହାନ ରୂପେ ଗଣ୍ୟ କରାଯାଏ । ଏ ସମଗ୍ର ମଧ୍ୟରେ ମହାତ୍ମାଗାନ୍ଧୀଙ୍କର ଓଡ଼ିଶାରେ ସଂଚାଳିତ ୧୯୩୪ ସାଲର ପଦଯାତ୍ରା ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ଥିଲା, ଯାହା ଗ୍ରାମ ଗହଳରେ ନିଶ୍ଚେଷ୍ଟତାର ସ୍ଥାଣୁତାକୁ ସମାପ୍ତ କରି ଏକ କର୍ମଚାଞ୍ଚଲ୍ୟ ଭରିଦେବା ସହିତ, ହରିଜନମାନଙ୍କୁ ନିଶ୍ଚେଷ୍ଟତାର ପରିଧି ମଧ୍ୟରୁ ଉଦ୍ଧାର କରିବା ମୂଳ ଲକ୍ଷ୍ୟ ଥିଲା । ଗାନ୍ଧିଜୀ ପ୍ରଥମେ ଝାରସୁଗୁଡ଼ାରେ ୫.୫.୧୯୩୪ରେ ପହଞ୍ଚିଲେ । ଏହାପରେ ମଟରଗାଡ଼ିରେ ପୁରୀ ଆସି ୮.୫.୧୯୩୪ରେ ଉପସ୍ଥିତ ହେଲେ । ପୁରୀଠାରୁ ୯.୫.୧୯୩୪ରେ ପଦଯାତ୍ରା ଆରମ୍ଭକରି ୧୬.୫.୧୯୩୪ରେ କଟକରେ ପ୍ରଥମ ଭାଗର ପଦଯାତ୍ରା ଶେଷ କଲେ । ଆଉ ଏହି ଦିନ କଟକରୁ ପାଟଣାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଯୋଗଦେବାପାଇଁ ରେଳରେ ଯାତ୍ରାକଲେ ଓ ୨୫.୫.୧୯୩୪ରେ ପାଟଣାରୁ ରେଳ ଯୋଗେ ପ୍ରତ୍ୟାବର୍ତ୍ତନ କରି ବୈରୀ ଷ୍ଟେସନରେ ଓହ୍ଲାଇଲେ । ମହାତ୍ମାଗାନ୍ଧୀ ଏହିଠାରୁ ଓଡ଼ିଶାରୁ ତାଙ୍କର ଦ୍ୱିତୀୟ ଭାଗର ପଦଯାତ୍ରା ଆରମ୍ଭ କଲେ ।

ମହାତ୍ମାଗାନ୍ଧୀ ଓଡ଼ିଶାରେ ୧୯୩୪ ସାଲରେ ତାହାଙ୍କର ସମଗ୍ର ପଦଯାତ୍ରା ସମାପ୍ତିର ପ୍ରାୟ ଆଠମାସ ଅନ୍ତରାଳରେ ୨୩.୨.୧୯୩୫ରେ ନାଗପୁରରେ ପ୍ରଦତ୍ତ ତାହାଙ୍କର ଭାଷଣରେ ସ୍ୱୀକାରୋକ୍ତି କରିଛନ୍ତି ଯେ, ଓଡ଼ିଶାରେ ଏହି ପଦଯାତ୍ରା ଆପଣାର ଅନ୍ୟତମ ମାର୍ଗଦର୍ଶକ ମଧୁସୂଦନଙ୍କର ପରାମର୍ଶରେ ହିଁ ଆରମ୍ଭ କରିଥିଲେ । ମାତ୍ର ଏହି ପଦଯାତ୍ରାପାଇଁ ମହାତ୍ମାଗାନ୍ଧୀ ଓଡ଼ିଶାରେ ୫.୫.୧୯୩୪ରେ ପହଞ୍ଚିଲା ବେଳକୁ ୪.୨.୧୯୩୪ରେ ମଧୁସୂଦନଙ୍କର ମହାପ୍ରୟାଣ ଘଟିଥିଲା । ଏଣୁ ପାଟଣାରୁ ଫେରି ୨୧.୫.୧୯୩୪ରେ ବୈରୀଠାରେ ରେଳରୁ ଅବତରଣ କରିବା ପରେ ମହାତ୍ମାଗାନ୍ଧୀଙ୍କର ସ୍ୱତନ୍ତ୍ର ନିର୍ଦ୍ଦେଶ ଥିଲା ଯେ ଏହି ପଦଯାତ୍ରା ଯେପରି ମଧୁସୂଦନଙ୍କର ମହିମାନ୍ୱିତ ପବିତ୍ର ଜନ୍ମସ୍ଥାନ ସତ୍ୟଭାମାପୁର ଦେଇ ସଂଚାଳିତ ହୁଏ , ତାହାହେଲେ ସେଠାରେ ସେ ମଧୁସୂଦନଙ୍କ ସ୍ମୃତିରେ ନିମଜ୍ଜମାନ ରହି ସମଗ୍ର ରାତିବାସଟି ବିତାଇବେ । ଏହାହିଁ ହେବ ତାଙ୍କର ମଧୁସୂଦନଙ୍କ ପ୍ରତି ଗରିମାଦୀପ୍ତ ଶ୍ରଦ୍ଧାଞ୍ଜଳି ।

ବାପୁଜୀ ତାଙ୍କର ଓଡ଼ିଶାରେ ଦ୍ୱିତୀୟ ବାର ପଦଯାତ୍ରାରେ ୨୧.୫.୧୯୩୪ରେ ବୈରୀ ଷ୍ଟେସନରେ ରେଳରୁ ଅବତରଣ କଲେ । ତାହା ଥିଲା ପ୍ରଭାତର ସ୍ନିଗ୍ଧ ଓ ଶାନ୍ତିପ୍ରଦାୟୀ ସମୟ । ସେହି ଦିନଟି ମଧ୍ୟ ଥିଲା ବାପୁଜୀଙ୍କ ମୌନ ଦିବସ । ସେହି ଷ୍ଟେସନ୍‌ରେ ପ୍ରଶାନ୍ତିର ବାତାବରଣ ମଧ୍ୟରେ ପ୍ରାର୍ଥନା ସଭା ଅନୁଷ୍ଠିତ ହେଲା । ପ୍ରାର୍ଥନା ସଭାର ସମାପ୍ତି ପରେ ଚାରିମାଇଲ ଦୂରରେ ଅବସ୍ଥିତ ଥିବା ଚମ୍ପାପୁର ଆଶ୍ରମରେ ଗୋଟିଏ ସଭା ଅନୁଷ୍ଠିତ ହେଲା । ସେହିଦିନ ବାପୁଜୀ ଯଶରାଜପୁର ବାଟ ଦେଇ ଭେଦା ଗ୍ରାମକୁ ଗଲେ । ପଥ ମଧ୍ୟରେ ଲେଖନପୁରରେ ହରିଜନ

ବସ୍ତିକୁ ଯାଇ ତିନିଜଣ ପାଣ ପରିବାରଙ୍କ କୁଟୀରକୁ ଯାଇ ଆଉ ଅନ୍ତରଂଗତାର ଆବେଦନରେ ସେମାନଙ୍କୁ ବିହ୍ୱଳିତ କରିଥିଲେ । ମହିଳାମାନଙ୍କ ସହିତ ଅତ୍ୟନ୍ତ ସ୍ୱଚ୍ଛ ଅନ୍ତଃକରଣରେ କଥାବାର୍ତ୍ତା ହେଲେ । ତେଣୁ ସେମାନେ ନିଭୃତ ଅନ୍ତରର ବେଦନା ଅଜାଡ଼ି ଦେଇଥିଲେ ଆଶ୍ୱାସନାର ହୃଦୟସ୍ରାବୀ ସ୍ପର୍ଶରେ । ଭେଦାଠାରୁ ସତ୍ୟଭାମାପୁର ଥିଲା ମାତ୍ର ଅଳ୍ପ ଦୂରର ପଥ ।

ତାହା ଥିଲା ମଇମାସର ରୌଦ୍ରଦୀପ୍ତ ତେଇଶି ତାରିଖ । ବାପୁଜୀଙ୍କ ନିବିଡ଼ ହୃଦୟର ଆବେଗରେ ରସାଣିତ ଥିଲା ସେହି ସ୍ୱର୍ଣ୍ଣିମ ଦିବସଟି । ଆପଣାର ମାର୍ଗଦର୍ଶକଙ୍କ ଜନ୍ମସ୍ଥାନ ସତ୍ୟଭାମାପୁର ବାପୁଜୀଙ୍କପାଇଁ କିଭଳି ମହିମାନ୍ୱିତ ଥିଲା, ତାହା ପ୍ରକୃତରେ ଅକଳ୍ପନୀୟ । ଭେଦା ଯାତ୍ରା ପରେ ବାପୁଜୀ ପହଞ୍ଚିଥିଲେ ଅପରାହ୍ଣ ବେଳାରେ ସତ୍ୟଭାମାପୁରଠାରେ । ସୂର୍ଯ୍ୟର ମାଧୁର୍ଯ୍ୟଭରା ରକ୍ତିମ କିରଣରେ ଛାଇ ସବୁ ଲମ୍ବିଯାଇଥିଲା । ଏଠାରେ ଅନ୍ୟସ୍ଥାନ ପରି ଟଙ୍କା ଥଳି ମଧ୍ୟ ଭେଟି ଦିଆଗଲା । ମଧୁସୂଦନଙ୍କର ସଂପର୍କୀୟା ବୋହୂ ଉର୍ମିଳା ଦେବୀ ମଧ୍ୟ ଅଳଂକାର ପ୍ରଦାନ କରି ବାପୁଜୀଙ୍କୁ ଭୂମିଷ୍ଠ ପ୍ରଣାମ କରିଥିଲେ ।

ସେହିଦିନ ସାୟାହ୍ନରେ ଭଜନ ଅନୁଷ୍ଠିତ ହୋଇଥିଲା । ବାପୁଜୀ ଏହି ସାନ୍ଧ୍ୟ ସମାବେଶର ପ୍ରାର୍ଥନା ସଭାରେ ବିପୁଳ ଆବେଗରେ ଅତ୍ୟନ୍ତ ଉଚ୍ଛ୍ୱସିତ କଣ୍ଠରେ ଭାଷଣ ପ୍ରଦାନ କରି କହିଥିଲେ, " ଆମର ଏହି ଦେଶରେ ପ୍ରତ୍ୟେକ ମଣିଷକୁ ଭଗବାନଙ୍କର ନାମ ପ୍ରଦାନ କରାଯାଏ । ଏଣୁ ମଣିଷର ନାମ ଯେତିକି ଭଗବାନଙ୍କର ନାମ ସେତିକି । ଏତିକି ନାମ ସ୍ମରଣ କରିବା ଆମ ପକ୍ଷରେ ସଂଭବ ନୁହେଁ । ଆମକୁ ଭଗବାନଙ୍କର ଯେଉଁନାମ ବିହ୍ୱଳିତ କରୁଛି, ଭକ୍ତିର ଅପାର ଉଦ୍‌ବେଳନରେ ମନକୁ ରସାଣିତ କରୁଛି, ସେହି ନାମରେ ଭଗବାନଙ୍କୁ ଡାକିବା । ପ୍ରଭାତରୁ ଉଠି ଭଗବାନଙ୍କର ନାମ ନେଲେ ଦିନଯାକ ମଣିଷ ସୁରକ୍ଷିତ ରହିଥାଏ । ସାରା ଦିନର ଚବିଶି ଘଣ୍ଟାରେ ଭଗବାନଙ୍କ ନାମ ଅନ୍ତତଃ ଦୁଇଥର ନେବା ଉଚିତ । ଏହା ଆମକୁ ଭଗବାନଙ୍କ ସହିତ ସଂପର୍କିତ କରି ରଖିବା ସହିତ ସୁରକ୍ଷା ପ୍ରଦାନ କରି ଚାଲିଥିବ । "

ପ୍ରଖ୍ୟାତ ସମାଜବାଦୀ ନେତା ବାଙ୍କ ବିହାରୀ ଦାସ, ପଦଯାତ୍ରାରେ ବାପୁଜୀଙ୍କର ଅନୁଗମନ କରୁଥିଲେ । ତାହାଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ବକ୍ତବ୍ୟ ଅନୁସାରେ ବାପୁଜୀ ସେହିଦିନ ରାତିରେ ମଧୁବାବୁଙ୍କର ନିବାସସ୍ଥଳୀ କୋଠାର ଛାତରେ ଉନ୍ମୁକ୍ତ ଆକାଶ ତଳେ ରାତ୍ରିଯାପନ କରିଥିଲେ । ଯେଉଁ ସ୍ଥାନରେ ସେ ଖଟରେ ଶୟନ କରୁଥିଲେ, ତାହା ନୀଳରେଖା ଅଂକନ କରାଯାଇ ସୂଚିତ କରାଯାଇଛି । ସେଦିନ ରାତିରେ ବାପୁଜୀ ତାରକାଖଚିତ ମୁକ୍ତ ଆକାଶ ତଳେ ନିରାଭରଣ ପ୍ରକୃତିର ଐଶ୍ୱର୍ଯ୍ୟ ବିମଣ୍ଡିତ ସୁଷମାର ଅପୂର୍ବ ବିନ୍ୟାସ ମଧ୍ୟରେ ଶୟନ କରିଥିଲେ । ସମ୍ମୁଖରେ ସୁବିଶାଳ ଭରାଜଳର ସରୋବର ରମଣୀୟ "ରସକୁଣ୍ଡ" । ଚତୁର୍ଦ୍ଦିଗରେ ବିପୁଳ ନାରିକେଳ ଆଉ ଗୁଆ ଗଛର ଶୋଭାଯାତ୍ରା, ଯାହାକୁ ସ୍ପର୍ଶ କରି ସୁଶୀତଳ ମନ୍ଦମଳୟ ବହି ଚାଲିଥିଲା ଅବାରିତ ଗତିରେ । ପ୍ରଭାତୀ ଜାଗରଣ ବେଳାରେ କୂଜନର ସୁମଧୁର ନିଃସ୍ୱନ ଆମୋଦିତ କରିଥିଲା ସମସ୍ତ ପରିବେଶକୁ ।

ଏହିଠାରେ ଅବସ୍ଥାନ କାଳରେ ବାପୁଜୀଙ୍କର ରମାଦେବୀଙ୍କ ବିଷୟରେ ବୋଧହୁଏ ସ୍ମରଣରେ ଆସିଲା । ରମାଦେବୀ ଏହି ପ୍ରଥମ ପର୍ଯ୍ୟାୟରେ, ପୁରୀଠାରୁ କଟକ ଯାତ୍ରାପଥରେ ବାପୁଜୀଙ୍କ ପଦଯାତ୍ରାର ଗୁରୁ ଦାୟିତ୍ୱ ବହନ କରିଥିଲେ । ଏହି ପଦଯାତ୍ରାର ମାତ୍ର ତିନିମାସ ପୂର୍ବରୁ ରମାଦେବୀଙ୍କ ପରିବାରର ବଡ଼ବାପା ମଧୁସୂଦନଙ୍କର ତିରୋଧାନ ଘଟିଥିଲା, ଯାହା ସାରା ଦେଶଙ୍କୁ ଶୋକରେ ଆଚ୍ଛନ୍ନ କରିଥିଲା । ବାପୁଜୀ ପାଟଣା ଯିବା ପରେ ରମାଦେବୀଙ୍କର ତେଜସ୍ୱିନୀ ମାତା ବସନ୍ତ କୁମାରୀଙ୍କର ପରଲୋକ ଘଟିଲା । ଏହା ତାଙ୍କୁ ଶଲ୍ୟାଘାତ ପରି ଅସୀମ ଯଂତ୍ରଣା ପ୍ରଦାନ କରିଥିଲା । ଶୋକାଭିଭୂତ ରମାଦେବୀ ଯେପରି ସୀମାହୀନ ଦୁଃଖର ସାଗରରେ ନିମଜ୍ଜମାନା ହୋଇଯାଇଥିଲେ ।

ଏହା ଅବଗତ ହେବାପରେ, ବାପୁଜୀ ଅନ୍ତରର ଆବେଗରେ, ରମାଦେବୀଙ୍କୁ ସାନ୍ତ୍ୱନାଦାୟୀ ଅଥଚ ଅନୁପ୍ରେରଣାଭିତ୍ତିକ ଏକ ଚିଠି ଲେଖି ଜଣାଇଥିଲେ । "ଜଣେ ଦେଶ ସେବିକାର ନିଜସ୍ୱ ଦୁଃଖ ଆଉ ଅବସାଦ ଭୋଗ କରିବାପାଇଁ ତାହାଙ୍କର ସ୍ୱତନ୍ତ୍ର ସମୟ ମଧ୍ୟ ନାହିଁ । ତାହାଙ୍କର ସମସ୍ତ ସମୟ ଦେଶ ସେବାରେ ହିଁ ନିବେଦିତ ।"

ବାପୁଜୀଙ୍କର ଏହି ଆହ୍ୱାନରେ ରମାଦେବୀ ଆସି ପଦଯାତ୍ରାରେ ଯୋଗ ଦେଇଥିଲେ ।

ପରଦିନ ସକାଳେ ବାପୁଜୀ ସତ୍ୟଭାମାପୁର ଛାଡ଼ି ଆସି ପହଞ୍ଚିଲେ ବହୁକୁଦରେ । ବାପୁଜୀ ପହଞ୍ଚିବା ପରେ କ୍ଷୌର ହେବାପାଇଁ ଚାହିଁଲେ । ମାତ୍ର ହଠାତ୍ ଏହି ସ୍ଥାନରେ କୌଣସି ନାପିତ ମିଳିଲେ ନାହିଁ । ସେଠାରେ ଜଣେ ନାପିତୁଣୀ ଉତ୍ତମ କ୍ଷୌର କର୍ମ ଜାଣିଥାଏ । ତାହାକୁ ଯେତେବେଳେ ଡକାଗଲା ସେ ଗଭୀର ଭାବେ ଚିନ୍ତିତା ହେଲା । ତାହାର ପିନ୍ଧିକରି ଯିବାପାଇଁ କୌଣସି ମୂଲ୍ୟବାନ ସୁନା ଆଉ ରୂପାର ଅଳଂକାର ନଥିଲା । ଜଣେ ଦେବପୁରୁଷଙ୍କୁ ନିରାଭରଣ ଶରୀରରେ କିପରି ବା ସାକ୍ଷାତ କରିବ ? ତେଣୁ ଗ୍ରାମ ଗହଳରେ କିଛି ଧନାଢ୍ୟ ପରିବାରଙ୍କଠାରୁ ମାଗି ଯାଚି କିଛି ମୂଲ୍ୟବାନ ଅଳଂକାର ଆଣି ସଜ୍ଜିତ ହେଲା । କ୍ଷୁର ମୁଠି ଧରି ସେ ମହାତ୍ମାଙ୍କୁ କ୍ଷୌର କରିବାପାଇଁ ଆଗେଇ ଗଲା ।

ପରବର୍ତ୍ତୀ ବର୍ଣ୍ଣନାଟି କବି ମାୟାଧର ମାନସିଂହଙ୍କ ଲେଖନୀରେ ପ୍ରକାଶ ପାଇଛି-

ଆସିବେ ମହାତ୍ମାଗାନ୍ଧୀ ପତିତ ଉଦ୍ଧାରେ ।
ଶୁଣେ ଗ୍ରାମ-ନାପିତୁଣୀ, ତା ଗ୍ରାମ ତୋଟାରେ ॥
ବାନ୍ଧୁଛନ୍ତି ସ୍ୱେଚ୍ଛାସେବୀ ତାଳପତ୍ର ବାସ,
ଲାଗିଅଛି ଜନତାରେ ଦ୍ରୁତ ଯାଆ ଆସ ॥
ଦେଖୁଛନ୍ତି ନବଲୀଳା ଗ୍ରାମ ନରନାରୀ,
ହେଉଛନ୍ତି କୁହାକୁହି ପଚରାପଚରି-
କିଦେବେ ଗାନ୍ଧୀରେ ଭେଟି; ଦରିଦ୍ର ସକଳେ-
ହେଲେ କି ଦେବତା ଦେଖା ହେବ ରିକ୍ତ-କରେ ?

ରିକ୍ତ-ହସ୍ତେ କରିବାକୁ ରାଜ-ଦରଶନ,
ଦରିଦ୍ର ହେଲେ ହେଁ, ତାଙ୍କ ମାନୁନାହିଁ ମନ
ଦିନୁଁ ଦିନ ନାପିତୁଣୀ ଭାବେ ମନେମନେ
'' ମୁଁ କିସ ବନ୍ଦିବି ନେଇ ? କିଛି ହେଲେ ଅନେ ''
ଦେଇ ଅର୍ଚ୍ଚିବେ ସେ ପୁଣ୍ୟ ଚରଣ ଯୁଗଳ,
ମୋର ତ ସେ ଲାଗି ନାହିଁ କିଛି ହିଁ ସମ୍ବଳ
ତେବେ କି ଏ ପୁଣ୍ୟ-ଦଣ୍ଡ ଯିବ ଖାଲିଖାଲି ?
ଦ୍ୱାରେ ମୋ ବାରୁଣୀ ବୁଡ଼; ପାତକ ପଖାଳି
ପାରିବିନି ପାତକିନୀ ? ପତିତ-ପାବନ
ହେ ଦେବତା, ହେ ମହାତ୍ମା, ହେ ଗାନ୍ଧୀ ରାଜନ,
କୋଟି କୋଟି ନରନାରୀ ନମନ୍ତି ପୟରେ,
ଦରିଦ୍ର ମୁଁ ନାହିଁ ବୋଲି ଧନ ମୋହ କରେ
ପାରିବିନି ବନ୍ଦି ତବ ପରମ ଚରଣ
ପାଇବିନି କିଛି ତବ ପୁଣ୍ୟ-ବିତରଣ ?
ଜୀବନେ କରିନି ପୁଣ୍ୟ, ନିରକ୍ଷରା ନାରୀ,
ଆଜି ଏ ବୟସେ, ମାଥେ ବହି ପାପ ଭାରି
ଭାବଇ କରିଲେ ହେଲେ ତୋର ପଦାର୍ଚ୍ଚନ
ହୁଅନ୍ତା ବା କିଛି ହେଲେ ଧର୍ମ ଅରଜନ !''
ପ୍ରଭାତିଲା ବିଭାବରୀ, ପଡ଼ିଲା ଚହଳ
ଗ୍ରାମ-ଉପବନେ ଯହିଁ ଗାନ୍ଧୀ, ଗାନ୍ଧୀ ଦଳ
ହେଲେ ଆସି ଉପଗତ । ପଡ଼ିଲା ବିଚାର-
ନାପିତ ନାହିଁ ଏ ଗ୍ରାମେ ? ହୋଇବେ ସଂସ୍କାର
ମହାତ୍ମା ଏ ପ୍ରଭାତରେ !- ସ୍ୱେଚ୍ଛାସେବୀଗଣ
ଧାଇଁଲେ ତୁରିତେ ଗ୍ରାମେ କରି ଅନ୍ୱେଷଣ ।
ଫେରିଲେ ଯେବେ ସେ ପରେ, ପୂର୍ବ ନାପିତୁଣୀ
ପଛେ ତାଙ୍କ, -ଆଖି ଭୂମେ, ମୁଖେ ନାହିଁ ବାଣୀ ।
ସୁସଜ୍ଜିତା ଓଡ଼ିଆଣୀ ଆୟ ଅଳଂକାରେ,
ଭଂଜୀୟ ନାୟିକା ଯେହ୍ନେ ଚଳେ ଅଭିସାରେ !
ସ୍ତବ୍ଧ ସର୍ବ ସଭାଜନେ, ଗାନ୍ଧୀ ସ୍ମିତ ହସେ

ନାପିତୁଣୀ ଆଗମନେ, କୌତୁକ-ରଭସେ ।
ଭାଷନ୍ତି ମହାତ୍ମା ହସି " ଆଚ୍ଛା ଏ ତ କଥା !"
ନାପିତୁଣୀ ଖୁର ଘଷେ କିନ୍ତୁ ପୋତି ମଥା
ଏକ ଯୋଗେ ଏକ ମନେ, ଧୀର ଦେଇ ଜଳ
ମହାତ୍ମା ସହିତେ ସ୍ତବ୍ଧ ସର୍ବ ସଭାସ୍ଥଳ ।
କ୍ରମେ ସେ ପରଖି ଖୁର, ମୁଣ୍ଡେ ଥାପି କର
ନିରକ୍ଷରା ଓଡ଼ିଆଣୀ କରିଲା ଉଜ୍ଜ୍ୱଳ,
ପତିତ-ପାବନ ମହାମାନବ ଗାନ୍ଧୀରେ
ମସ୍ତକେ ବୁଲାଇ ଅସ୍ତ୍ର; ହସ୍ତ ଦେଇ ଧୀରେ
ଦୁଇ ଗଣ୍ଡେ, ଚିବୁକରେ ପରମ ଆଦରେ
ଆଣିଲା ବୁଲାଇ ଖୁର । ଚରଣ ଯୁଗଳେ
ନମି ପୁଣି ନଖପଙ୍କ୍ତି କରିଲା ନିର୍ମଳ
ଅତି ଯତ୍ନେ ଦେଇ ତାର ସମଗ୍ର କୌଶଳ ।
ପଚାରନ୍ତେ ଗାନ୍ଧୀ ତାରେ " ପିନ୍ଧିଛ ଜନନୀ !
ଏ ଯେଉଁ ଭୂଷଣ ଭାର କି ଲାଭ କହନି -
ହୁଅଇ ଏଥିରେ ତବ !" - ଭାଷଇ ଗଦ୍‌ଗଦ୍
ନାପିତୁଣୀ ସ୍ନିଗ୍ଧ କଣ୍ଠେ, " ମୋହର ସଂପଦ
କାହିଁ ହେ ମହାଭାଗ, ପାଇବି ଭୂଷଣ "
ଏସବୁ ଆଣିଛି ମାଗି ତୁମର ଦର୍ଶନ
କରିବି ବୋଲି ମୁଁ ଆଜି । ବିନା ଭୂଷଣରେ
କେମନ୍ତେ ଆସନ୍ତି ଦେଖି ଦେବତା ତୁମରେ ?"
ତା'ପରେ ତା କରେ ଯେବେ ଗୁଞ୍ଜିଲେ ତା ମୂଲ
ଗାନ୍ଧିଜୀଙ୍କ ପାର୍ଶ୍ୱଜନେ ତୁରିତେ ତା ଠୁଳ
କରିଧାରେ ମହାତ୍ମାର ଚରଣ କମଳେ
ଜୀବନର ପୁଣ୍ୟ ଘେନି ନାପିତୁଣୀ ଚଳେ ।

ବାପୁଜୀଙ୍କର ପଦଯାତ୍ରା ଚାଲିଥିଲା ଅବାରିତ ଗତିରେ, ପ୍ରାକ୍ ମୌସୁମୀ ବର୍ଷାରେ ଧାରାପାତର ଆଗମନୀ ପର୍ଯ୍ୟନ୍ତ । ନିଦାଘର ପ୍ରଚଣ୍ଡ ଝାଞ୍ଜିରେ ସେହି ପଦଯାତ୍ରା ଥିଲା ଯେପରି କ୍ଳାନ୍ତିହୀନ ସେହିପରି ଉତ୍ସାହପ୍ରଦ । ମହାତ୍ମାଜୀଙ୍କ ଜନ୍ମସ୍ଥାନ ଥିଲା ପୋରବନ୍ଦର ସହର, ସେଠାରେ ସେ ଆବାଲ୍ୟରୁ ପ୍ରତିପାଳିତ ହୋଇଥିଲେ ଏବଂ ଅଧ୍ୟୟନ ଆଉ କର୍ମସଂସ୍ଥାନ ଥିଲା ବିଦେଶରେ,

ମହାନଗରୀ ଆଉ ମେଟ୍ରୋ ସହରମାନଙ୍କରେ । ସେଥିଯୋଗୁଁ ଗ୍ରାମଗହଳର ଅଭିଜ୍ଞତା ଥିଲା ବାପୁଜୀଙ୍କର ସ୍ୱଳ୍ପ । ଏଣୁ ମଧୁସୂଦନଙ୍କର ବାପୁଜୀଙ୍କ ପ୍ରତି ଅନୁପ୍ରେରଣା ଥିଲା- ଗ୍ରାମ ଗହଳରେ ପରିଭ୍ରମଣ କର, ଅବସ୍ଥାର ଅନୁଧ୍ୟାନ କର ଆଉ ଶତାବ୍ଦୀ ଶତାବ୍ଦୀ ଧରି ଜମାଟ ବାନ୍ଧିଥିବା ନିଶ୍ଚେଷ୍ଟତାକୁ ଦୂରକର । ଏହି ଆହ୍ୱାନର ବଶବର୍ତ୍ତୀ ହୋଇ ବାପୁଜୀ ତାଙ୍କର ହରିଜନ ପଦଯାତ୍ରା ଓଡ଼ିଶାରେ ଆରମ୍ଭ କରିଥିଲେ ।

ବିବରଣୀଟି ଏଇଠି ରଖି ଚାଲନ୍ତୁ ଯିବା ବର୍ମାରେ ବାସ କରୁଥିବା ଶ୍ରୀଯୁକ୍ତ ବାଲାଜୀ ରାଓଙ୍କର ୧୯୨୮ ସାଲ ମଇ ମାସରେ ବାପୁଜୀଙ୍କୁ ପ୍ରେରିତ ଏକ ପତ୍ର ପ୍ରତି । ଏହି ଚିଠିର ବିଷୟବସ୍ତୁ ଉପରେ ମନ୍ତବ୍ୟ ପ୍ରଦାନ କରି ବାପୁଜୀ କହିଥିଲେ, ଆଜିର ମଦମତ୍ତାଭରା ଶିକ୍ଷାର ଆକର୍ଷଣ ଏପରି ଯେ, ତାହା ଆମକୁ ଚିରାଚରିତ କୌଳିକ ଲାଭବାନ ବୃତ୍ତିରୁ ଦୂରେଇ ନେଇ ଭୌତିକ ଅର୍ଥ ଲାଳସା ଆଡ଼କୁ ଠେଲି ଦେଉଛି । ସଭ୍ୟତାର ଅର୍ଥ ଯଦି ହୁଏ ବସ୍ତୁର କାୟିକ ପରିବର୍ତ୍ତନ, ତାହାର ମୂଲ୍ୟ କଣ ବା ହୋଇପାରେ, ତାହା ମଧ୍ୟ ସଂଶୟ ବିଜଡ଼ିତ ଓ ସନ୍ଦେହଜନକ ଅଟେ । ସଭ୍ୟତା ନାମରେ ବାଣିଜ୍ୟ ବେପାରର ଛଦ୍ମବେଶୀୟ ଆବରଣ ଅଶିକ୍ଷିତ ବର୍ମାବାସୀଙ୍କୁ ଦାରିଦ୍ର୍ୟର ଚରମ ସୀମାକୁ ଏପରି ନେଇ ଯାଉଛି ଯେ ସେମାନେ ଗୋରୁ ଭଳି ଜାନ୍ତବ ଜୀବନଯାପନ କରୁଛନ୍ତି । ମଧୁସୂଦନ ପ୍ରଖର ଆଉ ଜ୍ୱଳନ୍ତଭାବେ ଦର୍ଶାଇ ଦେଇଛନ୍ତି ଯେ , ଲୋକମାନେ ଯଦି କେବଳ ବଳଦକୁ ନେଇ କାର୍ଯ୍ୟ କରନ୍ତି ଆଉ କମନୀୟ ଅଂଗୁଳିର ତାତ୍ପର୍ଯ୍ୟପୂର୍ଣ୍ଣ ଚାଳନାରେ ରମଣୀୟ ମାଧୁର୍ଯ୍ୟଭରା ହସ୍ତଶିଳ୍ପର ବ୍ୟବହାର୍ଯ୍ୟ ସାମଗ୍ରୀର ପ୍ରସ୍ତୁତିରେ ଯଦି ବ୍ରତୀ ନରହନ୍ତି, ତାହାହେଲେ ସେମାନେ ଶରୀରରେ ଆଉ ମାନସିକ ସ୍ତରରେ ଅତ୍ୟନ୍ତ ପ୍ରବଞ୍ଚିତ ଓ ନିପୀଡ଼ିତ ସ୍ତରକୁ ଖସିପଡ଼ିବେ ।

(ୟଙ୍ଗ୍ ଇଣ୍ଡିଆ ୧୦.୫.୧୯୨୮)

ବାପୁଜୀ ଓଡ଼ିଶାରେ ସଂଚାଳିତ ଏହି ପଦଯାତ୍ରାର ସ୍ତରେସ୍ତରେ ମଧୁସୂଦନଙ୍କର ଏହି ଗରିମାମୟ ବକ୍ତବ୍ୟର ତାତ୍ପର୍ଯ୍ୟ ଅନୁଭବ କରିଚାଲିଥିଲେ ଆଉ ପଦଯାତ୍ରାର ଅନ୍ତରାଳରେ ଏହିସବୁ ଗ୍ରାମ ଗହଳରେ ଜମାଟ ବାନ୍ଧିଥିବା ନିଶ୍ଚେଷ୍ଟତାକୁ ଦୂରକରିବାକୁ ପଣ କରିଥିଲେ ।

ଏହି ପଦଯାତ୍ରାରେ ସବୁଠାରୁ ଅତ୍ୟନ୍ତ ଶ୍ରମସାଧ୍ୟ କାର୍ଯ୍ୟମାନ ମହିଳାମାନେ କେବଳ ନିର୍ବାହ କରୁନଥିଲେ, ରନ୍ଧନଶାଳାଠାରୁ ପରିବେଷଣ, ଅତିଥି ଚର୍ଚ୍ଚାଠାରୁ ଆଗାମୀ ଯାତ୍ରାସ୍ଥାନର ପ୍ରାକ୍‌ପ୍ରସ୍ତୁତି ଆଦି କାର୍ଯ୍ୟ ନିର୍ଘଣ୍ଟ ସଂପାଦନାରେ ବ୍ୟସ୍ତ ରହୁଥିଲେ । ରମାଦେବୀଙ୍କର ବାଲ୍ୟ ଶିକ୍ଷା, ବିହାରର ହିନ୍ଦୀଭାଷୀ ଅଂଚଳରେ ସମାହିତ ହୋଇଥିବାରୁ, ସେ ସାରା ଭାରତରୁ ଆଗନ୍ତୁକଙ୍କର ପରିଚର୍ଯ୍ୟାରେ ମନୋନିବେଶ କରିଥିଲେ । ଆଉ ବିଶେଷତଃ ବାପୁଜୀଙ୍କର ନିଜସ୍ୱ ସ୍ୱାଚ୍ଛନ୍ଦ୍ୟ ପ୍ରତି ଅତ୍ୟନ୍ତ ସହୃଦୟତାର ସହ ଦୃଷ୍ଟି ଦେଇ ସମସ୍ତ କାର୍ଯ୍ୟ ପ୍ରଖର ପୁରୋଦୃଷ୍ଟି ସହ ନିର୍ବାହ କରୁଥିଲେ । ବାପୁଜୀ, ରମାଦେବୀ ତଥା ତାଙ୍କ ସହାୟିକାମାନଙ୍କର ସଂଗଠନ ଶକ୍ତିରେ ଅତୀବ ବିସ୍ମିତ ହୋଇ ଯାଉଥିଲେ । ବିଦାୟ ବେଳାରେ ଅତ୍ୟନ୍ତ ବିହ୍ୱଳିତ କଣ୍ଠରେ ବାପୁଜୀ କହିଥିଲେ; ଏହି ପଦଯାତ୍ରା କାଳରେ, ମୁଁ ରମାଦେବୀ ଓ ତାଙ୍କ ଅନନ୍ୟ ସହାୟିକାଙ୍କର ଗଭୀର ପ୍ରେମରେ ପଡ଼ିଯାଇଛି ।

ଗ୍ରୀଷ୍ମ ଅବସାନ ପରେ ପ୍ରାକ୍ ମୌସୁମୀ ବର୍ଷା, ହଠାତ୍ ପଦଯାତ୍ରାର ସମାପ୍ତି ଘୋଷଣା କରିଦେଲା । ବାଲେଶ୍ୱର ଜିଲ୍ଲାର କର୍ଦ୍ଦମାକ୍ତ ପିଚ୍ଛିଳ ପଥରେ ଆଉ ପାଦ ଥାପିବା ଅସମ୍ଭବ ହୋଇଗଲା । ଯାତ୍ରା ସମାପ୍ତି ସମୟରେ, ଗ୍ରାମର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ମୌଳିକ ଶିକ୍ଷା କାର୍ଯ୍ୟକ୍ରମର ତାଲିମ ବ୍ୟବସ୍ଥାପାଇଁ ବାପୁଜୀଙ୍କର, ରମାଦେବୀ ଓ ଗୋପବଂଧୁ ଚୌଧୁରୀଙ୍କୁ ସ୍ୱତନ୍ତ୍ର ନିର୍ଦ୍ଦେଶ ଥିଲା । ଏହା ପରେ ବାପୁଜୀଙ୍କ ପଦଯାତ୍ରାର ସମାପ୍ତି ଘୋଷଣା ହେଲା । ୧୯୩୪ ଜୁନ ଆଠ ତାରିଖରେ ଭଦ୍ରକରୁ, ବାପୁଜୀ ରେଳଯାତ୍ରାରେ ଓଡ଼ିଶାରୁ ବିଦାୟ ନେଲେ ।

ମଧୁସୂଦନଙ୍କର ନିରବଛିନ୍ନ ଉଦ୍ୟମର ଫଳଶ୍ରୁତି ସ୍ୱରୂପ ୧୯୩୬ ସାଲର ଏପ୍ରିଲ ପହିଲାରେ ଓଡ଼ିଶା ଭାରତର ପ୍ରଥମ ଭାଷାଭିତ୍ତିକ ପ୍ରଦେଶର ମାନ୍ୟତା ପାଇ ସ୍ଥାପିତ ହେଲା । ସେହି ବର୍ଷ ନଭେମ୍ବର ମାସରେ ପ୍ରାଦେଶିକ ବିଧାନସଭାମାନଙ୍କପାଇଁ ନିର୍ବାଚନ ହେଲା । ପହିଲା ଏପ୍ରିଲ୍ ୧୯୩୭ ସାଲରେ ପାରଳାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ତାଙ୍କର ପ୍ରାରମ୍ଭିକ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ମାତ୍ର ସେହି ବର୍ଷ ଉଣେଇଶି ଜୁଲାଇରେ ବିଶ୍ୱନାଥ ଦାସଙ୍କର ପ୍ରଧାନମନ୍ତ୍ରିତ୍ୱରେ ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଏହିପରି ଓଡ଼ିଶାକୁ ମିଶାଇ ସାରା ଭାରତରେ ସାତଗୋଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଏହି ପ୍ରଦେଶମାନଙ୍କରେ ମୌଳିକ ଶିକ୍ଷାର ପ୍ରବର୍ତ୍ତନ ୧୯୩୭ ସାଲ ୨୨ ଅକ୍ଟୋବର ସେବାଗ୍ରାମଠାରେ ମହାତ୍ମାଗାନ୍ଧୀ ସର୍ବଭାରତୀୟ ଶିକ୍ଷା ସମ୍ମିଳନୀ ଆହ୍ୱାନ କଲେ । ଏହି ସମ୍ମିଳନୀରେ କଂଗ୍ରେସ ଶାସିତ ସାତଗୋଟି ପ୍ରଦେଶର ମୁଖ୍ୟମଂତ୍ରୀ ଓ ଶିକ୍ଷାମନ୍ତ୍ରୀଗଣ, ବିଭିନ୍ନ ବିଶ୍ୱବିଦ୍ୟାଳୟର କୁଳପତିଗଣ, ବିଶିଷ୍ଟ ଶିକ୍ଷାବିତ୍ ମଣ୍ଡଳୀ ଏବଂ ଏହାଙ୍କ ସହିତ ଡାକ୍ତର ଜାକିର ହୁସେନ, ବିନୋବା ଭାବେ ପ୍ରମୁଖ ଯୋଗ ଦେଇଥିଲେ । ଏହି ଅଧିବେଶନର ଉଦ୍‌ଘାଟନୀ ମହୋତ୍ସବରେ ମହାତ୍ମାଗାନ୍ଧୀ, ମୌଳିକ ଶିକ୍ଷାର ତାତ୍ପର୍ଯ୍ୟ ଉପରେ ପ୍ରାୟ ଦୁଇଘଣ୍ଟା ବ୍ୟାପୀ ଉଦ୍‌ଭାଷଣର ଉପସଂହାରରେ କହିଥିଲେ-

'' ସ୍ୱର୍ଗତଃ ମଧୁସୂଦନ ଦାସ ଜଣେ ଆଇନଜୀବୀ ଥିଲେ । ମାତ୍ର ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଆମ୍ଭମାନଙ୍କର ହସ୍ତ ଆଉ ପଦଗୁଡ଼ିକ ଯଦି ବିଧିବଦ୍ଧଭାବେ ସଂଚାଳିତ ଆଉ ନିୟୋଜିତ ନହୁଏ, ତାହାହେଲେ ଆମ୍ଭମାନଙ୍କର ମସ୍ତିଷ୍କ ସ୍ଥାଣୁ, ନିଶ୍ଚେଷ୍ଟ ପାଲଟିଯିବ ଏବଂ ଯଦିବା ସେହି ମସ୍ତିଷ୍କ କାର୍ଯ୍ୟକରେ, ତାହା ସଇତାନର ଆଡ୍‌ଡ଼ାସ୍ଥଳୀରେ ପରିଣତ ହେବ । ଋଷି ଟଲଷ୍ଟୟ ମଧ୍ୟ ଏହି ବକ୍ତବ୍ୟକୁ ତାହାଙ୍କର ଅସଂଖ୍ୟ କାହାଣୀ ମଧ୍ୟରେ ପ୍ରଚାରିତ କରିଅଛନ୍ତି ।''

କିଭଳି ଅନବଦ୍ୟ ଆଉ ମହିମାନ୍ୱିତ ଥିଲା ମହାତ୍ମାଗାନ୍ଧୀଙ୍କର ଏହି କାଳଜୟୀ ବକ୍ତବ୍ୟ, ଯହିଁରେ ମଧୁସୂଦନଙ୍କ ପ୍ରତି ଉଚ୍ଛ୍ୱସିତ ଶ୍ରଦ୍ଧାଞ୍ଜଳି, କିଭଳି ଗରିମାମୟ ଆଉ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା ।

ଏଥର ଯିବା ମହାତ୍ମାଗାନ୍ଧୀଙ୍କ ରଚନାତ୍ମକ କାର୍ଯ୍ୟକ୍ରମର ଅନ୍ୟ ଏକ ପର୍ଯ୍ୟାୟକୁ । ୧୯୩୭ ସାଲରେ କର୍ଣ୍ଣାଟକର ହୁଗୁଲିଠାରେ ଗାନ୍ଧୀ ସେବାସଂଘର ଏକ ବୈଠକ ବସିଥିଲା । ଏହି ଅଧିବେଶନରେ ଓଡ଼ିଶା ପକ୍ଷରୁ ଆଚାର୍ଯ୍ୟ ହରିହର, ଗୋପବଂଧୁ ଚୌଧୁରୀ, କୃପାସିନ୍ଧୁ ହୋତା, ରମାଦେବୀ, ବିନୋଦ କାନୁନ୍‌ଗୋ ପ୍ରମୁଖ ଯୋଗ ଦେଇଥିଲେ । ଏହି ଅଧିବେଶନରେ ଗାନ୍ଧୀ

ସେବାସଂଘର ଆଗାମୀ ବାର୍ଷିକୀ ସମ୍ମିଳନୀପାଇଁ ସ୍ଥାନ ନିରୂପଣ କରାଯାଉଥାଏ । ଏହି ସମ୍ମିଳନୀ ଓଡ଼ିଶାରେ କରିବା ନିମନ୍ତେ ଗୋପବଂଧୁ ଚୌଧୁରୀ ଏବଂ ଆଚାର୍ଯ୍ୟ ହରିହର ନିମନ୍ତ୍ରଣ ଜଣାଇଲେ । ଏଥିପାଇଁ ପୁରୀ ଜିଲ୍ଲାର ଡେଲାଙ୍ଗ ନିକଟସ୍ଥ ବେରବୋଇ ଚିହ୍ନିତ ହେଲା । ଏହି ସମ୍ମିଳନୀ ୧୯୩୮ ସାଲର ମାର୍ଚ୍ଚ ୨୫ ତାରିଖରେ ହେବାପାଇଁ ସ୍ଥିରୀକୃତ ହେଲା । ଏହି ସମୟରେ ବିଶ୍ୱନାଥ ଦାସଙ୍କ ଅଧିନାୟକତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଓଡ଼ିଶାରେ ପ୍ରତିଷ୍ଠିତ ହୋଇଥାଏ ।

ମହାତ୍ମାଗାନ୍ଧୀ ମାର୍ଚ୍ଚ ୨୫ ତାରିଖ ଦିନ ପ୍ରତ୍ୟୁଷରେ ରେଳଯୋଗେ ଆସି ଡେଲାଙ୍ଗ ଷ୍ଟେସନରେ ଓହ୍ଲାଇଲେ । ସେଠାରୁ ଆସି ପହଞ୍ଚିଲେ ନିଘଞ୍ଚ ନାରିକେଳ ଉଦ୍ୟାନଭରା ସବୁଜିମାର ନିବିଡ଼ ଆଚ୍ଛାଦନରେ ପରିବେଷ୍ଟିତ ବେରବୋଇଠାରେ । ପରିବେଶ ଦେଖି ଗାନ୍ଧିଜୀ ଏକାନ୍ତଭାବେ ବିସ୍ମୟାଭିଭୂତ ହୋଇଗଲେ । ବିପୁଳ ନାରିକେଳ ଉଦ୍ୟାନର ପ୍ରଗାଢ଼ ଆସ୍ତରଣ ମଧ୍ୟରେ, ମଳୟର ଉତ୍ତାଳତା ଯେପରି ସ୍ତବ୍ଧ ହୋଇଯାଇଥାଏ । କେବଳ କୋଇଲିର ଲହରିତ କୂଜନ ସମସ୍ତ ବାତାବରଣକୁ ମୁଖରିତ କରୁଥାଏ । ଗାନ୍ଧିଜୀ ସମ୍ମିଳନୀ ସ୍ଥଳରେ ପହଞ୍ଚିବା ପରେ ଗୋପବଂଧୁ ଚୌଧୁରୀଙ୍କ ନେତୃତ୍ୱରେ ପ୍ରଭାତରେ ପ୍ରାର୍ଥନା ସଭା ଅନୁଷ୍ଠିତ ହେଲା ।

ଏହା ପରେ ଗାନ୍ଧିଜୀ ସ୍ୱଳ୍ପକାଳ ଲାଗି ବିଶ୍ରାମ ନେଲେ । ଗ୍ରାମ୍ୟ ଶିଳ୍ପ ପ୍ରଦର୍ଶନୀର ଉଦ୍‌ଘାଟନ ସମୟ ଆଗତ ପ୍ରାୟ । ହେଲେ ଅସରନ୍ତି ଥିଲା ସେହି ପ୍ରତୀକ୍ଷାର ବେଳା । ଶେଷରେ ନିର୍ଦ୍ଧାରିତ ସମୟ ଆସି ପହଞ୍ଚିଲା । ସମୟ ଥିଲା ସକାଳର ଆଠଘଣ୍ଟା ପନ୍ଦର ମିନିଟ୍, ହେଲେ ସୁଦୀର୍ଘ କାଳ ବିଗିଡ଼ିଯିବା ପରି ମନେ ହେଉଥିଲା । ଅପେକ୍ଷାର ସହସା ଅନ୍ତ ଘଟିଲା । ବିପୁଳ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ଗାନ୍ଧିଜୀ ପ୍ରଦର୍ଶନୀ ଉଦ୍‌ଘାଟନ କଲେ । ଏହା ପରେ ଘୂରି ବୁଲୁଥାନ୍ତି ଏକାଦିକ୍ରମେ ପ୍ରଦର୍ଶନୀର ପ୍ରତିଟି କକ୍ଷ, ବିସ୍ମୟ-ବିସ୍ଫାରିତ ନୟନରେ । ଓଡ଼ିଶା ପ୍ରଦେଶର କୋଣ ଆଉ ଅନୁକୋଣରୁ ଆସି ପହଞ୍ଚିଥାଏ ଭଳିକି ଭଳି ବର୍ଣ୍ଣାଢ଼୍ୟ ଆଉ ମନ୍ତ୍ରମୁଗୁଧକର ବସ୍ତୁରାଜିରେ ନିର୍ମିତ ଚିତ୍ତ ଉଲ୍ଲାସକାରୀ କମନୀୟ ହସ୍ତଶିଳ୍ପ ।ଏହା ସହିତ ସଂଯୁକ୍ତ ହୋଇଥାଏ ବିଚିତ୍ର ତନ୍ତଶିଳ୍ପର ଯାଦୁକରୀ ନକ୍ସା ସମନ୍ୱିତ ବସ୍ତୁରାଜି, ସନ୍ନିବେଶିତ ହୋଇଥାଏ ଜ୍ୟାମିତିକ ରେଖାକୃତିର ଅପରୂପ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀସବୁ । ଏଥିରୁ କିଛି ବସ୍ତୁରାଜି ମଧ୍ୟ ତିଆରି ହୋଇଥାଏ ମଧୁସୂଦନଙ୍କ ପ୍ରଖର ମାନସିକତାରେ ପ୍ରସ୍ତୁତ କଳକବ୍‌ଜା ମାଧ୍ୟମରେ, ଯାହା ଶ୍ରମଜୀବୀ ଓ କାରିଗରଙ୍କର କ୍ଲେଶଯୁକ୍ତ ଶ୍ରମକୁ ବହୁ ପରିମାଣରେ ଲାଘବ କରିଥାଏ । ମହାତ୍ମାଗାନ୍ଧୀ ଅତ୍ୟନ୍ତ ପୁଲକିତ ଚିତ୍ତରେ ଆଉ ବିପୁଳ ରୋମାଞ୍ଚିତ ଆଗ୍ରହ ମଧ୍ୟରେ ସମସ୍ତ ସମ୍ମିଳନୀକକ୍ଷ ବୁଲି ସାରିବା ପରେ, ଉପବେଶନ କଲେ ସଭାମଣ୍ଡପରେ । ସମଗ୍ର ଭାରତରୁ ଆଗତ ପ୍ରତିନିଧିଙ୍କ ଗହଣରେ ବିପୁଳ ଜନ ସମାବେଶରେ ଉଚ୍ଛ୍ୱସିତ କରତାଳି ମଧ୍ୟରେ ମହାତ୍ମାଗାନ୍ଧୀ ଆରମ୍ଭକଲେ ଅତ୍ୟନ୍ତ ଦରଦଭରା କଣ୍ଠରେ ତାହାଙ୍କର ଅନବଦ୍ୟ ମାର୍ମିକ ବକ୍ତବ୍ୟ ।

''ଆପଣମାନେ ଜାଣନ୍ତି ସାରା ଦେଶରେ ଓଡ଼ିଶା ହେଉଛି ମୋର ପ୍ରିୟଭୂମି । ମୁଁ ମଧ୍ୟ ଅନୁଭବ କରିଛି, ଯଦି ଓଡ଼ିଶାର କିଛି ସେବା କରିପାରିବି, ତେବେ ଭାବିବି ଭାରତର ହିଁ ସେବା କରୁଛି । ଓଡ଼ିଶା ମୋ'ପାଇଁ ଏକ ତୀର୍ଥ ଭୂମିରେ ପରିଣତ ହୋଇଛି ।''

ଏହା ପରେ ମଧୁସୂଦନଙ୍କ ସ୍ମୃତି, ତାଙ୍କର ଉଚ୍ଛ୍ୱସିତ ଆବେଗରେ ଉଦ୍‌ବେଳିତ ହୋଇ ଉଠିଥିଲା, ସେ ଟିକିଏ ଥମିଗଲେ ଓ ଉଦାତ୍ତ କଣ୍ଠରେ ପୁଣି ବକ୍ତବ୍ୟ ଆରମ୍ଭ କଲେ ।

"ମଣିଷ ପଶୁଠାରୁ ଅନେକ ଗୁଣରେ ଭିନ୍ନ । ମଧୁସୂଦନ ଦାସ ଯେପରି କହନ୍ତି 'ଉଭୟଙ୍କ ମଧ୍ୟରେ ଶରୀରର ଅବୟବର ଆକୃତିରେ ବହୁ ଭାବରେ ଭିନ୍ନତା ରହିଛି । ମଣିଷର ହସ୍ତ ଓ ପଦରେ ଅଂଗୁଳିଗୁଡ଼ିକ ରହିଛି, ଯାହାକୁ ସେ ଅତ୍ୟନ୍ତ ବୁଦ୍ଧିମତ୍ତାର ପରିପ୍ରକାଶ ସହ କମନୀୟତାର କଳାତ୍ମକ ବିନ୍ୟାସ ମଧ୍ୟରେ ବ୍ୟବହାର କରିଥାଏ । ଯଦି ମଣିଷ ପରିପୂର୍ଣ୍ଣ ଆଉ ଏକାନ୍ତ ଭାବେ କୃଷି ଉପରେ ନିର୍ଭର କରିଥାନ୍ତା, ତା'ହେଲେ ସେ ଈଶ୍ୱରଙ୍କଦ୍ୱାରା ମହିମାନ୍ୱିତ ଭାବରେ ପ୍ରଦତ୍ତ ଆପଣାର ଅଂଗୁଳିଗୁଡ଼ିକୁ ବ୍ୟବହାର କରି ନଥାନ୍ତା । ସେ ତାହାକୁ ସର୍ବୋତ୍ତମ ଭାବରେ ବ୍ୟବହାର କରେ ଶିଳ୍ପଭିତ୍ତିକ କାର୍ଯ୍ୟକ୍ରମରେ ।"

କୃଷିକାର୍ଯ୍ୟ ସହିତ ଅଂଗୁଳିର ସଦ୍‌ବିନିଯୋଗ କରି ଆମେ ଯଦି ହସ୍ତଶିଳ୍ପ ଉତ୍ପାଦନରେ ବ୍ରତୀ ହେଉ ଆମେ ସ୍ୱଚ୍ଛନ୍ଦ ଜୀବନଯାପନ କରିପାରିବା । ଏହି ପ୍ରଦର୍ଶନରେ ବିଭିନ୍ନ ହସ୍ତଶିଳ୍ପର ସାମଗ୍ରୀମାନ ପ୍ରଦର୍ଶିତ ହୋଇଛି । ଏହି ପ୍ରଦର୍ଶନୀ ଘୂରି ବୁଲି ଦେଖନ୍ତୁ ଆଉ ସେଥିମଧ୍ୟରୁ ଗୋଟିଏ ହସ୍ତଶିଳ୍ପକୁ ଆପଣଙ୍କପାଇଁ ବାଛି ନିଅନ୍ତୁ । ଆଉ ତାହାକୁ ଉତ୍ପାଦନ କରିବାପାଇଁ ବ୍ରତୀ ହୁଅନ୍ତୁ । ତାହା ନିଶ୍ଚୟ ଆପଣଙ୍କର ଦାରିଦ୍ର୍ୟ ଦୂରୀକରଣରେ ସହାୟକ ହେବ ।"

ଏହି ବେରବୋଇଠାରେ ଅନୁଷ୍ଠିତ ଗାନ୍ଧୀ ସେବାସଂଘର ସମ୍ମିଳନୀରେ ଗାନ୍ଧିଜୀ ୧୯୩୮ ସାଲର ମାର୍ଚ୍ଚ ୨୫ରୁ ୩୧ ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ ଏହି ନାରିକେଳ ଉଦ୍ୟାନର ସବୁଜ ପରିବେଶ ମଧ୍ୟରେ । ଏହାଥିଲା ଗାନ୍ଧିଜୀଙ୍କର ଓଡ଼ିଶା ସହିତ ଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଗୌରବ ବିମଣ୍ଡିତ ସଂପର୍କ ।

ଅବଶ୍ୟ ୧୯୪୬ ସାଲର ଜାନୁଆରି କୋଡ଼ିଏ ତାରିଖରେ, ରେଳରେ ଗୌହାଟୀରୁ ମାନ୍ଦ୍ରାଜ ଯିବା ବେଳେ ରାତି ସାଢ଼େ ଗୋଟାଏ ବେଳେ, କଟକ ରେଳ ଷ୍ଟେସନରେ ସେ ଆକାଂକ୍ଷିତ ଜନତାକୁ ସାକ୍ଷାତ ଦେଇଥିଲେ । ପ୍ରବଳ ଶୀତରେ ବ୍ରହ୍ମପୁରଠାରେ ପ୍ରାତଃ ୪ ଘଟିକାଠାରେ ରେଳରୁ ଅବତରଣ କରି ରେଳ ଷ୍ଟେସନ ନିକଟ ମଇଦାନରେ ସ୍ୱଳ୍ପ ସମୟପାଇଁ ପ୍ରାର୍ଥନା ସଭାରେ ଯୋଗ ଦେଇଥିଲେ । ଏହା ଥିଲା ମହାତ୍ମାଗାନ୍ଧୀଙ୍କର ଓଡ଼ିଶା ଭୂଖଣ୍ଡକୁ ଅନ୍ତିମ ସ୍ପର୍ଶ ।

କେତେକ ମୁଷ୍ଟିମେୟ ସଂକୀର୍ଣ୍ଣ ଗାନ୍ଧୀପ୍ରେମୀ ଓ ବୁଦ୍ଧିଜୀବୀ ମଧୁସୂଦନଙ୍କୁ ଗାନ୍ଧୀଦ୍ରୋହୀବୋଲି ଉପସ୍ଥାପନ କରି ତାଙ୍କୁ ଓଡ଼ିଶା ଇତିହାସରୁ ନିଶ୍ଚିହ୍ନ କରିଦେବାକୁ ପ୍ରଯତ୍ନଶୀଳ ଥିଲାବେଳେ, ସ୍ୱୟଂ ମହାତ୍ମାଗାନ୍ଧୀ ଏହା ବିରୁଦ୍ଧରେ ନିରନ୍ତର ପ୍ରାୟଶ୍ଚିତ୍ତ କରିଛନ୍ତି । ତାଙ୍କ ପ୍ରତି ଉଚ୍ଛ୍ୱସିତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ତାଙ୍କୁ ଭାରତର ଜଣେ ମହିମାନ୍ୱିତ ଯୋଗ୍ୟ ପୁରୁଷ ରୂପେ ସେ ଉଦ୍‌ଘୋଷଣା କରିଛନ୍ତି ।



# ଓଡ଼ିଶା ପ୍ରଦେଶର ଅନ୍ୟତମ ସ୍ଥାପୟିତା: ମହାତ୍ମାଗାନ୍ଧୀ

ମଧୁସୂଦନ ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଆଦିଙ୍କ ସହିତ ମହାତ୍ମାଗାନ୍ଧୀ ଓଡ଼ିଶା ପ୍ରଦେଶର ଅନ୍ୟତମ ସ୍ଥାପୟିତା ରୂପେ ପରିଗଣିତ ହୁଅନ୍ତି । ପାରଳା ମହାରାଜାଙ୍କର ବକ୍ତବ୍ୟ ଥିଲା - ଏହା ହିଁ ସତ୍ୟ ଯେ ମହାତ୍ମାଗାନ୍ଧୀଙ୍କୁ ବାଦଦେଲେ ସାରା ଭାରତର ଅଧିକାଂଶ ନେତୃବର୍ଗ ଓଡ଼ିଶା ପ୍ରଦେଶ ଗଠନ ବିରୋଧରେ ମତ ଦେଇଥିଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ହିନ୍ଦୀଭାଷା, ଉତ୍ତର ଭାରତର ସଂଖ୍ୟାଧିକ ଭାଷା ଓ ସଂସ୍କୃତିକୁ ଗ୍ରାସକରି ଯେଉଁ ଦିଗ୍‌ବିଜୟୀ ଯାତ୍ରା ଚଳାଇଥିଲା, ସେହି ଯାତ୍ରାର ପ୍ରଥମ ଗତିରୋଧ ଘଟିଥିଲା ସମ୍ବଲପୁର ଜିଲ୍ଲା ସମେତ ଓଡ଼ିଶାର ପଶ୍ଚିମ ଖଣ୍ଡରେ । ଏହି ସଂଗ୍ରାମର ଅନ୍ତିମ ପରିଣତିରେ ୧୬.୧୦.୧୯୦୫ରେ ପଶ୍ଚିମ ଖଣ୍ଡର ମିଶ୍ରଣରେ ନବ ଓଡ଼ିଶାର ସୃଷ୍ଟି ସମ୍ଭବପର ହୋଇଥିଲା ।

ବହୁଭାଷୀ ଭାରତର ଭବିଷ୍ୟତ ଭାଷା ସଂକ୍ରାନ୍ତ ନୀତିକୁ ଯୁକ୍ତିଯୁକ୍ତ ଭାବେ ଉପସ୍ଥାପନ କରିବାପାଇଁ ମହାତ୍ମାଗାନ୍ଧୀ ଚେଷ୍ଟିତ ଥିବା ବେଳେ ବୋଧହୁଏ ମଧୁସୂଦନ ଦାସଙ୍କର ପରାମର୍ଶ କ୍ରମେ ବ୍ରଜସୁନ୍ଦର ଦାସ ବିଖଣ୍ଡିତ ଓଡ଼ିଶା ସଂପର୍କରେ ଏକ ତଥ୍ୟ ଭିତ୍ତିକ ପ୍ରଚାର ପତ୍ର ମହାତ୍ମାଗାନ୍ଧୀଙ୍କ ନିକଟକୁ ପ୍ରେରଣ କରିଥିଲେ । ଏହାଥିଲା ମହାତ୍ମାଗାନ୍ଧୀଙ୍କ ସମ୍ମୁଖରେ ଓଡ଼ିଶା ସଂପର୍କରେ ପ୍ରଥମ ଉପସ୍ଥାପନା, ଯାହା ତାଙ୍କୁ ହତଚକିତ କରିଥିଲା । ଏହି ପ୍ରଚାର ପତ୍ରର ସାରାଂଶକୁ ମହାତ୍ମାଗାନ୍ଧୀ ଉଦ୍ଧୃତି ରୂପେ ଉପସ୍ଥାପନ କରି ନିଜର ସ୍ୱତନ୍ତ୍ର ବକ୍ତବ୍ୟକୁ 'ଉତ୍କଳର ଚିତ୍କାର' ଶୀର୍ଷକରେ ୟଙ୍ଗ ଇଣ୍ଡିଆ ପତ୍ରିକାରେ ୧୯୨୦ରେ ପ୍ରକାଶ କରିଥିଲେ । ତାହାର କିଛି ଅଂଶ ଏହିପରି ଥିଲା । - ''ଓଡ଼ିଆମାନଙ୍କୁ ଚାରୋଟି ପ୍ରଶାସନ (ବିହାର, ମାଡ୍ରାସ, ବଂଗ ଓ ମଧ୍ୟପ୍ରଦେଶ)ର ଅଧୀନରେ ରଖାଯାଇଛି; ଯେଉଁସବୁ ଅଞ୍ଚଳରେ ସେମାନେ ସଂଖ୍ୟାଲଘୁ ରୂପେ ପରିଗଣିତ ହୋଇଛନ୍ତି । ବିଗତ ପନ୍ଦର ବର୍ଷ ଧରି ଏହି ଅଂଚଳର ପ୍ରାଶାସନିକ ମିଶ୍ରଣ ଲାଗି

ସେମାନେ ସଂଗ୍ରାମ କରୁଛନ୍ତି । ମାତ୍ର ସେମାନେ ଅତ୍ୟନ୍ତ ନିରୀହ ଓ ଆନ୍ଦୋଳନପ୍ରବଣ ହୋଇ ନ ଥିବାରୁ କର୍ତ୍ତୃପକ୍ଷ ସେମାନଙ୍କର ଦାବି ପ୍ରତି କର୍ଣ୍ଣପାତ କରୁନାହାନ୍ତି । ଭାରତର ପ୍ରଗତି ଏକ ଅଂଶର ବିଯୁକ୍ତିରେ ହୋଇ ପାରିବ ନାହିଁ । ନୂତନ ଭାରତୀୟ ମହାଜାତି, ଗୋଟିଏ ପ୍ରାଚୀନ ଗୌରବୋଜ୍ଜ୍ୱଳ ଜାତିର ପାଉଁଶ ବା ଭଗ୍ନାବଶେଷ ଉପରେ ଗଢ଼ାଯାଇନପାରେ ।'' ମହାତ୍ମାଗାନ୍ଧୀ ପୁନରାୟ ପ୍ରକାଶ କରିଥିଲେ - ମାନନୀୟ ବ୍ରଜସୁନ୍ଦର ଦାସଙ୍କ ଭାବବିହ୍ୱଳତା, ଯଥାର୍ଥରେ ଭାଷାଭିତ୍ତିରେ ଅଞ୍ଚଳ ଆବଣ୍ଟନର ପ୍ରଶ୍ନ ଉତ୍‌ଥାପିତ କରୁଛି । ଏଣୁ ମୁଁ ବିଶ୍ୱାସ କରୁଛି ଯେ ଓଡ଼ିଆ ଆନ୍ଦୋଳନର ପରମ ତାତ୍ପର୍ଯ୍ୟକୁ ଗଭୀର ସହାନୁଭୂତିର ସହ ବିଚାର କରାଯିବା ଆବଶ୍ୟକ ।''

ଓଡ଼ିଶା ଓ ଓଡ଼ିଆ ଜାତିର ସମସ୍ୟା ସଂପର୍କରେ ମହାତ୍ମା ଗାନ୍ଧୀଙ୍କର ଏହି ଗଭୀର ତାତ୍ତ୍ୱିକ ଚିନ୍ତନ ଡିସେମ୍ବର ୧୯୨୦ରେ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରେ ପ୍ରତିଫଳିତ ହୋଇଥିଲା । ଏହି ଅଧିବେଶନରେ ଗୃହୀତ ଅସହଯୋଗ ଆନ୍ଦୋଳନର ପୃଷ୍ଠଭୂମିରେ ଭାଷାଭିତ୍ତିକ ପ୍ରଦେଶ ଗଠନର ପ୍ରସ୍ତାବ ଗ୍ରହଣ କରିବା ଲାଗି ଏହା ଭିତ୍ତିଭୂମି ଯୋଗାଇଥିଲା । ଭାଷାଭିତ୍ତିକ ଆନ୍ଦୋଳନ ପରିପ୍ରେକ୍ଷୀରେ ମହାତ୍ମାଗାନ୍ଧୀଙ୍କପାଇଁ ଓଡ଼ିଶା ହିଁ ଥିଲା ପ୍ରଥମ ପରୀକ୍ଷାର କ୍ଷେତ୍ର । ୟଙ୍ଗ୍ ଇଣ୍ଡିଆରେ ୧୯୨୦ରେ ପ୍ରକାଶିତ 'ଉତ୍କଳର ଚିତ୍କାର' ର ପ୍ରତ୍ୟୁତ୍ତରରେ ଓଡ଼ିଆ ଜାତିର ପ୍ରତିନିଧି ମଧୁସୂଦନ ମହାତ୍ମାଗାନ୍ଧୀଙ୍କୁ କଲିକତାରେ ଭେଟିଥିଲେ । ମହାତ୍ମାଗାନ୍ଧୀଙ୍କର ମଧୁସୂଦନ ଦାସଙ୍କ ପ୍ରତି ଅପରିସୀମ ଶ୍ରଦ୍ଧା ଓ ସମ୍ମାନ କେବଳ ନଥିଲା, ତାଙ୍କଦ୍ୱାରା ସଂଚାଳିତ ଓଡ଼ିଆ ଆନ୍ଦୋଳନ ମଧ୍ୟ ମହାତ୍ମାଗାନ୍ଧୀଙ୍କ ସମର୍ଥନ ପାଇଥିଲା । ଏଣୁ ୧୯୨୧ର ଅସହଯୋଗ ଆନ୍ଦୋଳନ କାଳରେ, ଓଡ଼ିଆ ଆନ୍ଦୋଳନକୁ ଅଧିକ ତୀବ୍ରତର ତଥା ନିର୍ଣ୍ଣାୟକ ସ୍ତରରେ ପହଞ୍ଚାଇବାପାଇଁ ମଧୁସୂଦନଙ୍କର ବିହାର ଓ ଓଡ଼ିଶା ସରକାରର ମନ୍ତ୍ରିମଣ୍ଡଳରେ ଯୋଗଦାନକୁ ସମର୍ଥନ କରି ମହାତ୍ମାଗାନ୍ଧୀ କହିଥିଲେ, '' ଭାରତର ପ୍ରାଦେଶିକ ମନ୍ତ୍ରୀମାନେ ଯେବେ ମଧୁସୂଦନ ଦାସ ବା ଚିନ୍ତାମଣିଙ୍କ ପରି ସ୍ୱାଧୀନଚେତା ହୋଇ ନିଜର କାମ କରନ୍ତି, ତେବେ ଭାରତୀୟ ଲୋକଙ୍କ ମନ୍ତ୍ରିତ୍ୱ ଗ୍ରହଣରେ ମୋର କୌଣସି ଆପତ୍ତି ନାହିଁ ।''

୧୯୨୧ ମାର୍ଚ୍ଚମାସ ଶେଷ ଭାଗରେ ମହାତ୍ମାଗାନ୍ଧୀ ତାଙ୍କର ପ୍ରଥମ ଓଡଶା ଆଗମନର କିଛିକାଳ ପୂର୍ବରୁ ''ଓଡ଼ିଆ ମୁଭ୍‌ମେଣ୍ଟ'' ପୁସ୍ତକ ଅଧ୍ୟୟନ କରି ଓଡ଼ିଶାର ଦୟନୀୟ ସ୍ଥିତି ସଂପର୍କରେ ଆକଳନ କରି ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ଏବଂ ୨୩.୩.୧୯୨୧ରେ କଟକରେ ପହଞ୍ଚି '' ଓଡ଼ିଆ ମୁଭ୍‌ମେଣ୍ଟ'' ର ଲେଖକ ନିରଞ୍ଜନ ପଟ୍ଟନାୟକଙ୍କୁ ସ୍ୱତନ୍ତ୍ର ଭାବେ ଆମନ୍ତ୍ରିତ କରି ସେହି ଦିନ ସଂଧ୍ୟାର ସଭାରେ ବିଭାଜିତ ଓଡ଼ିଶା ସଂପର୍କରେ ତାତ୍ତ୍ୱିକ ଆଲୋଚନା କରିଥିଲେ । ଏଠାରେ ସୂଚାଇ ଦିଆଯାଇ ପାରେ ଯେ ସେହି ମାର୍ଚ୍ଚରେ ଗଠିତ ଉତ୍କଳର ଜାତୀୟ କଂଗ୍ରେସର ପରିସୀମା ମଧ୍ୟରେ ମହାତ୍ମାଗାନ୍ଧୀଙ୍କର ସମ୍ମତିକ୍ରମେ ସିଂହଭୂମି ଓ ମେଦିନୀପୁରକୁ ଅନ୍ତର୍ଭୁକ୍ତ କରାଯାଇଥିଲା । ଦକ୍ଷିଣ ଓଡ଼ିଶାର ସୀମାବିବାଦ ସଂପର୍କରେ ଉଲ୍ଲେଖ କରି ୨୯.୩.୧୯୨୧ରେ ବ୍ରହ୍ମପୁରଠାରେ ଆୟୋଜିତ ବିଶାଳ ଜନସଭାକୁ ସମ୍ବୋଧିତ କରିବା ଅବସରରେ ଗାନ୍ଧୀ କହିଥିଲେ- '' ଆଗାମୀକାଲି ସୂର୍ଯ୍ୟୋଦୟ ପୂର୍ବରୁ ଓଡ଼ିଆ-ତେଲୁଗୁ ବିବାଦର ସମାଧାନ ଘଟିବା ଆବଶ୍ୟକ ଓ

ସବଳ ଆନ୍ଧ୍ରବାସୀ ଦୁର୍ବଳ ଓଡ଼ିଆମାନଙ୍କର ଦାବି ମାନିନେବା ଉଚିତ । ଆନ୍ଧ୍ର ଓ ଓଡ଼ିଆମାନଙ୍କ ମଧ୍ୟରେ ଥିବା ସୀମା ସମସ୍ୟା ଭାରତୀୟ ପରଂପରା ମତେ ରାଜନୈତିକ ଦୂରଦର୍ଶିତା ମଧ୍ୟରେ ସମାହିତ ହେବା ଆବଶ୍ୟକ । ମୁଁ ନିଶ୍ଚୟ ଭାଷାଭିତ୍ତିରେ ଅଂଚଳର ଗଠନ ଓ ବିକାଶପାଇଁ ପ୍ରତିଶ୍ରୁତିବଦ୍ଧ ।'' ମହାତ୍ମାଗାନ୍ଧୀ ରଚନାବଳୀ- ୨୩.୩.୨୧) ଏହାପରେ ୧୩.୪.୧୯୨୧ରେ ୟଙ୍ଗ୍ ଇଣ୍ଡିଆରେ ମହାତ୍ମାଗାନ୍ଧୀ ଲେଖିଥିଲେ-'' ଓଡ଼ିଆ ମୁଭ୍‌ମେଣ୍ଟ'' ରେ ଲେଖକ ପ୍ରକାଶ କରିଛନ୍ତି ଯେ ମନ୍ଦ ରାଜନୈତିକ ଉଦ୍ଦେଶ୍ୟ ଚରିତାର୍ଥ କରିବାପାଇଁ ଓଡ଼ିଶାକୁ ବିଭାଜିତ କରାଯାଇଛି । ଏହାର ଏକ ଭାଗ ବଂଗରେ, ଅନ୍ୟଭାଗ ବିହାରରେ, ଆଉ କିଛି ଭାଗ ମଧ୍ୟ ପ୍ରଦେଶରେ, ପୁଣି କିଛି ଭାଗ ଆନ୍ଧ୍ରରେ ରହିଥିବା ବେଳେ ଓଡ଼ିଶାର ନିଜସ୍ୱ ଭୂମି ଖଣ୍ଡେ ମଧ୍ୟ ନାହିଁ । ହେଲେ କଂଗ୍ରେସ ଓଡ଼ିଶାକୁ ଆଉ ଓଡ଼ିଆ ଲୋକଙ୍କୁ ସ୍ୱତନ୍ତ୍ର ସ୍ୱୀକୃତି ପ୍ରଦାନ କରିଛି । ମହାତ୍ମାଗାନ୍ଧୀଙ୍କର ଏହି ସହୃଦୟତା ସତ୍ତ୍ୱେ ସର୍ବଭାରତୀୟ ସ୍ତରରେ ରାଜନୈତିକ ନେତୃବର୍ଗଙ୍କର ଅନାଗ୍ରହ ଓ ବିରୋଧ ଯୋଗୁଁ ଓଡ଼ିଶାର ସୀମାନିର୍ଦ୍ଧାରଣ କ୍ଷେତ୍ରରେ ସାମାନ୍ୟତମ ଅଗ୍ରଗତି ଘଟିନଥିଲା ।

ମଧୁସୂଦନଙ୍କ ସ୍ୱତନ୍ତ୍ର ନିମନ୍ତ୍ରଣରେ ମହାତ୍ମାଗାନ୍ଧୀ କଟକ ଆସି ''ମଧୁସ୍ମୃତି''ଠାରେ ୧୯.୮.୧୯୨୫ରେ ଅନୁଷ୍ଠିତ କଂଗ୍ରେସ କର୍ମୀସଭାରେ ଯୋଗ ଦେଇଥିଲେ । କଂଗ୍ରେସର କର୍ମୀମାନେ ଚରଖା ଚଳାଇ ରଚନାତ୍ମକ କାର୍ଯ୍ୟ କରିବା ଯେମିତି ଗୁରୁତ୍ୱପୂର୍ଣ୍ଣ, ସିଂହଭୂମିର ଓଡ଼ିଶା ସହିତ ମିଶ୍ରଣ ପାଇଁ ପ୍ରୟାସ କରିବା ସେହିପରି ଗୁରୁତ୍ୱପୂର୍ଣ୍ଣ । ଏଥିଲାଗି ଉତ୍କଳମଣି ଗୋପବଂଧୁ ଓ ପଣ୍ଡିତ ଗୋଦାବରୀଶ ମଧ୍ୟ ଆଗରୁ ପ୍ରୟାସ କରିଥିଲେ । ଅବଶେଷରେ ୧୫.୪.୧୯୨୮ରେ ମଧୁସୂଦନ ବମ୍ବେଠାରେ ବଟ୍‌ଲାର କମିଟି ସମ୍ମୁଖରେ ଓଡ଼ିଶା ସହ ଷଢ଼େଇକଳା ଓ ଖରସୁଆଁର ମିଶ୍ରଣ ଲାଗି ଦାବି ଉପସ୍ଥାପନ କରିବାରୁ ଲୋଥିୟାନ କମିଟିର ସୁପାରିଶ କ୍ରମେ ୧୯୩୩ରେ ଏହା ଓଡ଼ିଶାରେ ମିଶିଥିଲା । ମାତ୍ର ଓଡ଼ିଶାର ରାଜନୈତିକ ନେତୃବର୍ଗଙ୍କ ଅପରିଣାମଦର୍ଶିତାଯୋଗୁଁ ଶେଷରେ ଏହି ଭୂମିଖଣ୍ଡ ଓଡ଼ିଶାରୁ ବିଚ୍ୟୁତ ହୋଇଯାଇଥିଲା ।

କରାଚୀଠାରେ ୧୯୩୧ରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ସରଳାଦେବୀ ମହାତ୍ମାଗାନ୍ଧୀଙ୍କୁ ଗୋଲଟେବୁଲ୍ ବୈଠକରେ ଓଡ଼ିଶାର ପ୍ରଶ୍ନ ଉତ୍‌ଥାପନ କରିବାପାଇଁ ନିବେଦନ ଜଣାଇଥିଲେ । ପ୍ରତ୍ୟୁତ୍ତରରେ ମହାତ୍ମାଗାନ୍ଧୀ କହିଥିଲେ, ''ମୁଁ ଗୋଲ୍‌ଟେବୁଲ୍ ବୈଠକରେ ଓଡ଼ିଶାର ପ୍ରତିନିଧି ଦଳ ସହ ଏହି ଦାବି ଉପସ୍ଥାପନ କରିବି ।''

ଓଡ଼ିଶା ଗଠନ ପ୍ରୟାସର ଶେଷ ଦୃଶ୍ୟ ସଂଘଟିତ ହୋଇଥିଲା, ଲଣ୍ଡନର ପଟ୍ଟଭୂମିରେ । ଓଡ଼ିଶାର ୧୫୬୮ ସାଲରେ ସ୍ୱାଧୀନତାର ଅବଲୁପ୍ତି ପରେ ଏହାଥିଲା ବିଦେଶ ମାଟିରେ ଓଡ଼ିଆମାନଙ୍କର ଅନ୍ତିମ ଗରିମାମୟ ନିର୍ଣ୍ଣାୟକ ସଂଗ୍ରାମ । ମଧୁସୂଦନ ୧୮୯୭ ଓ ୧୯୦୭ରେ, ପାରଳା ମହାରାଜା ୧୯୩୧, ୧୯୩୩, ଓ ୧୯୩୪ରେ, ଖଲ୍ଲିକୋଟର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ୧୯୩୨ ଓ ୧୯୩୩ରେ, ଭୁବନାନନ୍ଦ ଦାସ ୧୯୩୨ ଓ ୧୯୩୩ରେ ଓ ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ ୧୯୩୪ରେ ଇଂଲଣ୍ଡର ଗୋଲଟେବୁଲ୍ ବୈଠକ ତଥା ଅନ୍ୟ ସମସ୍ତ ନିର୍ଣ୍ଣାୟକ ଅଧିବେଶନର ଆନ୍ଧ୍ର ଓ କର୍ଣ୍ଣାଟକ ପ୍ରତିନିଧିମାନଙ୍କର ସମାନ୍ତରାଳ ବିପରୀତମୁଖୀ ପ୍ରଚେଷ୍ଟା ସତ୍ତ୍ୱେ

ଓଡ଼ିଶାର ଦାବି ଉପସ୍ଥାପନ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସୃଷ୍ଟି କରିଥିଲେ । ଏହି ଗରିମାମୟ ଯୁଗାନ୍ତକାରୀ ସଂଗ୍ରାମ ଭାରତର ସ୍ୱାଧୀନତା ପୂର୍ବରୁ ସଂଚାଳିତ ହୋଇ ନଥିଲେ ଦୂରଦ୍ରଷ୍ଟା ଗାନ୍ଧିଜୀଙ୍କ ଭାଷାରେ - ଓଡ଼ିଶାର ଅସ୍ତିତ୍ୱ ପାଉଁଶ ସ୍ତୂପରେ ପରିଣତ ହୋଇଯାଇ ଥାଆନ୍ତା । ହେଲେ ଓଡ଼ିଆ ଜାତିର ଏହି ଶେଷ ଶୌର୍ଯ୍ୟଶାଳୀ ମହିମାମଣ୍ଡିତ ସଂଗ୍ରାମର ଗାଥା ରହିଛି ଅସଂକଳିତ ଓ ଅସଂଗୃହୀତ ହୋଇ ଏବଂ ଦୁର୍ଦ୍ଧର୍ଷ ସଂଗ୍ରାମୀ ବରପୁତ୍ରମାନେ ରହିଛନ୍ତି ଅସ୍ୱୀକୃତ ହୋଇ- ଏହା ହିଁ ଗଭୀର ପରିତାପର ବିଷୟ ।

ପ୍ରାୟ ସମସ୍ତ ଭାରତୀୟ ନେତୃବର୍ଗଙ୍କ ଉଗ୍ର ବିରୋଧ ସତ୍ତ୍ୱେ ମହାତ୍ମାଗାନ୍ଧୀ ହୃଦୟର ଉଚ୍ଛ୍ୱସିତ ଆବେଗ ଘେନି ପରାଧୀନ ଭାରତରେ ସର୍ବାଗ୍ରେ ପ୍ରଥମ ଭାଷାଭିତ୍ତିକ ପ୍ରଦେଶ ଓଡ଼ିଶାର ସ୍ଥାପନା ଲାଗି ସଂକଳ୍ପବଦ୍ଧ ରହିଥିଲେ । ଏଣୁ ଏହି ଅବସରରେ ବିଶ୍ୱବନ୍ଦନୀୟ ମହାତ୍ମାଗାନ୍ଧୀଙ୍କ ପ୍ରତି , ଭାବବିହ୍ୱଳ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ , କାରଣ ତାଙ୍କର ଭାଷାଭିତ୍ତିକ ପ୍ରଦେଶର ପରିକଳ୍ପନା ଓଡ଼ିଶାର ମାଟିରେ ହିଁ କଳ୍ପିତ ହୋଇ ପ୍ରଥମେ ରୂପାୟିତ ହୋଇଥିଲା ।



# ଗାନ୍ଧିଜୀ, ଆମ୍ବେଦକର ଆଉ ମଧୁସୂଦନ

ସ୍ୱାଧୀନତାର ଅଗ୍ରଦୂତ ମହାତ୍ମାଗାନ୍ଧୀଙ୍କର ଜାତୀୟବାଦୀ କାର୍ଯ୍ୟଧାରାର ପଛଭୂମିରେ ପରାଧୀନ ଭାରତରେ ଆମ୍ବେଦକର ଏବଂ ମଧୁସୂଦନ, ଗାନ୍ଧିଜୀଙ୍କ ପ୍ରତି ଉଚ୍ଛ୍ୱସିତ ସମର୍ଥନ ଜଣାଇଥିଲେ ମଧ୍ୟ ନିଜର ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ, କଲ୍ୟାଣପ୍ରଦ ତଥା ମହତ୍ତର ଲକ୍ଷ୍ୟ ତୁରନ୍ତ ହାସଲ କରିବାର ଆତୁରତା ପାଇଁ ସେମାନଙ୍କୁ ଗାନ୍ଧିଜୀଙ୍କର କିଞ୍ଚିତ୍ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏହାଛଡ଼ା ସେହି ସମୟର ତୁଂଗ ନେତୃବର୍ଗଙ୍କ ସହିତ ସେମାନଙ୍କୁ ରୀତିମତ ସଂଘର୍ଷ କରିବାକୁ ପଡ଼ିଥିଲା । ଆମ୍ବେଦକର ଆଉ ମଧୁସୂଦନଙ୍କ କାର୍ଯ୍ୟଧାରାକୁ ବିଶ୍ଳେଷଣ କରିବାକୁ ଗଲେ, ସେମାନଙ୍କ ଭିତରେ ଥିବା ସମାନତା ବାରିହୁଏ ।

ଭାରତ ରତ୍ନ ଭୀମରାଓ ଆମ୍ବେଦକର(୧୮୯୧-୧୯୫୬)ନିର୍ଯ୍ୟାତିତ ଆଉ ନିଷ୍ପେଷିତ ଦଳିତ ଜାତିର ମୁକ୍ତି ଓ ଆର୍ଥିକ ବିକାଶ ପାଇଁ ଏବଂ ଜାତୀୟ ଗୌରବ ମଧୁସୂଦନ ଦାସ (୧୮୪୮-୧୯୩୪) ବିଖଣ୍ଡିତ ଓ ବିଭାଜିତ କଂକାଳସାର ଓଡ଼ିଆ ଜାତିର ନିଜସ୍ୱ ଭାଷାଭିତ୍ତିକ (ଓଡ଼ିଶା) ପ୍ରଦେଶର ସ୍ଥାପନା ପାଇଁ ଜୀବନବ୍ୟାପୀ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ଏହି ଲକ୍ଷ୍ୟ ପ୍ରାପ୍ତିପାଇଁ ସେମାନେ ମହାତ୍ମାଗାନ୍ଧୀଙ୍କ ଅକୁଣ୍ଠିତ ସମର୍ଥନ ମଧ୍ୟ ହାସଲ କରିଥିଲେ । ମଧୁସୂଦନ ଏବଂ ଆମ୍ବେଦକରଙ୍କ ପାଇଁ ସ୍ୱାଧୀନତା ପ୍ରାପ୍ତିର ଯଥେଷ୍ଟ ପୂର୍ବରୁ ସେମାନଙ୍କ ଲକ୍ଷ୍ୟ ପୂରଣ ହେବା ଆବଶ୍ୟକ ଥିଲା, କାରଣ ସ୍ୱାଧୀନତା ପରେ ସେହି ଲକ୍ଷ୍ୟ ହାସଲ କରିବା ଅତ୍ୟନ୍ତ ଦୁରୂହ ଓ କଷ୍ଟସାଧ୍ୟ ହୋଇପଡ଼ିଥାନ୍ତା ।

ଦଳିତ ଜାତିମାନଙ୍କ ସମସ୍ୟାର ଆଶୁ ସମାଧାନ କ୍ଷେତ୍ରରେ ଆମ୍ବେଦକରଙ୍କ ବକ୍ତବ୍ୟ ଥିଲା, "ମୁଁ ଅତ୍ୟନ୍ତ ଆତଙ୍କିତ ଯେ ଭାରତ, ବର୍ତ୍ତମାନ ସ୍ଥିତିରେ ଯଦି ସ୍ୱାଧୀନତା ଲାଭକରେ, ତାହାହେଲେ ଉଚ୍ଚ ବର୍ଗର ହିନ୍ଦୁମାନଙ୍କ ଦ୍ୱାରା ଅସ୍ପୃଶ୍ୟମାନେ ଅଧିକ ନିର୍ଯ୍ୟାତିତ ଓ ନିପୀଡ଼ିତ ହେବେ ।" ଏହି କଥାକୁ ତାତ୍ତ୍ୱିକ ସମର୍ଥନ ଜଣାଇ ମହାତ୍ମାଗାନ୍ଧୀ ୧୯୩୨ ସାଲର ମଧ୍ୟ ଭାଗରେ କହିଥିଲେ "

ଅସ୍ପୃଶ୍ୟତାକୁ ହ୍ରାସ ନକରି ଯଦି ଆମେ କ୍ଷମତାକୁ ଆସୁ, ତେବେ ମୁଁ ନିଶ୍ଚିତ ଯେ ଅସ୍ପୃଶ୍ୟମାନଙ୍କ ପରିସ୍ଥିତି, ସ୍ୱାଧୀନତା ପ୍ରାପ୍ତି ମାତ୍ରକେ ଅଧିକ ବ୍ୟାପକ ଓ ଗଭୀର ହେବ ।''

ସେହିପରି ମଧୁସୂଦନ ଦାସ ଚାରିଟି ପ୍ରଦେଶରେ ବିଭାଜିତ ଓଡ଼ିଆ ଜାତି ସଂଖ୍ୟାଲଘୁ ଭାବେ ନିର୍ଯ୍ୟାତନାର ଶିକାର ହେବା ସଂପର୍କରେ ୧୯୨୦ ସାଲରେ ଗାନ୍ଧିଜୀଙ୍କୁ (ବ୍ରଜସୁନ୍ଦର ଦାସଙ୍କ ଜରିଆରେ) ଯେଉଁ ଚିଠିଟି ଲେଖିଥିଲେ, ତାହାର କିଛି ଅଂଶ ଏହିପରି ଥିଲା ।

'' ହେ ମହାତ୍ମାଗାନ୍ଧୀ ! ଆପଣଙ୍କର ନବନିର୍ମିତ ଭାରତ କଣ ଓଡ଼ିଆ ଜାତିର ଭସ୍ମାବଶେଷ ଉପରେ ପ୍ରତିଷ୍ଠିତ ହେବ? '' ଏହି ଚିଠିଟିକୁ ମହାତ୍ମାଗାନ୍ଧୀ 'ଉତ୍କଳର ଚିତ୍କାର' ନାମରେ ୧୮.୨.୧୯୨୦ 'ୟଙ୍ଗ୍ ଇଣ୍ଡିଆ' ପତ୍ରିକାରେ ପ୍ରକାଶ କରିଥିଲେ ଏବଂ ସେହି ବର୍ଷ ଡିସେମ୍ବର ମାସରେ ନାଗପୁରର ଜାତୀୟ କଂଗ୍ରେସ ଅଧିବେଶନରେ ଭାଷାଭିତ୍ତିକ ପ୍ରଦେଶ ଗଠନପାଇଁ ନୀତି ଗ୍ରହଣ କରିଥିଲେ । ସେହିପରି ୨୯.୩. ୧୯୨୧ରେ ବ୍ରହ୍ମପୁରଠାରେ ଏକ ସଭାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ସଂଭବପର କରିବା ସକାଶେ ମାର୍ଗ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ମହାତ୍ମାଗାନ୍ଧୀ ଅଧିକ ବଳଶାଳୀ ଆନ୍ଧ୍ରବାସୀମାନଙ୍କୁ ଦୁର୍ବଳ ଓଡ଼ିଆମାନଙ୍କର ଦାବି ମାନିନେବା ପାଇଁ ଆହ୍ୱାନ ଜଣାଇଥିଲେ ।

ମଧୁସୂଦନ ଦାସ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଓଡ଼ିଶା ପ୍ରଦେଶ ଗଠନପାଇଁ ଅଗ୍ରାଧିକାର ଭିତ୍ତିରେ ଦାବି କରିଥିଲେ। କାରଣ ତାଙ୍କ ଦୂରଦୃଷ୍ଟି ବଳରେ ସେ ଜାଣି ପାରିଥିଲେ ଯେ, ସ୍ୱାଧୀନତା ପ୍ରାପ୍ତି ପରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବି ଅବହେଳିତ ହେଇଯିବାର ଆଶଙ୍କା ରହିଛି । ସ୍ୱାଧୀନତୋତ୍ତର ଭାରତରେ ଓଡ଼ିଶା ପ୍ରତି କେନ୍ଦ୍ରର ଅବହେଳା ସତ୍ୟ ପ୍ରମାଣିତ ହୋଇଥିଲା । ଏଣୁ ୧୧.୧୨.୧୯୧୭ରେ କଲିକତା ଯାଇ ମଣ୍ଟେଗୁ ଚେମସ୍‌ଫୋର୍ଡ଼ କମିଟି ଆଗରେ ମଧୁସୂଦନ ତାଙ୍କର ବଳିଷ୍ଠ ଓଡ଼ିଶା ଗଠନ ଦାବି ଉପସ୍ଥାପନ କରିଥିଲେ । ସେହିପରି ଭାବେ ଆମ୍ବେଦକର ୧୯୧୮ ସାଲରେ ସାଉଥ୍‌ବରୋ ଓ ଅନ୍ୟାନ୍ୟ କମିଟି ସମ୍ମୁଖରେ ଦଳିତ ଜାତିର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅଧିକାର ପ୍ରାପ୍ତିପାଇଁ ବିଭିନ୍ନ ପ୍ରସ୍ତାବମାନ ଦୃଢ଼ ଭାବେ ଆଗତ କରିଥିଲେ ।

ଭାରତୀୟ ପ୍ରଶାସନରେ ପର୍ଯ୍ୟାପ୍ତ ସଂସ୍କାର ଆଣିବାପାଇଁ ୧୯୨୭ ସାଲରେ ଜନ୍ ସାଇମନଙ୍କ ଅଧ୍ୟକ୍ଷତାରେ ବ୍ରିଟିଶ୍ ସରକାର ଏକ କମିଶନ ଗଠନ କରିଥିଲେ । ମାତ୍ର ସେଥିରେ କୌଣସି ଭାରତୀୟ ସଦସ୍ୟ ନଥିବାରୁ ଭାରତୀୟ ଜାତୀୟ କଂଗ୍ରେସ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ମାତ୍ର ବହୁ ଅନ୍ୟ ସଂଖ୍ୟାଲଘୁ ଦଳ, ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଦଳିତ ସମାଜ ଓ ମଧୁସୂଦନଙ୍କ ନେତୃତ୍ୱରେ ଓଡ଼ିଶାର ରାଜନୈତିକ ଦଳ ଏହାକୁ ସ୍ୱାଗତ କରିଥିଲେ ।

ଦଳିତମାନଙ୍କ ସାମଗ୍ରିକ ଉନ୍ନତି କଳ୍ପେ ଆମ୍ବେଦକରଙ୍କୁ , ମଧୁସୂଦନଙ୍କ ପ୍ରଦର୍ଶିତ ସାମ୍ବିଧାନିକ ମାର୍ଗକୁ ଗ୍ରହଣ କରିବାକୁ ପଡ଼ିଥିଲା । ସାଇମନ କମିଶନ ୩.୧୨. ୧୯୨୮ରେ ବମ୍ବେରେ ପହଞ୍ଚିବା ପରେ, ବମ୍ବେ ବିଧାନ କାଉନ୍‌ସିଲ୍‌ର ସଦସ୍ୟ ରୂପେ ତଥା ଦଳିତ ଜାତିର

ଅଧ୍ୟକ୍ଷ ରୂପେ ଆମ୍ବେଦକର ପୁନାଠାରେ ଅକ୍ଟୋବର ୧୯୨୮ରେ ସାଇମନ କମିଶନଙ୍କ ଆଗରେ ସାକ୍ଷ୍ୟ ପ୍ରଦାନ କରିବା ପରେ ୩.୫.୧୯୨୯ରେ ବମ୍ବେଠାରେ ସୁବିସ୍ତାରିତ ପ୍ରସ୍ତାବମାନ ସାଇମନ କମିଶନଙ୍କ ନିକଟରେ ଦାଖଲ କରିଥିଲେ । ଏହି ପ୍ରସ୍ତାବ ସବୁର ଆଲୋଚନାପାଇଁ ଲଣ୍ଡନଠାରେ ୧୯୩୦ ରୁ ୧୯୩୨ ପର୍ଯ୍ୟନ୍ତ ତିନୋଟି ଗୋଲଟେବୁଲ୍ ବୈଠକ ବସିଥିଲା । ଆମ୍ବେଦକର ୧୨.୧୧.୧୯୩୦ରେ ପ୍ରଥମ ଗୋଲ ଟେବୁଲ୍ ବୈଠକ ଆଉ ୧୫.୯.୧୯୩୧ରେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗଦେଇ ଦଳିତ ଜାତିର ଉନ୍ନତିପାଇଁ ବିଭିନ୍ନ ପ୍ରସ୍ତାବ ସହିତ ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଗଠନର ଦାବିପତ୍ର ଉପସ୍ଥାପନ କରିଥିଲେ । ମାତ୍ର ଦ୍ୱିତୀୟ ଗୋଲଟେବୁଲ୍ ବୈଠକରେ ଯୋଗ ଦେଇଥିବା ମହାତ୍ମାଗାନ୍ଧୀ ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଗଠନର ପ୍ରସ୍ତାବକୁ ତୀବ୍ର ବିରୋଧ କରିଥିଲେ । ଭାରତକୁ ଫେରିବା ପରେ ମହାତ୍ମାଗାନ୍ଧୀ ପୁନା ନିକଟସ୍ଥ ୟାରୱାଡ଼ା ଜେଲ୍‌ରେ ବନ୍ଦୀ ହୋଇଥିବା ସମୟରେ ବ୍ରିଟିଶ ସରକାର ୧୭.୮. ୧୯୩୨ରେ ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଗଠନର ପ୍ରସ୍ତାବକୁ ସ୍ୱୀକୃତି ଦେଲେ । କିନ୍ତୁ ଏହା ଦ୍ୱାରା ଭାରତରେ ହିନ୍ଦୁ ସମାଜ ସବର୍ଣ୍ଣ ଆଉ ଦଳିତମାନଙ୍କ ମଧ୍ୟରେ ବିଭାଜିତ ହେବାର ଆଶଙ୍କା ଥିବାରୁ ୨୦.୯.୧୯୩୨ରେ ୟାରୱାଡ଼ା ଜେଲର ବଗିଚାର ଏକ ଆମ୍ବଗଛର ଛାଇରେ ମହାତ୍ମାଗାନ୍ଧୀ ତାଙ୍କର ଅନଶନ ଆରମ୍ଭ କରିଥିଲେ, ଯାହା ଯୁଗାନ୍ତକାରୀ ଅନଶନର ମାନ୍ୟତା ପାଇଥିଲା । ଏ କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କ ସହିତ ଆମ୍ବେଦକରଙ୍କର କିଛି କିଛି ବୁଝାମଣା ହେବାପରେ ୨୬.୯.୧୯୩୨ରେ ମହାତ୍ମାଗାନ୍ଧୀ ଅନଶନ ଭଂଗ କରିଥିଲେ । ଏହିପରି ବିଭିନ୍ନ ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ଆମ୍ବେଦକର ଦଳିତମାନଙ୍କ ପାଇଁ ବହୁ ସାମ୍ବିଧାନିକ ଅଧିକାର ହାସଲ କରିଥିଲେ ।

ଆମ୍ବେଦକର ଓ ମଧୁସୂଦନ ଯେପରି ଗୋଟିଏ ଉପାଦାନରେ ଗଢ଼ା ହୋଇଥିଲେ ଏବଂ ଏକନିଷ୍ଠ ସଂକଳ୍ପବଦ୍ଧତା ସହ ଆପଣାର ଲକ୍ଷ୍ୟପ୍ରାପ୍ତି ପାଇଁ ଜୀବନବ୍ୟାପି ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ଆମ୍ବେଦକର ଓ ମଧୁସୂଦନ ଦଳିତ ଜାତିର ଉନ୍ନତି କଳ୍ପେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଦଳିତମାନଙ୍କ ବିକାଶ ପାଇଁ ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ ଅନେକ ପ୍ରକଳ୍ପକୁ ମହାତ୍ମାଗାନ୍ଧୀ ପରିଦର୍ଶନ କରିଥିଲେ ।

ଆମ୍ବେଦକର ଦଳିତମାନଙ୍କ ଉନ୍ନତି କଳ୍ପେ ସମର୍ପିତ ନିଜ ଜୀବନର ମୂଲ୍ୟାୟନ କରି ଜୀବନର ଅନ୍ତିମ ବର୍ଷରେ ୧୯୫୭ ସାଲରେ ଲେଖିଥିଲେ- "ମୋଜେସ୍ ଯେପରି ତାଙ୍କ ଅନୁଗାମୀ ଜନସଂପ୍ରଦାୟକୁ ପାଲେଷ୍ଟାଇନ୍‌ରେ ଆଶ୍ରୟ ପ୍ରଦାନ କରିଥିଲେ, ସେହିଭଳି ମୁଁ ଦଳିତମାନଙ୍କୁ ସ୍ୱାଧୀନତା ପ୍ରଦାନ କରି ସେମାନଙ୍କୁ ନିର୍ଯ୍ୟାତନାରୁ ମୁକ୍ତ କରିବି ।" ମଧୁସୂଦନ ଓଡ଼ିଆମାନଙ୍କ ପାଇଁ ଏହିଭଳି ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ମଧ୍ୟ ସେ ପ୍ରଚାର ବିମୁଖ ଥିବାରୁ ନିଜ ସଂପର୍କରେ ନୀରବ ରହିଥିଲେ । ମାତ୍ର ୪.୧୨.୧୯୩୪ରେ ତାଙ୍କର ତିରୋଧାନରେ ଓଡ଼ିଶା ଡିଭିଜନର କମିଶନର ଇ.ଏସ୍. ହରନେଲ୍ ଏହିଭଳି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ।

ପିଘା ପର୍ବତର ଶିଖର ଦେଶରେ ଠିଆହୋଇ ମୋଜେସ୍ ଯେପରି ତାଙ୍କର ପଦଦଳିତ ଓ ନିଷ୍ପେଷିତ ବଂଶଧରଙ୍କ ଭବିଷ୍ୟତର ବାସଭୂମିକୁ ଅପଲକ ଦୃଷ୍ଟିରେ ଦେଖୁଦେଖୁ ଏ ସଂସାରରୁ ବିଦାୟ ନେଇଥିଲେ, ମଧୁସୂଦନ ସେହିପରି ନୂତନ ସଂଭାବନାମୟ ପ୍ରଦେଶ ଗଠନର ପ୍ରାକ୍ କାଳରେ (୪.୨.୧୯୩୪) ସଂସାରରୁ ବିଦାୟ ନେଇ ଚାଲିଗଲେ ।''

ପ୍ରକୃତରେ ଅନବଦ୍ୟ ଏହି ମନୀଷୀମାନଙ୍କ ଅବଦାନ । ନିଜନିଜ ନିଷ୍ପେଷିତ ଜାତିର ବିକାଶପାଇଁ ସେମାନେ କରିଯାଇଥିବା ତ୍ୟାଗ ଆଜି ଦେଶବାସୀଙ୍କୁ ଉଦ୍‌ବେଳିତ କରେ ।



# ୧୯୯୮ : ଉତ୍କଳୀୟ ଅଭ୍ୟୁତ୍ଥାନର ସାର୍ଦ୍ଧ ଶତାବ୍ଦୀ ଜୟନ୍ତୀ ସମ୍ବତ୍ସର

ଉନବିଂଶ ଶତାବ୍ଦୀର ଶେଷଭାଗ, ଯାହା ଭାରତୀୟ ଜାଗରଣ(ରେନାସାଁସ୍)ର ଯୁଗ ରୂପେ ଚିହ୍ନିତ, ତାହାଥିଲା ଓଡ଼ିଶା ଜାତିପାଇଁ ଆପଣାର ଲୁପ୍ତ ସ୍ଥିତିର ପୁନଃସଂସ୍ଥାପନଲାଗି ପ୍ରଚଣ୍ଡ ସଂଗ୍ରାମର ଯୁଗ । ଏଥିରେ ଅସ୍ତ୍ରର ଝଙ୍କାର ଅପେକ୍ଷା ଉଦ୍ଦୀପ୍ତ ଚେତନାର ପରିସ୍ଫୁରଣ ଥିଲା ଚରମ ଆବଶ୍ୟକତା । ହେଲେ ଯେଉଁ ଦୂରନ୍ତ ଶକ୍ତିଟି ଅତି ଅଦ୍‌ଭୁତ ଭାବେ କ୍ରିୟାଶୀଳ ହୋଇ ଏହି ଯୁଗାନ୍ତକାରୀ ପରିବର୍ତ୍ତନ ସଂଘଟିତ କରିଥିଲା, ତାହାରି ଭ୍ରୂଣ ବା ମୂଳ ପିଣ୍ଡଟି ସ୍ଥାପିତ ହୋଇଥିଲା ଏହି ମାଟିରେ ୧୮୪୮ରେ, ଯାହାର ଦେଢ଼ଶହ ବର୍ଷର ଜୟନ୍ତୀ ସମ୍ବତ୍ସର ପାଳିତ ହେଲା ୧୯୯୮ ସାଲରେ ।

ସେହି ଅବିସ୍ମରଣୀୟ କ୍ରାନ୍ତିକାରୀ ୧୮୪୮ ସାଲଟି ହେଉଛି, ଏ ଜାତି ଅଭ୍ୟୁଦୟର ଦୁର୍ନିବାର ଅଗ୍ନିଶିଖା ଜାତୀୟ ଗୌରବ ମଧୁସୂଦନ ଆଉ ଦୂରନ୍ତ ଆହ୍ୱାନର ଚାରଣ କବି ରାଧାନାଥଙ୍କ ଜନ୍ମ ସମ୍ବତ୍ସର । ଏହାର ପାଞ୍ଚବର୍ଷ ଆଗରୁ ୧୮୪୩ ସାଲରେ ଆବିର୍ଭାବ ଘଟିଥିଲା ଦିଗ୍‌ଦର୍ଶୀ କଥାକାର ଫକୀର ମୋହନଙ୍କର -ଯେଉଁ ତ୍ରୟୀଙ୍କର ଅନବଦ୍ୟ ସମାହାର, ଏ ପ୍ରଦେଶର ମାଟିକୁ ଦେଇଥିଲା ଆତ୍ମ ପରିଚୟର ସ୍ୱତନ୍ତ୍ର ଭିତ୍ତିଭୂମି ।

ସେହି ୧୮୪୮ ରେ ଓଡ଼ିଶା ମାଟିରେ ସଂସ୍ଥାପିତ ମୂଳ ସତ୍ତାଟି, ୧୮୮୧ସାଲରେ ଦୀର୍ଘ ବତିଶି ବର୍ଷର ପ୍ରସ୍ତୁତି ପରେ, ଡେଣା ମେଲାଇଥିଲା । ସୂର୍ଯ୍ୟୋଦୟ ପୂର୍ବରୁ ରାତିର ଘନ ଅନ୍ଧକାର ଆହୁରି ନିବିଡ଼ ହେଲାପରି, ଏହି ପ୍ରସ୍ତୁତିପର୍ବର ସମୟଟି ଥିଲା ଘନ ତମିସ୍ରାର ରଜନୀ, ଯହିଁରେ ଦୁର୍ଗତିର ଦୁର୍ବିପାକ ମଧ୍ୟରେ ଆଉଟି ହୋଇ ନିଃଶେଷିତ ହେବାକୁ ବସିଥିଲା ଏହି ଜାତି । ବିଦେଶୀ ଇଂରେଜୀ ଶକ୍ତି ବିରୁଦ୍ଧରେ ଫଣା ଟେକି ୧୮୧୭ ସାଲରେ ପାଇକ ବିଦ୍ରୋହ ଅବସରରେ ବକ୍ସି ଜଗବନ୍ଧୁ ଓ ଜୟୀ ରାଜଗୁରୁ , ଦକ୍ଷିଣାଞ୍ଚଳର ଚକରା ବିଶୋଇଙ୍କ ଗରିଲା ସଂଗ୍ରାମଠାରୁ ଆରମ୍ଭ

କରି ସମ୍ବଲପୁରରେ ସିପାହୀ ବିଦ୍ରୋହ ଅବସରରେ ସୁରେନ୍ଦ୍ର ସାଏଙ୍କର ପ୍ରଚଣ୍ଡ ସଂଘାତ ଭିତରେ ଓଡ଼ିଶା ଭୂଇଁରେ ସଂଗ୍ରାମର ଶେଷ ସ୍ଫୁଲିଙ୍ଗ ନିର୍ବାପିତ ହୋଇଯାଇଥିଲା ।

ହେଲେ ଘଟଣା ପ୍ରବାହର ପ୍ରବଳ ଘୂର୍ଣ୍ଣି ମଧ୍ୟରେ ୧୮୬୫ ସାଲରେ ଏହି ତ୍ରୟୀଙ୍କର ମିଳନ ଘଟିଥିଲା ବାଲେଶ୍ୱରରେ, ଯାହାର ମାର୍ମିକ ବିବରଣୀ ଉପସ୍ଥାପିତ ହୋଇଛି ଫକୀରମୋହନଙ୍କ ଆତ୍ମଜୀବନୀରେ- ''ବାଲେଶ୍ୱରରେ ମୋତିଗଞ୍ଜ ବଜାରର ଦକ୍ଷିଣ ପ୍ରାନ୍ତରେ ଗୋଟିଏ ପୁଷ୍କରିଣୀର ନାମ ଗଡ଼ଗଡ଼ିଆ । ବାବୁ ମଧୁସୂଦନ ସେ ସମୟରେ ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ର ତୃତୀୟ ଶିକ୍ଷକ ଥିଲେ । ଗ୍ରୀଷ୍ମ କାଳରେ ଆମ୍ଭେମାନେ ପ୍ରାୟ ପ୍ରତିଦିନ ପରସ୍ପର କଥୋପକଥନ ଓ ବାୟୁ ସେବନ ନିମନ୍ତେ ଉକ୍ତ ପୁଷ୍କରିଣୀର ଘାଟରେ ଏକତ୍ରିତ ହେଉଥିଲୁ । ପିତାଙ୍କ ଭୟରେ ରାଧାନାଥ ଦିବାଲୋକର ପ୍ରକାଶରେ ଆମ୍ଭମାନଙ୍କ ସହିତ ଆସି ବସିପାରନ୍ତି ନାହିଁ । ଦିନେଦିନେ ସନ୍ଧ୍ୟା ଉତାରେ ଆସି ପହଞ୍ଚି ଯାଆନ୍ତି । କିନ୍ତୁ ମଧୁସୂଦନ ପ୍ରତ୍ୟହ ଆସି ଆମ ଦଳରେ ମିଶୁଥିଲେ । ସେହି ତରୁଣ ବୟସରେ ମଧ୍ୟ ତାହାଙ୍କର ଉଚ୍ଚାକାଂକ୍ଷା ବିଷୟରେ ଶୁଣି ଆମ୍ଭେମାନେ ସ୍ତମ୍ଭିତ ହୋଇଯାଇଥିଲୁ । ସେ ସେଠାରୁ କର୍ମ ତ୍ୟାଗ କରି କଲକତା ଚାଲି ଯାଇଥିଲେ ।'' ତାହା ଘଟିଥିଲା ୧୮୬୬ ସାଲ ପ୍ରାରମ୍ଭରେ ।

ସେହି ଘଟଣାବଳୀ ମଧୁସୂଦନଙ୍କ ନିଜସ୍ୱ ବକ୍ତବ୍ୟରେ ନିମ୍ନ ଭାବରେ ଉପସ୍ଥାପିତ ହୋଇଛି- ''ଆମ୍ଭେମାନେ କଟକ କଲିଜିଏଟ୍ ସ୍କୁଲ୍‌ରେ ପଢ଼ିଲାବେଳେ ଇଂରାଜୀ ଓ ବଂଗଳା ବହି ପଢୁଥିଲୁ, କାରଣ ସବୁତକ ମାଷ୍ଟର ବଙ୍ଗାଳୀ । ସେତେବେଳେ ସେମାନେ ଓଡ଼ିଆରେ କଥା କହୁ ନଥିଲେ । ଆମର ଓଡ଼ିଆ ପାଠ୍ୟ ପୁସ୍ତକ ମଧ୍ୟ ନଥିଲା । ତେଣୁ ଆମେ କେତେକ ଓଡ଼ିଆ ପିଲାଙ୍କ ମନରେ ଭାବ ଆସିଲା ଯେ, ଓଡ଼ିଆ ପାଠ୍ୟ ପୁସ୍ତକ ଥାଆନ୍ତା ଓ ଓଡ଼ିଆ ମାଷ୍ଟର ଥାଆନ୍ତେ କି ? ଯାହାହେଉ ମୁଁ ପାଶ୍ କରି ଉଚ୍ଚଶିକ୍ଷାପାଇଁ ଇଚ୍ଛା ପ୍ରକାଶ କରି ବାପାଙ୍କୁ କହିଲି । ସେ ମନାକରି କହିଲେ, ''ଡେପୁଟି ହୁଅ ।''

ମୁଁ ତାଙ୍କ କଥା ନମାନି ଚାଲିଚାଲି ବାଲେଶ୍ୱର ଗଲି ଓ ଜିଲ୍ଲାସ୍କୁଲ୍ ମାଷ୍ଟର ହେଲି । ସେଠି ହେଡ୍ ପଣ୍ଡିତ କାନ୍ତିଚନ୍ଦ୍ର ବନ୍ଦୋପାଧ୍ୟାୟ ଓଡ଼ିଆ ବିଦ୍ୱେଷୀ ଥିଲେ । ସେ କହୁଥିଲେ, ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ । ଫକୀରମୋହନ ସେନାପତି ଭର୍ଣ୍ଣାକୁଲାର ପଢ଼ି ଗୋଟିଏ ପ୍ରାଇମେରୀ ସ୍କୁଲ୍ ଶିକ୍ଷକ ଥିଲେ । ସେ ଓଡ଼ିଆ ଭାଷାପ୍ରେମୀ ଥାଇ ବାଲେଶ୍ୱରରେ ଆନ୍ଦୋଳନ ଚଳାଇଲେ । ସେ ମୋଠାରୁ ପାଞ୍ଚ ବର୍ଷ ବଡ଼ ଥିଲେ ଓ ମୁଁ ତାଙ୍କ ସହିତ ଯୋଗ ଦେବାରୁ କାନ୍ତିଚନ୍ଦ୍ର ମୋ ଉପରେ ବିରକ୍ତ ହେଲେ । ତା'ପରେ ସବ୍ ରେଜେଷ୍ଟ୍ରି ଅଫିସ୍‌ରେ ଚାକିରି କଲି । କାନ୍ତିଚନ୍ଦ୍ରଙ୍କ ବନ୍ଧୁ ସେଠି ହେଡ୍ କିରାଣି ଥାଇ ମୋତେ ବଦନାମରେ ପକାଇବାକୁ ଚେଷ୍ଟା କଲେ । ମୁଁ ତାଙ୍କର ଦୌରାତ୍ମ୍ୟ ଓ ଷଡ଼ଯନ୍ତ୍ର ସହି ନପାରି ଚାକିରି ଛାଡ଼ି କଲିକତା ଗଲି ।

ଆଉ ୧୮୬୬ ସାଲର ଶେଷ ଭାଗରେ ଓଡ଼ିଆ ଜାତି ବଳି ଚଢ଼ିଥିଲା ନଅଙ୍କ ଦୁର୍ଭିକ୍ଷର ଯୂପକାଠିରେ । ସେହି ପ୍ରାଣଶୋଷା ମଡ଼କର କରାଳ ଗ୍ରାସରେ ଏ ଜାତିର ଏକ ଚତୁର୍ଥାଂଶ ଲୋକ

ମୃତ୍ୟୁ ମୁଖରେ ପଡ଼ିବା ପରେ କଙ୍କାଳସାର ଓଡ଼ିଆ ଜାତିଟି ଅତ୍ୟନ୍ତ ଅସୁରକ୍ଷିତ ଓ ଅସହାୟ ଅବସ୍ଥାରେ ଖସିପଡ଼ିଥିଲା ନିଃସ୍ୱତାର ଅତଳ ଗର୍ଭକୁ ।

ଠିକ୍ ଏହାର ଅବ୍ୟବହିତ ପୂର୍ବରୁ ୧୮୬୨ ସାଲରେ ସମ୍ବଲପୁର ଜିଲ୍ଲା ସମେତ ପଶ୍ଚିମାଞ୍ଚଳ ଓଡ଼ିଶାର ସମସ୍ତ ଗଡ଼ଜାତ, ମଧ୍ୟପ୍ରଦେଶର ଛତିଶିଗଡ଼ ଅଂଚଳ ସହିତ ସଂଯୁକ୍ତ ହୋଇ ଆପଣାର ସତ୍ତା ହରାଇବାକୁ ବସିଥିଲା । ଆଉ ଦକ୍ଷିଣ ଓଡ଼ିଶାର କୋର୍ଟକଚେରିରୁ ଦୀର୍ଘକାଳ ଧରି ବିଧିବଦ୍ଧ ଭାବେ ଓଡ଼ିଆ ଭାଷାର ନିର୍ବାସନ ପରେ ୧୮୭୦ ସାଲରେ ଗଞ୍ଜାମର ରସଲକୁଣ୍ଡା (ଭଞ୍ଜନଗର)ଠାରେ ପ୍ରଥମ ପ୍ରତିବାଦର ଗୁଞ୍ଜରଣ ଶୁଭିଥିଲା । ହେଲେ ୧୮୬୭-୬୮ ସାଲରେ ଓଡ଼ିଶାର ମୂଳ ଭୂଖଣ୍ଡ ବାଲେଶ୍ୱରର ବିଦ୍ୟାଳୟମାନଙ୍କରେ ଓଡ଼ିଆ ଭାଷା ପରିବର୍ତ୍ତେ ବଂଗଳା ଭାଷାର ପ୍ରଚଳନ ବିରୋଧରେ ଫକୀରମୋହନଙ୍କ ଦ୍ୱାରା ସଂଚାଳିତ ଜନଜାଗରଣକୁ କଲେକ୍ଟର ବୀମସ୍ ସାହେବଙ୍କର ଅକୁଣ୍ଠ ସମର୍ଥନ ଆଉ କମିଶନର ରେଭେନ୍‌ସା ସାହେବଙ୍କର ସମୟୋପଯୋଗୀ ଦୃଢ଼ ପଦକ୍ଷେପ ଫଳରେ, ଓଡ଼ିଆ ଭାଷା ନିଜର ମାନ୍ୟତା ଫେରିପାଇଲା ୧୮୬୯ରେ । ହେଲେ ବହିରାଗତ କର୍ମଚାରୀଙ୍କ ପକ୍ଷପାତିତାର ଜୁଆ ଖେଳ ମଧ୍ୟରେ ବିଖଣ୍ଡିତ ଓଡ଼ିଆ ଜାତି ପ୍ରତିବାଦ କରିବାର ସ୍ୱରଟି ହରାଇ ବସିଥିଲା, ଏକ ମେରୁଦଣ୍ଡ ବିହୀନ ମୁମୂର୍ଷୁ ଜାତିରେ ପରିଣତ ହୋଇ ।

ଏତିକି ବେଳେ କଲିକତାରେ, ଜାତୀୟ ଜାଗରଣର ମୂଳଉତ୍ସ, ଇଣ୍ଡିଆନ୍ ଆସୋସିଏସନ୍‌ର ଜଣେ ସକ୍ରିୟ ସଭ୍ୟ ରୂପେ ସଂଯୁକ୍ତ ରହି, ମଧୁସୂଦନ ଓଡ଼ିଶାକୁ ଫେରିଆସିଥିଲେ ଏକ କ୍ରାନ୍ତିକାରୀ ନୂତନ ଯୁଗର ବାର୍ତ୍ତାବହ ରୂପରେ । ଯେତେବେଳେ ଭାଙ୍ଗି ,ଅଜାଡ଼ି ହୋଇ ପଡୁଥିବା ପୁରୁଣା ବ୍ୟବସ୍ଥା ଉପରେ ନୂତନ ଯୁଗର ଭିତ୍ତିସ୍ଥାପନ ଅବଶ୍ୟମ୍ଭାବୀ ହୋଇ ପଡିଥିଲା । ଏହି ଐତିହାସିକ କର୍ତ୍ତବ୍ୟଟି ଏକାକୀ ସଂପାଦନ କରିଥିଲେ ମଧୁସୂଦନ । ୧୮୮୨ସାଲରେ ଉତ୍କଳ ସଭା ଗଠନ କରି, ତାହାରି ମାଧ୍ୟମରେ ମଧୁସୂଦନ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଦାବି ଉପସ୍ଥାପନ କରିଥିଲେ, ତତ୍‌କାଳୀନ ବଙ୍ଗର ଗଭର୍ଣ୍ଣରଙ୍କ ସମକ୍ଷରେ । କେବଳ ସେତିକି ନୁହେଁ, ୧୮୮୭ ସାଲରେ ଓଡ଼ିଆ ଜାତିର ସ୍ନାୟୁକେନ୍ଦ୍ର ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନାକୁ ଇଂରେଜୀ ସରକାରଙ୍କୁ ହସ୍ତାନ୍ତର କରିବାର ହୀନ ଚକ୍ରାନ୍ତକୁ ଆଇନଗତ ସଂଗ୍ରାମରେ ପ୍ରତିହତ କରି, ସ୍ମରଣାତୀତ ଯୁଗରୁ ପ୍ରଚଳିତ ଥିବା ଗଜପତି ବଂଶର ପରଂପରାକୁ ଆଉ ଥରେ ସଂସ୍ଥାପିତ କରିଥିଲେ ମଧୁସୂଦନ । ତେଣୁ ମଧୁସୂଦନ ଉଭା ହୋଇଥିଲେ, ଏ ଜାତିର ତ୍ରାଣକର୍ତ୍ତା ଆଉ ବିପଦର ଝଡ଼ଝଞ୍ଜା ମଧ୍ୟରେ ଆଶାଭରସାର ଏକମାତ୍ର ଆଶ୍ରୟସ୍ଥଳ ରୂପେ ।

ଏ ସମସ୍ତ ମଧ୍ୟରେ ବିଖଣ୍ଡିତ ଓଡ଼ିଆ ଜାତିର ନବଜାଗରଣ ଲାଗି ଗ୍ରହଣଶୀଳ ମାନସିକ ପ୍ରସ୍ତୁତିର ଭିତ୍ତିଭୂମି ସଜାଡ଼ିଥିଲେ, କ୍ରାନ୍ତିକାରୀ ଚାରଣ କବି ରାଧାନାଥ, ତାଙ୍କ ରଚନାର ଅନବଦ୍ୟ ଉପସ୍ଥାପନାରେ । ସେତେବେଳେ ଓଡ଼ିଶା ଇତିହାସର ରୁଦ୍ଧଦ୍ୱାରକୁ ଉନ୍ମୋଚିତ କରିଥିବା ମାଦଳା ପାଞ୍ଜିର ଆଖ୍ୟାନକୁ ଭିତ୍ତିକରି ରାଧାନାଥ, ମାତୃଭୂମିର ଆରାଧନା ପୀଠରେ ଗଢ଼ିଥିଲେ ସାରସ୍ୱତ ପୂଜା ସମ୍ଭାର । ଏହାରି ମାଧ୍ୟମରେ ପଞ୍ଚଦଶ ଶତାବ୍ଦୀର ଓଡ଼ିଆ ସଂସ୍କୃତିର ବ୍ୟାଖ୍ୟାକାର ସାରଳା

ଦାସଙ୍କର, ଏ ଦେଶ ମାଟିର ଉତ୍ତଳା ଗନ୍ଧରେ ଆମୋଦିତ ଅନନ୍ୟ ରଚନାବଳୀ ପ୍ରଣୟନର ଦୀର୍ଘ ଚାରିଶହ ବର୍ଷ ପରେ ଶୂନ୍ୟାଚାରୀ ଓଡ଼ିଆ ସାହିତ୍ୟ ପୁଣି ଫେରିଥିଲା ଓଡ଼ିଶା ମାଟିକୁ । ଏ କ୍ଷେତ୍ରରେ ରାଧାନାଥଙ୍କର କାଳଜୟୀ ସାହିତ୍ୟକୃତିର କୌଣସି ତୁଳନା ନାହିଁ ।

ବିଖଣ୍ଡିତ ଓଡ଼ିଶାମାଟିକୁ ମମତ୍ୱର ଏକତାସୂତ୍ରରେ ଗୁନ୍ଥି, ସେଦିନ ପୌଷପୂର୍ଣ୍ଣିମାର ଅଭିଷେକ ଉତ୍ସବର ପ୍ରାତଃ ବେଳାରେ, ସମଗ୍ର ଉତ୍କଳ ଭୂଖଣ୍ଡର ଦେବଦେବୀଙ୍କର ସମୁଜ୍ଜ୍ୱଳ ସମାବେଶ ଘଟିଥିଲା, ନୀଳାଚଳଠାରେ, ଚନ୍ଦ୍ରଭାଗା (୧୮୬୬)କାବ୍ୟରେ, ଯାହା ମାଧ୍ୟମରେ ରାଧାନାଥ ସର୍ବ ପ୍ରଥମେ ଉତ୍କଳୀୟ ସଂସ୍କୃତିର ଅନବଦ୍ୟ ଐକତାନରେ ମନ୍ଦ୍ରିତ କରିଥିଲେ ଓଡ଼ିଆ ସାହିତ୍ୟକୁ । ୧୮୮୮ ସାଲରେ ନନ୍ଦୀକେଶ୍ୱରୀ କାବ୍ୟରେ ଉତ୍କଳର ଐତିହ୍ୟକୁ ଉତ୍ତୋଳିତ କରି, ପରେ ପାର୍ବତୀ କାବ୍ୟରେ ସମଗ୍ର ଓଡ଼ିଶାର ପାହାଡ଼ ଓ ଗିରିଶୃଙ୍ଗମାନଙ୍କୁ ଚୁମ୍ବି ଜୈତ୍ର ଯାତ୍ରାର ଆଗ୍ନେୟ ସଂଚାରଣ ମଧ୍ୟରେ ଉତ୍କଳୀୟ ଏକୀଭୂତ ପ୍ରାଣର ଉଚ୍ଛଳ ଓ ମାର୍ମିକ ପରିପ୍ରକାଶ କରିଥିଲେ ।

ଆଉ ଏ ମାଟିର ସୌନ୍ଦର୍ଯ୍ୟର ଗନ୍ତାଘର ଚିଲିକା (୧୮୯୧)ର ଅନୁରୂପ ନୈସର୍ଗିକ ଦୃଶ୍ୟାବଳୀର ପ୍ରାଣଛୁଆଁ ଉପସ୍ଥାପନା ପରେ ତାହାରି ଅନୁକରଣରେ ଅସଂଖ୍ୟ ପ୍ରତିଭାଧର କବିଙ୍କ ଲେଖନୀରେ ଆଞ୍ଚଳିକ ଶୋଭା ସଂଭାରମାନ ଜୀବନ୍ୟାସ ପାଇ ଉଦ୍‌ବେଳିତ ହୋଇ ଉଠିଥିଲେ । ପରିଣାମରେ ଉତ୍କଳର ମାଟି ହୋଇଯାଇଥିଲା ମାତୃଶକ୍ତିର ପରିପୂରିତ ଆଧାର, ଯାହାର ବାସ୍ତବ ଅନ୍ୱେଷଣରେ ମଧୁସୂଦନଙ୍କ ଆକୁଳ ଆବାହନରେ ଓଡ଼ିଆ ଜାତି ପାଇଥିଲା, ଏକ ଅଫୁରନ୍ତ ପ୍ରେରଣାର ଉତ୍ସ । ସେହି ଆବାହନୀ ସଂଗୀତର ପଙ୍‌କ୍ତି ଥିଲା ଏହିପରି -

''କୋଟିଏ ସନ୍ତାନ ଗୋଟିଏ ସ୍ୱରରେ ଜନନୀ ଜନନୀ ଡାକ,
ତୃଷାରେ ଆତୁର ଗଗନକୁ ଚାହିଁ ଯେସନେ ଡାକେ ଚାତକ ।''

-ମଧୁସୂଦନ

ରାଧାନାଥଙ୍କ ରଚନାବଳୀରେ ସନ୍ନିବେଶିତ ମାତୃ ଆହ୍ୱାନର ପ୍ରତ୍ୟୁତ୍ତର ଦେଇ ଫକୀରମୋହନ ରଚନା କରିଥିଲେ ୧୮୯୨ ସାଲରେ 'ଉତ୍କଳ ଭ୍ରମଣ', ଯହିଁରେ ଛଳଛଳ ପ୍ରକୃତିର ନୈସର୍ଗିକ ବର୍ଣ୍ଣନା ପରିବର୍ତ୍ତେ, ସମଗ୍ର ଉତ୍କଳ ଭୂଖଣ୍ଡରେ ବିଚ୍ଛୁରିତ ଥିବା ଦେଶମାତୃକା ଓ ସାରସ୍ୱତ ପୂଜାରେ ନିବେଦିତ ବହୁ ଉତ୍ସର୍ଗୀକୃତ ସାଧକମାନଙ୍କ ଅନବଦ୍ୟ କୃତିତ୍ୱ ମୁଖରିତ ହୋଇଥିଲା । ସୁଦୂର ପଶ୍ଚିମାଞ୍ଚଳରୁ ପ୍ରକୃତି କବି ଗଂଗାଧର ମେହେର ୧୮୯୪ ସାଲରେ ରଚନା କରିଥିଲେ 'ଉତ୍କଳ ଲକ୍ଷ୍ମୀ' କାବ୍ୟ, ଯହିଁରେ ଉତ୍କଳର ନୈସର୍ଗିକ ବର୍ଣ୍ଣନା ସହିତ ପ୍ରତିଭାଧରମାନଙ୍କ ଆଲେଖ୍ୟର ଅପୂର୍ବ ସମନ୍ୱୟ ଘଟିଥିଲା ।

ମାତ୍ର ଦଶୋଟି ବର୍ଷରେ ଦେଶପ୍ରେମ ସମ୍ବଳିତ ସାରସ୍ୱତ ରଚନାବଳୀର ଉଚ୍ଛ୍ୱସିତ ପରିପ୍ରକାଶ ମଧ୍ୟରେ ବିଖଣ୍ଡିତ ଓଡ଼ିଆ ଜାତିର ମିଳନ ଆକାଙ୍‌କ୍ଷା ଯେମିତି ଆଉ ଅବଦମିତ ଅବସ୍ଥାରେ ନଥିଲା । ତେଣୁ ୧୮୯୫ରେ ସମ୍ବଲପୁର ଜିଲ୍ଲାରେ ଓଡ଼ିଆ ଭାଷାର ଉଚ୍ଛେଦ ପରେ ପ୍ରତିବାଦର ସ୍ୱର ଅତ୍ୟନ୍ତ ତୀବ୍ର ହୋଇ ଉଠିଥିଲା । ସେହି ସ୍ୱରରେ ଦେଶ ମିଶ୍ରଣର ଦୁର୍ବାର କାମନାଟି ରୂପ

ପାଇଥିଲା ୧୮୯୭ ସାଲରେ ଲଣ୍ଡନରେ, ଯେଉଁଠାରେ ଓଡ଼ିଆ ଜାତୀୟତାର ଉଦାତ୍ତ ବକ୍ତବ୍ୟ ସବୁ ଲଣ୍ଡନର ପତ୍ର ପତ୍ରିକାରେ ଉର୍ଜସ୍ୱଳ ରୂପେ କେବଳ ପ୍ରକାଶିତ ହୋଇ ନ ଥିଲା, ମଧୁସୂଦନ ଭାରତ ସଚିବ ଲର୍ଡ଼ ହାମିଲ୍‌ଟନ୍‌ଙ୍କ ପାଖେ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଦାବି ସହିତ ତୀବ୍ରଭାବରେ, ସମ୍ବଲପୁରରେ ଓଡ଼ିଆ ଭାଷା ଉଚ୍ଛେଦ ବିରୋଧରେ ମେମୋରାଣ୍ଡମ୍ ପ୍ରଦାନ କରିଥିଲେ । ୧୯୦୦ ସାଲରେ, ମଧୁସୂଦନ ସିମଲାଠାରେ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସମକ୍ଷରେ ଆବେଗଭରା ବକ୍ତବ୍ୟ ପ୍ରକାଶ କରି ତାଙ୍କର ହୃଦୟ ଜୟ କରିପାରିଥିଲେ ।

ଫକୀରମୋହନ ସର୍ବପ୍ରଥମେ ଭାରତୀୟ ସାହିତ୍ୟରେ ଉପସ୍ଥାପନ କରିଥିଲେ ୧୯୦୨ ସାଲରେ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ରଚନା ମାଧ୍ୟମରେ, ଗ୍ରାମ୍ୟ ମହାଜନର ଚକ୍ରାନ୍ତ ଓ ଶୋଷଣର ନଗ୍ନ ରୂପ । ରାଧାନାଥଙ୍କ ମହାଯାତ୍ରା (୧୮୯୬) ଯାହା ପଣ୍ଡିତ ନେହେରୁଙ୍କ 'ଭାରତ ଆବିଷ୍କାର' ଗ୍ରନ୍ଥ ପରି ଦୁର୍ଲ୍ଲଭ ଚେତନାର ଅଧିକାରୀ ଥିଲା, ସେହି ଚିନ୍ତାଧାରାରେ ଅନ୍ୱିତ ହୋଇ ମଧୁସୂଦନ ଉତ୍କଳ ସମ୍ମିଳନୀର ମଣ୍ଡପରେ ପ୍ରଥମେ ପ୍ରଣତି ବାଢ଼ିଥିଲେ ଭାରତ ମାତାର ଚରଣ ପ୍ରାନ୍ତରେ 'ସର୍ବେଷାଂ ନୋ ଜନନୀ ଭାରତ' ମାଧ୍ୟମରେ । ମଧୁସୂଦନ ଥିଲେ ଏ ଜାତିର ଯାତ୍ରାପଥରେ ଅଗ୍ର ସାରଥି, ଯାହାଙ୍କର ଅଧିନାୟକତ୍ୱରେ ସ୍ଥିତିଶୂନ୍ୟତାର ପର୍ଯ୍ୟାୟରୁ ଏ ଜାତି ପାଇପାରି ଥିଲା ଆତ୍ମ ପରିଚୟର ସ୍ୱୟଂସତ୍ତା ଓ ଛିଡ଼ାହେବାପାଇଁ ଭୂମିସତ୍ତା ।ଏଥିପାଇଁ ସେ ଯୁଗର ଅନ୍ୟତମ ବିନ୍ଧାଣୀ ଫକୀରମୋହନ, ମଧୁସୂଦନଙ୍କ ପ୍ରତି ଉଚ୍ଛ୍ୱସିତ ଶ୍ରଦ୍ଧାଞ୍ଜଳି ଜଣାଇ ଲେଖିଛନ୍ତି-

> ''ପତିତ ଉତ୍କଳ ଦେଶ ଉଦ୍ଧାର କାରଣ,
> ଅବତାର ରୂପେ ଜନ୍ମିଅଛ ନାରାୟଣ ।'

କୁହାଯାଏ, ଅବତାରମାନେ ଅବତୀର୍ଣ୍ଣ ହେଲାବେଳେ ତାଙ୍କର କାର୍ଯ୍ୟରେ ସହାୟତା କରିବାପାଇଁ ବହୁ ଯୁଗପୁରୁଷଙ୍କର ଆବିର୍ଭାବ ଘଟେ । ସେହି ସାର୍ଥକ ସହଯୋଗ ଲାଗି ବିଦ୍ୟମାନ ଥିଲେ ବହୁ କ୍ରାନ୍ତିପୁରୁଷ ରାଧାନାଥ ଆଉ ଫକୀରମୋହନଙ୍କଠାରୁ ଆରମ୍ଭ କରି ଗଂଗାଧର, ଚନ୍ଦ୍ରଶେଖର, କୃଷ୍ଣଚନ୍ଦ୍ର ଗଜପତି, ଶଶିଭୂଷଣ ପ୍ରମୁଖ ବହୁ ଜନନାୟକଗଣ । ହଁ, ସେହିମାନେ ହିଁ ଗୌରବୋଜ୍ୱଳ ଉତ୍କଳ ଭୂମିର ଯୋଗ୍ୟ ଦାୟାଦ ,ଯେଉଁମାନେ ବିଖଣ୍ଡିତ ୟୁହୁଦୀ, ଜର୍ମାନୀ ଆଉ ଇତାଲୀୟ ଜାତି ଏକତ୍ରିତ ହେଲା ପରି ଛିନ୍ନ ବିଚ୍ଛିନ୍ନ ଓଡ଼ିଆ ଜାତିପାଇଁ ଆଣି ଦେଇଥିଲେ ନିଜସ୍ୱ ସ୍ୱତନ୍ତ୍ର ଭିତ୍ତିଭୂମି ଆଉ ଏକୀଭୂତ ପ୍ରାଣସତ୍ତା । ସେହିମାନେ ହିଁ ଏ ମାଟିର ବିସମାର୍କ, ଗାରିବାଲ୍‌ଡ଼ି, ମାଜିନୀ ଆଉ ମୋଜେସ୍ ଏ ପ୍ରାନ୍ତର ମୁକୁଟବିହୀନ ଅଧୀଶ୍ୱର ।



# ଐତିହ୍ୟରେ ମର୍ଯ୍ୟାଦାବନ୍ତ ୧୯୦୦ସାଲ

ଦୁଇହଜାର ମସିହାର ପ୍ରାକ୍‌କାଳରେ ପଶ୍ଚାତକୁ ଦୃଷ୍ଟି ନିକ୍ଷେପ କଲେ କେତୋଟି ସ୍ମରଣୀୟ ବର୍ଷ ଝଲସି ଉଠନ୍ତି । ଶୃଙ୍ଖଳିତ ଓ ସୁଦୃଢ଼ ସୈନ୍ୟବାହିନୀର ପରାକାଷ୍ଠା ମଧ୍ୟରେ ଓଡ଼ିଶା ଏକଦା ଏକ ସୁବିଶାଳ ସାମ୍ରାଜ୍ୟରେ ପରିଣତ ହୋଇ ଐତିହ୍ୟର ଶୀର୍ଷସ୍ଥାନରେ ପହଞ୍ଚିଥିଲା । ମାତ୍ର ଆତ୍ମଘାତୀ କାର୍ଯ୍ୟକଳାପ ମଧ୍ୟରେ ୧୫୬୮ ରେ ଏହା ସ୍ୱାଧୀନତା ହରାଇ ପରାଧୀନତାର ଶୃଙ୍ଖଳ ମଧ୍ୟରେ ଖଣ୍ଡବିଖଣ୍ଡିତ ହୋଇ ଯାଇଥିଲା । କିନ୍ତୁ ଦୀର୍ଘ ୩୦୦ ବର୍ଷର ସୁଷୁପ୍ତି ପରେ ୧୯୦୦ ମସିହାରେ ଏହା ପୁ'ଣି କଡ଼ ଲେଉଟାଇଲା ।

ଓଡ଼ିଶାର ଋଦ୍ଧିମନ୍ତ ବାଣିଜ୍ୟ ପରମ୍ପରାର ଅବସାନ ପରେ ଓଡ଼ିଶା ସାରା ଭାରତରୁ ଯାତାୟାତ ଓ ଗମନାଗମନ ଦୃଷ୍ଟିରୁ ବିଚ୍ଛିନ୍ନ ହୋଇ ଯାଇଥିଲା । ଏପରିକି ବ୍ରିଟିଶ ସାମ୍ରାଜ୍ୟରେ ବଂଗ ପ୍ରାଦେଶିକ ଶାସନର ଅନ୍ତର୍ଭୁକ୍ତ ହୋଇ ମଧ୍ୟ ଓଡ଼ିଶାରୁ କଲିକତା ଯିବା ସହଜ ସାଧ୍ୟ ନଥିଲା । ସ୍ଥଳପଥରେ ବାଲେଶ୍ୱରର ନରଣଗଡ଼ ପରେ ଦସ୍ୟୁଙ୍କ ଦୌରାତ୍ମ୍ୟ ଅସମ୍ଭବ ଧରଣର ଥିଲା । ତେଣୁ ଫକୀରମୋହନଙ୍କ ଉଦ୍ଧୃତି ଅନୁସାରେ- ''ହଳଦୀ ମଖାମଖି, ନରଣଗଡ଼ ପାରିହେଲେ କୁଟୁମ୍ବ ଦେଖାଦେଖି ।''

ପାରାଦ୍ୱୀପ ନିକଟସ୍ଥ ବତୀଘରକୁ ମାସରେ ପ୍ରାୟ ଥରେ କିମ୍ବା ଦୁଇଥର ଆସୁଥିବା ଜାହଜଦ୍ୱାରା କଟକ ସହିତ କଲିକତାର ପ୍ରାସାଶନିକ ସଂପର୍କ ସ୍ଥାପିତ ହୋଇଥିଲା । ପ୍ରାୟ ୧୮୬୮ ସାଲରେ ଚାନ୍ଦବାଲିରୁ କଲିକତା ସହିତ ସଂପର୍କ ସ୍ଥାପିତ ହେଲା । ନଅଙ୍କ ଦୁର୍ଭିକ୍ଷ ପୂର୍ବରୁ ୧୮୬୨ ବେଳକୁ ଯୋବ୍ରାଠାରେ ଓ ନରାଜଠାରେ ଆନିକଟ ନିର୍ମାଣ ପରେ ଜଳସେଚନପାଇଁ କେନାଲ୍ ନିର୍ମାଣ ହେବା ପରେ କେନାଲ୍ ଆଉ ନଦୀପଥ ମାଧ୍ୟମରେ ଲଞ୍ଚଦ୍ୱାରା ଯୋବ୍ରାଠାରୁ ଚାନ୍ଦବାଲି

ଯିବା ସମ୍ଭବ ହୋଇଥିଲା । ୧୮୭୮ ବେଳକୁ ବ୍ୟାବସାୟିକ ଲଞ୍ଚ ଚଳାଚଳ ଆରମ୍ଭ ହେଲା । ଇଷ୍ଟକୋଷ୍ଟ କେନାଲ୍ ଓଡ଼ିଶା ଉପକୂଳ ଦେଇ ଖୋଲାଯିବା ପରେ ୧୮୮୪ ବେଳକୁ ଯୋବ୍ରାଠାରୁ କଲିକତା ପର୍ଯ୍ୟନ୍ତ କେନାଲ ଜରିଆରେ ଲଞ୍ଚ ଚଳାଚଳ ସମ୍ଭବ ହେଲା । ଏହି ଦୃଷ୍ଟିରୁ ଓଡ଼ିଶା ଉପକୂଳରେ ରେଳଲାଇନ୍ ବିଛାଇବାପାଇଁ ସରକାରଙ୍କର କୌଣସି ଯୋଜନା ନଥିଲା । କାରଣ ନଦୀବହୁଳ ଅଞ୍ଚଳରେ ରେଳଲାଇନ୍ ନିର୍ମାଣ ବ୍ୟୟବହୁଳ ଥିଲା । ୧୮୮୬ ବେଳକୁ ଇଷ୍ଟକୋଷ୍ଟ ଦ୍ୱାରା କଟକକୁ କଲିକତା ସହିତ କେନାଲ ପଥରେ ସଂଯୁକ୍ତ କରିବାର ଯୋଜନା ପ୍ରାୟ ସମାପ୍ତ ହୋଇ ଆସୁଥିଲା ।

ମାତ୍ର ୧୮୮୮ରୁ ମଧୁସୂଦନଙ୍କ ପକ୍ଷରୁ ଉତ୍କଳ ସଭା ମାଧ୍ୟମରେ କ୍ରମାଗତ ଦାବି ଉପସ୍ଥାପନ ପରେ ୧୮୯୪ ସାଲରେ ରେଳପଥ ନିର୍ମାଣର ଯୋଜନା ଆରମ୍ଭ ହେଲା । ୧୮୯୭ ବେଳକୁ ଧାନମଣ୍ଡଳ ଷ୍ଟେସନ ଓ ପଶ୍ଚିମବଙ୍ଗର ରୂପନାରାୟଣ ନଦୀ କୂଳରେ ଥିବା କୋଲାଘାଟ ପର୍ଯ୍ୟନ୍ତ ରେଳ ଚଳାଚଳ ଆରମ୍ଭ ହେଲା ।  । ୧୮୯୮ରୁ ରେଳ ନିର୍ମାଣ କାର୍ଯ୍ୟ ଅଧିକ ତ୍ୱରାନ୍ୱିତ ହେଲା । ସେହିବର୍ଷ ଫେବ୍ରୁଆରି ମାସରେ ମହାନଦୀ ସେତୁ ନିର୍ମାଣ ଲାଗି ଭିତ୍ତିପ୍ରସ୍ତର ସ୍ଥାପିତ ହେଲା । ଡିସେମ୍ବର ସୁଦ୍ଧା ବିରୂପା, କୁଆଖାଇ, କାଠଯୋଡ଼ି ନଦୀ ଉପରେ ପୋଲପାଇଁ ଭିତ୍ତିପ୍ରସ୍ତର ସ୍ଥାପିତ ହେଲା । ଏଣେ ପ୍ରାୟ ଏପ୍ରିଲ୍ ୧୮୯୯ ବେଳକୁ ପୋଲ ନିର୍ମାଣକୁ ବାଦଦେଇ ଖୋର୍ଦ୍ଧା ପର୍ଯ୍ୟନ୍ତ ରେଳଲାଇନ୍ ବିଛା ସରିଥିଲା । ଯୁଦ୍ଧକାଳୀନ ଭିତ୍ତିରେ ସେତୁ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଥିଲା । ମାର୍ଚ୍ଚ ୧୯୦୦ ସାଲ ବେଳକୁ ମହାନଦୀ ସେତୁ (୨୯ସ୍ତମ୍ଭ), କାଠଯୋଡ଼ି ସେତୁ (୧୬ ସ୍ତମ୍ଭ) ଓ କୁଆଖାଇ (୧୮ସ୍ତମ୍ଭ) ସେତୁ ନିର୍ମାଣ ସରିଥିଲା । ରୂପ ନାରାୟଣ ନଦୀ ଉପରେ ପୋଲ ନିର୍ମାଣ ହେବା ପରେ ପ୍ରଥମେ ରେଳଗାଡ଼ି ହାଓଡ଼ାରୁ ୧୯୦୦ ମଇମାସ ୫ ତାରିଖରେ ବାହାରି ପୁରୀରେ ପ୍ରାୟ ୧୮ ଘଣ୍ଟା ମଧ୍ୟରେ ପହଞ୍ଚିଥିଲା । ସେ ବର୍ଷର ରଥଯାତ୍ରାପାଇଁ ପ୍ରଥମ ଥର ଯାତ୍ରୀମାନେ ରେଳପଥରେ ଅତ୍ୟନ୍ତ ଉତ୍ସାହ ସହକାରେ ଆସି ପୁରୀରେ ପହଞ୍ଚିଥିଲେ ।

ଦକ୍ଷିଣରେ ଏଣେ ୧୮୯୪ ସାଲରେ ରାଜମହେନ୍ଦ୍ରୀରୁ ରେଳପଥ ଆରମ୍ଭ ହୋଇ ଖୋର୍ଦ୍ଧାରୋଡ଼କୁ ୧୮୯୭ ସାଲରେ ସଂଯୁକ୍ତ କରି ଦିଆଯାଇଥିଲା ଓ ରେଳ ଚଳାଚଳ ଆରମ୍ଭ ହୋଇଥିଲା । ମାତ୍ର ଗୋଦାବରୀର ପ୍ରଖର ସ୍ରୋତ, ସେତୁ ନିର୍ମାଣରେ ବାଧାପ୍ରଦାନ କରିଥିଲା । ଏଣେ ମହାନଦୀ ସେତୁ ମାତ୍ର ୨ ବର୍ଷରେ ନିର୍ମାଣ ହୋଇଥିଲେ ମଧ୍ୟ , ଗୋଦାବରୀ ସେତୁ ନିର୍ମିତ ହେବାପାଇଁ ପ୍ରାୟ ୧୧ ବର୍ଷରୁ ଅଧିକକାଳ ଲାଗିଥିଲା । ଅବଶେଷରେ ଏହାର ନିର୍ମାଣ ୧୯୦୦ ସାଲ ଶେଷବେଳକୁ ସଂପୂର୍ଣ୍ଣ ହୋଇଥିଲା । ଆଉ ସେହିବର୍ଷ ଡିସେମ୍ବର ୧୪ ତାରିଖରେ ଭାରତର ବଡ଼ଲାଟ୍ ଲର୍ଡ଼ କର୍ଜନ ଏହାକୁ ଉଦ୍‌ଘାଟନ କରିଥିଲେ । ଏଥିପାଇଁ ସେ ମାନ୍ଦ୍ରାଜରୁ ଏକ ଟ୍ରେନ୍‌ରେ ଆସିଥିଲେ । ଏହି ସେତୁ ଉଦ୍‌ଘାଟନ ହେବା ପରେ ଓଡ଼ିଶା ସମଗ୍ର ଭାରତ ସହିତ ସଂପର୍କିତ ହୋଇଗଲା । ମାନ୍ଦ୍ରାଜ ଓ କଲିକତାକୁ ସଂଯୁକ୍ତ କରୁଥିବା ରେଳପଥ ଓଡ଼ିଶାର ଉପକୂଳ ଦେଇ ଯାତାୟାତ କଲା । ଏତେକାଳ ବିଚ୍ଛିନ୍ନ ହୋଇ ରହିଥିବା ଓଡ଼ିଶା ଶେଷରେ ଅନ୍ୟ ରାଜ୍ୟମାନଙ୍କ ସହିତ ସଂଯୁକ୍ତ ହେଲା ।

୧୮୯୭ ସାଲରେ ଯେତେବେଳେ ମଧୁସୂଦନ ଇଂଲଣ୍ଡକୁ ଓଡ଼ିଶାର ଭାଗ୍ୟ ନିର୍ଦ୍ଧାରଣର ସୂତ୍ର ଖୋଜିବାକୁ ଯାଇଥିଲେ, ସେତେବେଳେ ବହୁ ଶୁଭାକାଙ୍‌କ୍ଷୀ ବନ୍ଧୁଙ୍କଠାରୁ ପରାମର୍ଶ ମିଳିଲା ଯେ ଭାରତରେ ନିଯୁକ୍ତ ହୋଇଥିବା ନୂତନ ବଡ଼ଲାଟଙ୍କ ହାତରେ ଏହି ସମସ୍ୟାର ସମାଧାନର ସୂତ୍ର ରହିଛି । ୧୮୯୯ ସାଲରେ ବଡ଼ଲାଟ ଭାବେ ଯୋଗଦେଲେ, ସଂସ୍କୃତି, ପ୍ରତ୍ନତତ୍ତ୍ୱ ଆଉ ସ୍ଥାପତ୍ୟରେ ଅଭିରୁଚି ରଖିଥିବା ଲର୍ଡ଼ କର୍ଜନ । ମଧୁସୂଦନ ବଡ଼ଲାଟଙ୍କ ପାଖକୁ କ୍ରମାଗତ ଭାବେ ଆବେଦନ ପତ୍ର ପ୍ରେରଣ କରିବାକୁ ଲାଗିଲେ । ଆବେଦନ ପତ୍ରର ଭାଷା ଅତ୍ୟନ୍ତ ମାର୍ମିକ ଆଉ ପ୍ରାଣସ୍ପର୍ଶୀ ଥିଲା ।

ମଧୁସୂଦନ କର୍ଜନଙ୍କୁ ସିମଲାଠାରେ ୧୯୦୦ ସାଲର ଅକ୍ଟୋବର ୨ୟ ସପ୍ତାହରେ ଭେଟି ଦାବୀ ଉପସ୍ଥାପନା ପରେ ପୁରୀ ଓ ଭୁବନେଶ୍ୱରର ମନ୍ଦିରମାଳିନୀ ନଗରୀ ପରିଦର୍ଶନ କରିବାକୁ ଅନୁରୋଧ କଲେ । ନୂତନ ରେଳପଥ ସଂଯୁକ୍ତି ସୁଯୋଗ ନେଇ ୧୬.୧୨.୧୯୦୦ରେ କର୍ଜନ ପୁରୀ ଓ ଭୁବନେଶ୍ୱର ନଗରୀ ପରିଦର୍ଶନ ପରେ ଓଡ଼ିଶାର ଭାଗ୍ୟ ଉନ୍ମୋଚିତ ହେଲା ।

ମଧୁସୂଦନଙ୍କ ସ୍ୱଦେଶୀ ଶିଳ୍ପାୟନର କାର୍ଯ୍ୟକ୍ରମ ୧୯୦୦ ସାଲବେଳକୁ ପୂର୍ଣ୍ଣାଙ୍ଗତା ଲାଭ କରିଥିଲା । ଦଳିତମାନଙ୍କର ଆର୍ଥିକ ଅଭ୍ୟୁତ୍ଥାନ ଜୋତା ତିଆରି ମାଧ୍ୟମରେ ରୂପରେଖ ନେଇ ପାରିଥିଲା ।

ଏ ସମସ୍ତ ଦୃଷ୍ଟିରୁ ୧୯୦୦ ସାଲ ଥିଲା ଓଡ଼ିଶାର ଅଭ୍ୟୁଦୟ ପାଇଁ ଏକ ଗରିମାଦୀପ୍ତ ସମ୍ବତ୍ସର ।



# ୧୯୦୩ଃ ଏକ କ୍ରାନ୍ତିକାରୀ ସମ୍ବତ୍ସର

ବିଂଶ ଶତାବ୍ଦୀର ପୃଷ୍ଠଭୂମିରେ ୧୯୦୩ ସାଲଟି ଥିଲା ଏକ ଅବିସ୍ମରଣୀୟ କ୍ରାନ୍ତିକାରୀ ସମ୍ବତ୍ସର । ଉତ୍କଳର ଇତିହାସ ପରିପ୍ରେକ୍ଷୀରେ ଏହା ଥିଲା ଅଭ୍ୟୁଥାନର ମହିମାଦୀପ୍ତ ବର୍ଷ, ଯହିଁରୁ ସ୍ରୋତସ୍ୱିନୀ ଭଳି ଉତ୍ସରିତ ଘଟଣା ପ୍ରବାହ, ପରବର୍ତ୍ତୀ କାଳକୁ ପ୍ରଭାବିତ କରିଥିଲା । ୧୯୩୬ ରେ ନୂତନ ଓଡ଼ିଶା ପ୍ରଦେଶର ଗଠନ ଥିଲା ତାହାର ଏକ ଫଳଶ୍ରୁତି ।

୧୯୦୨ର ଶେଷ ପ୍ରାନ୍ତରେ, ଡିସେମ୍ବର ୨୨ରୁ ୨୪ ତାରିଖ ମଧ୍ୟରେ, ଅହମ୍ମଦାବାଦଠାରେ ଭାରତୀୟ ଜାତୀୟ କଂଗ୍ରେସର ସାମ୍ବତ୍ସରିକ ଅଧିବେଶନରେ ସଭାପତିତ୍ୱ କରିବା ପରେ, ସୁରେନ୍ଦ୍ର ନାଥ ବାନାର୍ଜୀ ସେହି ମାସର ଶେଷ ଭାଗରେ କଲିକତାର ଗ୍ରାଣ୍ଡ ହୋଟେଲ୍‌ରେ ଅବସ୍ଥାନ କରୁଥିବା ମଧୁସୂଦନ ଦାସଙ୍କୁ ଭେଟିଥିଲେ । ୧୯୦୩ ସାଲର ଶେଷ ଦୁଇଦିନ, ଡିସେମ୍ବର ୩୦ ଓ ୩୧ ତାରିଖରେ, ବଂଗ ପ୍ରାଦେଶିକ କନ୍‌ଫରେନ୍‌ସ (ଯାହା କଂଗ୍ରେସ ସହିତ ସଂଯୁକ୍ତ ଥିଲା)ର ଗୋଟିଏ ଅଧିବେଶନ କଟକରେ କରାଇବା ପାଇଁ ସେ ମଧୁବାବୁଙ୍କୁ କହିଥିଲେ ।ମାତ୍ର ଏହି ଅଧିବେଶନରେ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣଲାଗି ଏକ ପ୍ରସ୍ତାବ ଗୃହୀତ ହେବା ଜରୁରୀ ବୋଲି ପ୍ରତ୍ୟୁତ୍ତରରେ ମଧୁବାବୁ ନିବେଦନ କରିଥିଲେ । ।ସୁରେନ୍ଦ୍ର ନାଥ ଏଥିରେ ଉତ୍‌କ୍ଷିପ୍ତ ହୋଇ ଉତ୍ତର ଦେଇଥିଲେ- "ଏହା ଅସମ୍ଭବ", ତାଙ୍କର ଅନୁଚ୍ଚାରିତ ଉତ୍ତର ବୋଧହୁଏ ଥିଲା-"ବଂଗଭୂମିର ଅବିଚ୍ଛେଦ୍ୟ ଅଂଗ ଓଡ଼ିଶା ଡ଼ିଭିଜନର କଟକଠାରେ, ଏହିଭଳି ପ୍ରସ୍ତାବ ଗ୍ରହଣର ଆସ୍ପର୍ଦ୍ଧା ଅମାର୍ଜନୀୟ ଧୃଷ୍ଟତା ।" ଏହି ସ୍ୱର୍ଣକାତର ମୁହୂର୍ତ୍ତରେ ନବ ଓଡ଼ିଶାର ଯେପରି ଗର୍ଭାଧାନ ଘଟିଥିଲା । ସେହିକ୍ଷଣରେ କଲିକତାର ଗ୍ରାଣ୍ଡ ହୋଟେଲ୍ କକ୍ଷରେ ମଧୁସୂଦନ କୃତ ସଂକଳ୍ପ ହେଲେ ଯେ, ବଂଗ ପ୍ରାଦେଶିକ କନ୍‌ଫରେନ୍‌ସ ପରିବର୍ତ୍ତେ ସେହି ସମୟରେ ପ୍ରାକୃତିକ ଉତ୍କଳର ମହା ସମ୍ମେଳନ ବିପୁଳ ଉଦ୍ଦୀପନା ଓ ଉତ୍ସାହ ମଧ୍ୟରେ କଟକଠାରେ ଅନୁଷ୍ଠିତ ହେବ । (ପଣ୍ଡିତ ନୀଳକଣ୍ଠ ଓ ଶୈଳବାଳାଙ୍କ ବକ୍ତବ୍ୟରୁ ଗୃହୀତ) ।

ପ୍ରକୃତରେ ବ୍ରିଟିଶ ସାମ୍ରାଜ୍ୟର ବଂଗ ଉପନିବେଶ ମଧ୍ୟରେ, ଓଡ଼ିଶା ଥିଲା ମଧ୍ୟବର୍ତ୍ତୀ ଶାସକଙ୍କ କରାୟତ୍ତ ଓ ଶୋଷଣର ଗ୍ରାସରେ ଯନ୍ତ୍ରଣାଗ୍ରସ୍ତ ଅନ୍ୟଏକ ଅଧସ୍ତନ ଉପନିବେଶ ।

ମଧୁସୂଦନଙ୍କ ଭାଷାରେ ଓଡ଼ିଶା ଥିଲା ''କଲୋନି ଅଫ୍ କଲୋନିଜ୍'' । ଫକୀରମୋହନଙ୍କର ଜୀବନୀକାର ବୋଲଟନ୍‌ଙ୍କ ବକ୍ତବ୍ୟରେ ମୋଗଲ ବନ୍ଦୀ ଓଡ଼ିଶା ଥିଲା ବହିରାଗତ ବଂଗାଳୀମାନଙ୍କ ଦ୍ୱାରା ବନ୍ଧକପ୍ରାପ୍ତ ଏକ ବନ୍ଦୀଶାଳା । ତେଣୁ ସେହି ଯୁଗରେ ଓଡ଼ିଶାର ''ମୁକ୍ତି ସଂଗ୍ରାମ'', ଏହାର ନିଷ୍ପେଷଣ ବିରୁଦ୍ଧରେ ପ୍ରଧାବିତ ହେବାକୁ ବାଧ୍ୟ ହୋଇଥିଲା, ଯାହାର ଅଧିନାୟକ ଥିଲେ ମଧୁସୂଦନ ଦାସ । ୧୯୨୧ ସାଲ ପରର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା ଗଠନର ପ୍ରକ୍ରିୟା, ପଡୋଶୀ ପ୍ରଦେଶମାନଙ୍କ ନେତୃବର୍ଗଙ୍କ ଦ୍ୱାରା କେବଳ ପ୍ରତ୍ୟାଖ୍ୟାତ ହୋଇନଥିଲା, ସେମାନଙ୍କର ସୁପରିକଳ୍ପିତ ଚକ୍ରାନ୍ତରେ ବହୁବାର ବିଡ଼ମ୍ବିତ ଓ ପ୍ରବଞ୍ଚିତ ହୋଇଥିଲା ।

ସେହିପରି ସେ ସମୟରେ, ମଧ୍ୟ ପ୍ରଦେଶର ନାଗପୁର ସଚିବାଳୟରେ ଅଧିଷ୍ଠିତ ପଦସ୍ଥ ମରାଠୀ ଓ ହିନ୍ଦୀଭାଷୀ ମଧ୍ୟବର୍ତ୍ତୀ ଉପନିବେଶବାଦୀ ପ୍ରଭୁଗଣଙ୍କ ପ୍ରରୋଚନାରେ, ୧୮୯୬ସାଲରୁ ସମ୍ବଲପୁର ଜିଲ୍ଲାରେ ଓଡ଼ିଆ ଭାଷାକୁ କେବଳ ନିଷିଦ୍ଧ କରାଯାଇ ନଥିଲା, ୮୨ ଗୋଟି ଓଡ଼ିଆ ପ୍ରାଥମିକ ବିଦ୍ୟାଳୟକୁ ଉଚ୍ଛେଦ କରାଯାଇଥିଲା । ଏହାରି ବିରୋଧରେ ସ୍ୱଭାବ କବି ଗଂଗାଧର ମେହେର; ଧରଣୀଧର ମିଶ୍ର; ମଦନମୋହନ ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ଶ୍ରୀପତି ମିଶ୍ର, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଦାସ ଆଦିପଞ୍ଚସଖା : ପ୍ରାଶାସନିକ ଅଧିକାରୀ ବୈକୁଣ୍ଠନାଥ ପୂଜାରୀ ତଥା ବିଶିଷ୍ଟ ନେତୃପୁରୁଷ ଚନ୍ଦ୍ରଶେଖର ବେହେରାଙ୍କ ନେତୃତ୍ୱରେ ଏକ ସ୍ୱତଃସ୍ଫୂର୍ତ୍ତ ଜନ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ନିଷ୍ପେଷଣର ଯନ୍ତ୍ରଣାରେ ଜର୍ଜରିତ ଗଂଗାଧର ମେହେର ଏହି ଭାଷା ସଂଗ୍ରାମରେ ଯୋଗଦାନ କରି ଯେଉଁ ଆବହନୀ ସଂଗୀତଟି ରଚନା କରିଥିଲେ, ତାହାର ପ୍ରଥମ ପଙ୍‌କ୍ତିଟି ଥିଲା- ''ନିଜ ଘରେ ବସି ନିର୍ବାସନ ଦୁଃଖ ଏ ଆମ୍ଭ କପାଳ ଲିଖନ'' । ପରବର୍ତ୍ତୀ କାଳରେ ଉତ୍କଳ ସଭାର ସଭାପତି ମଧୁସୂଦନ ଦାସଙ୍କର ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସହିତ ସଂପର୍କ ସ୍ଥାପନ ପରେ ୧୮.୬.୧୯୦୨ରେ ପ୍ରଚାରିତ ଆଦେଶ କ୍ରମେ ୧.୧.୧୯୦୩ରେ ସମ୍ବଲପୁରରେ ପୁଣି ଓଡ଼ିଆ ଭାଷା ପୁନଃ ସଂସ୍ଥାପିତ ହେଲା । ଏହାକୁ ଆଧାର କରି ୧୯୦୩ ସାଲଟି ଓଡ଼ିଆ ଭାଷା ସଂସ୍ଥାପନ ଶତାବ୍ଦୀ ରୂପେ ପାଳିତ ହେଉଛି ।

୧୯୦୩ ସାଲର ପ୍ରାରମ୍ଭରେ ସପ୍ତମ ଏଡ଼ୱାର୍ଡ଼ଙ୍କର ମୁକୁଟ ଉତ୍ସବ ଉପଲକ୍ଷେ କଟକରେ ସମ୍ମିଳିତ ହୋଇଥିବା ରାଜନ୍ୟମଣ୍ଡଳୀ , ଜମିଦାର ବର୍ଗ, ବୁଦ୍ଧିଜୀବୀ ଗୋଷ୍ଠୀ, ଶିକ୍ଷିତ ସଂପ୍ରଦାୟ ତଥା ଜନସାଧାରଣଙ୍କୁ ଆହ୍ୱାନକରି ବିସ୍ମୃତ ଓଡ଼ିଆ ଜାତିକୁ ଜାଗରିତ କରିବାପାଇଁ ମଧୁସୂଦନ ଦାସ ୭.୧.୧୯୦୩ ନିଜସ୍ୱ କୋଠିରେ ବିପୁଳ ଉଦ୍ଦୀପନା ମଧ୍ୟରେ ଏକ ଜାତୀୟ ସମାରୋହର ଆୟୋଜନ କରିଥିଲେ ।

ସମଗ୍ର ଓଡ଼ିଶାର ଉପକୂଳରେ ରେଳ ଚଳାଚଳ ୧୯୦୦ ସାଲରୁ ଆରମ୍ଭ ହେବା ପରେ ମାନ୍ଦ୍ରାଜ ପ୍ରଦେଶ ଅଧୀନରେ ଥିବା ଦକ୍ଷିଣ ଓଡ଼ିଶା ସହିତ, ଓଡ଼ିଶା ମୂଳ ଭୂଖଣ୍ଡର ସଂପର୍କ କ୍ରମଶଃ ନିବିଡ଼ତର ହେଲା । ମଧୁସୂଦନଙ୍କ ଆହ୍ୱାନରେ ଖଲିକୋଟ ନରେଶ ହରିହର ମର୍ଦ୍ଦରାଜ ୧୯୦୨ ସାଲରେ ରମ୍ଭା ସମ୍ମେଳନ ଓ ୧୯୦୩ ସାଲର ଏପ୍ରିଲ୍ ୧୧ ଓ ୧୨ ତାରିଖରେ ବ୍ରହ୍ମପୁରଠାରେ ଗଂଜାମ ଜାତୀୟ ସମ୍ମେଳନର ସଂଯୋଜନା କରିଥିଲେ । ଗଂଜାମର ପ୍ରଥମ ଗ୍ରାଜୁଏଟ୍ ଶ୍ୟାମସୁନ୍ଦର

ରାଜଗୁରୁଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଅଧିବେଶନ ଜନଜାଗରଣର ପରିପ୍ରେକ୍ଷୀରେ ଅଭୂତପୂର୍ବ ଥିଲା । ମଧୁସୂଦନ ଦାସ ବ୍ରହ୍ମପୁର ରେଳଷ୍ଟେସନଠାରେ ପହଞ୍ଚିବା ପରେ ଉଦ୍‌ବେଳିତ ଜନତା ବିପୁଳ ଉତ୍ସାହ ମଧ୍ୟରେ ତାହାଙ୍କୁ ଖାଲି ଗାଡ଼ିରେ ବସେଇ ବାହିନେବାପାଇଁ ଉତ୍ସୁକ ହୋଇ ଉଠିଥିଲେ ।ଏହି ଅଧିବେଶନରେ ଫକୀରମୋହନ ସେନାପତି, ବିଶ୍ୱନାଥ କର, ଗୋପାଳ ଚନ୍ଦ୍ର ପ୍ରହରାଜ, ନନ୍ଦ କିଶୋର ବଳ, ପୁରୀରୁ ଗୋପବନ୍ଧୁ ଦାସ ତଥା ପ୍ରାକୃତିକ ଓଡ଼ିଶାର ପ୍ରତିନିଧିମାନେ ଯୋଗଦାନ କରିଥିବାରୁ ଏହା ଏଣିକି ଉତ୍କଳ ସମ୍ମିଳନୀ ବୋଲାଇବ ''ବୋଲି ସମ୍ମତି ପ୍ରକାଶ ପାଇଥିଲା । ସେହି ବେଳର ନନ୍ଦ କିଶୋର ବଳଙ୍କ ଦ୍ୱାରା ସ୍ୱତଃସ୍ଫୂର୍ତ୍ତ ଭାବେ ରଚିତ ଅନବଦ୍ୟ ଗୀତିକା '' ଉଠଗୋ ଦୁଃଖିନୀ ଉତ୍କଳ ଜନନୀ''କୁ କଟକର ପ୍ରଖ୍ୟାତ ଗାୟକ ଉସ୍ତାଦ ଖାନୁ ମିଆଁଙ୍କର ମାଦକତା ଭରା ଉଦ୍‌ବେଳିତ କଣ୍ଠରେ ଭାବବିହ୍ୱଳିତ ଗାୟନ, ଅଧିବେଶନକୁ ଅପୂର୍ବ ଉନ୍ମାଦନାରେ ଭରିଦେଇଥିଲା ।

ସେହି ବର୍ଷର ମାର୍ଚ୍ଚ ମାସରେ ମଧୁସୂଦନ ଦାସ, କଟକର ଆଲୋଚନା ସଭା ପକ୍ଷରୁ ମୟୂରଭଞ୍ଜ ନରେଶ ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପ୍ରଦାନ ଅବସରରେ ଆଲୋଚନା ସଭାର ଅଧ୍ୟକ୍ଷ ଭକ୍ତକବି ମଧୁସୂଦନ ରାଓଙ୍କୁ ଭେଟି ଏହି ଆଲୋଚନା ସଭାର କ୍ଷୁଦ୍ର ଅନୁଷ୍ଠାନକୁ ''ବଂଗ ସାହିତ୍ୟ ପରିଷଦ'' ଭଳି ଏକ ବୃହତ ପ୍ରତିଷ୍ଠାନରେ ପରିଣତ କରିବା ପାଇଁ ଆବେଦନ ଜଣାଇଥିଲେ, ଯେପରି ଏହା ସମଗ୍ର ଓଡ଼ିଶାର ପରିବ୍ୟାପ୍ତ ପରିସରରେ ଉତ୍କଳ ସମ୍ମିଳନୀର ପରିପୂରକ ସାହିତ୍ୟ ଓ ସଂସ୍କୃତିର ପ୍ରତିଷ୍ଠାନ ରୂପେ କାର୍ଯ୍ୟ କରିବ । ଏହି ଅନୁରୋଧ ରକ୍ଷାକରି ୭.୫.୧୯୦୩ର ଏକ ଐତିହାସିକ ଅଧିବେଶନରେ ମଧୁରାଓ ଆଲୋଚନା ସଭାକୁ, ବିପୁଳ ଶ୍ରଦ୍ଧା, ପ୍ରତିଶ୍ରୁତି ଓ ସମ୍ଭାବନା ବହନ କରୁଥିବା ''ଉତ୍କଳ ସାହିତ୍ୟ ସମାଜ''ରେ ପରିଣତ କରିଥିଲେ । ଅଧ୍ୟକ୍ଷ ମଧୁରାଓଙ୍କ ଛଡ଼ା ଉତ୍କଳ ସାହିତ୍ୟ ସମାଜର ସହକାରୀ ସଭାପତି ରୂପେ ଫକୀରମୋହନ ସେନାପତି ଓ ରାମଶଙ୍କର ରାୟ ଏବଂ ସଂପାଦକ ରୂପେ ବିଶ୍ୱନାଥ କର ବରିତ ହୋଇଥିଲେ । ଏହାପରେ ଶହେବର୍ଷର ଗୌରବଦୀପ୍ତ ଅଧ୍ୟାୟର ପୂର୍ତ୍ତି ପରେ ୨୦୦୩ ସାଲରେ ଉତ୍କଳ ସାହିତ୍ୟ ସମାଜର ଗରିମାମୟ ଶତାବ୍ଦୀ ସମାରୋହ ପାଳିତ ହୋଇଛି ।

ସେହି ଐତିହାସିକ ୧୯୦୩ ସାଲର ଡିସେମ୍ବର ମାସର ସ୍ମରଣୀୟ ବେଳାରେ ଦିନେ ସାନ୍ଧ୍ୟ ଭ୍ରମଣ ଅବସରରେ ମଧୁସୂଦନ ଦାସ କାଠଯୋଡ଼ି ନଦୀର ଧାରରେ , ଆପଣାର ପ୍ରାକ୍ ଯୌବନର ଅନ୍ତରଂଗ ସୁହୃଦ କବିବର ରାଧାନାଥଙ୍କୁ ଭେଟି ଉତ୍କଳ ସମ୍ମିଳନୀ ମଞ୍ଚରେ ଦେଶମାତୃକା ରୂପୀ ଭାରତ ଜନନୀଙ୍କର ଆବାହନୀ ସଂଗୀତ ସଂସ୍କୃତରେ ରଚନା କରିବାକୁ ସଶ୍ରଦ୍ଧ ଆବେଦନ ଜଣାଇଥିଲେ । ଏହି ସାଗ୍ରହ ନିବେଦନକୁ ମର୍ଯ୍ୟାଦା ପ୍ରଦାନ କରି କାଳଜୟୀ ରଚନା ''ସର୍ବେଷାଂ ନୋ ଜନନୀ ଭାରତଧରଣୀ କଳ୍ପଲତେୟଂ'' କବିତାଟି କବିବରଙ୍କ ଦ୍ୱାରା ରଚିତ ହୋଇଥିଲା । ଦେଶ ମାତୃକାର ଏହି ଆବାହନ ବେଳରେ ମଧୁ ରାଓଙ୍କର ଅନନ୍ୟ ଗୀତି କବିତାର ମୂର୍ଚ୍ଛନା ସଂବଳିତ ''ଉତ୍କଳ ଗାଥା ମଧ୍ୟ ପ୍ରକାଶିତ ହୋଇ ୨୦.୧୨.୧୯୦୩ରେ ମଧୁସୂଦନ ଦାସଙ୍କୁ ଅର୍ପିତ ହୋଇଥିଲା । ଏହି ବିପୁଳ ପ୍ରସ୍ତୁତିର ଆଢୁଆଳରେ ଏକ କ୍ରାନ୍ତିକାରୀ ତଥା ଯୁଗାନ୍ତକାରୀ

ଘଟଣା ସମସ୍ତଙ୍କର ଅଗୋଚରରେ ଅନୁଷ୍ଠିତ ହୋଇଥିଲା । ତାହା ଥିଲା ସମଗ୍ର ଓଡ଼ିଆ ଜାତିର ଆଶା ଓ ଆକାଙ୍‌କ୍ଷାକୁ ବହନ କରୁଥିବା ଭାରତର ବଡ଼ଲାଟ ଲର୍ଡ଼ କର୍ଜନଙ୍କର ଆନୁକୂଲ୍ୟରେ ୩.୧୨.୧୯୦୩ରେ ପ୍ରଚାରିତ ହୋଇଥିବା ''ରିସ୍‌ଲେ ସାର୍କୁଲାର୍''ର ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରକାଶନ ଯହିଁରେ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ ଲାଗି ସ୍ୱୀକୃତି ପ୍ରଦାନ କରାଯାଇଥିଲା ।

ଆଉ ୧୯୦୩ ସାଲର ଡିସେମ୍ବର ମାସରେ ଶେଷ ଦୁଇଟି ୩୦ ଆଉ ୩୧ ତାରିଖ ଓଡ଼ିଆର ହୃଦପଟରେ ଚିରଭାସ୍ୱର ହୋଇ ରହିଆସିଛି । ତାହାଥିଲା କଟକର ଇଦ୍‌ଗା ପଡ଼ିଆରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ବହୁ ଆକାଙ୍‌କ୍ଷିତ ପ୍ରଥମ ଅଧିବେଶନ ଯାହା ବହୁ ପ୍ରାଜ୍ଞ ବ୍ୟକ୍ତିଙ୍କର ସମନ୍ୱୟରେ ଓଡ଼ିଶାର ସମସ୍ତ ପ୍ରାନ୍ତରୁ ଆଗତ ବ୍ୟକ୍ତିମାନଙ୍କର ଭାବବିନିମୟରେ ଏବଂ ମାର୍ଗ ଦର୍ଶନକାରୀ ଆଲୋଚନା ମାଧ୍ୟମରେ ସଂଚାଳିତ ହୋଇଥିଲା । ବିପୁଳ ଉତ୍ସାହ, ପରିପୂର୍ଣ୍ଣ ଗାମ୍ଭୀର୍ଯ୍ୟ, ଅପୂର୍ବ ନୈଷ୍ଠିକତା ମଧ୍ୟରେ ଏହି ସମ୍ମିଳନୀର ପରିକଳ୍ପନା ଅଚିନ୍ତନୀୟ ଥିଲା । ଅଦ୍‌ଭୁତ ଗୋଲାପୀ ରଂଗର ଚିତ୍ତାକର୍ଷକ ଶିରସ୍ତ୍ରାଣ ପରିହିତ ଉଦ୍ଦୀପିତ ଜନ ସମାଗମରେ, ସମ୍ମାନନୀୟ ଅତିଥିମାନଙ୍କୁ ସ୍ୱାଗତ ଜଣାଇବା ଅବସରରେ ଉସ୍ତାଦ ଖାନୁ ମିଆଁ ଆଉ ଗୋକୁଳ ବିହାରୀ ଶ୍ରୀଚନ୍ଦନଙ୍କର ଜଳଦ ଗମ୍ଭୀର କଣ୍ଠରେ ସଭାମଞ୍ଚକୁ ଉଲ୍ଲସିତ ଶିହରଣରେ ଭରିଦେଇ ଯେଉଁ ଉନ୍ମାଦନାର ଅନନ୍ୟ ଗୀତିମୂର୍ଚ୍ଛନା ତରଙ୍ଗାୟିତ ହୋଇଥିଲା ତାହାର ପଙ୍‌କ୍ତି ଥିଲା ଏହିପରି-

''ଏତେକାଳେ ସତେ ପରତେ ହେଉଛି ବିହି ଘଟାଇଲା ଆଣି<br>
ନିରାଶା କୁହୁରେ ମୃତ୍ୟୁ ସଂଜୀବନୀ ଆଶା ବୀଣାଜିଣା ବାଣୀ ।''

ଏହାହିଁ ଥିଲା ନବ ଓଡ଼ିଶାର ଜନ୍ମଦାତ୍ରୀ ଉତ୍କଳ ସମ୍ମିଳନୀର ମର୍ଯ୍ୟାଦାବନ୍ତ ପ୍ରଥମ ଅଧିବେଶନ । ଏହି ଅଧିବେଶନ ସମୂହରେ ଓଡ଼ିଆ ଭାଷାରେ ଗୃହୀତ ପ୍ରସ୍ତାବାବଳୀ କେବଳ ନବ ଓଡ଼ିଶା ସୃଷ୍ଟି ଲାଗି ଅଭିପ୍ରେତ ହୋଇ ନ ଥିଲା, ଏହାମଧ୍ୟ ଥିଲା ମହାତ୍ମାଗାନ୍ଧୀଙ୍କୁ ଗଭୀର ଭାବେ ଆଲୋଡ଼ିତ କରିଥିବା ଦେଶ ନିର୍ମାଣ ଲାଗି ଅନନ୍ୟ ପୁରୋଦୃଷ୍ଟିସମ୍ପନ୍ନ ଭୂମିଲଗ୍ନ ପରିକଳ୍ପନା ବା ''ବ୍ଲୁ ପ୍ରିଣ୍ଟ'' ଯାହା ଏ ଯୁଗରେ ମଧ୍ୟ ଅନତିକ୍ରମ୍ୟ ହୋଇ ରହିଛି ।

ସେ ଯୁଗରେ ତାହାର ଅନବଦ୍ୟ ପରିକଳ୍ପନା କରିଥିଲେ କ୍ରାନ୍ତି ପୁରୁଷ ମଧୁସୂଦନ ।

ତେଣୁ ୧୯୦୩ ସାଲ ପରର, ବିଂଶ ଶତାବ୍ଦୀର ପରବର୍ତ୍ତୀ ସମ୍ବତ୍ସରମାନଙ୍କର ଘଟଣା ପ୍ରବାହ ଥିଲା ମାତ୍ର, ଏହାର ଅନୁକ୍ରମିକ ବିସ୍ତାରିତ ପ୍ରସାରଣ ।

ଏହି ସମ୍ମିଳନୀ ଜାତିପ୍ରାଣ ସିନ୍ଧୁ କୋଟି ପ୍ରାଣ ବିନ୍ଦୁ ଧରେ<br>
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ ଡେଇଁପଡ଼ି ସିନ୍ଧୁ ନୀରେ ।

-ମଧୁସୂଦନ



# ମଧୁସୂଦନଙ୍କ ନିମନ୍ତ୍ରଣରେ କର୍ଜନଙ୍କ ଓଡ଼ିଶା ପରିଦର୍ଶନ

ସ୍ଥିତିଶୂନ୍ୟତାର ଘନଅନ୍ଧକାର ମଧ୍ୟରେ ଜନ୍ମଲାଭ କରିଥିଲା ଓଡ଼ିଶା ପ୍ରଦେଶ, ଅଫୁରନ୍ତ ସଂଗ୍ରାମ ଆଉ ଅବିରାମ ପ୍ରୟାସ ମଧ୍ୟରେ । ସେହି ଅବଦମିତ ପ୍ରଚେଷ୍ଟା ହେଉଛି ଓଡ଼ିଆ ଜାତିର ମହାନ ଗାଥା । ଆଜି ତାହା ମଧ୍ୟ ବିସ୍ମୃତିର ଗର୍ଭରେ ଲୀନ ହୋଇଯାଇଛି । ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ସୁବିଶାଳ ବଙ୍ଗପ୍ରଦେଶର ଏକ କୋଣରେ ଝୁଲି ରହିଥିଲା ଓଡ଼ିଶା ଡିଭିଜନ ଦୀନତାର ନିଷ୍ପେଷଣ ମଧ୍ୟରେ ଆଉ ବିଖଣ୍ଡିତ ଅନ୍ୟ ଓଡ଼ିଆଭାଷୀ ଅଞ୍ଚଳ ସବୁ ଲାଖି ରହିଥିଲେ ବଙ୍ଗ, ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ବିହାର ପ୍ରାନ୍ତରେ ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ।

ମଧୁସୂଦନ ଦାସ ୧୮୮୧ ସାଲରେ ଓଡ଼ିଶା ପ୍ରତ୍ୟାବର୍ତ୍ତନ ପରେ ୧୮୮୨ରେ ଉତ୍କଳସଭା (ଓଡ଼ିଶା ଏସୋସିଏସନ୍) ଗଠନ କରିଥିଲେ । ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣଲାଗି କଟକ ପରିଦର୍ଶନବେଳେ ବଙ୍ଗର ଲାଟ୍ ସାର୍ ରିଭର୍ସ ଥମ୍ପସନ୍‌ଙ୍କୁ ୧୮୮୫ ସାଲରେ, ସାର୍ ଷ୍ଟିଆର୍ଟ ବେଲିଙ୍କୁ ୧୮୮୮ ସାଲରେ ଏବଂ ଜନ୍ ଉଡ଼ବର୍ଣ୍ଣଙ୍କୁ ୧୮୯୮ ସାଲରେ ଉତ୍କଳ ସଭା ପକ୍ଷରୁ ଦାବିପତ୍ର ପ୍ରଦାନ କରାଯାଇଥିଲା । ମାତ୍ର ସେସବୁ ଯେପରି ବଙ୍ଗ ସେକ୍ରେଟେରୀଙ୍କର ଅଳିଆ ନଥିପତ୍ର ମଧ୍ୟରେ ହଜି ଯାଇଥିଲା । ଓଡ଼ିଶା ସଂପର୍କରେ ଭାରତର ସର୍ବୋଚ୍ଚ ଶାସନକର୍ତ୍ତା ବଡ଼ଲାଟ ଯେପରି ଅଜ୍ଞତାର ପରିଧି ମଧ୍ୟରେ ରହି ଯାଇଥିଲେ ।

ଓଡ଼ିଶା ମାଟିରେ ଭାରତର ବଡ଼ଲାଟଙ୍କର ପାଦ ପଡ଼ିନଥିଲା । ଆଉ ୧୮୭୨ ସାଲରେ ଭାରତର ବଡ଼ଲାଟ ଲର୍ଡ଼ ମେୟୋ ଆଣ୍ଡାମାନରୁ କଟକ ପରିଦର୍ଶନରେ ଆସିବାପାଇଁ ଯେଉଁ ଗସ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲେ, ତାହାରି ଅନୁସାରେ ସେହି ବର୍ଷର ଫେବ୍ରୁଆରି ଆଠ ତାରିଖରେ ଆଣ୍ଡାମାନ ଜେଲ ପରିଦର୍ଶନ ବେଳେ କଏଦୀ ଶେରଖାନ୍‌ଙ୍କର ଛୁରୀକାଘାତରେ ଲର୍ଡ଼ ମେୟୋ

ପ୍ରାଣତ୍ୟାଗ କରିଥିଲେ । ଆଉ ଭାରତ ସରକାରଙ୍କପାଇଁ ଓଡ଼ିଶା ଏବଂ ଓଡ଼ିଆଭାଷୀ ଅଞ୍ଚଳ ସବୁ ଯେପରି ଅନ୍ଧକାର ଗର୍ଭରେ ବିସ୍ମୃତ ହୋଇ ଯାଇଥିଲା । କେବଳ ମଧୁସୂଦନଙ୍କର କ୍ରମାଗତ ପ୍ରଚେଷ୍ଟା ଫଳରେ ୧୮୯୫ ସାଲରୁ ପୁରୀ ଓ କଲିକତା ମଧ୍ୟରେ ରେଳପଥର ସଂଯୋଗୀକରଣ ଆରମ୍ଭ ହୋଇଥିଲା । ଏହି ଚରମ ଅବହେଳାରୁ ଓଡ଼ିଶାକୁ ମୁକ୍ତ କରିବାପାଇଁ ୧୮୯୭ ସାଲରେ ମଧୁସୂଦନ ଲଣ୍ଡନଠାରେ ଭାରତ ସଚିବ ଲର୍ଡ଼ ହାମିଲ୍‌ଟନ୍‌ଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ତାଙ୍କର ନିର୍ଦ୍ଦେଶ ଥିଲା ପରବର୍ତ୍ତୀ ବଡ଼ଲାଟଙ୍କୁ ଭେଟିବା । ୧୮୯୯ ସାଲର ଜାନୁଆରି ପାଞ୍ଚ ତାରିଖରେ ଲର୍ଡ଼ କର୍ଜନ ଭାରତର ବଡ଼ଲାଟ ରୂପେ ଅଧିଷ୍ଠିତ ହୋଇଥିଲେ ଏବଂ କ୍ରମାଗତ ଭାବେ ମଧୁସୂଦନ ତାଙ୍କ ନିକଟକୁ ଆବେଦନ ପତ୍ର ପ୍ରେରଣ କରି ଚାଲିଥିଲେ ।

ଏଠାରେ ସୂଚାଇ ଦିଆଯାଉଛି ଯେ, କଲିକତା ସମଗ୍ର ଭାରତ ସାମ୍ରାଜ୍ୟର ରାଜଧାନୀ ହୋଇଥିଲେ ମଧ୍ୟ ୧୮୭୫ ସାଲରେ କଲିକତା ଲାହୋର ଦେଇ ସିମ୍‌ଲା ସମୀପ ପର୍ଯ୍ୟନ୍ତ ରେଳପଥ ସଂଯୁକ୍ତ ହେବ । ପରେ ପ୍ରକୃତ ପକ୍ଷେ ସିମ୍‌ଲା ହିଁ ଭାରତର ରାଜଧାନୀ ରୂପେ କାର୍ଯ୍ୟ କରୁଥିଲା, ଯେଉଁଠାରେ ବଡ଼ଲାଟ ବର୍ଷର ଆଠମାସରୁ ଅଧିକ ସମୟ ଅବସ୍ଥାନ କରୁଥିଲେ, ଶୀତଋତୁର ଦୁଇ ତିନିମାସ ବାଦ ଦେଇ ।

ଉତ୍କଳଦୀପିକାରେ ୨୩ ମାର୍ଚ୍ଚ ୧୯୦୦ ସାଲରେ ପ୍ରକାଶିତ ଲର୍ଡ଼ କର୍ଜନଙ୍କ ଗସ୍ତସୂଚୀ ଅନୁସାରେ ସେହି ସପ୍ତାହରେ କଲିକତା ପରିତ୍ୟାଗ କରି ଇକୁଆ ଅମୃତସର, ଇସ୍‌ମାଇଲ୍‌ଖାନ୍, ଡେରାଗାଜିଖାନ୍, କୋଟା ଆଦି ସ୍ଥାନ ପରିଦର୍ଶନ କରି ରେଳଯୋଗେ ଅପ୍ରେଲ ମାସ ଶେଷରେ ସିମଲାଠାରେ ପହଞ୍ଚି, ଗ୍ରୀଷ୍ମ ଓ ବର୍ଷାକାଳ ବିତାଇ ଡିସେମ୍ବର ମାସ ୨ୟ ସପ୍ତାହ ବେଳକୁ କଲିକତା ଫେରିଆସିବା କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ଉତ୍କଳ ଦୀପିକାରେ ୨୨.୯.୧୯୦୦ରେ ପ୍ରକାଶିତ ବଡ଼ଲାଟଙ୍କର ପରିବର୍ତ୍ତିତ ଗସ୍ତସୂଚୀ ଅନୁସାରେ ଡିସେମ୍ବର ୨ୟ ସପ୍ତାହରେ ରାଜମହେନ୍ଦ୍ରୀଠାରେ ଗୋଦାବରୀ ପୋଲ ଉଦ୍‌ଘାଟନ୍ କରି ରମ୍ଭାରେ କିଛିକାଳ ଅବସ୍ଥାନକରି କଟକ ବାଟ ଦେଇ କଲିକତା ଫେରି ଆସିବେ । ମାତ୍ର ଏହା ପୂର୍ବରୁ ଲର୍ଡ଼ କର୍ଜନ ସିମଲାଠାରୁ ଡେଲ୍‌ହାଉସୀ ଓ ଚମ୍ବା ସେପ୍ଟେମ୍ବର ମାସରେ ପରିଦର୍ଶନ କରି ସିମଲା ଫେରିଆସି ଅକ୍ଟୋବର ୨୨ ତାରିଖ ମଧ୍ୟରେ ସିମଲାଠାରୁ କଲିକତାକୁ ପ୍ରତ୍ୟାବର୍ତ୍ତନ କରିବାର କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥିଲା ।

ଏହି କାଳ ମଧ୍ୟରେ ମଧୁସୂଦନଙ୍କର ଆବେଦନ ବଡ଼ଲାଟଙ୍କର ହସ୍ତଗତ ହୋଇଥିଲା ଓ ବଡ଼ଲାଟ ପ୍ରାୟ ଅକ୍ଟୋବର ୨୨ ତାରିଖ ମଧ୍ୟରେ ସିମଲାଠାରେ ବଡ଼ଲାଟଙ୍କୁ ଭେଟିବାପାଇଁ ନିମନ୍ତ୍ରଣ ଜଣାଇଥିଲେ । ଆବେଦନରେ ମଧୁସୂଦନ ଲର୍ଡ଼ କର୍ଜନଙ୍କୁ ଜଣାଇଥିଲେ, '' ଏ ଚିଠି ହୁଏତ ଆପଣ ପଢ଼ି ନପାରନ୍ତି, ଏହା ଆପଣଙ୍କ ଜୋତା ତଳେ ସ୍ଥାନ ପାଇପାରେ, ମାତ୍ର ଜଣେ ଓଡ଼ିଆ ହିସାବରେ ଓଡ଼ିଆ ଜାତିର ମର୍ମବେଦନା ଓ ଅନ୍ତର୍ଦାହ ଆପଣଙ୍କୁ ଜଣାଇବା ମୋର କର୍ତ୍ତବ୍ୟ ।''

ଲର୍ଡ଼ କର୍ଜନଙ୍କ ସହିତ ମଧୁସୂଦନଙ୍କ ଅକ୍ଟୋବର ଦ୍ୱିତୀୟ ସପ୍ତାହରେ ସାକ୍ଷାତ ହେଲା । କର୍ଜନଙ୍କ ସମ୍ମୁଖରେ ମଧୁସୂଦନ ଉପସ୍ଥାପନ କରିଥିଲେ ବିଖଣ୍ଡିତ ଓଡ଼ିଆ ଜାତିର ମର୍ମଭେଦୀ କଷଣ ଓ ନିବେଦନ କରିଥିଲେ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ସହିତ ସମ୍ବଲପୁରରେ ଓଡ଼ିଆ ଭାଷାର ପ୍ରଚଳନ ଲାଗି ବ୍ୟଥାଭରା ଆବେଦନ । ପ୍ରାଣୋଚ୍ଛ୍ୱଳ ଭାଷାବିନ୍ୟାସର ନିର୍ଝର ମଧ୍ୟରେ ସମ୍ମୋହିତ ଲର୍ଡ଼ କର୍ଜନ, ମଧୁସୂଦନଙ୍କ ମାର୍ମିକ କଣ୍ଠର ଭାଷାରେ ଯେପରି ଓଲଟାଇ ଚାଲିଥିଲେ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଶାର ଗୌରବମୟ ଅଧ୍ୟାୟ ସବୁ, ଯହିଁରେ ଓଡ଼ିଆ ଜାତିର ଦୁର୍ନିବାର ଜୈତ୍ର ଅଭିଯାନ, ଅପରୂପ କଳା ଭାସ୍କର୍ଯ୍ୟ ସମ୍ବଳିତ କୀର୍ତ୍ତି ସମ୍ଭାର ଆଉ ଦରିଆପାରି ଉପନିବେଶର ବର୍ଣ୍ଣାଢ଼୍ୟ ବିପଣୀର ବିବରଣୀ, ବର୍ଣ୍ଣନା ହୋଇଥିଲା ଅତ୍ୟନ୍ତ ପ୍ରାଣବନ୍ତ ଆଉ ମର୍ମସ୍ପର୍ଶୀ ଭାଷାରେ । ବିହ୍ୱଳିତ ହୋଇ ଲର୍ଡ଼ କର୍ଜନ ମଧୁସୂଦନଙ୍କୁ କହିଥିଲେ, ‘‘ଓଡ଼ିଆ ଜାତି ନିଜକୁ ଅତ୍ୟନ୍ତ ଭାଗ୍ୟଶାଳୀ ମନେ କରିବା ଉଚିତ ଯେ ତାହାକୁ ଆପଣଙ୍କ ଭଳି ଜଣେ ବିଦ୍‌ବତ୍ତାସମ୍ପନ୍ନ ନେତା ପ୍ରତିନିଧିତ୍ୱ କରୁଛନ୍ତି ।’’ ପରିଶେଷରେ ମଧୁସୂଦନ ତାଙ୍କୁ ଆମନ୍ତ୍ରଣ କରିଥିଲେ ଓଡ଼ିଶାର ମନ୍ଦିରମାଳିନୀ ନଗରୀ ପୁରୀ ଓ ଭୁବନେଶ୍ୱର ପରିଦର୍ଶନ କରିବାପାଇଁ, ଯାହା ସେହିବର୍ଷ ରେଳ ଲାଇନ୍‌ଦ୍ୱାରା କଲିକତା ସହିତ ସଂଯୁକ୍ତ ହୋଇଥିଲା । ଲର୍ଡ଼ କର୍ଜନ ମଧୁସୂଦନଙ୍କ ନିମନ୍ତ୍ରଣକୁ ସ୍ୱୀକାର କରିଥିଲେ ଆଉ ନଭେମ୍ବର ମାସରେ ପ୍ରକାଶିତ ପରିବର୍ତ୍ତିତ ବଡ଼ଲାଟଙ୍କ ଗସ୍ତ କାର୍ଯ୍ୟସୂଚୀରେ ରାଜମହେନ୍ଦ୍ରୀଠାରୁ ପ୍ରତ୍ୟାବର୍ତ୍ତନ ପଥରେ ପୁରୀ ଓ ଭୁବନେଶ୍ୱର ପରିଦର୍ଶନ କାର୍ଯ୍ୟକ୍ରମ ସଂଯୋଜିତ ହୋଇଥିଲା । ଏହି ରେଳ ଲାଇନ ଲାଗି ଜମି ଅଧିଗ୍ରହଣ ଓ ସଂଯୋଜନା କ୍ଷେତ୍ରରେ ମଧୁସୂଦନଙ୍କ ଭୂମିକା ଥିଲା ଅବିସ୍ମରଣୀୟ ।

ଲର୍ଡ଼ କର୍ଜନ ପ୍ରକୃତରେ ୧୯୦୦ ସାଲ ଡିସେମ୍ବର ୧୩ ତାରିଖରେ ରେଳରେ ମାନ୍ଦ୍ରାଜ ପରିତ୍ୟାଗ କରି ୧୪ ତାରିଖରେ ରାଜମହେନ୍ଦ୍ରୀଠାରେ ଗୋଦାବରୀର ସୁବୃହତ୍ ପୋଲ ଉଦ୍‌ଘାଟନ କରି ୧୫ ତାରିଖରେ ସୁରୂପା ଚିଲିକା କୂଳସ୍ଥ ରମ୍ଭା ପ୍ରାସାଦ ପରିଦର୍ଶନ କରି ୧୬ ତାରିଖ ମଧ୍ୟାହ୍ନରେ ପୁରୀଠାରେ ପହଞ୍ଚିଥିଲେ । ଏହି ପରିଦର୍ଶନ ସଂପର୍କରେ ୨୨.୧୨.୧୯୦୦ରେ ପ୍ରକାଶିତ ଉତ୍କଳ ଦୀପିକାରେ ସୁବିସ୍ତୃତ ବିବରଣୀ ସ୍ଥାନ ପାଇଥିଲା । ସେହି ସଂପୂର୍ଣ୍ଣ ଲେଖାଟି ପାଠକଙ୍କର ଆଗ୍ରହ ଚରିତାର୍ଥ କରିବାପାଇଁ ଉପସ୍ଥାପନ କରାଗଲା ।

## ପୁରୀ

ଏହି ଆଶାତୀତ ସୌଭାଗ୍ୟ ରବିବାର ଶୁଭ ସଂଯୋଗରେ ସଂଘଟିତ ଥିଲା । ଉତ୍କଳବାସୀମାନେ ସ୍ୱଦେଶରେ ଭାରତର ମହାମାନ୍ୟ ଭାରତେଶ୍ୱରୀଙ୍କର ଭାରତ ପ୍ରତିନିଧିଙ୍କୁ ଦର୍ଶନ କରି କୃତାର୍ଥ ହେଲେ । ମହାମାନ୍ୟ ମହୋଦୟଙ୍କର ଯଥୋଚିତ ସମ୍ମାନ କରିବାକୁ ଗରିବ ପୁରୀବାସୀମାନେ ଅକ୍ଷମ ଥିବାର ଅନୁଭବ କରି ସୁଦ୍ଧା ସାଧ୍ୟାନୁସାରେ ରାଜାଙ୍କର ଅଭ୍ୟର୍ଥନା କରିବା କାରଣ ଯତ୍ନବାନ ହୋଇଥିଲେ ଏବଂ ପୁରୀର ରାଜା ଏବଂ ତାହାର ପରାମର୍ଶଦାତାମାନେ ତହିଁରେ ଆଗ୍ରହର ସହିତ ଯୋଗଦାନ କରିଥିଲେ । ଜିଲ୍ଲାର କଲେକ୍ଟରଙ୍କଠାରୁ ସାମାନ୍ୟ କର୍ମଚାରୀ ପର୍ଯ୍ୟନ୍ତ ସରକାରୀ ଲୋକ,

ଅର୍ଦ୍ଧ ସରକାରୀ ଲୋକ, କମିଶନର ଏବଂ ସେମାନଙ୍କର ଅଧୀନସ୍ଥ କର୍ମଚାରୀମାନେ ଯେ ଯାହାର କର୍ତ୍ତବ୍ୟ ସାଧନଦ୍ୱାରା ଉପରୋକ୍ତ ସମାରୋହ ସହିତ ଅଭ୍ୟର୍ଥନାର ଆୟୋଜନରେ ମନଯୋଗୀ ହୋଇଥିଲେ । ଶ୍ରୀମନ୍ଦିର ଦେଖିବା ବଡ଼ଲାଟ କର୍ଜନ ବାହାଦୂରଙ୍କର ଶୁଭାଗମନର ପ୍ରଧାନ ଅଭିପ୍ରାୟ । ତେଣୁ ମନ୍ଦିରର ସୁପରିଟେଣ୍ଡେଣ୍ଟଙ୍କ ଓ ପୁରୀ ରାଜାଙ୍କ ଉପରେ ଅଭ୍ୟର୍ଥନାର ଭାର ପଡ଼ିବାରୁ, ସେ ତହିଁର ସମସ୍ତ ବ୍ୟୟ ଯୋଗାଇ ଦେଇଥିଲେ ଏବଂ ତାହାଙ୍କର ପ୍ରଧାନ ବନ୍ଧୁ ମାନ୍ୟବର ମଧୁସୂଦନ ଦାସଙ୍କର ବିଚକ୍ଷଣ ବୁଦ୍ଧି ଏବଂ ସୁରୁଚି ସାହାଯ୍ୟରେ କାର୍ଯ୍ୟଟି ଅଧିକତର ମନୋହର ହୋଇଥିଲା । ପୁରୀ ରେଲଷ୍ଟେସନଠାରେ ଏକ ସୁଶୋଭିତ ମଣ୍ଡପ ରଚନା ହୋଇଥିଲା ଏବଂ ସେଠାରୁ ଏକ ଦିଗରେ ସମୁଦ୍ରକୂଳ କଚେରି ବାଟେ ଏବଂ ଅନ୍ୟ ଦିଗରେ ଗୁଣ୍ଡିଚା ମନ୍ଦିର ବଡ଼ଦାଣ୍ଡ ବାଟେ ଶ୍ରୀମନ୍ଦିର ପର୍ଯ୍ୟନ୍ତ ସଡ଼କମାନଙ୍କର ଦୁଇପାର୍ଶ୍ୱ ନାନା ବର୍ଣ୍ଣର ପତାକା ଏବଂ ପତ୍ରମାଳାଦ୍ୱାରା ସୁସଜ୍ଜିତ ହୋଇଥିଲା ଏବଂ ଚୌକିଦାର, ଦଫାଦାର ଓ କନେଷ୍ଟବଲ୍‌ମାନେ ପହରାରେ ଛିଡ଼ାହୋଇ ଥିଲେ । ମନ୍ଦିର ସମ୍ମୁଖରେ ଗୋଟିଏ ଚାନ୍ଦୁଆ ଟଣାହୋଇ ତାହା ଫୁଲପତ୍ର, ତୋରଣ, ସୁଦୃଶ୍ୟ ନାନାବର୍ଣ୍ଣର କାଗଜଦ୍ୱାରା ରଞ୍ଜିତ ହୋଇଥିଲା । ତଳେ ବନାତ ବିଛାହୋଇ ତହିଁ ଉପରେ ମହାମାନ୍ୟଙ୍କ ନିମନ୍ତେ ରୁପାର କୁରସି ଆସନମାନ ପଡ଼ିଥିଲା । ସମ୍ମୁଖରେ ଗୋଟିଏ ମେଜ ଉପରେ ଖଡ଼ିମାଟିରେ ନିର୍ମିତ ଗୋଟିଏ ମନ୍ଦିରର ପ୍ରତିମୂର୍ତ୍ତି, ଗୋଟିଏ ଅବିକଳ ସୁସଜ୍ଜିତ ରଥର ଆକୃତି ଏବଂ ଗୋଟିଏ ରୂପାର ଅଭିନନ୍ଦନପତ୍ରାଧାର ମହାତ୍ମାଙ୍କୁ ଉପଢ଼ୌକନ ଦେବା କାରଣ ରଖାଯାଇଥିଲା । ଏହି ରୌପ୍ୟାଧାର ମାନ୍ୟବର ବାବୁ ମଧୁସୂଦନ ଦାସଙ୍କ ଶିଳ୍ପାଗାରରେ ପ୍ରସ୍ତୁତ ଏବଂ ଏହା ତାହାଙ୍କର ବିଚକ୍ଷଣ ଉଦ୍‌ଭାବିକା ଏବଂ ସୁରୁଚିର ପରିଚୟ ଦେଉଥିଲା । ସେହି ଆଧାରର ତଳ ଖଣ୍ଡିଏ ତାରକସି ବାଦାମୀ ଥାଳି, ତହିଁ ଉପରେ ଦୁଇପାଖରେ ଦୁଇଟି ହାତୀଦାନ୍ତର ହାତୀ ବସିଛନ୍ତି ଏବଂ ମଧ୍ୟରେ ସୁନାପତ୍ରରେ ଶ୍ରୀମନ୍ଦିରର ପ୍ରତିକୃତି ଅଙ୍କିତ ହୋଇଛି । ହାତୀମାନଙ୍କ ପୃଷ୍ଠରେ ରୂପାର ଗୋଟିଏ ଲମ୍ବ ବାକ୍ସ ରହିଛି । ଏବଂ ତାହା ଫିଟାଇବା ଓ ବନ୍ଦ କରିବାର କଳ ଲାଗି ଅଛି । ବାକ୍ସର ଢ଼ାଙ୍କୁଣିର ଏକପାଖରେ ଲକ୍ଷ୍ମୀ ଏବଂ ଅନ୍ୟ ପାଖରେ ସରସ୍ୱତୀଙ୍କ ମୂର୍ତ୍ତି ସୁନା ପତ୍ରରେ ଅଙ୍କା ହୋଇଛି ଏବଂ ମଧ୍ୟରେ ମହାମାନ୍ୟ କର୍ଜନଙ୍କୁ ପୁରୀର ରାଜା ଏବଂ ସେବକମାନଙ୍କଦ୍ୱାରା ଉତ୍ସର୍ଗ ହେବାର ଇଂରାଜୀରେ ଲେଖାଅଛି । ବାକ୍‌ସର ଦୁଇ ପାର୍ଶ୍ୱର ରୂପା ପଟା ଉପରେ ଜଡ଼ିତ ସୁନା ପତ୍ରରେ ଶ୍ରୀକୃଷ୍ଣଙ୍କ କାଳୀୟଦଳନ ପ୍ରତିମୂର୍ତ୍ତି ଅଙ୍କିତ ହୋଇଛି । କାର୍ଯ୍ୟଟି ଏମନ୍ତ ଚିକ୍କଣ ଏବଂ ସୁନ୍ଦର ହୋଇଛି ଯେ ଦେଖିଲେ ଚୋଖା ହାତତିଆରି ବୋଲି ଭ୍ରମ ହେବ ।

ମଣ୍ଡପର ଚତୁର୍ଦ୍ଦିଗରେ କଦଳୀ ଗଛ ଓ ନାରିକେଳ ପଲ୍ଲବ ସହିତ ପୂର୍ଣ୍ଣ କଳସମାନ ସ୍ଥାପିତ ହୋଇଥିଲା । ପୁରୀର କନେଷ୍ଟବଲମାନେ ଅତ୍ୟନ୍ତ ସାବଧାନ ସହିତ ଚାରିଦିଗରେ ଦଣ୍ଡାୟମାନ ରହି ମନ୍ଦିରର ସମ୍ମୁଖସ୍ଥ ସମସ୍ତ ସ୍ଥାନ ରକ୍ଷା କରିଥିଲେ । ଏବଂ ଏ କାର୍ଯ୍ୟରେ ପୁଲିସ୍ ଇନ୍‌ସ୍‌ପେକ୍ଟର ବାବୁ ନାରାୟଣ ଚନ୍ଦ୍ର ବାନାର୍ଜୀଙ୍କର ବିଶେଷ ସତର୍କତାରେ ବାଟଘାଟମାନ ଯଥା ସମ୍ଭବ ପରିଷ୍କାର ରୂପେ ସୁରକ୍ଷିତ ହୋଇଥିଲା । ସଡ଼କର ଦୁଇପାଖର ଲୋକମାନେ ଆପଣା ଆପଣା ଘରେ ଚୂନ

ଲିପି ଏବଂ କେହି କେହି ପତ୍ରାଦିରେ ଘର ସୁସଜ୍ଜିତ କରିଥିଲେ । ରାଜାଙ୍କ ନଅରର ସମ୍ମୁଖ ଭାଗ ମନୋହର ରୂପେ ସଜ୍ଜିତ ହୋଇଥିଲା । ଫଳତଃ ନଗର ଶୋଭା ବଢ଼ାଇବାପାଇଁ ଯେତେସମ୍ଭବ ଚେଷ୍ଟା ହୋଇଥିଲା ଏବଂ ତାହା ସଫଳ ହେବାର ଅବଶ୍ୟ ସ୍ୱୀକାର କରିବାକୁ ହେବ ।

ମହାମାନ୍ୟ ମହୋଦୟ ମଧ୍ୟାହ୍ନ ପ୍ରାୟ ଗୋଟାଏରେ ପୁରୀ ରେଳଷ୍ଟେସନ୍‌ରେ ଉପସ୍ଥିତ ହେଲେ । ତାହାଙ୍କୁ ସମାଦର ପୂର୍ବକ ଆଣିବା କାର୍ଯ୍ୟ ବିଭାଗୀୟ କମିଶନର ପୁରୀର କଲେକ୍ଟର, ପୁଲିସ୍ ସୁପରିଟେଣ୍ଡେଣ୍ଟ ପ୍ରଭୃତି ପୂର୍ବରୁ ରେଳଷ୍ଟେସନଠାରେ ଅପେକ୍ଷା କରିଥିଲେ । ମହୋଦୟ ରେଳରୁ ଅବତରଣ କରି ସେଠା ମଣ୍ଡପରେ କେବଳ ପଦାର୍ପଣ କରି ସଗହଣରେ ବଗିରେ ବସି ମନ୍ଦିରଠାରେ ବିରାଜମାନ ହୋଇ ପ୍ରଥମେ ଅରୁଣ ସ୍ତମ୍ଭ ଓ ସିଂହଦ୍ୱାରଠାରୁ ମନ୍ଦିର ଦର୍ଶନ କରି ତହୁଁ ଉତ୍ତାରୁ ସମ୍ମୁଖସ୍ଥ ରାଧାବଲ୍ଲଭ ମଠରେ ଛାତ ଉପରକୁ ବିଜେକରି ମନ୍ଦିରର ଚାରିପାଖ ବୁଲି ଆସି ସଭାମଣ୍ଡପରେ ବିରାଜମାନ ହେଲେ । ସେଠାରେ ପୁରୀର ରାଜା, ମନ୍ଦିରର ପୁରୋହିତ, ସେବକ, ପଣ୍ଡିତ, ପୁରୀ ମ୍ୟୁନିସିପାଲ୍ କମିଶନର୍, ରାଜାଙ୍କର ଅମଲା ପ୍ରଭୃତି କେତେଜଣ ସ୍ଥାନୀୟ ଭଦ୍ରଲୋକ ଏବଂ କଟକର ବାବୁ ମଧୁସୂଦନ ଦାସ, ରାୟ ହରିବଲ୍ଲଭ ବାହାଦୂର ବାବୁ, ସୁଦାମଚନ୍ଦ୍ର ନାୟକ, ପାଲଲହଡ଼ାର ନାବାଲଗ ଜମିଦାର, ବାଲେଶ୍ୱରର ଜମିଦାର ବାବୁ ରାଜନାରାୟଣ ଦାସ ଅନ୍ୟାନ୍ୟ ଭଦ୍ର ବ୍ୟକ୍ତିଙ୍କ ମଧ୍ୟରେ ଉପସ୍ଥିତ ଥିଲେ । ପୁରୀରାଜା ମହାମାନ୍ୟଙ୍କୁ ସମାଦର ସହିତ ଆସନରେ ବସାଇବା ଉତ୍ତାରୁ ପୁରୋହିତ ପ୍ରଭୃତି ସମ୍ମୁଖୀନ ହୋଇ ଏକକିତା ଅଭିନନ୍ଦନପତ୍ର ପାଠ କଲେ ଏବଂ ଅନ୍ୟମାନେ ଆଶୀର୍ବାଦ କରିବା ଭଂଗୀରେ ଦଣ୍ଡାୟମାନ ହୋଇଥିଲେ । ଅଭିନନ୍ଦନପତ୍ର ଓଡ଼ିଆ ଅକ୍ଷରରେ ତାଳପତ୍ରରେ ଲେଖାହୋଇଥିଲା । ପାଠାନ୍ତେ ରାଜା ଅଭିନନ୍ଦନ ପତ୍ରକୁ ତହିଁର ଆଧାରରେ ବନ୍ଦ କରି ମହାମାନ୍ୟଙ୍କ ହସ୍ତରେ ଅର୍ପଣ କଲେ । ରବିବାର ଥିବା ହେତୁ ମହାମାନ୍ୟ କିଛି ଉତ୍ତର ନଦେଇ କେବଳ ଧନ୍ୟବାଦ ଦେଇ ସାଦରେ ତାହା ଗ୍ରହଣ କଲେ ଏବଂ ଅନ୍ୟ ଦ୍ରବ୍ୟମାନ ଫୁଲ ଓ ମାଳା ମଧ୍ୟ ଗ୍ରହଣ କଲେ । ମାଳାଟି ତାହାଙ୍କ ଗଳାରେ ବଡ଼ ସୁନ୍ଦର ସାଜି ଥିଲା । ତଦନନ୍ତର ରାଜାଙ୍କର କୁଶଳ ବାର୍ତ୍ତା ପଚାରି ଏବଂ ତାହାଙ୍କର ଶୀର୍ଣ୍ଣ ଶରୀର ଦେଖି ସେ ପୀଡ଼ିତ ଥିବାର ଅବଗତ ହୋଇ କରମର୍ଦ୍ଦନ ପୂର୍ବକ ବିଦାୟ ହୋଇ ବଗିରେ ବସି ଗୁଣ୍ଡିଚା ମନ୍ଦିର ଦେଖି ସର୍କିଟ୍ ହାଉସ୍‌କୁ ବିଜେକଲେ । ଏବଂ ସେଠାରେ କିଞ୍ଚିତ୍ ଜଳଯୋଗ କରି ଅପରାହ୍ନ ୩ଟାରେ ରେଳଗାଡ଼ିରେ ବସି ଭୁବନେଶ୍ୱରକୁ ପ୍ରସ୍ଥାନ କଲେ । ସଡ଼କର ଦୁଇପାଖରେ ସହସ୍ର ଲୋକ ଛିଡ଼ାହୋଇ ସଲାମ କରିଥିଲେ ଓ ଲାଟ୍ ସାହେବ ପ୍ରଫୁଲ୍ଲ ହୋଇ ପ୍ରତି ସଲାମ କରିବାକୁ ତ୍ରୁଟି କରିନଥିଲେ । ଅଭିନନ୍ଦନପତ୍ରର ପ୍ରତିଲିପି ନିମ୍ନରେ ପ୍ରକାଶିତ ହେଲା । ଯଥାଃ-

ସର୍ବସଦ୍‌ଗୁଣାଧାର ସମ୍ମାନଭାଜନାଗ୍ରଗଣ୍ୟ ବ୍ୟାରନ୍ କୁର୍ଜନ ଅଫ୍ କୀଡ଼ଲ୍‌ଷ୍ଟୋନ୍ ପି.ସି,ଜି,ଏମ୍, ଏସ୍, ଆଇ, ଜି, ଏମ୍, ଆଇ, ଇ, ଶ୍ରୀ ଶ୍ରୀ ଶ୍ରୀ ଭାରତାଧୀଶ୍ୱର ଶ୍ରୀ କରକମଳେଷୁ ।

ଯଥା ବିହିତ ଶ୍ରଦ୍ଧାଭକ୍ତି-ପୁରସରଃ ନିବେଦନମେତତ୍ ।

ଦ୍ୱାର ମୁତ୍କଳ ଦେଶସ୍ୟ ଜଗନ୍ନାଥସ୍ୟ ମନ୍ଦିରଂ

ଐତିହାସିକତତ୍ତ୍ୱସ୍ୟ ଜ୍ଞାପକମ୍ ବିଶେଷତଃ ॥୧॥
ଶିଳ୍ପସୌଷ୍ଠବହିନାପି ଦାରୁ ମୂର୍ତ୍ତିର୍ମହାପ୍ରଭୋଃ,
ହିନ୍ଦୁଧର୍ମାଦି ମାବସ୍ତାଂ ସୁଚୟ ତେବ୍ୟ ସର୍ବଶଃ ॥୨॥
ଯଦାସ୍ଥପତିଶିଳ୍ପସ୍ୟ ବଭୁବୋତ୍କର୍ଷଂ ସାଧକମ୍
ତଦାନୀନ୍ତନଧର୍ମସ୍ୟ ପ୍ରକୃତେ ର୍ବୋଦ୍ଧକଂ ହି ତତ୍ ॥୩॥
ଭାରତେ ସର୍ବ ତୀର୍ଥେଷୁ ଜଗନ୍ନାଥସ୍ୟ ମନ୍ଦିରଂ
ବଦନ୍ତି ପରମଂ ପୂତଂ ପ୍ରାଣୀନୋହ୍ୟେ ବାକ୍ୟରଃ ॥୪॥
ନାପ୍ୟସ୍ମିନ୍ ଜାତିଭେଦସ୍ୟ ନିୟମଃ ପ୍ରତିପାଲ୍ୟତେ
କ୍ରିୟତେ ଶେଷ ରାଜେନ ଦେବ ମନ୍ଦିର ମାର୍ଜ୍ଜନଂ ॥୫॥
ଅତ୍ୟନ୍ତ ବସ୍ତୁଜାତଂ ଯ-ଦମୂଲ୍ୟଂ ସୁମନୋଭମ୍
ଉପ୍ସୁକତେ ସୁମନସା ଧର୍ମାର୍ଥଂ ଧାର୍ମିକୈ ସଦା ॥୬॥
ପ୍ରାୟଶଃ ସାର୍ଦ୍ଧଦ୍ୱିଶାଜାତ୍ ପୂର୍ବମାସୀନ୍ମହାମଭିଃ
କଶ୍ଚିନ୍ତୁ କୁନ୍ଦଦେବାଖ୍ୟଃ ବଶୋଽସ୍ମିନ୍ନୁତ୍କଳେଶ୍ୱରଃ ॥୭॥
ତଦୋତ୍କଳଂ ସମାନମ୍ଭୁ କେଚିଦଂଲଣ୍ଡ ବାସୀନଃ
ଅଭ୍ୟର୍ଥିତାସ୍ତେ ବିଧିନା ମୁକୁନ୍ଦ ଦେବବର୍ହିଣା ॥୮॥
ଶୈଷ୍ଟେ ଗୁଣ ବ୍ୟୋମଗଜେନ୍ଦୁ ସଂଖ୍ୟେ
ହାର୍କୋର୍ଟ କର୍ଣ୍ଣେଲ୍ ସବଲୋଯଦାବୋ
ପ୍ରାୟାଚି ବିଜେତୁଂ ନିହିତାସ୍ତଦା ସଃ
ମହାବିଭୋର୍ମନ୍ଦିର ରକ୍ଷଣାଦୌ ॥୯॥
ପ୍ରଥମଂ ସ୍ୱାଗତଂ ପୃଷ୍ଟ୍ୱା ରାଜ୍ଞାଃ ପ୍ରତିନିଧେସ୍ତବ
ଦେବମନ୍ଦିରବେତାରଂଃ କୃତକୃତ୍ୟା ବୟଂମୁଦା ॥୧୦॥
ନିପୁଣାଃ ସର୍ବକାର୍ଯ୍ୟେଷୁ ସର୍ବପ୍ରକୃତି ରଞ୍ଜକଃ
ସମଦୁଃଖସୁଖଃ ଶ୍ରୀମାନ୍ ପ୍ରଜାଭିଃ ସହ ସର୍ବଦା ॥୧୧॥
ଭବନ୍ତ ଦମୟଭ୍ୟର୍ଥ୍ୟ ରାଜନୀତି ବିଶାରଦମ୍
ସର୍ବଲୋକ ପ୍ରିୟଂ ଦେବଂ ଧନ୍ୟଧନ୍ୟା ତନ୍ନୋଧିକା ॥୧୨॥
ଭାରତେଶ୍ୱରରେ କୀର୍ତ୍ତିର୍ବିଦିତାଽଖିଳ ଭୂମିଷୁ

ଶ୍ରଦ୍ଧୟାନ୍ତରଂ ଭକ୍ତ୍ୟାବ୍ୟାଂ ଗୃହାମୋଜିର୍ଧନା ବୟଂ ॥୧୩॥
ଅସହାୟ ଯଥା ଦୈବଂ ପ୍ରାର୍ଥୟାନ୍ତେ ହିତେକ୍ରିୟା .
ତଥାଃନିସ୍ୱା ବୟଂ ସର୍ବେ ସ୍ୱାମୀନସ୍ତେ ହିତୈଷିଣଃ ॥୧୪॥
ଦୟାମୟୀଂ ଗୁଣାବତୀ ମୁଦାର ହୃଦୟାନ୍ୱିତାଂ
ଆୟୁଷ୍ମତୀଂ ସୁସ୍ଥଦେହାଂ ପବିତ୍ର ଭାରତେଶ୍ୱରୀଂ ॥୧୫॥
ସୁଯୋଗ୍ୟ ତସ୍ତତିଂବିଧି ଭବନ୍ତଶ୍ଚ ଗୁଣାକରଂ
ଦୀର୍ଘାୟୁଷଂ ସୁସ୍ଥଦେହଂ କରୋତୁ ପରମେଶ୍ୱରଃ ॥
କୋଷାତ୍ମକେଽସ୍ମିନ୍ ଭୀତନ୍ଦନସ୍ୟ
ରୌପୌକପାତ୍ରେ ନିହିତା ତବାଖ୍ୟା
ଅଷ୍ଟାଷ୍ଟତୁପାର୍ଶ୍ୱ ଗତାଧିଦେବ୍ୟଃ
ଯଥା ଭିରକ୍ଷନ୍ତି ସଯତ୍ନଶୀଳାଃ ॥୧୭॥
ତଥୈବ ସ୍ୱର୍ଗସ୍ଥିତ ଦେବଦେବ୍ୟଃ
ଭକ୍ଷନ୍ତୁତେ ବୈଭବ କୀର୍ତ୍ତିଜାତମ୍
ଯାଚାମହେ ସନ୍ତତମେତ ଦେବ
ପୁରୋହିତାଃ ଶ୍ରୀ ପୁରୀ ମନ୍ଦିରସ୍ୟ ॥୧୮॥
ବୟଂହି
ଶ୍ରୀମତଃ ରାଗଭକ୍ତାଃ ଆଜ୍ଞାନୁବର୍ତ୍ତିନଃ ।
ଶ୍ରୀମଦ୍ଗୁଣଗ୍ରାମବିମୁଗ୍ଧା ପ୍ରଜାଃ ।

ଏହାର ସଂକ୍ଷେପ ମର୍ମ ଏହିକି ପୁରୁଷୋତ୍ତମ କ୍ଷେତ୍ର ଉତ୍କଳପ୍ରଦେଶ ଏବଂ ଉତ୍କଳ ଇତିହାସର ଦ୍ୱାର ସ୍ୱରୂପ ଅଟେ । ଜଗନ୍ନାଥଙ୍କର ମୂର୍ତ୍ତି ଏହାତ ଆଦିମ କାଳର ଶିଳାହୀନ ଏବଂ ତାହାଙ୍କର ମନ୍ଦିର ପରବର୍ତ୍ତୀକାଳର ସ୍ଥପତି ଶିଳ୍ପୋନ୍ନତିର ପରିଚୟ ଦେଉଅଛି । ମନ୍ଦିରର ସେବା ଏବଂ ତନ୍ନିମିତ୍ତ ଖଞ୍ଜା ହୋଇଥିବା ଓ ଭାରତର ନାନା ଭାବର ଧାର୍ମିକ ଲୋକଙ୍କଦ୍ୱାରା ପ୍ରଦତ୍ତ ଅତୁଳ ସମ୍ପତ୍ତି ବା ଅମୂଲ୍ୟ ରତ୍ନାଦି, ମହାପ୍ରସାଦରେ କାଳ ବିଚାର ନରହିବା ଏବଂ ରାଜା ସ୍ୱୟଂ ମାର୍ଜନ ସେବା ଅର୍ଥାତ୍ ଝାଡ଼ୁ କରିବା କାର୍ଯ୍ୟ ଗ୍ରହଣ କରିବା ଲୋକଙ୍କର ଉଚ୍ଚ ଧର୍ମମତର ସାକ୍ଷ୍ୟ ଦେଉଅଛି । ଅଢ଼େଇଶତ ବର୍ଷ ପୂର୍ବେ ପୁରୀ ରାଜବଂଶର ମୁକୁନ୍ଦଦେବ ମହାରାଜା ସେହି ଇଂରେଜଙ୍କୁ ଆଦରପୂର୍ବକ ଆପଣା ନିଳୟରେ ଆଶ୍ରୟ ଦେଇଥିଲେ ଏବଂ ସନ୍ ୧୮୦୩ ସାଲରେ କର୍ଣ୍ଣେଲ୍ ହାରବର୍ଟ ସାହେବଙ୍କର ଓଡ଼ିଶା ବିଜୟ କାଳରେ ମନ୍ଦିର ପଣ୍ଡାମାନେ ତାହାଙ୍କ ନିକଟକୁ ଯାଇ ରାଜ୍ୟ ଏବଂ ମନ୍ଦିରର ରକ୍ଷାଭାର ଗ୍ରହଣ ସକାଶେ ଆମନ୍ତ୍ରଣ କରି ଆଣିଥିଲେ । ରାଜରାଜେଶ୍ୱରୀଙ୍କ

ପ୍ରତିନିଧି ସ୍ୱରୂପ ଓଡ଼ିଶାର ପ୍ରଥମେ ଆପଣଙ୍କର ପଦାର୍ପଣ ହୋଇଅଛି ଏବଂ ଶୁଭ ଘଟଣାକ୍ରମେ ବର୍ତ୍ତମାନର ରାଜା ମୁକୁନ୍ଦ ଦେବ ନାମ ଧାରଣ କରିଛନ୍ତି । ଆପଣ ସକଳ ଗୁଣରେ ନିପୁଣ, ଶ୍ରୀମାନ୍ ପ୍ରଜାପାଳକ, ସମସ୍ତ ଭାରତରେ ଆପଣଙ୍କର କୀର୍ତ୍ତି ବିରାଜୁ ଅଛି । ଅଦ୍ୟ ଆମ୍ଭେମାନେ ଆପଣଙ୍କର ଅଭ୍ୟର୍ଥନାକରି ଶ୍ରୀମତୀ ଦୟାମୟୀ ଗୁଣବତୀ ଭାରତେଶ୍ୱରୀଙ୍କର ଏବଂ ଆପଣଙ୍କର ଦୀର୍ଘାୟୁ ଏବଂ ଯଶ କଲ୍ୟାଣ କାମନା କରୁଅଛୁ। ଆମ୍ଭେମାନେ ଦରିଦ୍ର ଅସହାୟ ପ୍ରଜାକଲ୍ୟାଣ କାମନା ବିନା ଆମମାନଙ୍କର ଶ୍ରଦ୍ଧା ଓ ଭକ୍ତି ସମୁଚିତ ରୂପେ ପ୍ରକାଶ କରିବାର ଉପାୟାନ୍ତର ନାହିଁ । ଆପଣ ନିଜ ଉଦାରତାଦ୍ୱାରା ଗ୍ରହଣକରନ୍ତୁ । ଏହି ଅଭିନନ୍ଦନପତ୍ରରେ ଆପଣଙ୍କର ନାମର ଚତୁର୍ଦ୍ଦିଗରେ ଦେବମୂର୍ତ୍ତିମାନେ ଯେମନ୍ତ ବେଢ଼ି ରହି ସୁରକ୍ଷା ବିଧାନ କରୁଅଛନ୍ତି ତେମନ୍ତ ସ୍ୱର୍ଗର ଦେବତାମାନେ ଆପଣଙ୍କୁ ରକ୍ଷା କରନ୍ତୁ । ଏହା ହିଁ ପୁରୀ ମନ୍ଦିର ପୁରୋହିତମାନେ ଦେବତାଙ୍କ ନିକଟରେ ପ୍ରାର୍ଥନା କରୁଛନ୍ତି ।

ବଡ଼ଲାଟ କର୍ଜନ ବାହାଦୂର କମିଶନର ପ୍ରଭୃତି ଚାରିଜଣ ଉଚ୍ଚ କର୍ମଚାରୀଙ୍କ ସହିତ ଏକ ବଗିରେ ସାଧାରଣ ଜାତୀୟ ପରିଚ୍ଛଦରେ ବିଜେ କରିଥିବାରୁ ତାହାଙ୍କୁ ଚିହ୍ନିବାରେ ପ୍ରଥମେ ଅନେକଙ୍କର ଭ୍ରମ ହେଉଥିଲା ଏବଂ ପଛକୁ ତାହା ଭାଂଗିଗଲା । ତାଙ୍କର କମ୍ର, ଶାନ୍ତ, ପ୍ରସନ୍ନ ମୂର୍ତ୍ତି ଏବଂ ଅଳ୍ପ ବୟସରେ ଏଡ଼େ ଉଚ୍ଚପଦରେ ଭୂଷିତ ହେବାର ଦେଖି ସମସ୍ତେ ଖୁବ୍ ପ୍ରୀତ ହୋଇଥିଲେ । ଓଡ଼ିଶା ପରି ଗରିବ ଦେଶର ଏକମାତ୍ର ଗୌରବର ସ୍ଥଳ ପୁରୁଷୋତ୍ତମର ଦେବ ମନ୍ଦିର ଯାହାକି ଭାରତର ସମସ୍ତ କ୍ଷେତ୍ରମାନଙ୍କ ମଧ୍ୟରେ ପ୍ରଧାନ ଅଟେ, ସର୍ବ ପ୍ରଥମେ ଯାହାଙ୍କର ଦୃଷ୍ଟି ଆକର୍ଷଣ କରିଅଛି ଏଥିରୁ ଆମେ ଅନେକ ଶୁଭଫଳର ଆଶାକରୁ । ଅନ୍ତତଃ ଏହି ମନ୍ଦିରର ସୁରକ୍ଷା ଓ ସମୃଦ୍ଧି ବିଷୟରେ କିଛି ସୁବିଧାନ ହେଲେ ଭାରତବାସୀ ସମସ୍ତଙ୍କର ଆନନ୍ଦର ବିଷୟ ହେବ ।

## ଭୁବନେଶ୍ୱର

ରେଳଗାଡ଼ି ଅପରାହ୍ଣ ୪ଘଣ୍ଟା ସମୟରେ ଖଣ୍ଡଗିରି ସଡ଼କ ନିକଟରେ ଲାଗନ୍ତେ ବଡ଼ଲାଟ ମହୋଦୟ ଏଠା କମିଶନର ମୁଖ୍ୟ, କଲେକ୍ଟର ପ୍ରଭୃତିଙ୍କ ସହିତ ଘୋଡ଼ାଗାଡ଼ିରେ ଭୁବନେଶ୍ୱର ମନ୍ଦିରଠାରେ ଅବତୀର୍ଣ୍ଣ ହେଲେ । ଲୋକମାନେ ଜୟଧ୍ୱନିଦେଇ ମେଦିନୀ ପ୍ରକମ୍ପିତ କଲେ । ଏବଂ ମନ୍ଦିରର ପୁରୋହିତ ନିମ୍ନଲିଖିତ ଅଭିନନ୍ଦନ ପତ୍ର ପାଠକଲେ । ଯଥାଃ-

ଅହୋ ସୁଦବସୋଽସ୍ମାକଂ ରାଜ୍ଞା ପ୍ରତିନିର୍ଦ୍ଧିତବାନ୍
ଆଗତୋଽବ୍ୟମ୍ବ୍ୟଂ ଦ୍ରଷ୍ଟାଂ ଲିଙ୍ଗରାଜସ୍ୟ ମନ୍ଦିରଃ ॥
ସମ୍ରାଜ୍ଞୀ ଭାରତେଶ୍ବର୍ଯ୍ୟା ବିନୀତା ଦଶଗାଃ
ସଭାଜନାୟଂ ଯୁଷ୍ମାକଂ ପ୍ରଜାଭିର୍ବଭିତା ବୟଂ ॥
ଲିଙ୍ଗରାଜାଳୟାଧ୍ୟକ୍ଷ-ସଭାଜନ ପୁରୋଧସଃ

ସ୍ୱାଗତଂ ପ୍ରଷ୍ଟୁ କାମାଃସଃ ବନ୍ଧେମ ବିନୟାଞ୍ଜନଂ
ଆର୍ଯ୍ୟାଣଂ ସୌଧ ନିର୍ମାଣ-କୌଶଳସ୍ୟ ଦିଦୃଶୟା
ଜାତଂ ତ୍ୱଦର୍ଶକଶ୍ଳାଘ୍ୟଂ ଅବେଦ୍ୟଂ ଭଗ୍ନ ମନ୍ଦିରଂ।।
ତ୍ୱୟାବ୍ୟଂ ବର୍ଦ୍ଧିତଂ ସର୍ବ ପ୍ରାଚ୍ୟଶିଳ୍ପସ୍ୟ ଗୌରବଂ
ଦିଷ୍ଟ୍ୟାତାତୋ ମହାଭାଗଃ ପ୍ରତ୍ନଶିଳ୍ପସ୍ୟ ରକ୍ଷକଃ ।।
ଆନନ୍ଦପୂର୍ଣ୍ଣ ସ୍ତର ମନ୍ଦିର ରାଜୟୋ ଯାଃ
ଅଦ୍‌ଭୂତ ଶିଳ୍ପ ପରିପୂର୍ଣ୍ଣ ବିରାଜିତା ସ୍ତାଃ ।।
ଜାନ୍ତାସ୍ତବା ହୃଦୟତୋଷକରାଶ୍ଚ ସଦ୍ୟ
ତାଫଂ ପୁନର୍ଦ୍ଦଦତିତାଶ୍ଚ ହି ଦର୍ଶକାନାମ୍
ସା ନାସ୍ତି ପୂର୍ବ ସୁଷମା ଭୁବନେଶ୍ୱରସ୍ୟ
କଷ୍ଟା ପୁନର୍ବିମଳାଦ୍ୱା ଧନଶାଳିତାଚ ।
ଯଃ ପ୍ରାଗ୍‌ଭୁଦ୍‌ ବଣିକ-ନନ୍ଦନ-ସନ୍ନିବାସଂ
ପ୍ରତ୍ନ ରାଜନଗରୀ ସମାଗତୈଃ
ମାନନୀୟ ମହନୀୟ ଶାସକଃ ।।୮।।
ପ୍ରସୀଦତୁ ପ୍ରାର୍ଥୀତ ମେତଦେବ
ପ୍ରକାମ ଭକ୍ତିଂ ତ୍ରିଦଶାକୃତଂ ନଃ
ଗୃହ୍ଣାତୁ ସ୍ତତ୍‌ ଚନ୍ଦନମକ୍ଷରଂ ଚ
ଶଙ୍ଖସ୍ୱନାନନ୍ତର-ପୁଷ୍ପବୃଷ୍ଟିଂ ।।୯।।
ଆୟୁରାରୋଗ୍ୟମୈଶ୍ୱର୍ଯ୍ୟ ଆତ୍ମୀୟଂ ବିହିତାୟ
ସର୍ବଶକ୍ତ୍ୟାଶ୍ଚୟୋଦେବୋ ଦଦାତୁ ଭୁବନେଶ୍ୱରଃ ।।୧୦।।

ଏହାର ସଂକ୍ଷେପ ଅର୍ଥ ଏହିକି ଭୁବନେଶ୍ୱର ହିନ୍ଦୁମାନଙ୍କର ପ୍ରମୁଖ କାର୍ଯ୍ୟର ଅବଶିଷ୍ଟ ଶୋଭା ଯାହା ରହିଅଛି ତାହା ଦେଖିବା କାରଣ ଆପଣ ଶୁଭାଗମନ କରିବାରୁ ମନ୍ଦିର କମିଟିର ସଭ୍ୟ ଓ ମନ୍ଦିରର ପୁରୋହିତକୁଳ ଏବଂ ସାଧାରଣ ହିନ୍ଦୁ ସମାଜ ଆପଣଙ୍କୁ ସମାଦର ପୂର୍ବକ ଅଭ୍ୟର୍ଥନା କରୁଛନ୍ତି । ପ୍ରାଚୀନ କୀର୍ତ୍ତି ବିଷୟରେ ଆପଣଙ୍କର ଏତାଦୃଶ ଅନୁରାଗ ଏବଂ ଶ୍ରମ ସ୍ୱୀକାରରେ ଆମ୍ଭେମାନେ ବିମୋହିତ ହୋଇଅଛୁ ଏବଂ ପ୍ରାଚୀନ ହିନ୍ଦୁ ସଭ୍ୟତା ଧନ୍ୟ ହୋଇଅଛି । ଭୁବନେଶ୍ୱର ଏକକାଂଶରେ ହିନ୍ଦୁ ଶାସନକର୍ତ୍ତାର ଆବାସସ୍ଥାନ ଏବଂ ସେଠାର ବିଖ୍ୟାତ ମନ୍ଦିର ଶୈବ ଧର୍ମର କେନ୍ଦ୍ରସ୍ଥଳ ଥିଲା । ଶୈବଧର୍ମର ପତନ ଏବଂ ଅନ୍ୟାନ୍ୟ ବାହ୍ୟ କାରଣରୁ ଏ ସ୍ଥାନର ଯେଉଁ ଦୁରବସ୍ଥା ଘଟିଅଛି ତାହା ଆପଣ ପ୍ରତ୍ୟକ୍ଷ କରୁଛନ୍ତି । ଏ ସ୍ଥାନଟି ଦରିଦ୍ରତାରେ ଆସନ୍ନ ଏବଂ ମନ୍ଦିରର

ସମ୍ପତ୍ତି ଯତ୍‌ସାମାନ୍ୟ । ଅତଏବ ଆପଣଙ୍କର ସମଯୋଗ୍ୟ ସମ୍ମାନ କରିବାକୁ ଅକ୍ଷମ ହୋଇ ଯେଉଁ ଫଳ ଓ ପୁଷ୍ପଦ୍ୱାରା ଦେବତାମାନେ ସନ୍ତୁଷ୍ଟ ହୁଅନ୍ତି ତଦ୍ଦ୍ୱାରା ଆପଣଙ୍କଠାରେ ଭକ୍ତି ଓ ଶ୍ରଦ୍ଧା ପ୍ରକାଶ କରୁଅଛୁ ।

ତଦନନ୍ତରର ପଣ୍ଡାମାନେ ପୁଷ୍ପ ଓ ଚନ୍ଦନ ପ୍ରଦାନ କଲେ । ଲାଟ ମହୋଦୟ ସନ୍ତୋଷ ପ୍ରକାଶ କରି ପ୍ରାଚୀରସଂଲଗ୍ନ ପ୍ରାସାଦୋପରି ଆରୋହଣପୂର୍ବକ ପ୍ରାୟ ଅର୍ଦ୍ଧଘଣ୍ଟା ପର୍ଯ୍ୟନ୍ତ ମନ୍ଦିରର କାର୍ଯ୍ୟ ଅବଲୋକନ କରି ପରେ ସିଂହଦ୍ୱାର ଓ ବିନ୍ଦୁସାଗର ପରିଦର୍ଶନ କରିବାକୁ ଗମନ କଲେ । ପ୍ରତ୍ୟାଗମନ ସମୟରେ ଭୁବନେଶ୍ୱର ମନ୍ଦିର ସନ୍ନିକଟ ମଣ୍ଡପରେ ଅବସ୍ଥାନ କରି ଓ ତତ୍ରସ୍ଥ ରାୟ, ରାଧାନାଥ ରାୟବାହାଦୂରଙ୍କ ପୁତ୍ର ଶଶିଭୂଷଣ ରାୟଙ୍କ ପ୍ରଦତ୍ତ ଭିକ୍ଟୋରିଆ ନାମକ ଏକ ଇଂରାଜୀ ପତ୍ରିକା ପତ୍ର ସହ ଗ୍ରହଣ କରି ଖଣ୍ଡଗିରି ରାସ୍ତାଭିମୁଖେ ଗମନ କଲେ । ସନ୍ଧ୍ୟା ଉପସ୍ଥିତ, ସୁତରାଂ ରେଳପର୍ଯ୍ୟନ୍ତ ପଥର ଦୁଇପାର୍ଶ୍ୱ ଗିଲାସ ଓ ଥଳ କମଳ ଗଛମାନ ପୋତାହୋଇ ରୋସନାଇ ହୋଇଥିଲା । ଆଗମନ ଓ ପ୍ରତ୍ୟାଗମନ ସମୟରେ ଅନେକଗୁଡ଼ିଏ ସ୍କୁଲ୍ ବାଳକ ପତାକା ଧରି ମଣ୍ଡପ ସମ୍ମୁଖରେ ଉପସ୍ଥିତ ଥିଲେ । ଏ ଦୃଶ୍ୟ ଅତି ସୁନ୍ଦର ହୋଇଥିଲା । ଆମ୍ଭେମାନେ ଶୁଣି ଆନନ୍ଦିତ ହେଲୁ ଯେ ପଥର ଦୁଇପାର୍ଶ୍ୱ ଆଲୋକ ସଜାଇବା ବ୍ୟୟ ବାବୁ ଶଶିଭୂଷଣ ରାୟ ବହନ କରିଥିଲେ ।

ମନ୍ଦିର ଦେଖିବା କାଳରେ ସରକାରୀ ଇଂଜିନିୟରଙ୍କଦ୍ୱାରା ସଂପ୍ରତି ଯେପର୍ଯ୍ୟନ୍ତ ମରାମତି ହୋଇ ତହିଁକି ଦୋଷଗୁଣ ସଭାରେ ଥିବା ମହାନଦୀ ବିଭାଗର ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଲାଟ ସାହେବଙ୍କୁ ଦେଖେଇ ଦେଇ ଏଣିକି ଯେପରି କାର୍ଯ୍ୟ ହେବ ତାହା କହିଦେଲେ । ସେହି ପ୍ରସଙ୍ଗରେ ମନ୍ଦିର କମିଟିର ମେମ୍ବର ବାବୁ ପ୍ରିୟନାଥ ଚାଟୁର୍ଯ୍ୟାଙ୍କୁ କହିଲେ, "ତୁମ୍ଭେ କହୁଅଛ ଏହି ହିନ୍ଦୁ ମନ୍ଦିର ଅତ୍ୟନ୍ତ ସୁନ୍ଦର ଏବଂ ଏହାର ନିର୍ମାଣ ଶିଳ୍ପକୌଶଳ ଏମନ୍ତ ଚମତ୍କାର ଯେ ସମସ୍ତଙ୍କର ଦେଖିବାର ଯୋଗ୍ୟ । ତୁମ୍ଭେ ଆଶା କର ଯେ ଆମ୍ଭେ ଏହି କୀର୍ତ୍ତିର ସୁରକ୍ଷା ଓ ସଂସ୍କାର ନିମନ୍ତେ ସରକାରରୁ ଅର୍ଥ ଯୋଗାଇବୁ ଅଥଚ ସେ ମନ୍ଦିର ଦେଖିବା କାରଣ ଆମ୍ଭଙ୍କୁ ଭିତରକୁ ଛାଡ଼ିବ ନାହିଁ ଏ କିମିତିକା ବିଚାର ? ପ୍ରିୟନାଥ ବାବୁ ସାଧାରଣ ହିନ୍ଦୁଙ୍କର ମତ ନନେଇ ସହସା ଉତ୍ତର ଦେଇ ପାରିଲେ ନାହିଁ । ପ୍ରଶ୍ନଟି ଯୁକ୍ତି ସଂଗତ, ସନ୍ଦେହ ନାହିଁ କିନ୍ତୁ ତହିଁର ବିଚାର ଆବଶ୍ୟକ ।

## କଟକ

ରେଳଗାଡ଼ି କଟକାଭିମୁଖେ ଯାତ୍ରାକରି ସନ୍ଧ୍ୟା ଘ ୬.୪୫ ମିନିଟ୍ ସମୟରେ କଟକ ଷ୍ଟେସନଠାରେ ଉପସ୍ଥିତ ହେଲା । ଲାଟ୍‌ସାହେବଙ୍କ ଆଗମନ ପ୍ରତୀକ୍ଷାରେ ଅନେକ ନଗରବାସୀ ଷ୍ଟେସନଠାରେ ଉପସ୍ଥିତ ଥିଲେ ଓ ରେଳଷ୍ଟେସନ ଦୀପାବଳୀଦ୍ୱାରା ଆଲୋକିତ ହୋଇଥିବା ଦୃଶ୍ୟ ଅତି ସୁନ୍ଦର ହୋଇଥିଲା । ଲାଟସାହେବଙ୍କ ଗାଡ଼ି ପହୁଞ୍ଚନ୍ତେ ଉପସ୍ଥିତ ନଗରବାସୀମାନେ କରତାଳି ଦ୍ୱାରା ଶୁଭାଗମନର ସମ୍ଭାଷଣ କରିଥିଲେ କିନ୍ତୁ ଲାଟସାହେବଙ୍କ ସାଙ୍ଗରେ ଅନେକ ସାହେବ ଥିବାରୁ ତାଙ୍କୁ କେହି ଚିହ୍ନି ନପାରି ହର୍ଷ ବିଷାଦରେ ଫେରି ଆସିଲେ । ପ୍ରାୟ ତିନିଘଣ୍ଟା କାଳ ଖାସ୍ ଗାଡ଼ି

ଷ୍ଟେସନ୍‌ରେ ରହି କଲିକତା ଯାତ୍ରାକଲା ଏବଂ ତହିଁ ଆରଦିନ ଅପରାହ୍ଣ ୪ ଘଣ୍ଟାବେଳେ ହାୱଡ଼ା ଷ୍ଟେସନରେ ଉପସ୍ଥିତ ହେଲା । ସେଠାରେ ଏବଂ କଲିକତାର ଗଭର୍ଣ୍ଣମେଣ୍ଟ ପ୍ରାସାଦରେ ବିଧିମତେ ଅଭ୍ୟର୍ଥନାର ଆୟୋଜନ ହୋଇଥିଲା ଏବଂ ଲାଟ ମହୋଦୟ ଆନନ୍ଦ ଏବଂ କୁଶଳରେ କଲିକତାର ଲାଟ ଭବନରେ ପ୍ରବେଶ କଲେ ।

ଓଡ଼ିଶାର ଏହି ପରିଦର୍ଶନ କାଳରେ ଲର୍ଡ଼ କର୍ଜନ ବିସ୍ମୟାଭିଭୂତ ହୋଇ ସନ୍ଦର୍ଶନ କରିଥିଲେ ଏ ଜାତିର ଅପୂର୍ବ କଳା ଭାସ୍କର୍ଯ୍ୟ ବିମଣ୍ଡିତ, ଅତୁଳନୀୟ କାରୁକାର୍ଯ୍ୟ ସମ୍ବଳିତ ମନ୍ଦିର ରାଶି, ଯହିଁରେ ଓଡ଼ିଆ ବିନ୍ଧାଣିର କଳାପ୍ରବଣତାର ଦୀପ୍ତପ୍ରତିଭା ଝଲମଲ କରି ଉଠୁଥିଲା । ସେ ଗଭୀର ଭାବେ ପ୍ରଭାବିତ ହେଲେ ଏବଂ ଓଡ଼ିଆ ଜାତି ପ୍ରତି ତାଙ୍କର ଜାତ ହୋଇଥିଲା ଗଭୀର ମମତ୍ୱବୋଧ । ସେ ପ୍ରତିଶ୍ରୁତିବଦ୍ଧ ହେଲେ ଓଡ଼ିଆ ଜାତିର ବିଖଣ୍ଡିତା ଓ ବିଚ୍ଛିନ୍ନତାର ସମାଧାନ କରିବାପାଇଁ ।

ବଙ୍ଗଳା ପ୍ରଦେଶର ବ୍ୟବସ୍ଥାପକ ସଭାର ଜଣେ ପ୍ରଭାବଶାଳୀ ସଦସ୍ୟ ରୂପେ ଓଡ଼ିଆ ଜାତିର ସମସ୍ୟାର ସମାଧାନ ଲାଗି ମଧୁସୂଦନ ଲର୍ଡ଼ କର୍ଜନଙ୍କୁ ବହୁବାର ସାକ୍ଷାତ କରିଥିଲେ । ଏ ସମସ୍ତ ଉଦ୍ୟମର ଅବଶେଷରେ ଲର୍ଡ଼ କର୍ଜନ ପ୍ରକାଶ କରିଥିଲେ ସେ ସମୟରେ ସମଗ୍ର ଭାରତ ଲାଗି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ରିସ୍‌ଲେ ସର୍କୁଲାର ୧୯୦୩ ସାଲ ଡିସେମ୍ବର ୩ ତାରିଖରେ, ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଆହୂତ ହେବାର ପ୍ରାୟ ଏକ ମାସ ପୂର୍ବରୁ । ଏଥିରେ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ସହିତ ସଂଯୁକ୍ତ ଥିଲା ବଙ୍ଗଭଙ୍ଗର ପରିକଳ୍ପନା । ଲର୍ଡ଼ କର୍ଜନ ୧୯୦୫ ସାଲ ନଭେମ୍ବର ୧୬ ତାରିଖରେ ଭାରତ ଛାଡ଼ିବାର ଏକ ମାସ ପୂର୍ବରୁ ଏହାକୁ କାର୍ଯ୍ୟକାରୀ କରିଥିଲେ ଅକ୍ଟୋବର ୧୬ ତାରିଖରେ ଏକ ବିଶେଷ ଘୋଷଣାନାମା ମାଧ୍ୟମରେ ।

ଏହାର ପରିଣାମରେ ସମ୍ବଲପୁର ଜିଲ୍ଲା (ପଦ୍ମପୁର ଓ କଳାହାଣ୍ଡି, ପାଟଣା, ସୋନପୁର ବାମଣ୍ଡା, ରେଢ଼ାଖୋଲ, ଗଡ଼ଜାତ ଏବଂ ବିହାର ଛୋଟନାଗପୁର ଡିଭିଜନକୁ ଗାଙ୍ଗପୁର, ବଣେଇ (ପରେ ଷଢ଼େଇକଳା ଏବଂ ଖରସୁଆଁ) ଗଡ଼ଜାତ ଆଦି ଓଡ଼ିଶା ଡିଭିଜନ ସହିତ ସାମିଲ ହେଲା । ଏହାଥିଲା ପଶ୍ଚିମାଞ୍ଚଳ ଓଡ଼ିଶା ସହିତ ପୂର୍ବ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ ମିଶ୍ରଣ । ପରେ ୧୯୩୬ ସାଲରେ ଖଡ଼ିଆଳ ଜମିଦାରି ମଧ୍ୟପ୍ରଦେଶରୁ ଆସି ଓଡ଼ିଶା ସହିତ ସଂଯୁକ୍ତ ହେଲା । ମାତ୍ର ଓଡ଼ିଶାର ଦକ୍ଷିଣାଞ୍ଚଳ ମିଶ୍ରଣ, ମାଡ୍ରାସ ସରକାରଙ୍କ ଦୃଢ଼ ପ୍ରତିବାଦ ଯୋଗୁଁ ୧୯୦୫ ସାଲରେ ସଂଘଟିତ ହୋଇ ପାରି ନଥିଲା, ଯାହାପାଇଁ ମଧୁସୂଦନଙ୍କୁ ଆଉ ତିରିଶି ବର୍ଷ ଧରି ସଂଗ୍ରାମ କରିବାକୁ ପଡ଼ିଥିଲା । ଆଉ ୧୯୩୬ରେ ଏହି ରିସ୍‌ଲେ ସାର୍କୁଲାର ଆଧାରରେ ମଧ୍ୟ ଦକ୍ଷିଣ ଓଡ଼ିଶାର ମିଶ୍ରଣ ହୋଇଥିଲା ।

ତେଣୁ ଊନବିଂଶ ଶତାବ୍ଦୀର ଶେଷ ପାଦରେ ଲର୍ଡ଼ କର୍ଜନଙ୍କ ପୁରୀ ଓ ଭୁବନେଶ୍ୱର ପରିଦର୍ଶନ, ଓଡ଼ିଶା ପ୍ରଦେଶର ଗଠନ ଲାଗି ସୁଦୃଢ଼ ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲା । ଏଥିଲାଗି ମଧୁସୂଦନଙ୍କର ଭୂମିକା ଥିଲା ଅବିସ୍ମରଣୀୟ । ଲର୍ଡ଼ କର୍ଜନଙ୍କ ପରି ଦୃଢ଼ ଅନମନୀୟ ଅଭିଜାତ ଓ ବିଦ୍‌ବତ୍ତାସମ୍ପନ୍ନ ବ୍ୟକ୍ତିତ୍ୱ ସହିତ ଆନ୍ତରିକ ଘନିଷ୍ଠ ସମ୍ପର୍କ ସ୍ଥାପନ କରି ତାହାଙ୍କୁ ଗଭୀର ଭାବେ

ପ୍ରଭାବିତ କରିବାର ଅଦ୍‌ଭୁତ କ୍ଷମତା ଥିଲା ମଧୁସୂଦନଙ୍କର । ତେଣୁ ପ୍ରକୃତରେ ଲର୍ଡ଼ କର୍ଜନ ଥିଲେ ଓଡ଼ିଶା ପ୍ରଦେଶର ଅନ୍ୟତମ ନିର୍ମାତା ଏବଂ ମଧୁସୂଦନ ଥିଲେ ଏ ଜାତିର ପ୍ରାଣ ପ୍ରତିଷ୍ଠାତା ।

ଏହା ହିଁ ଗରିମାମୟ ଦିବସ ୧୬.୧୨.୧୯୦୦ର ମହତ୍ତ୍ୱ । ପ୍ରକୃତରେ ଶହେ ବର୍ଷ ପୂର୍ବେ ଏହି ପ୍ରଖର ପ୍ରୋଜ୍ଜ୍ୱଳ ଦିବସରେ ଶ୍ରୀକ୍ଷେତ୍ରରୁ ହିଁ ଶୁଭାରମ୍ଭ ହୋଇଥିଲା, ନବୀନ ଓଡ଼ିଶାର ସଂଯୋଜନା ଯାହା ବହନ କରିଥିଲା ଏ ଜାତିର ଅନ୍ତରାତ୍ମାର ସ୍ନାୟୁକେନ୍ଦ୍ର ଶ୍ରୀ ଜଗନ୍ନାଥଙ୍କର କଲ୍ୟାଣ ପ୍ରଦ ମାଙ୍ଗଳିକ ଆଶୀର୍ବାଦ ।

## ଏକ ଘଟଣା

ଲର୍ଡ଼ କର୍ଜନ ତାଙ୍କର ତାରୁଣ୍ୟର ପ୍ରଖର ଦୀପ୍ତିମନ୍ତ କାଳରେ ଭାରତ ଭ୍ରମଣ କରି ଏ ଦେଶର ଅତ୍ୟନ୍ତ ସୂକ୍ଷ୍ମାତିସୂକ୍ଷ୍ମ ଅନବଦ୍ୟ କଳାଭାସ୍କର୍ଯ୍ୟ ସମ୍ବଳିତ ସ୍ଥାପତ୍ୟ ଶିଳ୍ପର ପ୍ରଗାଢ଼ ଅନୁଧ୍ୟାନ କରିଥିଲେ । ୧୯୦୦ ସାଲ ଡିସେମ୍ବର ୧୬ ତାରିଖରେ ସେହି ତାତ୍ପର୍ଯ୍ୟପୂର୍ଣ୍ଣ ସାୟାହ୍ନରେ, ଲିଙ୍ଗରାଜ ମନ୍ଦିରର ଚତୁଃପାର୍ଶ୍ୱରେ ବଡ଼ଲାଟ ଲର୍ଡ଼ କର୍ଜନଙ୍କର ପରିଭ୍ରମଣ କାଳରେ ପ୍ରଖ୍ୟାତ ଶିଳ୍ପୀ ଶିରୋମଣି ମହାରଣା ନିଭୃତ ନିକାଞ୍ଚନ ସ୍ଥଳୀରେ ଗୋଟିଏ ଅନନ୍ୟ ମୂର୍ତ୍ତି ନିର୍ମାଣରେ ବ୍ରତୀ ରହିଥିଲେ । ବଡ଼ଲାଟ ଲର୍ଡ଼ କର୍ଜନଙ୍କର ପରିଦର୍ଶନର ହୋହାଲ୍ଲାରୁ ଏକାନ୍ତ ଭାବେ ମୁକ୍ତ ଆଉ ବିରତ ରହି ସ୍ତବ୍ଧାୟିତ ଧ୍ୟାନସ୍ଥ ମୁଦ୍ରାରେ ମୂର୍ତ୍ତିକୁ ଉତ୍‌କୀର୍ଣ୍ଣ କରିବା ପାଇଁ ମଗ୍ନ ରହିଥିଲେ । ତାହାଙ୍କର ମୂର୍ତ୍ତି ନିର୍ମାଣରେ ସେହି ଅନବଦ୍ୟ କଳାନୈପୁଣ୍ୟରେ ଆକର୍ଷିତ ହୋଇ ଲର୍ଡ଼ କର୍ଜନ ସେହିସ୍ଥଳରେ ଦଣ୍ଡେ ଅଟକି ରହିଥିଲେ । ମାତ୍ର ଶିଳ୍ପୀ ଶିରୋମଣି ଏହି ବିଷୟରେ ଅବହିତ ନଥାଇ ତାହାଙ୍କର ମୂର୍ତ୍ତି ନିର୍ମାଣର ଏକାନ୍ତ ଭାବେ ନିମଗ୍ନ, ନିବିଷ୍ଟ ଆଉ ନିରୁପଦ୍ରବିତ ରହିଥିଲେ । ତାହାଙ୍କର ଧ୍ୟାନ ଆକର୍ଷଣ କରାଯିବା ପରେ ଲର୍ଡ଼ କର୍ଜନ ଶିଳ୍ପୀ ଶିରୋମଣିଙ୍କର ଅନବଦ୍ୟ କଳାକୃତିକୁ ଉଚ୍ଛ୍ୱସିତ ପ୍ରଶଂସା ସହିତ ପ୍ରଶସ୍ତି ଅଜାଡ଼ି ଦେଇ ପ୍ରଶ୍ନ କଲେ, ''ହେ ଶିଳ୍ପୀ ! ତୁମ୍ଭର ମାସିକ ଉପାର୍ଜନ କେତେ ?'' ଶିଳ୍ପୀଙ୍କର ଉତ୍ତର ଥିଲା, ''ମୁଁ ପୁରୁଷାନୁକ୍ରମିକ ଭାବେ ଏହି ମନ୍ଦିରର ଶିଳ୍ପୀ ରହି ଆସିଛି । ମୁଁ ଏହି ମନ୍ଦିରରୁ ଯାହା ପ୍ରାପ୍ୟ ପାଏ, ତାହା ମାସିକ ଦଶଟଙ୍କା ମଧ୍ୟରେ, ମାତ୍ର ମୁଁ ଏଥିରେ ପରିତୃପ୍ତ ।''

ସେତେବେଳକୁ କଲିକତାରେ କିଛି ପ୍ରାସାଦର ସୌନ୍ଦର୍ଯୀକରଣ ଯୋଜନା କର୍ଜନଙ୍କର ଚିନ୍ତା ରାଜ୍ୟକୁ ଆନ୍ଦୋଳିତ କରୁଥାଏ । ତେଣୁ କର୍ଜନ କହିଲେ, ''ହେ ଶିଳ୍ପୀ ! ମୁଁ ତୁମକୁ ମାସିକ ଶହେଟଙ୍କା ଦରମାରେ କଲିକତାରେ ନିଯୁକ୍ତି ପ୍ରଦାନ କରୁଛି । ଶୀଘ୍ର ଯାଇ ଯୋଗଦାନ କର ।''

ଶିଳ୍ପୀଙ୍କର ତତ୍‌କ୍ଷଣାତ୍ ଉତ୍ତର ଥିଲା, ''ହେ ମହାଭାଗ ! ମୁଁ ଚିରକାଳ ଲାଗି ବଂଶାନୁକ୍ରମିକ ଭାବେ ପ୍ରଭୁ ଲିଙ୍ଗରାଜଙ୍କର ଆଶ୍ରିତ । ଏହା ହିଁ ମୋ ଜୀବନର ତାତ୍ପର୍ଯ୍ୟ ଆଉ ନିବେଦିତ ଲକ୍ଷ୍ୟ । ମୋପାଇଁ ଏକାନ୍ତ ଉଦ୍ଦିଷ୍ଟ ଏହି ମହାନ କାର୍ଯ୍ୟରେ ନିବିଷ୍ଟ ରହିବା ବ୍ୟତୀତ ମୁଁ ଅନ୍ୟତ୍ର ଯାଇ ପାରିବି ନାହିଁ । କ୍ଷମା ପ୍ରଦାନ କରନ୍ତୁ ।''

ଲର୍ଡ଼ କର୍ଜନ ମନ୍ତ୍ରମୁଗ୍ଧ ଆଉ ସମ୍ମୋହିତ ହୋଇ ଶିଳ୍ପୀ ଶିରୋମଣି ମହାରଣାଙ୍କର ପ୍ରଦତ୍ତ ଏହି ଉତ୍ତର ଶୁଣୁଥିଲେ। (ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଏକ ସାକ୍ଷାତକାର ତଥ୍ୟରୁ ଗୃହୀତ ଯାହା ଭଞ୍ଜ ପ୍ରଦୀପରେ ପ୍ରକାଶିତ ହୋଇଥିଲା ।)

ଏଥିରୁ ଜଣାଯାଏ, କିଭଳି ଭାବରେ ଲର୍ଡ଼ କର୍ଜନଙ୍କୁ ପ୍ରଭାବିତ କରିଥିଲା ମନ୍ଦିରମାଳିନୀ ପୁରୀ ଓ ଭୁବନେଶ୍ୱରର କଳାଭାସ୍କର୍ଯ୍ୟ ବିମଣ୍ଡିତ ନଗରର ପରିଦର୍ଶନ । ସେ ଭାଂଗି ଅଜାଡ଼ି ହୋଇ ପଡୁଥିବା ଅନ୍ୟାନ୍ୟ କୀର୍ତ୍ତିମାନ କୋଣାର୍କ ମନ୍ଦିରର ସଂରକ୍ଷଣପାଇଁ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସଂସ୍ଥାକୁ ଜୀବନ୍ୟାସ କେବଳ ଦେଇ ନଥିଲେ, ଭାରତୀୟ ପ୍ରାଚୀନ ସ୍ଥାପତ୍ୟ କଳାର ସଂରକ୍ଷଣପାଇଁ ମନୁମେଣ୍ଟସ୍ ଏକ୍ଟ ପ୍ରଣୟନ କରିଥିଲେ ୧୯୦୪ ସାଲରେ।

ଏହି ସମସ୍ତର ଉର୍ଦ୍ଧ୍ୱରେ ଓଡ଼ିଶାର ସଂସ୍ଥାପନ ତାଙ୍କ ଜୀବନର ଏକ ମହାନ ବ୍ରତ ଥିଲା । ଅବଶ୍ୟ ପଶ୍ଚାତରେ ରହିଥିଲା ମଧୁସୂଦନଙ୍କର ଏକାନ୍ତ ଉତ୍ପ୍ରେକ୍ଷା ଆଉ ବିରାମହୀନ ପ୍ରୋତ୍ସାହନ ।



# ସମ୍ବଲପୁରରେ ସାର୍ ଏଣ୍ଡ୍ରୁ ଫ୍ରେଜର

ମଧ୍ୟପ୍ରଦେଶର ଚିଫ୍ କମିଶନର ସାର୍ ଏଣ୍ଡ୍ରୁ ଫ୍ରେଜର ଓଡ଼ିଆ ଭାଷା ଉଚ୍ଛେଦ ସଂପର୍କରେ ଅନୁସନ୍ଧାନ କରିବାଲାଗି ୧୯୦୧ ସେପ୍ଟେମ୍ବର ୨୬ ତାରିଖରୁ ୩୦ ତାରିଖ ପର୍ଯ୍ୟନ୍ତ ସମ୍ବଲପୁର ଜିଲ୍ଲା ପରିଦର୍ଶନ କରିଥିଲେ ।

୧୫.୧.୧୮୯୫ରେ ମଧ୍ୟପ୍ରଦେଶ ସରକାରଙ୍କ ପକ୍ଷରୁ ଓଡ଼ିଆ ଭାଷା ଉଚ୍ଛେଦ କରିବାପାଇଁ ଘୋଷଣାନାମା ପ୍ରକାଶ ପାଇବା ପରେ ୧୧.୨.୧୮୯୫ରେ ଧରଣୀଧର ମିଶ୍ରଙ୍କ ନେତୃତ୍ୱରେ ଓ ୧୩.୬.୧୮୯୫ରେ ସୋମନାଥ ବାବୁଙ୍କ ନେତୃତ୍ୱରେ ପ୍ରତିବାଦ ସଭା ହୋଇ ୫.୭.୧୮୯୫ରେ ବଡ଼ଲାଟଙ୍କୁ ମେମୋରାଣ୍ଡମ୍ ପ୍ରେରିତ ହୋଇଥିଲା । ସେହିପରି କଟକରେ ଉତ୍କଳ ସଭାର ସଭାପତି ମଧୁସୂଦନ ଦାସ ଉତ୍କଳଦୀପିକା ପତ୍ରିକାରେ ଫେବ୍ରୁଆରିଠାରୁ ମଇ ମାସ ମଧ୍ୟରେ "ମଧ୍ୟପ୍ରଦେଶରୁ ଓଡ଼ିଆ ଭାଷା ନିର୍ବାସନ ନାମରେ ସୁଦୀର୍ଘ ସାତଗୋଟି ଦୀର୍ଘ ସତୁରୀ ପୃଷ୍ଠାର ନିବନ୍ଧ ଇଂରାଜୀରେ ଲେଖି ବ୍ରିଟିଶ ପ୍ରଶାସନର ଦୃଷ୍ଟି ଆକର୍ଷଣ କରିବା ସହିତ ୨୦.୬.୧୮୯୫ରେ ବଡ଼ଲାଟ ଲର୍ଡ଼ ଏଲଗିନ୍‌ଙ୍କ ନିକଟକୁ ମେମୋରାଣ୍ଡମ୍ ପଠାଇଥିଲେ ।

୧୮୯୬ରୁ ସମ୍ବଲପୁରରେ ହିନ୍ଦୀଭାଷା ପ୍ରଚଳିତ ହେବା ପରେ ୧୮୯୯ରେ ୮୨ ଗୋଟି ଓଡ଼ିଆ ପ୍ରାଥମିକ ବିଦ୍ୟାଳୟର ଉଚ୍ଛେଦ, ତୃତୀୟ ଶ୍ରେଣୀରୁ ହିନ୍ଦୀ ବାଧ୍ୟତାମୂଳକ ହେବା, ହିନ୍ଦୀ ଭାଷାରେ ସମନ, ଦଲିଲ୍, ଦସ୍ତାବିଜ୍ ଲେଖାଯିବା ପରେ ୧୯୦୧ ସାଲ ଜାନୁଆରି ମାସରେ ମଦନମୋହନ ମିଶ୍ରଙ୍କ ନେତୃତ୍ୱରେ ଦ୍ୱିତୀୟ ମେମୋରାଣ୍ଡମ୍ ବଡ଼ଲାଟଙ୍କୁ ପ୍ରେରିତ ହୋଇଥିଲା । ମଧୁସୂଦନଙ୍କର ଘନିଷ୍ଠ ସଂପର୍କଯୋଗୁଁ ଲର୍ଡ଼ କର୍ଜନ ସମ୍ବଲପୁର ଓଡ଼ିଆ ଭାଷା ସମସ୍ୟା ସହିତ ଏପରି ସଂପର୍କିତ ଥିଲେ ଯେ ମଦନ ମୋହନ ମିଶ୍ରଙ୍କର ଦ୍ୱିତୀୟ ପ୍ରତିବାଦ ପତ୍ର ପାଇବା ପରେ ତୁରନ୍ତ ଅନୁସନ୍ଧାନପାଇଁ କର୍ଜନ ଆଦେଶ ଦେଇଥିଲେ ।

ଦ୍ୱିତୀୟ ମେମୋରାଣ୍ଡମ ପଠାଇବା ପରେ ବ୍ରଜମୋହନ ପଟ୍ଟନାୟକଙ୍କ ନେତୃତ୍ୱରେ ୧୯୦୧ରେ ଏକ ଓଡ଼ିଆ ପ୍ରତିନିଧି ଦଳ ନାଗପୁରି ଯାଇ ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ସାର୍ ଏଣ୍ଡ୍ରୁ ଫ୍ରେଜରଙ୍କୁ ଜୁଲାଇ ମାସରେ ଭେଟି ଦାବି ଜଣାଇଥିଲେ । ଏଣ୍ଡ୍ରୁ ଫ୍ରେଜର ସେପ୍ଟେମ୍ବର ମାସରେ ସିମଳା ଯିବା ପରେ ସେଠାରେ ବଡ଼ଲାଟଙ୍କୁ ଜଣାଇ ପ୍ରତିକାର କରିବେ ବୋଲି ଆଶ୍ୱାସନା ପ୍ରଦାନ କରିଥିଲେ ।

ଏଣେ ମଧୁସୂଦନ ୧୯୦୧ ସାଲର ସେପ୍ଟେମ୍ବର ମାସରେ ସିମଳାଠାରେ ଅନୁଷ୍ଠିତ ସର୍ବଭାରତୀୟ ସମ୍ମିଳନୀରେ ଲର୍ଡ଼ କର୍ଜନଙ୍କ ସହିତ ଚିଫ୍ କମିଶନର ଏଣ୍ଡ୍ରୁ ଫ୍ରେଜରଙ୍କର ସାକ୍ଷାତ ହେବା ଜାଣି ସମ୍ବଲପୁର ଭାଷା ସଂକ୍ରାନ୍ତ ସମସ୍ତ କାଗଜପତ୍ର ଅଗଷ୍ଟ ମାସ ଶେଷରେ ପଠାଇଦେଇ, ବଡ଼ଲାଟଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ୱାଲ୍ଟର ଲରେନ୍ସଙ୍କୁ ଲର୍ଡ଼ କର୍ଜନ ଓ ଫ୍ରେଜରଙ୍କ ମଧ୍ୟରେ ଏକ ଆଲୋଚନା ଆରମ୍ଭ କରାଇବାପାଇଁ ଅନୁରୋଧ କରିଥିଲେ । ଏହା ଅଗଷ୍ଟ ଶେଷର ଘଟଣା । ଏହି ସମୟରେ ସମ୍ବଲପୁରରୁ ପ୍ରଥମଥର ବଡ଼ଲାଟଙ୍କୁ ଭେଟିବା ପାଇଁ ସିମଳା ଯାତ୍ରା କରିଥିଲେ ମଧ୍ୟ ଅନ୍ୟ ଏକ ଗୌଣ ଉଦ୍ଦେଶ୍ୟ ଥିଲା ପିଣ୍ଡଦାନ, ଶ୍ରାଦ୍ଧ, ଅସ୍ଥି ବିସର୍ଜନ ଓ ତୀର୍ଥ ଭ୍ରମଣ । ଏଣୁ ମଧୁସୂଦନଙ୍କର ସେମାନଙ୍କର ସହଯାତ୍ରୀ ହେବା ବୋଧହୁଏ ସମ୍ଭବପର ନଥିଲା । ଏମାନେ ସିମଳା ଯିବା ଅବଗତ ହେବା ପରେ ମଧୁସୂଦନ ସାତଟଙ୍କା ଖର୍ଚ୍ଚ କରି ବଡ଼ଲାଟଙ୍କୁ ଏକ ଟେଲିଗ୍ରାମ ପଠାଇଥିଲେ ।

ସମ୍ବଲପୁର ଭାଷା ଆନ୍ଦୋଳନ ଓଡ଼ିଶା ଇତିହାସର ଏକ ମାର୍ମିକ ଗୌରବୋଜ୍ଜ୍ୱଳ ଅଧ୍ୟାୟ । ମାତୃଭାଷା ବିଚ୍ଛେଦରେ ୧୮୯୫ ସାଲର ସମ୍ବଲପୁର ହିତୈଷିଣୀରେ ଯେଉଁ ଅସଂଖ୍ୟ ଆର୍ତ୍ତନାଦ ବହନ କରୁଥିବା ବ୍ୟଥା ବିଦଗ୍ଧ କବିତାମାନ ପ୍ରକାଶିତ ହୋଇଥିଲା, ତାହା ଉତ୍ତାଳ ମାନବୀୟ ମୂଲ୍ୟବୋଧରେ ମହିମାନ୍ୱିତ ଥିଲା । ଏଥିପାଇଁ କବି ଗଙ୍ଗାଧର ମେହେର, ଧରଣୀଧର ମିଶ୍ର, ସୋମନାଥ ଦାସ, ମଦନ ମୋହନ ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୁପକାର, ଶ୍ରୀପତି ମିଶ୍ର, ବୈକୁଣ୍ଠ ନାଥ ପୂଜାରୀ ଓ ଚନ୍ଦ୍ରଶେଖର ବେହେରାଙ୍କର ଭୂମିକା ଅତ୍ୟନ୍ତ ମହିମାଦୀପ୍ତ ଓ ଗୁରୁତ୍ୱପୂର୍ଣ୍ଣ ।

ଏହି ସମସ୍ତ ବିଷୟ ପରିପ୍ରେକ୍ଷୀରେ ମଧ୍ୟପ୍ରଦେଶର ଚିଫ୍ କମିଶନର୍ ଏଣ୍ଡ୍ରୁ ଫ୍ରେଜରଙ୍କ ୧୯୦୧ ସାଲର ସେପ୍ଟେମ୍ବର ୨୬ରୁ ୩୦ ତାରିଖ ମଧ୍ୟରେ ସମ୍ବଲପୁର ପରିଦର୍ଶନ ସଂପର୍କରେ ସମ୍ବଲପୁର ହିତୈଷିଣୀରେ ୧୬.୧୦.୧୯୦୧ରେ ଓ ୩୦.୧୦.୧୯୦୧ରେ ପ୍ରକାଶିତ ଦୁଇଟି ବିବରଣୀ ଏଠାରେ ସନ୍ନିବେଶିତ କରାଗଲା ।

ସମ୍ବଲପୁର ହିତୈଷିଣୀ (୧୬.୧୦.୧୯୦୧)

## ଚିଫ୍ କମିଶନ୍‌ର ଏବଂ ଓଡ଼ିଆ ଭାଷା

୨୬ ତାରିଖ ପ୍ରାତଃ ୧୦ ଘଣ୍ଟା ସମୟରେ ଲେଭେଲ୍ କ୍ରସିଙ୍ଗ୍ ନିକଟରୁ ରାଜପୁରୁଷମାନେ ଏବଂ ସମ୍ବଲପୁରର ସକଳ ଶ୍ରେଣୀର ଲୋକମାନେ ଚିଫ୍ କମିଶନର ସାହେବଙ୍କୁ ଅଭ୍ୟର୍ଥନା କରିବା ସକାଶେ ଏକତ୍ରିତ ହେଲେ । ପୋଲିସ୍‌ର ଗର୍ଜନ ତର୍ଜନକୁ ଭୃକ୍ଷେପ ନକରି ଲୋକମାନେ ସାହେବ ମହୋଦୟଙ୍କର ଦର୍ଶନ କରିବା ସକାଶେ ଅଗ୍ରସର ହେଲେ । ରେଳ ସଡ଼କର ଅବ୍ୟବହିତ ପରେ ରାଜପୁରୁଷ ଏବଂ ଡିଷ୍ଟ୍ରିକ୍ଟ କାଉନ୍‌ସିଲ୍ ଓ ଲୋକାଲ୍ ବୋର୍ଡ଼ ମେମ୍ବର ଦୁଇଶ୍ରେଣୀରେ ଦଣ୍ଡାୟମାନ ହେଲେ । ମନୋହର ପୋଷାକ ପରିହିତ ସୈନିକ ଓ ତତ୍‌ପରେ ସମ୍ବଲପୁରର ଅଧିବାସୀମାନେ ସଡ଼କର ଉଭୟପାର୍ଶ୍ୱରେ ଦଣ୍ଡାୟମାନ ଥିଲେ ।

ଷ୍ଟେସନଠାରୁ ସାହେବଙ୍କର ନିର୍ଦ୍ଦିଷ୍ଟ ନିବାସ ପର୍ଯ୍ୟନ୍ତ ଉଭୟ ପାର୍ଶ୍ୱରେ ପତାକାଯୁକ୍ତ ତୋରଣ ଗ୍ରଥିତ ହୋଇଥିଲା । ତତ୍‌ପାର୍ଶ୍ୱରେ କନଷ୍ଟେବଲ୍ ସମୂହ ଦଣ୍ଡାୟମାନ ଥିଲେ । ଗାଡ଼ିର ଘର୍ଘର ଶବ୍ଦ ଶ୍ରୁତିଗୋଚର ହେବାକୁ ଲାଗିଲା । ଏବଂ ଅବିଳମ୍ବେ ଗାଡ଼ି ଲେଭେଲ୍ କ୍ରସିଂଠାରେ ଦଣ୍ଡାୟମାନ ହେଲା । ଏଣେ ଆତସବାଜି ସବୁ ଗୁଡ୍ରୁମ୍ ଗୁଡ୍ରୁମ୍ ଶବ୍ଦକରି ଉତ୍‌ଥିତ ହେଲା । ଚିଫ୍ କମିଶନର୍ ସାହେବ ଗାଡ଼ିରୁ ଅବତରଣ କରି ସମସ୍ତଙ୍କର ଅଭିବାଦନ ଗ୍ରହଣ କଲେ । ଏଣେ ବିଗୁଲ୍ ବାଜି ଉଠିଲା । ତତ୍‌ପରେ ଉପସ୍ଥିତ ସଭ୍ୟ ଏବଂ ଅମଲାମାନଙ୍କ ପରିଚୟ ପ୍ରାପ୍ତ ହୋଇ ଚିଫ୍ କମିଶନର୍ ସାହେବ ବସାକୁ ପ୍ରସ୍ଥାନ କରିବାକୁ ଲାଗିଲେ । ଓଡ଼ିଆମାନେ ସେହି ସମୟରେ ଉଚ୍ଚସ୍ୱରରେ କହିଲେ ଯେ, "ଚିଫ୍ କମିଶନର୍ ସାହେବଙ୍କର ଜୟହେଉ, ସମ୍ବଲପୁର ଓଡ଼ିଆ ହେଉ ।" ସାହେବ ସଲାମ ପ୍ରତ୍ୟର୍ପଣ କରିକରି ଓଡ଼ିଆମାନଙ୍କର ହର୍ଷ ଓ ବିଷାଦ ରୋଳ ମଧ୍ୟରେ ସାର୍କିଟ୍ ହାଉସ୍ ଅଭିମୁଖେ ଅଗ୍ରସର ହେଲେ ।

ଓଡ଼ିଆ ଭାଷାର ବିଲୋପ ସାଧନ ଜନିତ ଦୁଃଖ ସମସ୍ତଙ୍କୁ ବ୍ୟାକୁଳିତ କରିଥିଲା । ସମସ୍ତଙ୍କର ହୃଦୟ ଯେପରି ଦୁଃଖରେ ଭାରାକ୍ରାନ୍ତ ଥିଲା । ବନ୍ୟାଜଳରେ ବ୍ୟାକୁଳ ପୁଷ୍କରିଣୀ ଯେପରି ସ୍ୱୀୟ ବକ୍ଷରେ ଛିଦ୍ର ଅନ୍ୱେଷଣ କରୁଥାଏ, ତଦ୍ରୂପ ମାତୃଭାଷା ବିତାଡ଼ନ ଜନିତ ଦୁଃଖରେ ଭାରାକ୍ରାନ୍ତ ଓଡ଼ିଆ ସହୃଦୟ ବନ୍ଧୁ ଖୋଜୁଥିଲା । ସହରର ଚତୁର୍ଦ୍ଦିଗରେ ଘରେଘରେ, ବାଟରେ, ହାଟରେ, ଦୋକାନରେ, ଧନୀ ଦରିଦ୍ର ବାଳକ, ବୃଦ୍ଧ, ସଦ୍‌ବଂଶଜ ଚଣ୍ଡାଳ ଓଡ଼ିଆ ନିମନ୍ତେ ମର୍ମାନ୍ତିକ ଦୁଃଖ ପ୍ରକାଶ କରୁଥିଲେ । ଦିବସର ସକାଳ ସମୟରେ, ରାତ୍ରିର ଅଧିକାଂଶ ସମୟରେ ଦଳଦଳ ଓଡ଼ିଆ ଚିଫ୍ କମିଶନର୍ ସାହେବଙ୍କୁ ଅପେକ୍ଷାକରି ଦଣ୍ଡାୟମାନ ଥିଲେ । ଗ୍ରାମବାସୀମାନଙ୍କର ଦୁଃଖ ତରଙ୍ଗର ସ୍ରୋତ କୌଣସି ପ୍ରକାର ନ୍ୟୂନ ନଥିଲା ।

ଚିଫ୍ କମିଶନ୍‌ର ସାହେବ ଅନୁସନ୍ଧାନ ଆରମ୍ଭ କଲେ । ସହରର ଅନେକ ବ୍ୟକ୍ତି ନିମନ୍ତ୍ରିତ ହେଲେ ଓ ସେମାନଙ୍କୁ ଚିଫ୍ କମିଶନର୍ ସାହେବ ଭାଷା ସଂକ୍ରାନ୍ତରେ ଅନେକ ପଶ୍ନ ଜିଜ୍ଞାସା କଲେ । ତତ୍‌ପରେ ସାହେବ ଅନୁସନ୍ଧାନ ନିମନ୍ତେ ଭ୍ରମଣ କରିବାକୁ ଲାଗିଲେ । କେବେ ମଫସଲରେ, କେବେ ସହରରେ, କେବେ ଅଶ୍ୱପୃଷ୍ଠରେ ତ କେବେ ଗାଡ଼ିରେ, କେବ ପ୍ରାତଃକାଳରେ, କେବେ

ସନ୍ଧ୍ୟା ସମୟରେ, କେବେ ସୁକୋମଳ କ୍ରୋଡ଼ରେ ବର୍ଦ୍ଧିତ ଧନୀ ବ୍ୟକ୍ତିମାନଙ୍କଠାରୁ , କେବେ ଦାରିଦ୍ର୍ୟର ନିଷ୍ପେଷଣରେ ନିଷ୍ପେଷିତ ଜୀର୍ଣ୍ଣ ବସ୍ତ୍ର ପରିହିତ ଦରିଦ୍ରଙ୍କଠାରୁ, କେବେ ଆଧୁନିକ ଶିକ୍ଷାପ୍ରାପ୍ତ ଉପାଧିଧାରୀ ଯୁବକଙ୍କଠାରୁ, କେବେ ପ୍ରାଚୀନ ଧର୍ମରେ ଶିକ୍ଷିତ ରକ୍ଷଣଶୀଳ ପଣ୍ଡିତଙ୍କଠାରୁ, କେବେ ପ୍ରତାରଣାରେ ଆପାତ ମଧୁର ବଚନରେ ମୋହିତ ସରଳମନା କୃଷକଙ୍କଠାରୁ ତଥ୍ୟ ସଂଗ୍ରହ କରିବାକୁ ଲାଗିଲେ । ଚିଫ୍ କମିଶନ୍‌ର ସାହେବ କେତେବେଳେ କି ଉଦ୍ଦେଶ୍ୟରେ ବହିର୍ଗତ ହେଉଥିଲେ ତାହା ତାଙ୍କ ବ୍ୟତୀତ ଅନ୍ୟମାନଙ୍କୁ ଅଗୋଚର ଥିଲା ।

ମାନନୀୟ ଫ୍ରେଜର ସାହେବ ମହୋଦୟ ଯହିଁ ଯହିଁ ଗଲେ ସେଠାରେ ଓଡ଼ିଆମାନଙ୍କର ହୃଦୟ ନିହିତ ମର୍ମାନ୍ତିକ ବେଦନାଜନିତ ଆର୍ତ୍ତନାଦ ଶ୍ରବଣ କଲେ । ଓଡ଼ିଆମାନଙ୍କ ଦୁଃଖରେ ତାଙ୍କ ହୃଦୟ ବିଗଳିତ ହେଲା । ତତ୍‌କ୍ଷଣାତ୍ ବୁଝିପାରିଲେ ଯେ ଓଡ଼ିଆମାନଙ୍କ ଦୁଃଖ କାଳ୍ପନିକ ନୁହେଁ । ତାଙ୍କ ଦେବୋଚିତ ନିରପେକ୍ଷତା ବ୍ୟତୀତ ସମ୍ବଲପୁରରେ ଓଡ଼ିଆ ଭାଷାର ଅସ୍ତିତ୍ୱ ଓ ଓଡ଼ିଆ ଜାତିର ଜାତୀୟତା ଲୋପ ପାଇଯାଇଥାନ୍ତା । ଓଡ଼ିଆମାନେ କେତେବେଳେ ଅବନତିର ପିଚ୍ଛିଳ ସୋପାନରେ ଅଧଃପତିତ ହୋଇଥାନ୍ତେ ତା ଈଶ୍ୱରଙ୍କୁ ଜଣା । ଫ୍ରେଜର ସାହେବଙ୍କ ନାମ ସମ୍ବଲପୁର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ସମ୍ବଲପୁରର ସନ୍ତାନମାନେ ସହୃଦୟ ଚିଫ୍ କମିଶନରଙ୍କ ସାକ୍ଷାତ ଲାଭ କରି ସ୍ୱୀୟ ଦୁଃଖ ଜଣାଇବା ନିମନ୍ତେ ଚେଷ୍ଟା କରିବାକୁ ଲାଗିଲେ । ପ୍ରଥମ ଦିନ ସେମାନଙ୍କର ଉଦ୍ଦେଶ୍ୟ ବିଫଳ ହେଲା । ଏବଂ ପରେ ଚିଫ୍ କମିଶନର୍ ସାହେବ ସମ୍ବଲପୁରର ଭଦ୍ରଲୋକଙ୍କୁ ନିମନ୍ତ୍ରଣ କଲେ । ସମସ୍ତେ ଉପସ୍ଥିତ ହେବାରୁ ସେମାନଙ୍କର ବ୍ୟକ୍ତବ୍ୟ କ'ଣ ତାହା ଜିଜ୍ଞାସା କଲେ । ସାହେବ ମହୋଦୟ ଭ୍ରମଣ କରିକରି ଯେଉଁ ଆର୍ତ୍ତନାଦ ଶ୍ରବଣ କରିଥିଲେ ଏଠାରେ ତାହା ହିଁ ଶ୍ରବଣ କଲେ । ଉପସ୍ଥିତ ବ୍ୟକ୍ତିଙ୍କୁ ସମ୍ବୋଧିତ କରି କହିଲେ, "ଆମେ ଆପଣଙ୍କ ଦେଶରେ ଉପସ୍ଥିତ ହୋଇ ଆପଣମାନଙ୍କର ଭାଷା ପରିବର୍ତ୍ତନଜନିତ କଷ୍ଟର ବିଷୟ ଅନୁସନ୍ଧାନ କଲୁ, ଆପଣମାନେ ପ୍ରକୃତରେ କଷ୍ଟ ଅନୁଭବ କରିଅଛନ୍ତି । ଏବଂ ଏତଦ୍ ଦୃଷ୍ଟିରୁ ଆମ୍ଭେ ସମ୍ବଲପୁରରେ ଓଡ଼ିଆ ପୁନଃ ପ୍ରଚଳନ କରିବା ନିମନ୍ତେ ଗଭର୍ଣ୍ଣର ଜେନେରାଲଙ୍କ ନିକଟକୁ ଲେଖିଅଛୁ । ସମ୍ବଲପୁର ବାସିନ୍ଦା ଦୁଃଖରେ ଏପରି ଅଭିଭୂତ ହୋଇଥିଲେ ଯେ, ସାହେବଙ୍କର ଅମୃତବାଣୀ ଶ୍ରବଣ କରି ସୁଦ୍ଧା ଟିକିଏ ଅଧୀରତା ପ୍ରକାଶକଲେନାହିଁ । ଚିଫ୍ କମିଶନର ସାହେବ ସେମାନଙ୍କୁ ସମ୍ବୋଧନ କରି ପୁନଶ୍ଚ କହିଲେ, "ଏଥିରେ କିଛି ସନ୍ଦେହ ନାହିଁ, ଆପଣମାନେ ମନେକରନ୍ତୁ ଯେ, ଓଡ଼ିଆ ଆଜି ସମ୍ବଲପୁରରେ ଅଦାଲତ ଭାଷା ହେଲା । ଆଗାମୀ ଜାନୁଆରି ମାସର ପ୍ରଥମ ତାରିଖରୁ କାଗଜ ପତ୍ର ଓଡ଼ିଆରେ ଲିଖିତ ହେବା ଆଦେଶ ଅବିଳମ୍ବେ ପ୍ରଚାରିତ ହେବ ।" ତତ୍‌ପରେ ଓଡ଼ିଆମାନେ ସହୃଦୟ ଚିଫ୍ କମିଶନରଙ୍କୁ ଧନ୍ୟବାଦ ପ୍ରଦାନ କରି ବିଦାୟ ଗ୍ରହଣ କଲେ ।

ଚିଫ୍ କମିଶନର ସାହେବ ତିରିଶି ତାରିଖ ମଧ୍ୟାହ୍ନରେ ପ୍ରସ୍ଥାନ କରିବା ମାର୍ଗରେ ହାଇସ୍କୁଲ୍ ପରିଦର୍ଶନ କଲେ । ହାଇସ୍କୁଲ୍‌ର ମେମ୍ବର ଦେଶ ହିତୈଷୀବାବୁ, ବ୍ରଜମୋହନ ପଟ୍ଟନାୟକ, ଚିଫ୍

କମିଶନର ସାହେବଙ୍କ ଦ୍ୱାରା ବିତରଣ ହେବା ନିମନ୍ତେ ପୁସ୍ତକ, ମିଷ୍ଟାନ୍ନ ଏବଂ ଆଗାମୀ ଏନ୍‌ଟ୍ରାନ୍‌ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହାଇସ୍କୁଲ୍ ପ୍ରଥମ ଛାତ୍ର ନିମନ୍ତେ ଗୋଟିଏ ପଦକ ପ୍ରଦାନ କଲେ । ତତ୍‌ପରେ ସାହେବ ମହୋଦୟ ଷ୍ଟେସନ୍ ଅଭିମୁଖେ ଅଗ୍ରସର ହେଲେ ।

ଷ୍ଟେସନରେ ସହରର ଭଦ୍ରଲୋକ, କର୍ମଚାରୀ ଏବଂ ଅସଂଖ୍ୟ ଓଡ଼ିଆ ଥିଲେ । ପଲଟନ ସୁଦ୍ଧା ଦୁଇ ପଙ୍‌କ୍ତିରେ ଦଣ୍ଡାୟମାନ ଥିଲେ । ସାହେବ ମହୋଦୟ ସମସ୍ତଙ୍କଠାରୁ ବିଦାୟ ଗ୍ରହଣ କରି ଗାଡ଼ିରେ ଆରୋହଣ କଲେ । ଗାଡ଼ି ଚାଲିବାକୁ ଲାଗିଲା । ଉପସ୍ଥିତ ଓଡ଼ିଆମାନେ ଚିଫ୍ କମିଶନର ସାହେବଙ୍କର ମଙ୍ଗଳ କାମନା କରି ଜୟଧ୍ୱନି କଲେ । ସାହବ ମହୋଦୟ ସମସ୍ତଙ୍କୁ ସଲାମ କରି ଅଗ୍ରସର ହେଲେ । ଦେଖୁଦେଖୁ ଗାଡ଼ି ଦୃଷ୍ଟିର ଅଗୋଚର ହେଲା । ଗାଡ଼ି ଯାବତ୍ ଓଡ଼ିଆମାନଙ୍କ ଦୃଷ୍ଟିପଥରେ ଥିଲା ତାବତ୍ ସେମାନେ ସତୃଷ୍ଣ ନୟନରେ ଗାଡ଼ି ପ୍ରତି ଚାହିଁ ରହିଥିଲେ । ଗାଡ଼ି ଯେତିକି ଅଗ୍ରସର ହେଲା, ସେତିକି ଓଡ଼ିଆମାନଙ୍କର କରୁଣ ଧ୍ୱନି ତାହାଙ୍କର ଶ୍ରୁତିଗୋଚର ହେଲା । ପ୍ରତି ଷ୍ଟେସନରେ ଅସଂଖ୍ୟ ଲୋକ ସେମାନଙ୍କୁ ଅପେକ୍ଷା କରିଥିଲେ । ସେ ଉପସ୍ଥିତ ହେବାକ୍ଷଣି ଆର୍ତ୍ତନାଦରେ ଷ୍ଟେସନ କମ୍ପିତ କରିଦେଲେ । ସମ୍ବଲପୁରରେ ସାହେବ ଯେଉଁ ଆଦେଶ ପ୍ରଚାର କରିଥିଲେ, ତାହା ଷ୍ଟେସନମାନଙ୍କରେ ସୁଦ୍ଧା ପ୍ରଚାର କରି ଓଡ଼ିଆମାନଙ୍କର ତାପିତ ପ୍ରାଣ ଶୀତଳ କଲେ ।

## ସମ୍ବଲପୁର ହିତୈଷିଣୀ (୩୦.୧୦.୧୯୦୧)

ସମ୍ବଲପୁରର ସଂଭ୍ରାନ୍ତ ଅଧିବାସୀମାନେ ଚିଫ୍ କମିଶନରଙ୍କ ନିବାସରେ ଉପସ୍ଥିତ ହେଲାରୁ ଚିଫ୍ କମିଶନର୍ ଭଦ୍ରବ୍ୟକ୍ତିମାନଙ୍କୁ ସମ୍ବୋଧନ କରି କହିଲେ, "ଆପଣମାନେ ଯାହା କହିବାର କୁହନ୍ତୁ ।" ବାବୁ ବ୍ରଜମୋହନ ପଟ୍ଟନାୟକ ଦଣ୍ଡାୟମାନ ହୋଇ କହିଲେ, "ମୁଁ ଜଣେ ଭଦ୍ର ବଂଶୋଦ୍ଭବ, ସମ୍ବଲପୁର ଅଧିବାସୀ, ଡିଷ୍ଟ୍ରିକ୍ଟ୍ କାଉନ୍‌ସିଲ୍ ଓ ଲୋକାଲ୍ କାଉନ୍‌ସିଲ୍‌ର ମେମ୍ବର ମନୋନୀତ ହୋଇଛି । ପୂର୍ବେ ଥରେ ସମ୍ବଲପୁରବାସୀମାନେ ସମ୍ବଲପୁରରେ 'କଚେରି' ଭାଷା ହିନ୍ଦୀ ନ ହୋଇ ଓଡ଼ିଆ ଚଳିବା ବିଷୟରେ ଆବେଦନ କରିଥିଲେ । ତାହା ପୁନରାୟ ହେବାରୁ ସମ୍ବଲପୁର ଅଧିବାସୀମାନେ ସାହେବଙ୍କ ପାଖରେ ପୁନରାୟ ଆବେଦନ କରିଛନ୍ତି । ମୁଁ ସମ୍ବଲପୁରବାସୀଙ୍କ ଦ୍ୱାରା ନିର୍ବାଚିତ ମେମ୍ବର ଥିବା ସତ୍ତ୍ୱେ ସମସ୍ତେ ଦୁଃଖିତ ହୋଇ ମତେ ତାହାର ପ୍ରତିକାର ନିମନ୍ତେ ବ୍ୟଗ୍ର ଭାବରେ ପ୍ରାର୍ଥନା କଲେ । ତଦନୁସାରେ ମୁଁ ତିନିଜଣ ଭଦ୍ରବ୍ୟକ୍ତିଙ୍କ ସହିତ ନାଗପୁର ଯାଇ ଆପଣଙ୍କୁ ସମ୍ବଲପୁରବାସୀଙ୍କର ହିନ୍ଦୀ ପ୍ରଚଳନ ଜନିତ ଅସୁବିଧା ବିଷୟ ଜଣାଇଥିଲି । ଅଦାଲତରୁ ଯେଉଁ ପତ୍ର ଦିଆଯାଏ ସାଧାରଣ ଲୋକ ତାକୁ ବୁଝି ପାରେ ନାହିଁ । ସମନ ଇତ୍ୟାଦି ନୋଟିସ୍ ଯାହା ଅଦାଲତରୁ ପ୍ରେରିତ ହୁଏ ତାହା ଲୋକମାନେ ପଢ଼ି ନପାରିବାରୁ ଅତିରିକ୍ତ ବ୍ୟୟ କରି କ୍ଷତିଗ୍ରସ୍ତ ହୁଅନ୍ତି । ହିନ୍ଦୀଭାଷୀ ଦସ୍ତାବିଜ୍ କେବଳ ରେଜିଷ୍ଟ୍ରାର୍ ଅଫିସ୍‌ରେ

ଗୃହୀତ ହେବାରୁ ବିକ୍ରେତା ଓ ଗ୍ରହୀତା ଦସ୍ତାବିଜ୍‌ର ମର୍ମ ବୁଝିପାରନ୍ତି ନାହିଁ । ସମ୍ବଲପୁର ଅଦାଲତରୁ ଅମଲାମାନେ ମଧ୍ୟପ୍ରଦେଶର ଅନ୍ୟାନ୍ୟ ଜିଲ୍ଲାକୁ ବଦଳି ହୋଇ କାର୍ଯ୍ୟତ୍ୟାଗ କରୁଛନ୍ତି । ବିଦେଶ ଗମନ ନ କରି ପାରିବାରୁ କାର୍ଯ୍ୟତ୍ୟାଗ କରୁଅଛନ୍ତି ।

ଓଡ଼ିଆ କେବଳ ସମ୍ବଲପୁରବାସୀଙ୍କର ଭାଷା ନୁହେଁ । ସେମାନଙ୍କର ଆଚାର ବ୍ୟବହାର, ରୀତିନୀତି ସବୁ ଓଡ଼ିଆମାନଙ୍କ ପରି । ଓଡ଼ିଶାବାସୀ ଏବଂ ସେମାନଙ୍କ ମଧ୍ୟରେ ସୌସାଦୃଶ୍ୟ ଅଛି । ଅଳ୍ପ ବେତନ ଭୋଗୀ ଅମଲାମାନେ ବଦଳିହେଲେ ସେମାନଙ୍କର କାର୍ଯ୍ୟ ଚଳିପାରେ ନାହିଁ ।

ଆମ୍ଭେମାନେ ଯେଉଁ ପଦାର୍ଥକୁ ଏକ ଶବ୍ଦରେ ଡାକୁ ସେମାନେ ତାକୁ ଅନ୍ୟ ଶବ୍ଦରେ ଡାକନ୍ତି । ଏଥିପାଇଁ ସେମାନେ ଆମକୁ ଦାୟୀ କରନ୍ତି । ଏହିପରି ବିଭିନ୍ନତା; ପରସ୍ପର ମଧ୍ୟରେ, ଆଚାର ବ୍ୟବହାର ମଧ୍ୟରେ, ଉଭୟ ଗୋଷ୍ଠୀ ମଧ୍ୟରେ ଘୃଣାଜାତ କରାଏ । ସୁତରାଂ ପରିବର୍ତ୍ତନ ପାଇଁ ଆଦେଶପ୍ରାପ୍ତ ଓଡ଼ିଆମାନେ ଅନ୍ୟ ଜିଲ୍ଲାକୁ ଯାଉଥିଲେ ମଧ୍ୟ ଅବିଳମ୍ବେ କାର୍ଯ୍ୟ ତ୍ୟାଗ କରନ୍ତି ଅଥବା ପେନ୍‌ସନ୍ ପ୍ରାପ୍ତ ହୋଇ ବିଦାୟ ଗ୍ରହଣ କରନ୍ତି । ଏହି ସବୁ ଅସୁବିଧା ପ୍ରଦର୍ଶିତ କରିବାରୁ, ଆପଣ ପ୍ରତିଜ୍ଞା କରିଥିଲେ ଯେ, ଏ ସବୁକୁ ଗଭର୍ଣ୍ଣର ଜେନେରାଲଙ୍କଠାରେ ସିମଲାରେ କହିବେ ।

ଜଣେ ରୋଗୀପାଇଁ ଫଳପ୍ରଦ ଔଷଧ ଦେଲେ ସୁଦ୍ଧା ଏବଂ ତାହାର ମନରେ ଆରୋଗ୍ୟ ହେବାର ଆଶା ପ୍ରଦାନ କଲେ ସୁଦ୍ଧା, ତାହାର ମନରେ ଆରୋଗ୍ୟ ହେବାପାଇଁ ଆନନ୍ଦ ଜାତ ହୁଏ ନାହିଁ । ଇତିପୂର୍ବେ ଓଡ଼ିଆମାନଙ୍କ ପ୍ରଦତ୍ତ ଗୋଟିଏ ଆବେଦନ ନାମଞ୍ଜୁର ହେବ- ଏହି ଆଶଙ୍କାରେ ଆମେମାନେ ପୂର୍ବୋକ୍ତ ଚାରିଜଣ ଆପଣଙ୍କର ସିମଲା ଯାତ୍ରା ସମ୍ବାଦ ଶୁଣି ବହୁ କଷ୍ଟ ସ୍ୱୀକାର କରି ସିମଲା ଗଲୁ । ମନେ କରିଥିଲୁ ଏହା ଆପଣଙ୍କର ଅନୁସନ୍ଧାନ ଅନୁସାରେ ଗଭର୍ଣ୍ଣର ଜେନେରାଲଙ୍କ ପାଖରେ ଦୁଃଖ ଜଣାଇବୁ ଓ ଆମ୍ଭେମାନେ କୃତକାର୍ଯ୍ୟ ହେବୁ । ଆପଣଙ୍କର ପ୍ରଧାନ ସେକ୍ରେଟାରୀ ମାନ୍ୟବର ଇଲି ସାହେବଙ୍କ ସହିତ ସାକ୍ଷାତ କଲୁ । ସେ କହିଲେ ଚିଫ୍ କମିଶନର ସାହେବ ଏ ବିଷୟରେ ଯାଇ ସମ୍ବଲପୁରରେ । ଆଦେଶ ଦେବା ବିଷୟ ପ୍ରକାଶ କରିଥିବା ପକ୍ଷେ ଆପଣମାନଙ୍କର ଚଞ୍ଚଳ ହେବା ଉଚିତ ନୁହେଁ । ତାହାଙ୍କର ଆଦେଶ ଶିରୋଧାର୍ଯ୍ୟକରି ବାହୁଡ଼ି ଆସିଲୁ । ଆମ୍ଭେମାନେ ଯେତେବେଳେ ନାଗପୁରରେ ଆପଣଙ୍କ ସହିତ ସାକ୍ଷାତ କରିଥିଲୁ, ସେତେବେଳେ ଗଭର୍ଣ୍ଣର ଜେନେରାଲଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ଅନୁମତି ପ୍ରାର୍ଥନା କରିବା କଥା । ତାହା ନ କରି ଆମେମାନେ ସିମଲା ଯାଇଥିବାରୁ କ୍ଷମାପ୍ରାର୍ଥନା କରୁଅଛୁ ।

ବର୍ତ୍ତମାନ ଆପଣଙ୍କର ସମ୍ମୁଖରେ, ଡିଷ୍ଟ୍ରିକ୍ଟ କାଉନ୍‌ସିଲ୍‌ର ମେମ୍ବର ଓ ଲୋକାଲ ବୋର୍ଡ଼ ମେମ୍ବର ଏହି ଦରବାରରେ ଅଛନ୍ତି । ସମସ୍ତଙ୍କୁ ଏହାର ସତ୍ୟତା ବିଷୟରେ ଆପଣମାନେ ପଚାରି ପାରନ୍ତି । ଏଥିରେ ସମସ୍ତଙ୍କର ସହାନୁଭୂତି ଅଛି ।

ଆପଣ ଶାସନ ବିଭାଗର ଉଚ୍ଚତମ କର୍ମଚାରୀ ହୋଇ ଗ୍ରାମେ ଗ୍ରାମେ, ସ୍ଥାନେସ୍ଥାନେ, ସହରରେ, ହାଟରେ, ବାଟରେ ହିନ୍ଦୀ ପ୍ରଚଳନର ଅସୁବିଧା ବିଷୟ ଅନୁସନ୍ଧାନ କଲେ , ଯଦି

ପୂର୍ବେ କର୍ତ୍ତୃପକ୍ଷ ଏପରି ଅନୁସନ୍ଧାନ କରିଥାନ୍ତେ ଏବଂ ଏହି ବିଷୟରେ ଦେଶୀୟ ଭଦ୍ରଲୋକ କମିଟି ମେମ୍ବରମାନଙ୍କୁ ଜିଜ୍ଞାସା କରିଥାନ୍ତେ, ତେବେ ଆମ୍ଭେମାନେ ଏତେ କଷ୍ଟ ଭୋଗିନଥାନ୍ତୁ । ଆପଣ ଏହି କାର୍ଯ୍ୟ ନିମନ୍ତେ ସିମଲାରୁ ପ୍ରତ୍ୟକ୍ଷ ଭାବେ ସମ୍ବଲପୁର ଆସି ଅନେକ କଷ୍ଟ ସ୍ୱୀକାର କଲେ । ଏଣୁ ଆପଣଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛୁ ଏବଂ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଅଛୁ ଯେ ଆପଣଙ୍କୁ ଗଭର୍ଣ୍ଣର ପଦକୁ ଉନ୍ନୀତ କରନ୍ତୁ । ବର୍ତ୍ତମାନ ଇଂରେଜୀ ରାଜତ୍ୱରେ ଏହି ଦୁଃଖ ଜଣାଇଲେ କିମ୍ବା ସମ୍ବାଦପତ୍ର ଜରିଆରେ କିମ୍ବା ସରକାରୀ କର୍ମଚାରୀଙ୍କ ସହିତ ସାକ୍ଷାତ ହୋଇ ଦୁଃଖ ଜଣାଇଲେ  ଗଭର୍ଣ୍ଣର ଦୁଃଖ ନିବାରଣ ଲାଗି ଉଦ୍ୟତ ହୁଅନ୍ତି । ଏପରି ଗଭର୍ଣ୍ଣମେଣ୍ଟଙ୍କର କାର୍ଯ୍ୟର ଗୁଣାବଳୀରେ ଉତ୍ସାହିତ ହୋଇ ଆମ୍ଭେମାନେ ଆପଣଙ୍କ  ଛାମୁରେ ଦୁଃଖ ଜଣାଇଲୁ ।

ଚିଫ୍ କମିଶନର ଏଥିରେ ସମସ୍ତଙ୍କର ସହାନୁଭୂତି ଅଛି କି ନାହିଁ ଏବଂ ବ୍ରଜମୋହନ ବାବୁ ଯାହା କହିଛନ୍ତି ସେଥିରେ ସମସ୍ତଙ୍କର ଏକ ମତ କି ନାହିଁ ପଚାରିଲେ । ସମସ୍ତେ ସମ୍ମତ ହେଲେ ।

ବାବୁ ସତ୍ୟବାଦୀ ପାଢ଼ୀ କହିଲେ ସମ୍ବଲପୁରରେ ହିନ୍ଦୀଭାଷା ପ୍ରଚଳନ ହେବାରୁ ସମ୍ବଲପୁରର ସକଳ ଓଡ଼ିଆ ଦୁଃଖିତ ଅଛନ୍ତି । ଆପଣ କଷ୍ଟ ସ୍ୱୀକାର କରି ହିନ୍ଦୀ ଭାଷା ପ୍ରଚଳନର ଅସୁବିଧା ବିଷୟରେ ତଦନ୍ତ କରିଥିବାରୁ ଆପଣଙ୍କୁ ଧନ୍ୟବାଦ ଅର୍ପଣ କରୁଅଛି । ଈଶ୍ୱର ଯଦି ଆପଣଙ୍କୁ ଗଭର୍ଣ୍ଣର ଓ ଲାଟ୍ କରନ୍ତି ଆମ୍ଭେମାନେ ଆନନ୍ଦିତ ହେବୁ । ଓଡ଼ିଶାରେ ସମ୍ବଲପୁର ଯୁକ୍ତ ହେଲେ, ସମ୍ବଲପୁରବାସୀମାନେ ଓଡ଼ିଶାରେ ଓଡ଼ିଆ ଭ୍ରାତାମାନଙ୍କ ସହିତ ରହି ଅଧିକ ଉନ୍ନତି ସାଧନ କରିବେ ।

ତତ୍‌ପରେ ଚିଫ୍ କମିଶନର ସାହେବ ଉତ୍ତର ଦେଲେ"ଆମ୍ଭେମାନେ ଅନୁସନ୍ଧାନ କରି ଦେଖିଲୁ ଯେ ସମ୍ବଲପୁରରେ ହିନ୍ଦୀ ଭାଷା ପ୍ରଚଳନ ହେବାରୁ ସମ୍ବଲପୁରରେ ଲୋକମାନେ ବିଶେଷ ଅସୁବିଧା ଭୋଗ କରୁଅଛନ୍ତି । ଏଣୁ ଆସନ୍ତା ଜାନୁଆରି ମାସରୁ ସମ୍ବଲପୁର ଅଦାଲତରେ ଓଡ଼ିଆ ପ୍ରଚଳନ ହେବା ନିମନ୍ତେ ଆମେ ଗଭର୍ଣ୍ଣର ଜେନେରାଲଙ୍କୁ ରିପୋର୍ଟ କରିବୁ  ।



# ପରମ ବିପ୍ଳବିଣୀ ରାଣୀ ସୂର୍ଯ୍ୟମଣି ପାଟମହାଦେଈ

ଓଡ଼ିଶାରେ ସମଗ୍ର ଊନବିଂଶ ଶତାବ୍ଦୀକୁ ଆବରିତ କରି ବିଂଶ ଶତାବ୍ଦୀର ପ୍ରଥମ ଭାଗ ପର୍ଯ୍ୟନ୍ତ, ଯେଉଁ ପ୍ରଚଣ୍ଡ ବୀର୍ଯ୍ୟଶାଳିନୀ ମହିୟସୀ ନାରୀ, ପ୍ରାୟ ଏକ ଶତାବ୍ଦୀ ଧରି ଓଡ଼ିଶାର ରାଜନୈତିକ, ସାମାଜିକ, ସାଂସ୍କୃତିକ ତଥା ଧର୍ମୀୟ ଆକାଶକୁ ଉଦ୍‌ଭାସିତ କରି ରଖିଥିଲେ, ସେ ହେଉଛନ୍ତି ପରମ ବିପ୍ଳବିଣୀ ରାଣୀ ସୂର୍ଯ୍ୟମଣି ପାଟମହାଦେଈ । ବୋଧହୁଏ ଓଡ଼ିଶାର ସମଗ୍ର ଇତିହାସରେ, ସେ ହେଉଛନ୍ତି ଅତ୍ୟନ୍ତ ଅଦ୍‌ଭୁତଭାବେ ସ୍ଫୂର୍ତ୍ତିଶାଳିନୀ, ଅମିତ ତେଜସ୍ୱିନୀ, ପ୍ରଖର ଦ୍ୟୁତିମୟୀ ନାରୀ, ଯାହାଙ୍କ ସମକକ୍ଷ ଅନ୍ୟ କୌଣସି ନାରୀ ନେତ୍ରୀ ଅବତୀର୍ଣ୍ଣା ହୋଇ ନାହାନ୍ତି । ଗଜପତି ବଂଶର ସାମ୍ରାଜ୍ଞୀ ରୂପରେ,ସେ କେବଳ ଓଡିଶାର ଅଧିଶ୍ୱରୀ ନ ଥିଲେ, ଓଡ଼ିଆ ଜାତିର ସ୍ନାୟୁକେନ୍ଦ୍ର ଶ୍ରୀଜଗନ୍ନାଥ ମନ୍ଦିରର ସୁରକ୍ଷା ଓ ସଂରକ୍ଷଣ ଲାଗି ପରମ ବିକ୍ରମର ସହିତ ସଂଗ୍ରାମରେ ସେ ଅତ୍ୟନ୍ତ ନିପୁଣତାର ସହିତ ଅବତୀର୍ଣ୍ଣା ହୋଇଥିଲେ । ଅଥଚ ସେ ଆଜି ଓଡ଼ିଶାର ଇତିହାସ ପୃଷ୍ଠାରୁ ବିସ୍ମୃତା ଓ ନିର୍ବାସିତା । ଏହି ଜାତି କିଭଳି ଅକୃତଜ୍ଞ ଓ ସ୍ୱାର୍ଥସର୍ବସ୍ୱ ତାହାର କଳନା କରାଯାଇପାରେ ନାହିଁ । ସୂର୍ଯ୍ୟମଣି ପାଟମହାଦେଈ ୧୮୧୮ ମସିହାରେ ଜନ୍ମଲାଭ କରି ୧୮୩୦ ମସିହାରେ ପୁରୀ ଗଜପତି ବଂଶର ପୁତ୍ରବଧୂ ରୂପେ ଶ୍ରୀକ୍ଷେତ୍ରକୁ ଆସିଥିଲେ । ତାହାଙ୍କର ମହାପ୍ରୟାଣ ଘଟିଥିଲା ୧୯୨୬ ମସିହା ନଭେମ୍ବର ୨୪ ତାରିଖରେ । ମଧ୍ୟବର୍ତ୍ତୀ ସମୟଟି ଥିଲା ଓଡ଼ିଶା ଇତିହାସର ଏକ ଦୁଃଖଦପୂର୍ଣ୍ଣ ଯୁଗ, ଯେଉଁଥିରେ କି ସେ ତିଳତିଳ କରି ନିଜର ଜୀବନକୁ ଜାତୀୟତାର ହୋମାଗ୍ନିରେ ନିଃଶେଷ କରିଦେଇଥିଲେ ।

ରାଣୀ ସୂର୍ଯ୍ୟମଣି ସୋନପୁର ରାଜବଂଶର ଦୈତାରୀ ସିଂହଙ୍କ କନ୍ୟାରୂପେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ଅଶ୍ୱାରୋହଣ ସହିତ ଖଡ୍‌ଗ, ବର୍ଚ୍ଛା ଓ ବନ୍ଧୁକ ଚାଳନାରେ କେବଳ ନୁହେଁ, ଯୁଦ୍ଧବିଦ୍ୟାର ସମସ୍ତ କ୍ଷେତ୍ରରେ ସେ ଅସାଧାରଣ ନିପୁଣତା ଲାଭ କରିଥିଲେ । ଏଣୁ

ବୀରା, 'ଓଡ଼ିଆ ବାଳିକା' ନାମରେ ପରିଚିତା ହୋଇ ଅଶେଷ ଖ୍ୟାତି ଅର୍ଜନ କରିଥିଲେ । ସେ ମଧ୍ୟ ଅପୂର୍ବ ସୌନ୍ଦର୍ଯ୍ୟର ଅଧିକାରିଣୀ ଥିଲେ । ତେଣୁ ପୁରୀ ଗଜପତି ବଂଶର ରାଜା ରାମଚନ୍ଦ୍ର ଦେବ (ତୃତୀୟ)ଙ୍କର ସେ ଦୃଷ୍ଟି ଆକର୍ଷଣ କରିଥିଲେ । ପରିଣାମରେ, ସୂର୍ଯ୍ୟମଣି ପୁରୀ ଗଜପତି ବଂଶର ପୁତ୍ରବଧୂ ତଥା ଯୁବରାଣୀ ରୂପେ ବରିତା ହୋଇଥିଲେ । ଏହା ବୋଧହୁଏ ବିଧି ନିର୍ଦ୍ଦିଷ୍ଟ ଥିଲା, ଯାହା ପରବର୍ତ୍ତୀ କାଳରେ ଓଡ଼ିଶା ଇତିହାସର ଗତିପଥକୁ ବଦଳାଇ ଦେଇଥିଲା ।

ହଁ, ରାଜବଧୂ ରୂପେ ନିର୍ବାଚିତ ହେବା ପରେ କୁମାରୀ ସୂର୍ଯ୍ୟମଣି, ପିତା ଦୈତାରୀ ସିଂହଙ୍କ ସହିତ ସେ ବେଳର ପରମ୍ପରା ଅନୁସାରେ ୧୮୩୦ ମସିହାରେ ଦ୍ୱାଦଶ ବର୍ଷ ବୟସରେ ପୁରୀକୁ ଆସିଲେ । ପଥ ଅତି ଦୁର୍ଗମ ଓ ବିପଦ ସଂକୁଳ ଥିଲା । ପଥ ମଧ୍ୟରେ ନଦୀତୀରରେ ତମ୍ବୁ ପକାଇ ବିଶ୍ରାମ ନେବାକୁ ପଡ଼ିଲା । ନିଶାର୍ଦ୍ଧରେ ସମସ୍ତେ ନିଦ୍ରା ଯାଇଥିଲେ , ମାତ୍ର ସୂର୍ଯ୍ୟମଣି ଅନିଦ୍ରା ରହି ତମ୍ବୁକୁ ଜଗି ବସିଥିଲେ । ରାତିର ଘନ ଅନ୍ଧକାରରେ ନଦୀ ଗର୍ଭରୁ ଏକ ଭୟଙ୍କର କୁମ୍ଭୀର ତମ୍ବୁ ନିକଟକୁ ଆସି ଆକ୍ରମଣପାଇଁ ଉଦ୍ୟତ ରହିଥିଲା । ମାତ୍ର ସୂର୍ଯ୍ୟମଣି ବନ୍ଧୁକ ଖଡ଼୍‌ଗରେ ତାକୁ କାଟି ପକାଇଥିଲେ । ସମସ୍ତ ଅଞ୍ଚଳଟି ରକ୍ତରଂଜିତ ହୋଇଯାଇଥିଲା । ନିଦ୍ରାରୁ ଉଠି ସମସ୍ତେ ହତ ଚକିତ ହୋଇଯାଇଥିଲେ ।

ପୁରୀରେ ପହଞ୍ଚିବା ପରେ, ପାରମ୍ପରିକ ପ୍ରଥା ଅନୁସାରେ ଗଜପତି ବଂଶର ଯୁବରାଜ, ରାଜା ରାମଚନ୍ଦ୍ରଦେବ (ତୃତୀୟ)ଙ୍କର ପୁତ୍ର ବୀରକିଶୋର ଦେବଙ୍କ ସହିତ ସୂର୍ଯ୍ୟମଣିଙ୍କର ଶୁଭ ପରିଣୟ ଜଗନ୍ନାଥ ବଲ୍ଲଭ ମଠରେ ସମାହିତ ହୋଇଥିଲା । ମହାରାଜା ପ୍ରତାପରୁଦ୍ର ଦେବଙ୍କ ରାଜଗୁରୁ କାଶୀ ମିଶ୍ରଙ୍କର ବଂଶଧର ପଣ୍ଡିତ ଗଂଗାଧର ପାଢଯୋଷୀ ବାଚସ୍ପତି ଏହି ବିବାହ କାର୍ଯ୍ୟ ସମ୍ପନ୍ନ କରିଥିଲେ । ଗୃହଲକ୍ଷ୍ମୀ ରୂପେ ସୂର୍ଯ୍ୟମଣି ପାଟମହାଦେଈ ଆସିବା ପରେ ନାନା ଶୁଭଚିହ୍ନ ଦେଖାଯାଇଥିଲା । ପୁରୀରୁ ନିଷ୍ଠୁର ଯାତ୍ରୀକର ଉଠାଇ ଦିଆଗଲା । ଇଂରେଜ ସରକାର ବାହାଦୂର ରାଜା ରାମଚନ୍ଦ୍ର ଦେବଙ୍କୁ ମନ୍ଦିର ପରିଚାଳନାର ଭାର ଅର୍ପଣ କରି ବାର୍ଷିକ ୫୩ ହଜାର ଟଙ୍କା ପ୍ରଦାନ କରିବାକୁ ସ୍ଥିର କଲେ। ବିବାଦୀୟ ୨୭ ହଜାର ମାଇଲ ରାଜାଙ୍କର ଅଧୀନକୁ ଆସିଲା । ବାଲି ସାହି ନଅର ପରିତ୍ୟକ୍ତ ହୋଇଥିବାରୁ ବଡ଼ଦାଣ୍ଡରେ ଉଆସ ଓ ନଗର ନିର୍ମିତ ହେଲା । ସୂର୍ଯ୍ୟମଣି ପାଟମହାଦେଈ ନୂତନ ଉଆସରେ ପ୍ରବେଶ କେବଳ କଲେ ନାହିଁ, ବହୁ କାଳ ଧରି ଓଡ଼ିଆ ଜାତିର ଅଧିଶ୍ୱରୀ ରୂପେ ଅଧିଷ୍ଠିତା ହୋଇଥିଲେ। ମାତ୍ର ଏହା ପରେ ବିଧିର ବିଧାନ ଅନ୍ୟଥା ଥିଲା । ବିଷାଦ ଓ ବିପଦର ଘନଘଟା ଶ୍ରୀମନ୍ଦିରକୁ ଗ୍ରାସ କରିବାକୁ ବସିଥିଲା । ୧୮୮୭ ବେଳକୁ ଶ୍ରୀମନ୍ଦିର ଅଧିକାର କରିବାପାଇଁ ବ୍ରିଟିଶ ଉପନିବେଶବାଦର ପ୍ରତାରଣାମୂଳକ ଚକ୍ରାନ୍ତ ଉଗ୍ର ରୂପରେ ସଂଯୋଜିତ ହୋଇଥିଲା । ଯାହାକୁ ବୀରଦର୍ପରେ ସମ୍ମୁଖୀନ ହୋଇଥିଲେ ଶ୍ରୀମନ୍ଦିର ତତ୍ତ୍ୱାବଧାରିକା ବିଧବା ରାଣୀ ସୂର୍ଯ୍ୟମଣି ।

୧୮୮୬ ଡିସେମ୍ବର ମାସର ମଧ୍ୟଭାଗ । ପୁରୀର କଲେକ୍ଟର ମିଷ୍ଟର ସାଭାଜ ୧୫.୧୦.୧୮୮୬ରେ କଟକର ଜିଲ୍ଲା ଜଜ୍ ମିଷ୍ଟର ଡ୍ରାଗନ୍‌ଙ୍କ କୋର୍ଟରେ ଶ୍ରୀମନ୍ଦିର ପରିଚାଳନାର ଅଧିକାର ଗଜପତି ବଂଶରୁ ଉଚ୍ଛେଦ କରି ଏକ କମିଟି ହସ୍ତରେ ନ୍ୟସ୍ତ କରିବାପାଇଁ ଚକ୍ରାନ୍ତମୂଳକ

ମୋକଦ୍ଦମା ଦାଏର୍ କରି ଶ୍ରୀମନ୍ଦିରର କିଛି ଭାଗକୁ ଜଉମୁଦ କରିଥିଲେ । ଏହି ଚରମ ଦୁର୍ଦ୍ଦିନରେ ରାଣୀ ସୂର୍ଯ୍ୟମଣି ପାଟମହାଦେଈ, କଟକର ପ୍ରଖ୍ୟାତ ଓକିଲ ମଧୁସୂଦନ ଦାସଙ୍କୁ ଆହ୍ୱାନ କରିଥିଲେ । ପର୍ଦ୍ଦା ଆଢୁଆଳରେ ରହି ରାଣୀ, ସମସ୍ତ ତଥ୍ୟ ମଧୁସୂଦନଙ୍କୁ କହିସାରିବା ପରେ, ଏକ ଭାବବିହ୍ୱଳ ଅଥଚ ଦୃପ୍ତ କଣ୍ଠରେ କହିଥିଲେ, ''ହେ ପୁତ୍ର ! ତୁମେ ସବୁକଥା ଅବଗତ ହେଲ । କଲିକତା ହାଇକୋର୍ଟରେ ଅପିଲ ଦାଖଲ କର । ଏହି ସମସ୍ତ ବିରୁଦ୍ଧରେ ମୋର ଏକମାତ୍ର ଉତ୍ତର ଅଛି । ଏହି କ୍ଷେତ୍ରରେ ଯଦି ମୋର ସମସ୍ତ ପ୍ରୟାସ ବ୍ୟର୍ଥ ହୋଇଯାଏ, ତାହାହେଲେ ବର୍ତ୍ତମାନଠାରୁ ଏହି କଥାକୁ ମଧ୍ୟ ସ୍ମରଣ ରଖିଥାଅ, ମୁଁ ଜଣେ କ୍ଷତ୍ରିୟା ରମଣୀ ,ଅଶ୍ୱାରୋହଣରେ ପାରଦର୍ଶୀ । ଅତିକ୍ରାନ୍ତ ବୟସ ସତ୍ତ୍ୱେ ମୋର ଅବସନ୍ନ ହାତ ଦୁଇଟି ମଧ୍ୟ ଖଡ୍ଗ ପରିଚାଳନାରେ ସୁଦକ୍ଷ ଅଛନ୍ତି । ବଂଶର ପବିତ୍ର ପରଂପରାସିଦ୍ଧ ଅଧିକାରକୁ ରକ୍ଷା କରିବାପାଇଁ ମୁଁ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣା ହୋଇ ଖଡ୍ଗ ପରିଚାଳନାକରି ଚରମ ମୃତ୍ୟୁବରଣ କରିବାକୁ ପ୍ରସ୍ତୁତ ଅଛି ।''

ସେତେବେଳେ ଚାରିଆଡ଼େ ଛାଇଯାଇଥିଲା ସ୍ତବ୍ଧ ନୀରବତା । ହତଚକିତ ମଧୁସୂଦନ ନିର୍ବାକ୍ ଆଉ ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ମାତ୍ର କ୍ଷଣକ ମଧ୍ୟରେ ସେ ଜାଗ୍ରତ ହୋଇ ପାଟମହାଦେଈଙ୍କୁ ନିର୍ଭର ପ୍ରତିଶ୍ରୁତି ପ୍ରଦାନ କରିଥିଲେ ଏବଂ କଲିକତାର ସମସ୍ତ ପ୍ରଖ୍ୟାତ ଆଇନଜୀବୀଙ୍କର ନାସ୍ତିବଚନ ଓ ବାରଣ ସତ୍ତ୍ୱେ ମଧୁସୂଦନ କଲିକତା ହାଇକୋର୍ଟରେ ରାଣୀଙ୍କ ପକ୍ଷରୁ ରିଟ୍ ଆବେଦନ ଦାଖଲ କରିଥିଲେ । କେବଳ ଏହି ଗୋଟିଏ ଘଟଣା ନୁହେଁ, ୧୮୦୩ ସାଲରୁ ୧୯୨୬ ସାଲ ପର୍ଯ୍ୟନ୍ତ ପ୍ରାୟ ଏକ ଶତାବ୍ଦୀ ଧରି ରାଣୀ ସୂର୍ଯ୍ୟମଣି ପାଟମହାଦେଈଙ୍କ ଜୀବନ ବୃତ୍ତାନ୍ତ ଶ୍ରୀଜଗନ୍ନାଥ ମନ୍ଦିରର ଇତିହାସ ସହିତ ଅଂଗାଗୀଭାବେ ଜଡ଼ିତ ହୋଇ ରହିଥିଲା । ରାଜମହଲର ପର୍ଦ୍ଦା ଆଢୁଆଳରେ ସେ ପ୍ରକୃତରେ ଖଡ଼୍ଗହସ୍ତା ହୋଇ ମନ୍ଦିର ତଥା ଓଡ଼ିଆ ଜାତୀୟତାର ରକ୍ଷାଲାଗି ନିଜର ଜୀବନକୁ କେବଳ ସମର୍ପିତ କରିନଥିଲେ, ଦାରୁଣ ନିର୍ଯ୍ୟାତନା ଓ ଲାଞ୍ଛନା ମଧ୍ୟରେ ନିଜ ଜୀବନକୁ ଜାତୀୟତାର ଯଜ୍ଞବେଦୀରେ ନିଃଶେଷ କରିଦେଇଥିଲେ । ଅନ୍ୟ ଅର୍ଥରେ ଏକ ଶତାବ୍ଦୀ ଧରି ସେ ଥିଲେ ଓଡ଼ିଶାର ତଥା ଗଜପତି ବଂଶର ସିଂହାସନରେ ଆରୂଢ଼ା ତଥା ଅପରାଜେୟା ଚକ୍ରବର୍ତ୍ତିନୀ । ସେ ବ୍ରିଟିଶ ଶାସନର କୂଟ ଚକ୍ରାନ୍ତକୁ ପ୍ରତିହତ କରିବାପାଇଁ କ୍ରମାଗତ ଭାବେ ଅମୋଘ ବଜ୍ର ତୁଲ୍ୟ ଯେଉଁ ପ୍ରତିବାଦ ପତ୍ରମାନ ପ୍ରେରଣ କରିଥିଲେ, ତାହାର ସଂକଳନ ପ୍ରାୟ ଏକ ହଜାର ପୃଷ୍ଠାରୁ ଅଧିକ ହେବ । ତାର ଇତିହାସ ଏହାର ଚରମ ସାକ୍ଷ୍ୟ ବହନ କରେ ।

ହେ ପାଠକ ବର୍ଗ ! ଆମେ ପୁଣି ୧୮୫୪ ମସିହାର ଘଟଣା ପ୍ରବାହ ମଧ୍ୟକୁ ଫେରିଆସିବା । ୧୮୫୪ ମସିହାରେ ରାଜା ରାମଚନ୍ଦ୍ର ଦେବ (ତୃତୀୟ)ଙ୍କ ପରଲୋକହେଲା । ଗଜପତି ବଂଶର ସୁବର୍ଣ୍ଣ ଯୁଗର ପରିସମାପ୍ତି ଘଟିଲା । ରାମଚନ୍ଦ୍ର ଦେବଙ୍କ ପରଲୋକ ପରେ, ସେତେବେଳକୁ ଅତୀବ ରୁଗ୍ଣ ହୋଇଯାଇଥିବା ବୀରକିଶୋର ଦେବ ସିଂହାସନ ଆରୋହଣ କଲେ । ରାଣୀ ପାଟମହାଦେଈଙ୍କର ଅକ୍ଳାନ୍ତ ସେବା ସତ୍ତ୍ୱେ ବୀରକିଶୋର ଦେବ ୧୨.୧୨.୧୮୫୯ରେ ପରଲୋକ ଗମନ କଲେ । ମାତ୍ର ମୃତ୍ୟୁର କିଛି ଘଣ୍ଟା ପୂର୍ବରୁ, ରାଣୀ ସୂର୍ଯ୍ୟମଣିଙ୍କର ସୁଚିନ୍ତିତ ପରାମର୍ଶ କ୍ରମେ, ରାଜା ବୀରକିଶୋର ବଡ଼ଖେମୁଣ୍ଡିର ଦ୍ୱିତୀୟ ରାଜପୁତ୍ର ଦିବ୍ୟସିଂହ ଦେବଙ୍କୁ

ଯୁବରାଜ ପଦରେ କେବଳ ଅଧିଷ୍ଠିତ କରି ନଥିଲେ ଏକ ଉଇଲ୍‌ର ସମ୍ପାଦନରେ ରାଣୀ ସୂର୍ଯ୍ୟମଣି ପାଟମହାଦେଈଙ୍କୁ ଯୁବରାଜଙ୍କର ନାବାଳକତ୍ୱ ଅବସ୍ଥାରେ ତତ୍ତ୍ୱାବଧାରକ ରୂପେ ଶ୍ରୀମନ୍ଦିର ତଥା ଜମିଦାରିର ପରିଚାଳନା ଭାର ଅର୍ପଣ କରିଥିଲେ । ଏହା ରାଣୀ ସୂର୍ଯ୍ୟମଣିଙ୍କର ପ୍ରତ୍ୟୁତ୍ପନ୍ନମତିତାର ପରିଚୟ ପ୍ରଦାନ କରେ, ଯାହା ଶ୍ରୀମନ୍ଦିରକୁ ଏକ ନିଶ୍ଚିତ ବିପଦରୁ ରକ୍ଷା କରିପାରିଥିଲା । ଏହାପରେ ବ୍ରିଟିଶ ସରକାର ବହୁ ଚକ୍ରାନ୍ତ ମଧ୍ୟରେ 'କୋର୍ଟ ଅଫ୍ ୱାର୍ଡ଼ସ୍' ପ୍ରଥା ମାଧ୍ୟମରେ ଶ୍ରୀମନ୍ଦିରର ପରିଚାଳନାକୁ ନିଜ ହସ୍ତକୁ ନେବାପାଇଁ ପ୍ରଯତ୍ନ କରିଥିଲେ । ମାତ୍ର ସୂର୍ଯ୍ୟମଣିଙ୍କର ଅସୀମ ସାହସ ଓ ସତର୍କତାପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ତଥା କ୍ରମାଗତ ଆବେଦନ ଫଳରେ ସମସ୍ତ ଚକ୍ରାନ୍ତ ବ୍ୟର୍ଥ ହୋଇ ଯାଇଥିଲା ଓ ଅବଶେଷରେ ଓଡ଼ିଶାର କମିଶନର କକ୍‌ବର୍ଣ୍ଣ ସାହେବ ରାଣୀ ସୂର୍ଯ୍ୟମଣିଙ୍କୁ ନାବାଳକ ରାଜା ଦିବ୍ୟସିଂହଙ୍କର ତତ୍ତ୍ୱାବଧାରକ ରୂପେ ସ୍ୱୀକୃତି ପ୍ରଦାନ କରିଥିଲେ । ମାତ୍ର ପୁରୀ ଗଜପତି ବଂଶର ସେ ଯୁଗର ପ୍ରଥା ଅନୁସାରେ ରାଣୀ ସୂର୍ଯ୍ୟମଣିଙ୍କୁ ପର୍ଦ୍ଦାର ଅନ୍ତରାଳରେ ରହି ସମସ୍ତ କାର୍ଯ୍ୟ ସଂପାଦନ କରିବାକୁ ପଡ଼ିଥିଲା ।

ନାବାଳକ ରାଜା ଦିବ୍ୟସିଂହଙ୍କ ଶାସନର 'ନଅ ଅଙ୍କ' କାଳରେ ଯେଉଁ 'ନଅଙ୍କ ଦୁର୍ଭିକ୍ଷ' ହେଲା, ଆର୍ଥିକ ଅନାଟନ ମଧ୍ୟରେ ସୂର୍ଯ୍ୟମଣି ମନ୍ଦିରକୁ କେବଳ ସୁପରିଚାଳିତ କରିନଥିଲେ, ରାଜପରିବାରକୁ ଅର୍ଦ୍ଧଭୁକ୍ତ ରଖି ମଧ୍ୟ ପ୍ରତ୍ୟହ ବହୁପରିମାଣରେ ମହାପ୍ରସାଦ ରନ୍ଧନକରି ବୁଭୁକ୍ଷୁ ଜନତା ମଧ୍ୟରେ ବିତରଣ କରି ସରକାରଙ୍କ ପକ୍ଷରୁ ପରମ ସୁଖ୍ୟାତି ଲାଭ କରିଥିଲେ ।

ଦିବ୍ୟସିଂହ ଦେବ ବୟଃପ୍ରାପ୍ତ ହୋଇ ୧୮୭୫ ସାଲରେ ଗାଦିନସୀନ ହେଲେ ଏବଂ ଖଡ଼ିଆଳ ରାଜବଂଶର କୁମାରୀ ନୀଳାଦ୍ରି ପାଟଦେଈଙ୍କ ସହିତ ପରିଣୟସୂତ୍ରରେ ଆବଦ୍ଧ ହୋଇଥିଲେ । ତାଙ୍କର ଜଗନ୍ନାଥ ଜେନାମଣି ନାମରେ ଏକ ପୁତ୍ର ସନ୍ତାନ ଜାତ ହେଲା । ଦିବ୍ୟସିଂହ ଦେବ ସଂସ୍କୃତଜ୍ଞ ତଥା ମଲ୍ଲବିଦ୍ୟାରେ ପାରଦର୍ଶୀ ଥିଲେ । ମାତ୍ର ମନ୍ଦିର ପରଚାଳନାରେ ଦକ୍ଷ ନଥିଲେ । ଅବଶେଷରେ ସେ ନରହତ୍ୟା ଅପରାଧରେ ୧୮୭୮ ସାଲରେ ଦ୍ୱୀପାନ୍ତରିତ ହେଲେ । ଏହା ଓଡ଼ିଶା ଇତିହାସର ଏକ ମର୍ମନ୍ତୁଦ ଓ ପ୍ରବଞ୍ଚନାପୂର୍ଣ୍ଣ ଅଧ୍ୟାୟ ।

ଏହା ପରେ ପୁରୀ କଲେକ୍ଟର, ଶ୍ରୀମନ୍ଦିର ପରିଚାଳନାକୁ କୋର୍ଟ ଅଫ୍ ୱାଡ଼ର୍ସ ପରିସରକୁ ଆଣି ମନ୍ଦିରର ପରିଚାଳନାକୁ ସରକାର କର୍ତ୍ତୃତ୍ୱାଧୀନ କରିବାପାଇଁ ଚକ୍ରାନ୍ତ କରିଥିଲେ, ଯାହା ବ୍ରିଟିଶ ପ୍ରଶାସନ କ୍ଷେତ୍ରରେ ଘନୀଭୂତ ବାଦବିବାଦର ଝଡ଼ଝଞ୍ଜା ସୃଷ୍ଟି କରିଥିଲା । ମାତ୍ର ୧୮୭୯ ଜୁଲାଇ ମାସରେ ରାଣୀ ସୂର୍ଯ୍ୟମଣି, ଜଗନ୍ନାଥ ଜେନାମଣିଙ୍କ ତରଫରୁ ମନ୍ଦିର ପରିଚାଳନାପାଇଁ ଆବେଦନ କରିଥିଲେ ଯାହା କଟକ ଜିଲ୍ଲା ଜଜ୍‌ଙ୍କ ପକ୍ଷରୁ ୧୨.୮.୧୮୭୯ରେ ମଞ୍ଜୁରୀ ପ୍ରାପ୍ତ ହୋଇଥିଲା । ରାଣୀ ପର୍ଦ୍ଦା ଆଢୁଆଳରେ ଅବସ୍ଥାନ କରୁଥିବାରୁ, ବେଳେବେଳେ ଶ୍ରୀଜଗନ୍ନାଥଙ୍କ ଯାତ୍ରାବେଳେ କିଛି ସମସ୍ୟାର ଉଦ୍‌ଭବ ହେଉଥିଲା । ଏହାକୁ ଘେନି ବିଭିନ୍ନ ସମୟରେ ଶ୍ରୀମନ୍ଦିର ପରିଚାଳନାକୁ ହସ୍ତାନ୍ତର କରିବାପାଇଁ କ୍ରମାଗତ ଭାବେ ବାଦବିବାଦପୂର୍ଣ୍ଣ ଚକ୍ରାନ୍ତମାନ ସୃଷ୍ଟି ହେଉଥିଲା । ମାତ୍ର ରାଣୀ ସୂର୍ଯ୍ୟମଣି ତାଙ୍କର ପ୍ରତ୍ୟୁତ୍ପନ୍ନମତି ଦୂରଦୃଷ୍ଟି ମାଧ୍ୟମରେ ଏ ସମସ୍ତର ଆଶୁ ସମାଧାନ କରିପାରୁଥିଲେ ।

ଅଧିକାରକୁ ଅଧିକ ସୁଦୃଢ଼ କରିବାକୁ ଯାଇ, ୧୮୮୨ ସାଲରେ ଜଗନ୍ନାଥ ଜେନାମଣିଙ୍କୁ 'ରାଜା ମୁକୁନ୍ଦଦେବ' ପଦବୀରେ ରାଣୀ ସୂର୍ଯ୍ୟମଣି ଅଭିଷିକ୍ତ କରିଥିଲେ । କଳାପାଣିରେ ଗାଦିଚ୍ୟୁତ ରାଜା ଜୀବିତ ଥିବାରୁ ସରକାର ଏହି ପଦବୀକୁ ସ୍ୱୀକୃତି ପ୍ରଦାନ କରିନଥିଲେ । ମାତ୍ର ଅଦ୍‌ଭୁତ ପାରଦର୍ଶିତା ଏବଂ ବିଚକ୍ଷଣତା ସହ ମଧୁସୂଦନ ଦାସଙ୍କ ଦ୍ୱାରା ଲିଖିତ ତଥା ରାଣୀଙ୍କ ଦ୍ୱାରା ପ୍ରଦତ୍ତ ଏହି ଦରଖାସ୍ତକୁ ବିଚାରକୁ ନେଇ ବ୍ରିଟିଶ ସରକାର କେବଳ ସ୍ୱୀକୃତି ପ୍ରଦାନ କରିନଥିଲେ, ୧୮୮୫ ସାଲ ନଭେମ୍ବର ମାସରେ କଟକରେ ବଙ୍ଗର ଗଭର୍ଣ୍ଣର ରିଉସ୍ ଥମ୍ପସନ୍‌ଙ୍କର ଆୟୋଜିତ ଏକ ଦରବାରରେ ମୁକୁନ୍ଦଦେବଙ୍କୁ ସ୍ୱତନ୍ତ୍ର ମାନ୍ୟତାପୂର୍ଣ୍ଣ ସନନ୍ଦ ପ୍ରଦାନ କରିଥିଲେ । ମାତ୍ର ଉକ୍ତ ସମ୍ମାନନୀୟ ଦରବାରରେ ଗଭର୍ଣ୍ଣରଙ୍କ ଅପେକ୍ଷା, ଠାକୁର ରାଜା ମୁକୁନ୍ଦଦେବଙ୍କ ପ୍ରତି ଜନତାର ବିହ୍ୱଳିତ ତଥା ଅକୁଣ୍ଠ ଶ୍ରଦ୍ଧା ନିବେଦନରେ ଗଭର୍ଣ୍ଣର ଅପମାନିତ ବୋଧ କରି ଶ୍ରୀମନ୍ଦିରର ପରିଚାଳନାକୁ ସ୍ୱହସ୍ତକୁ ନେବାପାଇଁ ଉଦ୍ୟମ ଅବ୍ୟାହତ ରଖିଥିଲେ । ଏହି ଉଦ୍ୟମର ଏକ ଅଂଶସ୍ୱରୂପ ୧୮୮୬ ସାଲ ଡିସେମ୍ବର ମାସରେ କଟକ ଜିଲ୍ଲାକୋର୍ଟରୁ ଆଦେଶ ଆଣି ଦେଉଳର କିଛି ଅଂଶକୁ ଜବତମୁଦ କରିଥିଲେ ।

ସମସ୍ତ ପ୍ରଖ୍ୟାତ ଓକିଲଙ୍କ ନାସ୍ତିବଚନ ସତ୍ତ୍ୱେ ମଧୁସୂଦନ ଦିନେ ପ୍ରଭାତରେ ସ୍ନାନ ଓ ପ୍ରାତରାଶ ସମାପ୍ତ କରି ସମାହିତ ଚିତ୍ତରେ ସମସ୍ତ ବିଷୟର ଆଇନଗତ ବ୍ୟାଖ୍ୟାନ ଓ ତର୍ଜମା ସହିତ ଗୋଟିଏ ସ୍ୱତନ୍ତ୍ର ନୋଟ୍ ମୁଦ୍ରଣ କରିଥିଲେ, ଯାହାକୁ ଆଧାର କରି ବାରିଷ୍ଟରଗଣ, ଜନ୍ ଉଡ୍‌ରଫ୍, ଇଭାନସ୍ ଓ ସାଣ୍ଡେଲ କଲିକତା ହାଇକୋର୍ଟରେ ଲଢ଼ିଥିଲେ । ଏହି ଅପିଲ କେଶ ମାର୍ଚ୍ଚ ୧୮୮୭ରେ ଦାଖଲ ହୋଇଥିଲା ।

ଏହି ଅପିଲ୍ କେସ୍‌ର ଜବାବ ସୁଆଲପାଇଁ ତିନିଦିନ ଧାର୍ଯ୍ୟ ହୋଇଥିଲା । ଏହା ଥିଲା ସମଗ୍ର ଭାରତରେ ଏକ ବହୁଚର୍ଚ୍ଚିତ କେସ୍, ଯାହା ଉପରେ ଜନତାର ଦୃଷ୍ଟି ନିବଦ୍ଧ ରହିଥିଲା । ଏହାର ବିବରଣୀ ଶୁଣିବାପାଇଁ କୋର୍ଟ ପରିସର ଲୋକାରଣ୍ୟ ହୋଇଯାଇଥିଲା । ଦୂରଦୂରାନ୍ତରରୁ ଆଇନଜୀବୀମାନେ ଆସି ଉପସ୍ଥିତ ଥିଲେ । ମାତ୍ର ମଧୁସୂଦନ ଦାସଙ୍କର ପ୍ରସ୍ତୁତ ତଥ୍ୟାବଳୀ ଏଭଳି ଯୁକ୍ତିନିଷ୍ଠ ଓ ଶାଣିତ ଥିଲା ଯେ, ତାହାକୁ ଆଧାରକରି ବିଦ୍‌ବତ୍ତାସମ୍ପନ୍ନ ପ୍ରଖ୍ୟାତ ବାରିଷ୍ଟରଗଣ ତିନିଘଣ୍ଟା ମଧ୍ୟରେ ତାଙ୍କର ଉପସ୍ଥାପନା ସାରି ଦେଇଥିଲେ । ରାଣୀ ସୂର୍ଯ୍ୟମଣି ପାଟମହାଦେଈ ବିଜୟୀ ଘୋଷିତ ହେଲେ । ଏହି ବିଜୟ ଲାଗି ବାରିଷ୍ଟର ବର୍ଗ ସମସ୍ତ କୃତିତ୍ୱ ମଧୁସୂଦନ ଦାସଙ୍କୁ ସମର୍ପି ଥିଲେ । ମଧୁସୂଦନ ଦାସ ସମସ୍ତଙ୍କର ଦୃଷ୍ଟିର କେନ୍ଦ୍ରବିନ୍ଦୁରେ ପରିଣତ ହୋଇଥିଲେ । ଏକ ନୈଶ ଭୋଜିସଭାରେ ମଧୁସୂଦନ ଦାସଙ୍କୁ ବଂଗର ନବନିଯୁକ୍ତ ଗଭର୍ଣ୍ଣର ସାର୍ ଷ୍ଟୁଆର୍ଟ ବେଲି ସମ୍ଭ୍ରମର ସହ ରାଜଭବନକୁ ନିମନ୍ତ୍ରଣ କରି ଶ୍ରୀଜଗନ୍ନାଥଙ୍କ ମନ୍ଦିର ଉପରେ ଗଜପତି ବଂଶର ଅଧିକାରକୁ ସ୍ୱୀକୃତି ପ୍ରଦାନ କରିଥିଲେ । ସୂର୍ଯ୍ୟମଣି ପାଟମହାଦେଈଙ୍କ ପକ୍ଷରୁ ମଧୁସୂଦନ ଦାସ ରାଜିନାମାରେ ଦସ୍ତଖତ କରିଥିଲେ ।

ବିଜୟ ପ୍ରତ୍ୟାବର୍ତ୍ତନର ମହୋତ୍ସବ ଅକଳ୍ପନୀୟ ଥିଲା । ହାଇକୋର୍ଟର ଆଦେଶନାମାକୁ ସଂଗରେ ଧରି ମଧୁସୂଦନ ଦାସ ରାଣୀ ସୂର୍ଯ୍ୟମଣି ପାଟମହାଦେଈଙ୍କୁ ଭେଟିବା ପାଇଁ ପାଲିଙ୍କିରେ କଟକରୁ ଯାତ୍ରା କରିଥିଲେ ।

ସରକାରଙ୍କ ସହିତ ଆପୋଷ ଆଲୋଚନା ମଧ୍ୟରେ ସ୍ଥିରୀକୃତ ହେଲା ଯେ, ରାଣୀ ସୂର୍ଯ୍ୟମଣି ସ୍ୱନିଯୁକ୍ତ ମ୍ୟାନେଜରଙ୍କ ଜରିଆରେ ମନ୍ଦିରର ପରିଚାଳନାକୁ ନିଜର କର୍ତ୍ତୃତ୍ୱ ମଧ୍ୟରେ ରଖିପାରିବେ । ରାଣୀ ସୂର୍ଯ୍ୟମଣିଙ୍କୁ ମନ୍ଦିର ପରିଚାଳନାରେ ସହାୟତା କରିବାପାଇଁ ମଧୁସୂଦନ ଦାସ ରାଣୀଙ୍କ ଅନୁମୋଦନ କ୍ରମେ ଏକ କମିଟି ଗଠନ କରିଥିଲେ, ଯେଉଁ କମିଟି ରାଣୀଙ୍କର ନିର୍ଦ୍ଦେଶନାରେ ମନ୍ଦିରର ପରିଚାଳନାର ତଦାରଖ କରୁଥିଲେ । ପ୍ରକୃତରେ ମଧୁସୂଦନ ଦାସ ୧୯୩୪ ସାଲରେ ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ଶ୍ରୀମନ୍ଦିର ତଥା ଗଜପତି ବଂଶର ସୁରକ୍ଷାପାଇଁ ପ୍ରତିଶ୍ରୁତିବଦ୍ଧ ଥିଲେ ।

ରାଜା ମୁକୁନ୍ଦଦେବ ବୟଃପ୍ରାପ୍ତ ହୋଇ ୧୮୯୭ ସାଲରେ ଗାଦିନସିନ ହେଲେ ଓ ସୋନପୁର ରାଜବଂଶରେ ବିବାହ କରିଥିଲେ । ମାତ୍ର ଶେଷ ପର୍ଯ୍ୟନ୍ତ ଅପୁତ୍ରିକ ଥିଲେ । ତାଙ୍କ ପ୍ରଶାସନ ମଧ୍ୟ ତ୍ରୁଟିଶୂନ୍ୟ ନଥିଲା । ତେଣୁ ପର୍ଦ୍ଦା ଅନ୍ତରାଳରେ ରାଣୀ ସୂର୍ଯ୍ୟମଣିଙ୍କୁ ବହୁ ସମସ୍ୟାର ସମାଧାନ କରିବାକୁ ପଡୁଥିଲା ଏବଂ ନାଟ୍ୟକାର ରାମଶଙ୍କର ରାୟଙ୍କର ସହାୟତାରେ ମଧୁସୂଦନ ଶ୍ରୀମନ୍ଦିର ପରିଚାଳନା ଶୃଙ୍ଖଳିତ କରି ରଖିଥିଲେ । ପରବର୍ତ୍ତୀକାଳରେ ରାଣୀ ସୂର୍ଯ୍ୟମଣିଙ୍କ ପରାମର୍ଶ କ୍ରମେ ଭୂତପୂର୍ବ ବୃଦ୍ଧ ମ୍ୟାନେଜର ରାୟ ବାହାଦୂର ରାଜକିଶୋର ଦାସଙ୍କୁ ପୂର୍ବ ଦସ୍ତୁର ମତେ ଦେବାନ ଭ୍ରମରବର ରାୟ ଶାଢ଼ି ଦେଇ ନଜର ଦେବାନ ରୂପେ ନିଯୁକ୍ତି ପ୍ରଦାନ କରାଗଲା । ଶ୍ରୀମନ୍ଦିରର କାର୍ଯ୍ୟଧାରା ସୁପରିଚାଳିତ ହେଲା ।

ରାଜା ମୁକୁନ୍ଦଦେବ ପୁତ୍ରହୀନ ଥିଲେ । ମାତ୍ର ସୂର୍ଯ୍ୟମଣି ପାଟମହାଦେଈଙ୍କ ଦୂରଦର୍ଶିତା ଆଉ ପୁରୋଦୃଷ୍ଟି ବଳରେ ବାମଣ୍ଡା ରାଜା ସୁଢ଼ଳ ଦେବଙ୍କ ପୌତ୍ର ଲାଲ୍‌ମୋହନ ଦେବ, ଯୁବରାଜ ରୂପେ ଗୃହୀତ ହେଲେ ଏବଂ ୧୪.୨.୧୯୨୬ରେ ରାଜା ମୁକୁନ୍ଦ ଦେବଙ୍କର ପରଲୋକ ପ୍ରାପ୍ତିପରେ, ଯୁବରାଜ ରାମଚନ୍ଦ୍ର ଦେବ (୪ର୍ଥ) ନାମରେ ନାମିତ ହୋଇ ସିଂହାସନ ଆରୋହଣ କରିଥିଲେ । ଏହାପରେ ସୁଦୀର୍ଘ ଶହେ ବର୍ଷ ଧରି ଗଜପତି ବଂଶ ତଥା ଶ୍ରୀମନ୍ଦିର ପରିଚାଳନାରେ ଉପୁଜିଥିବା ବିକ୍ଷୁବ୍ଧ ଘନଘଟା ଓ ଝଡ଼ଝଞ୍ଜାର ଅବସାନ ଘଟିଥିଲା । ଏକ ଶହ ବର୍ଷବ୍ୟାପୀ ବ୍ରିଟିଶ ସାମ୍ରାଜ୍ୟବାଦର ଦୂରଭିସନ୍ଧିମୂଳକ ସମସ୍ତ ଘୃଣ୍ୟ ଚକ୍ରାନ୍ତକୁ ପ୍ରତିହତ କରି ବିପଦସଂକୁଳ ସମୟଧାରାକୁ ଅତୀବ ସାହସିକତାର ସହ ଅତିକ୍ରମ କରି ଅବଶେଷରେ ୨୪-୧୧-୧୯୨୬ର ପୁଣ୍ୟତିଥିରେ ମହା କାର୍ତ୍ତିକ ମାସର ପଞ୍ଚତୀର୍ଥ କ୍ଷେତ୍ର ପରିକ୍ରମା ଦିବସରେ ରାଣୀ ସୂର୍ଯ୍ୟମଣି ପରଲୋକ ଗମନ କରିଥିଲେ । ଊନବିଂଶ ତଥା ବିଂଶ ଶତାବ୍ଦୀର ପୂର୍ବ ଭାଗର ପ୍ରେକ୍ଷାପଟ୍ଟରେ, ଓଡ଼ିଶାର କୌଣସି ନାରୀନେତ୍ରୀଙ୍କର ଭୂମିକା ସମଗ୍ର ଓଡ଼ିଆ ଜାତୀୟତା, ଓଡ଼ିଆ ସଂସ୍କୃତି ତଥା ଶ୍ରୀମନ୍ଦିରର ସୁରକ୍ଷା ଲାଗି ସମର୍ପିତା ରାଣୀ ସୂର୍ଯ୍ୟମଣି ପାଟମହାଦେଈଙ୍କର ଅବିସ୍ମରଣୀୟ ଅବଦାନକୁ ଅତିକ୍ରମ କରିପାରିନାହିଁ । ଅଥଚ ଓଡ଼ିଆ ଜାତିର ଦୁର୍ଭାଗ୍ୟ ଯେ ଏହି କୀର୍ତ୍ତିଶାଳିନୀ ମହିୟସୀ ରାଣୀ ସୂର୍ଯ୍ୟମଣି ପାଟମହାଦେଈଙ୍କର ଗରିମାମୟ ତଥା ମହିମାଦୀପ୍ତ ସ୍ମୃତି ସମ୍ଭାର ଆଜି ବିସ୍ମୃତି ଗର୍ଭରେ ବିଲୁପ୍ତ । ଏହା ହିଁ ଏ ଜାତିର ଚରମ ଦୁର୍ଭାଗ୍ୟ ।



# ଜଣେ ଓଡ଼ିଆ

ଜଣେ ଓଡ଼ିଆ ଅଥବା An Uriya । ଏହା ନିଶ୍ଚିତରେ ଜଣେ ବ୍ୟକ୍ତିତ୍ୱର ପରିଚିତି । ଏହି ପରିଚୟଲାଗି ଏକ ଦୂରନ୍ତ ଅଭିଳାଷ ଆଉ କାହାର ବା ଥିଲା ? ଓଡ଼ିଆ ଜାତିର ଅନ୍ତରତମ ପ୍ରଦେଶରେ ଥିବା ନିର୍ବାପନମୁଖୀ ପ୍ରାଣସତ୍ତାକୁ ସ୍ପର୍ଶ କରି ତା'ର ଅସ୍ତିତ୍ୱକୁ ଯିଏ ଉଦ୍ଦୀପିତ କରିଥିଲେ; ଏହା ତାଙ୍କର ଥିଲା ଏକାନ୍ତ ଗୌରବଦୀପ୍ତ ପରିଚୟ । 'ଏନ୍ ଓରିଆ' ବା ଜଣେ ଓଡ଼ିଆ ଥିଲା, ୧୮୮୫ ସାଲରୁ କ୍ରମାନ୍ୱୟରେ ଇଂରାଜୀରେ ଉତ୍କଳ ଦୀପିକାରେ ପ୍ରକାଶିତ ମଧୁସୂଦନ ଦାସଙ୍କର ବହୁ ତାତ୍ପର୍ଯ୍ୟପୂର୍ଣ୍ଣ ରଚନାରେ ଲେଖକୀୟ ନାମ । ଏହି ନାମ ମଧ୍ୟ ଥିଲା ସ୍ୱୟଂ ତାଙ୍କର ଏକ ସ୍ୱତଃସିଦ୍ଧ ଘୋଷଣାନାମା ।

ତିରୋଧାନର ଦୁଇଦିନ ପୂର୍ବରୁ ଅପେକ୍ଷାରତ ନୀଳକଣ୍ଠ ଦାସଙ୍କ ସମକ୍ଷରେ, ଏକ ଛାତ୍ର ଗୋଷ୍ଠୀର ପରିଦର୍ଶନ ବେଳେ ମଧୁସୂଦନଙ୍କର ବଜ୍ର ନିର୍ଘୋଷ କଣ୍ଠରେ ଘୋଷଣାନାମା ଥିଲା- ''ହଁ ମନେରଖିଥିବ ଏହିପରି ଜଣେ ଓଡ଼ିଆ ଥିଲା, ଯେ ଶାସନର ଶକ୍ତିକୁ ଆଦୌ ଭୟ କରିନଥିଲା, ଆଉ କୌଣସି ପ୍ରଲୋଭନର ବଶବର୍ତ୍ତୀ ନହୋଇ ନିଜର ବିବେକାନୁମୋଦିତ ମାର୍ଗରୁ ତିଳେମାତ୍ର ଘୁଞ୍ଚି ନଥିଲା ।'' ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଏକମାତ୍ର ପରିଚୟ ଥିଲା ଓଡ଼ିଆ ଆଉ ଓଡ଼ିଆ । ସେ ଥିଲେ ସର୍ବକାଳର ସର୍ବଶ୍ରେଷ୍ଠ ଓଡ଼ିଆ । ଓଡ଼ିଆ ଇତିହାସରେ ଯେଉଁ ଗୌରବଦୀପ୍ତ ପୁରୁଷମାନେ ସ୍ଥାନ ପାଇଛନ୍ତି, ମଧୁସୂଦନଙ୍କ ସୃଷ୍ଟ ଓଡ଼ିଶା ଥିବାରୁ ହିଁ ସେମାନଙ୍କର ଖ୍ୟାତି ଆଜି ଉଦ୍‌ଘୋଷିତ । ହଁ, ମଧୁସୂଦନୀୟ ଯବକାଚର ପୃଷ୍ଠଭୂମିରେ ସେହିମାନଙ୍କର ଗରିମାମୟ ଚିତ୍ରପଟ ଆଜି ଉତ୍ତୋଳିତ । ଅଥଚ ସ୍ୱୟଂ ମଧୁସୂଦନ ଆଉ ତାଙ୍କର ଗୌରବଦୀପ୍ତ ସ୍ମୃତିପୀଠ ଆଜି ମହିଳା କଲେଜର ପରିସରରେ କାରାରୁଦ୍ଧ, ବିଡ଼ମ୍ବିତ ଆଉ ବିପର୍ଯ୍ୟସ୍ତ । ଏହି ଚରମ କୃତଜ୍ଞତା ଭରା ପ୍ରବଞ୍ଚନାର ଆଉ ତୁଳନା ନାହିଁ ।

ସହରୀୟ ପୃଷ୍ଠଭୂମିରେ ଅସଂଖ୍ୟ ନେତୃପୁରୁଷ ଜନ୍ମଗ୍ରହଣ କରିଥିଲେ । ମାତ୍ର ମଧୁସୂଦନ ଏକାନ୍ତ ଭାବେ ଓଡ଼ିଶାର ପଲ୍ଲୀ ଅର୍ଥନୀତିର ପଟ୍ଟଭୂମିରେ କେବଳ ଜନ୍ମଗ୍ରହଣ କରିନଥିଲେ, ତାଙ୍କର

ପ୍ରତ୍ୟୁତ୍ପନ୍ନମତିତାର ପ୍ରଖର ଦୃଷ୍ଟିଭଂଗୀପୂର୍ଣ୍ଣ ଅନୁସନ୍ଧିତ୍ସା ଘେନି ସେ ବାଲ୍ୟକାଳରୁ ଓଡ଼ିଶୀ କୃଷି ଓ ଗ୍ରାମ୍ୟଶିଳ୍ପର ଉତ୍ପାଦନ ପ୍ରକ୍ରିୟା ସହ ଘନିଷ୍ଠ ଭାବେ ନିବନ୍ଧିତ ଥିଲେ । ଏହାହିଁ ତାଙ୍କୁ ମହାତ୍ମାଗାନ୍ଧୀଙ୍କର ଅନ୍ୟତମ ମାର୍ଗଦର୍ଶକ ରୂପେ ଉପସ୍ଥାପିତ କରିଥିଲା । କେବଳ ସେତିକି ନୁହେଁ, ମଧୁସୂଦନ ଶୈଶବ ଅବସ୍ଥାରୁ ଓଡ଼ିଆ ଜାତିର ଅନ୍ତସ୍ଥଳୀର ଆଦ୍ୟ ଉତ୍ସରୁ ପ୍ରବାହିତ ନିବିଡ଼ ପ୍ରାଣ ନିର୍ଯ୍ୟାସକୁ ପାନ କରି ଋଦ୍ଧିମନ୍ତ ହୋଇଥିଲେ । ସେହି ସଂପର୍କରେ ତାଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ବକ୍ତବ୍ୟ ଥିଲା -

''ପିଲାଦିନେ କୋଇଲି ଗୋପୀଭାଷା ପଢ଼ିଥିଲି । ମୋର ମାଆଙ୍କୁ ଖୁସି କରାଇବାପାଇଁ ବଳରାମ ଦାସଙ୍କ ରାମାୟଣ, ସାରଳା ଦାସଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ପୋଥିରୁ ପଢ଼ି ଶୁଣାଉଥିଲି । ଉପେନ୍ଦ୍ର ଭଞ୍ଜଙ୍କର ବୈଦେହୀଶ ବିଳାସ, ଲାବଣ୍ୟବତୀ, ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଦଗ୍ଧ ଚିନ୍ତାମଣି, ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ଉପର ଠାଉରିଆ ଭାବେ ପଢ଼ିଥିଲି ।'' ପ୍ରକୃତରେ ମଧୁସୂଦନ ଏହି ସବୁ ଗ୍ରନ୍ଥ ଅତ୍ୟନ୍ତ ପ୍ରଗାଢ଼ ମନୋନିବେଶ ସହିତ ଏପରି ଅଧ୍ୟୟନ କରିଥିଲେ ଯେ ବହୁ ଛାନ୍ଦ ତାଙ୍କର କଣ୍ଠସ୍ଥ ଥିଲା । ଏ ସଂପର୍କରେ ଭାଷାବିତ୍ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଗଭୀର ଅନୁସନ୍ଧିତ୍ସା ଥିଲା - '' ହେ ମଧୁସୂଦନ ! ତୁମେ ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ଆଦିଙ୍କର ବଡ଼ବଡ଼ ଛାନ୍ଦମାନ ମୁହଁରେ ନଛୁଣ୍ଟି ଆବୃତ୍ତି କରିଥିବା ଯେ ଶୁଣିଛନ୍ତି, କବିସୂର୍ଯ୍ୟ, ବନମାଳୀ ଆଦିଙ୍କର ସଂଗୀତ ବୋଲିବାର ଯେ ଶୁଣିଛନ୍ତି, ତୁମ ବକ୍ତୃତା ଯେ ଶୁଣିଅଛି ସେ ଜାଣେ ଯେ , ତୁମେ ଉଚ୍ଚଶ୍ରେଣୀର ସାହିତ୍ୟାନୁରାଗୀ ଓ ସାହିତ୍ୟସେବୀ ଥିଲ ।'' ମଧୁସୂଦନଙ୍କର ଓଡ଼ିଆ ପଲ୍ଲୀଗୀତ ଆଉ ଲୋକବାଣୀରେ ଅଗାଧ ପାରଦର୍ଶିତା ରହିଥିଲା । ଏଣୁ ସେ ଓଡ଼ିଆ ସଂସ୍କୃତିର ଆଦି ଉତ୍ସ ଏବଂ ଗହନ ପ୍ରାଣତଂତ୍ରୀଠାରୁ ସତତ ଅନୁପ୍ରେରଣା ଲାଭ କରୁଥିଲେ ।

ସେହି ମହିମାବନ୍ତ କାର୍ଯ୍ୟଧାରାର ଉତ୍ପ୍ରେକ୍ଷା ଏହିପରି ଥିଲା । ଯେତେବେଳେ ୧୮୮୫ ସାଲରେ ଉପେନ୍ଦ୍ର ଭଞ୍ଜଙ୍କର କିଛି କାବ୍ୟ ଆଉ ବିଶ୍ୱନାଥ ଖୁଣ୍ଟିଆଙ୍କର 'ବିଚିତ୍ର ରାମାୟଣ' ପ୍ରକାଶନ ପରେ ତାହାରି ପରିପ୍ରସାର ବିରୁଦ୍ଧରେ ତୁମୁଳ ବାଧା ଆଉ ପ୍ରତିରୋଧ ସୃଷ୍ଟି ହୋଇଥିଲା, ସେତେବେଳେ ଓଡ଼ିଶାର ସାହିତ୍ୟାକାଶ ଧୂଳି ପଟଳରେ ଆଚ୍ଛାଦିତ ଥିଲା । ସେହି ସମୟରେ ଏହା ବିରୋଧରେ ତୀବ୍ର ଆଉ ଶାଣିତ ପ୍ରତିବାଦ କରି ୧୫.୮.୧୮୮୫ରେ ଉତ୍କଳ ଦୀପିକାରେ ମଧୁସୂଦନ ଇଂରାଜୀରେ ଯେଉଁ ପତ୍ରଟି ପ୍ରକାଶ କରିଥିଲେ, ତହିଁରେ ତାଙ୍କର ଲେଖକୀୟ ନାମ 'ଏନ୍ ଓରିଆ' ବୋଲି ସୂଚିତ କରିଥିଲେ । ଏହାପରେ 'ଏନ୍ ଓରିଆ'ର ପ୍ରବାହ ଉତ୍ତାଳ ସ୍ରୋତ ଘେନି ପ୍ରବାହିତ ହୋଇଥିଲା ।

ସମ୍ବଲପୁରରେ ଓଡ଼ିଆ ଭାଷା ଉଚ୍ଛେଦର ଘୋଷଣାନାମା ପରେ ମଧୁସୂଦନ ୧୮୯୫ ର ଫେବୃଆରିରୁ ମଇମାସ ମଧ୍ୟରେ ପ୍ରାୟ ପ୍ରତିପକ୍ଷରେ 'ମଧ୍ୟପ୍ରଦେଶରୁ ଓଡ଼ିଆ ଭାଷାର ନିର୍ବାସନ' ଶୀର୍ଷକ ଆଠଗୋଟି ଭାଷାତାତ୍ତ୍ୱିକ ନିବନ୍ଧ ଇଂରାଜୀ ଭାଷାରେ 'ଏନ୍ ଓରିଆ' ଲେଖକୀୟ ନାମରେ ଉତ୍କଳଦୀପିକାରେ ପ୍ରକାଶ କରି ବ୍ରିଟିଶ ପ୍ରସାଶନର ଦୃଷ୍ଟି ଆକର୍ଷଣ କରିବା ସହିତ ଅବଶେଷରେ ଲେଖିଥିଲେ, 'ମାତୃଭାଷାର କଣ୍ଠରୋଧ କରିବା ଭଳି ଜଘନ୍ୟ ଅପରାଧ ବର୍ବରତମ ପ୍ରଶାସନରେ

ମଧ୍ୟ ଦୃଷ୍ଟିଗୋଚର ହୁଏ ନାହିଁ ।' 'ଏନ୍ ଓରିଆ'ର ଲେଖକୀୟ ନାମରେ 'ଅଭିନୀତ ନାଟକର ପର୍ଯ୍ୟାଲୋଚନା' 'ୟୁରୋପ ଭ୍ରମଣ ଡାଏରୀ' (ଉଦାତ୍ତ ପର୍ଯ୍ୟଟନ ସାହିତ୍ୟ), 'କର୍ଜନଙ୍କର ଓଡ଼ିଶା ପରିଦର୍ଶନ', 'ଚାଷୀର କଷଣ ଶିଳ୍ପୀର ଦୈନ୍ୟ', ଉତ୍କଳ ସମ୍ମିଳନୀ ଓଡ଼ିଶାର ଅନ୍ତର୍ନିହିତ ସ୍ୱାର୍ଥ ତଥା ପ୍ରଶାସନର ଅତ୍ୟାଚାର ସଂପର୍କରେ ପ୍ରକାଶିତ କରିବା ସହ ଅନ୍ୟକ୍ଷେତ୍ରରେ ଓଡ଼ିଶାର ଔଦାର୍ଯ୍ୟ ଆଉ ଗରିମାମୟ ମହତ୍ତ୍ୱକୁ ମଧ୍ୟ ସଦର୍ପେ ଉଦ୍‌ଘୋଷିତ କରିଥିଲେ ।

ମଧୁସୂଦନ ୧୯୦୩ ସାଲରେ ଉତ୍କଳ ସମ୍ମିଳନୀ ଅଧିବେଶନରେ ଗୃହୀତ ପ୍ରସ୍ତାବବଳୀ ସର୍ବ ପ୍ରଥମେ ଓଡ଼ିଆ ଭାଷାରେ ଗ୍ରହଣ କରି ବଙ୍ଗ ଆଦି ଭାରତର ବହୁ ପ୍ରଦେଶରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ । ମଧୁସୂଦନ ପ୍ରଗାଢ଼ ଦେଶବତ୍ସଳତାର ଆଧାରରେ ଯେଉଁ ତୋଜୋଦୀପ୍ତ ଅସଂଖ୍ୟ ଲେଖା, ନିବନ୍ଧ, ବକ୍ତୃତା ଏବଂ ଉଦ୍ଦୀପିତ କବିତାମାନ ରଚନା କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି, ତାହା ପ୍ରକୃତରେ ଥିଲା ଉତ୍ତୁଙ୍ଗ ଓଡ଼ିଆ ଜାତୀୟତାର ନିଜସ୍ୱ ସଂପତ୍ତି ।

ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ସ୍ଥାପନା କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କ ବ୍ୟତୀତ ଭାରତର ସମସ୍ତ ରାଜନୈତିକ ଦଳ ଆଉ ତୁଙ୍ଗ ନେତୃବର୍ଗ ଏହାର ତୀବ୍ର ବିରୋଧ କରିଚାଲିଥିଲେ । ୨୦.୮.୧୯୨୫ର ପ୍ରାତଃକାଳରେ କଟକରେ ମଧୁସୂଦନଙ୍କ ପ୍ରଦତ୍ତ ଅଭ୍ୟର୍ଥନାର ଉତ୍ତର ଦେଇ ମହାତ୍ମାଗାନ୍ଧୀ ଓଜସ୍ୱୀ କଣ୍ଠରେ କହିଥିଲେ, 'ଜଣେ ବ୍ୟକ୍ତି ମାତୃଭାଷାକୁ ପରିତ୍ୟାଗ କରି ଯଦି ଅନ୍ୟ ଏକ ଭାଷାକୁ ଗ୍ରହଣ କରେ, ସେ ନିଶ୍ଚିତରେ ତାହାର ସମାଜ ଆଉ ସଂସ୍କୃତି ପ୍ରତି ବୈର ଭାବଯୋଗୁଁ ଏହା କରିଥାଏ ଆଉ ପରିଣାମରେ ହୋଇଥାଏ ସମାଜରୁ ବିଚ୍ଛିନ୍ନ । ସମାଜରୁ ବିଚ୍ଛିନ୍ନ ହେବା ଏକ ଭାବଗତ ବିରୋଧୀ କାର୍ଯ୍ୟ । ଏଣୁ ଅନ୍ୟ ଅର୍ଥରେ ମାତୃଭାଷାର ନିର୍ବାସନ ପ୍ରକୃତରେ ଏକ ଭାବଗତ ଦ୍ରୋହୀ କାର୍ଯ୍ୟକ୍ରମ ଅଟେ ।''(ଅଭିଲେଖାରୁ ପ୍ରାପ୍ତ) ବୋଧହୁଏ, ଏହାଥିଲା ସର୍ବୋତ୍ତମ ପରିପ୍ରକାଶ ।

ଆଜି ମଧୁସୂଦନଙ୍କର ତିରୋଧାନର ଦୀର୍ଘ ବ୍ୟବଧାନ ପରେ ତାଙ୍କ ଗରିମାମୟ କାର୍ଯ୍ୟଧାରାର ନିରପେକ୍ଷ ମୂଲ୍ୟାୟନ କଲେ ଗର୍ବରେ ଆମର ମଥା ଉନ୍ନତ ହୋଇଯାଏ ।



# ପ୍ରୟାଗର 'ନେହେରୁ ତୀର୍ଥ'ରୁ ମହାନଦୀ ତୀରସ୍ଥ 'ମଧୁସ୍ମୃତି'

ତାହା ଥିଲା ୧୯୫୩ ସାଲ ଫେବୃଆରି ତେର ତାରିଖ, ଶୀତଳ ସକାଳର ନାତିଉଷ୍ଣ ପତରଝଡ଼ା ସମୟ । ମଧୁସୂଦନଙ୍କ ବାସଭବନ 'ମଧୁସ୍ମୃତି'ରେ ମଳୟର ହାଲୁକା ସ୍ପର୍ଶରେ ଗଛ ଗହଳରୁ ପୀତାଭ ପତ୍ରସବୁ ଝରିପଡୁଥାଏ ଅବାରତ ଗତିରେ । କେବେକେବେ ଖଣ୍ଡିଆଭୂତର ହାବୁକା, ପତ୍ରସବୁକୁ ଘୂର୍ଣ୍ଣି ଆକାରରେ ଉତ୍ତୋଳିତ କରି ଧୂଳିଝଡ଼ର ଉତ୍ତାଳ ପବନ ଭିତରେ ଭସେଇ ନେଉଥାଏ । ମଧୁସୂଦନଙ୍କର ଅଷ୍ଟାଦଶ ଶ୍ରାଦ୍ଧବାର୍ଷିକୀ ପାଳିତ ହୋଇଥିଲା ୧୯୫୩ ଫେବୃଆରି ୪ ତାରିଖରେ , ଯାହାର ଶୋକାଛନ୍ନ ଆକୁଳତା ଏବେ ମଧ୍ୟ ପୀତାଭ ଗଛର କରୁଣ ସ୍ମୃତି ପରି ଗୁମୁରି ଉଠେ ।

ହେଲେ ସେହି ବେଦନାସିକ୍ତ ମର୍ମନ୍ତୁଦ ପାଂଶୁଳ ସ୍ମୃତିସବୁ ସେଦିନ ପରିବର୍ତ୍ତିତ ହୋଇଯାଇଥାଏ ବିପୁଳ ଆହ୍ଲାଦଭରା ମହୋତ୍ସବରେ । ମଧୁସ୍ମୃତିର ସେହି ଐତିହାସିକ ଅଂଗନରେ ଉନ୍ମୋଚିତ ହେବାକୁ ଯାଉଥାଏ ମଧୁସୂଦନଙ୍କର ପୂର୍ଣ୍ଣାବୟବ ମାର୍ବଲ ପ୍ରତିମୂର୍ତ୍ତି ଭାରତର ପ୍ରଧାନମଂତ୍ରୀ ପଣ୍ଡିତ ଜବାହର ଲାଲ୍ ନେହେରୁଙ୍କରଦ୍ୱାରା । ଏହି ପ୍ରତିମୂର୍ତ୍ତିର ସ୍ଥପତି ହେଉଛନ୍ତି ମଧୁସୂଦନଙ୍କ ଦ୍ୱାରା ପ୍ରଶିକ୍ଷିତ, ତାହାଙ୍କ ଦ୍ୱାରା ସ୍ଥାପିତ କଳା ବିଦ୍ୟାଳୟର ପ୍ରାକ୍ତନ ଛାତ୍ର ଏବଂ କଲିକତା ଆର୍ଟ କଲେଜର ସ୍ୱର୍ଣ୍ଣପଦକ ପ୍ରାପ୍ତ ଯଶସ୍ୱୀ ମୂର୍ତ୍ତିକାର ବିପ୍ର ଚରଣ ମହାନ୍ତି ।

ଉନ୍ମୋଚନର ସମୟ ଆଗତ ପ୍ରାୟ । ବହୁ ସମ୍ମାନାସ୍ପଦ ବ୍ୟକ୍ତିଙ୍କ ଗହଣରେ ଆସି ପହଞ୍ଚିଲେ ପଣ୍ଡିତ ନେହେରୁ, ବିପୁଳ ହର୍ଷଧ୍ୱନି ଏବଂ କରତାଳିର ନିନାଦ ମଧ୍ୟରେ ଉନ୍ମୋଚନ କଲେ ପ୍ରତିମୂର୍ତ୍ତି । ମାତ୍ର ସେହି ପ୍ରତିମୂର୍ତ୍ତି ସହିତ ମଧୁସୂଦନଙ୍କ ଚେହେରାର ସୌସାଦୃଶ୍ୟ ଦେଖି ବିସ୍ମୟଭରା ନୟନରେ ନିରୀକ୍ଷଣ କଲେ ପଣ୍ଡିତ ନେହେରୁ ଓ ପ୍ରଶ୍ନ କଲେ, '' ଏହି ପ୍ରତିମୂର୍ତ୍ତିର ସ୍ଥପତି କିଏ? '' ସ୍ଥପତି ବିପ୍ର ଚରଣ ମହାନ୍ତି ପହଞ୍ଚିଲା ପରେ, ତାଙ୍କୁ କୋଳାଗ୍ରତ କରି ଅଭିନନ୍ଦନ ଜଣାଇଲେ । ଏହା ପରେ ସେ ଉଦ୍‌ବୋଧନ ଦେଇ କହିଲେ---

''ସ୍ୱର୍ଗତଃ ମଧୁସୂଦନ କେବଳ ଓଡ଼ିଶାର ନୁହଁନ୍ତି, ସମଗ୍ର ଭାରତର ମହାନ ଜନନାୟକ ଥିଲେ । ଜଣେ ପ୍ରଖ୍ୟାତ ଦୂରଦୃଷ୍ଟିସମ୍ପନ୍ନ ନେତୃପୁରୁଷ ଭାବରେ, ଭାରତର ଆର୍ଥିକ ଓ ସାମାଜିକ ଅବସ୍ଥାର ଉନ୍ନତି କଲେ, ବହୁ ଉଦାର ପ୍ରକଳ୍ପମାନ ସେ ପ୍ରତିଷ୍ଠା କରିଯାଇଛନ୍ତି । ସେହି ପ୍ରକଳ୍ପଗୁଡ଼ିକ ଦେଶର ନିର୍ଦ୍ଦିଷ୍ଟ ଅଂଚଳରେ ସ୍ଥାପନକରି, ଦେଶର ଅନ୍ୟ ଅଂଚଳ ପ୍ରତି ଏକ ଦୁର୍ବାର ଆହ୍ୱାନ ପ୍ରଦାନ କରିଛନ୍ତି, ଯେ ସେହିପରି ଉନ୍ନୟନଭିତ୍ତିକ ପ୍ରକଳ୍ପମାନ ସ୍ଥାପନ କରାଯାଉ, ଅନ୍ୟ ଅଂଚଳମାନଙ୍କର ମଧ୍ୟ ଉନ୍ନତି ବିଧାନ ହେଉ । ତାଙ୍କର ନାମ ମୁଁ ବିଗତ ପଚାଶ ବର୍ଷ ଧରି ଶୁଣି ଆସୁଛି । ସେ ମୋର ପିତାଙ୍କର ଜଣେ ନିବିଡ଼ ଆଉ ଅନ୍ତରଂଗ ବଂଧୁ ଥିଲେ । ଯେତେବେଳେ ଓଡ଼ିଶା ସଂପର୍କରେ କିଛି ଆଲୋଚନା ହୁଏ, ମଧୁସୂଦନଙ୍କର ମହାନ ନାମ ସହିତ, ତାଙ୍କଠାରେ ସନ୍ନିବେଶିତ ପ୍ରଖର ଉଦାତ୍ତ ଗୁଣାବଳୀ ସମୂହ ସ୍ୱତଃ ସ୍ମରଣରେ ଆସିଥାଏ ।

''ନାରୀମାନେ ସମାଜ ଅଗ୍ରଗତିର ଅଭିନ୍ନ ଅଂଗ ଅଟନ୍ତି । ମଧୁସୂଦନ ସର୍ବାଗ୍ରେ ଏହି ମହିଳା କଲେଜ ସ୍ଥାପନ କରି ଓଡ଼ିଶାର ନାରୀ ଜାଗରଣକୁ ଆଗେଇ ନେଇଛନ୍ତି । ମଧୁସୂଦନଙ୍କ ବାସଭବନ ସହିତ ସଂଲଗ୍ନ ଏହି ମହିଳା କଲେଜ, ମଧୁସୂଦନଙ୍କର ଅବିସ୍ମରଣୀୟ ସ୍ମୃତି ପ୍ରତି ନିବେଦିତ ସର୍ବଶ୍ରେଷ୍ଠ ସ୍ମାରକୀ ।''

ଭାଷଣ ସମାପ୍ତି ପରେ ପଣ୍ଡିତ ନେହେରୁ ସଭାମଂଚରୁ ଅବତରଣ କଲେ । ଏହିଠାରେ କଥାବସ୍ତୁର ଅଗ୍ରଗତିକୁ ସ୍ଥଗିତ ରଖି ଯିବା ପ୍ରଖ୍ୟାତ ସ୍ଥପତି ବିପ୍ରଚରଣ ମହାନ୍ତିଙ୍କ ସ୍ମୃତିଚାରଣ ପାଖକୁ । ''ମଧୁସୂଦନଙ୍କର ଦୟନୀୟ ଆର୍ଥିକ ଅବସ୍ଥା ସତ୍ତ୍ୱେ ସେ ପ୍ରାୟ ୧୯୩୧ ସାଲ ସମୟରେ ପାଶ୍ଚାତ୍ୟ ଗ୍ରୀକ୍ ଆଉ ରୋମାନ ମୂର୍ତ୍ତିକଳା ଆଧାରରେ 'ପ୍ଲାଷ୍ଟର ଅଫ୍ ପ୍ୟାରିସର' ଅପୂର୍ବ କଳା ନୈପୁଣ୍ୟର ସଜୀବ ବିନ୍ୟାସ ମଧ୍ୟରେ ମଧୁସ୍ମୃତିରେ ବଂଗାଳୀ ସୁଦକ୍ଷ ସ୍ଥପତିଙ୍କର ନିୟୋଗରେ ଏକ ଶିଳ୍ପଶାଳା ଖୋଲିଥିଲେ । ସେହି ଶିଳ୍ପାଗାରରେ ବାଳକ ବିପ୍ରଚରଣ ଏହି ଅନନ୍ୟ ରୀତିର ଶିଳ୍ପକଳା ଅଧ୍ୟୟନ କରିଥିଲେ । ପରେ କଲିକତା ଆର୍ଟ କଲେଜରେ ସ୍ନାତକ ଡିଗ୍ରୀ ହାସଲ ପରେ କଲିକତାରେ ନିଜସ୍ୱ ଶିଳ୍ପାଗାର ଖୋଲିଥିଲେ ।''

ପାଳିତା କନ୍ୟା ଶୈଳବାଳା, ମଧୁସୂଦନଙ୍କର ବାସଭବନ 'ମଧୁସ୍ମୃତି'କୁ ଓଡ଼ିଶା ସରକାରଙ୍କୁ ଦାନପତ୍ର ଜରିଆରେ ହସ୍ତାନ୍ତର କରିବା ସମୟରେ ୧୯୫୨ ସାଲରେ ଏହି ସର୍ତ୍ତ ରଖିଥିଲେ ଯେ, ସ୍ମୃତିରେ ମଧୁସୂଦନଙ୍କର ପୂର୍ଣ୍ଣାଙ୍ଗ ମାର୍ବଲ କିମ୍ବା ବ୍ରୋଞ୍ଜମୂର୍ତ୍ତି ସ୍ଥାପିତ ହେବ ଆଉ ମହିଳା କଲେଜର ଅଧିକ ଅଭିବୃଦ୍ଧି ଘଟିଲେ, ସେହି କଲେଜକୁ ଅନ୍ୟତ୍ର ସ୍ଥାନାନ୍ତରିତ କରି ସମସ୍ତ ମଧୁସ୍ମୃତି ମଧୁସ୍ମାରକୀ ଏବଂ ସଂଗ୍ରହାଳୟରେ ପରିଣତ ହେବ । ମଧୁସୂଦନ ବାସ କରୁଥିବା ଉପର ତାଲାର ଦୁଇଟି କକ୍ଷ ସେ ଜୀବିତ ଅବସ୍ଥାରେ ଯେଉଁପରି ଭାବରେ ଚଳପ୍ରଚଳ କରୁଥିଲେ, ସେହିପରି ଭାବରେ ଚିରକାଳ ଲାଗି ସଜ୍ଜିତ ହୋଇ ରହିବ । ଏହି ନିର୍ଦ୍ଧାରିତ ସ୍ଥପତି ବିପ୍ରଚରଣ ମହାନ୍ତି ଡକ୍ଟର ମହତାବଙ୍କର ମାର୍ମିକ ଅନୁରୋଧରେ ରାଜସ୍ଥାନରୁ ମାର୍ବଲ ଫଳକ ଆଣି ଏହି ଅତୁଳନୀୟ ଆଉ ଅନନ୍ୟ ପ୍ରଥମ ପ୍ରତିମୂର୍ତ୍ତିଟି ନିର୍ମାଣ କରିଥିଲେ ।

ପୁଣି ଫେରିଆସିବା ମୂଳ କଥାବସ୍ତୁକୁ । ମଧୁସୂଦନଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ ପରେ ପଣ୍ଡିତ ଜବାହରଲାଲ୍ ନେହେରୁ ଫେରୁଥାନ୍ତି ମଧୁସ୍ମୃତିର ସୁରମ୍ୟ କୋଠିକୁ ଧୀର ପଦପାତରେ । ସାଙ୍ଗରେ ଥାଆନ୍ତି ଶୈଳବାଳା, ବିପ୍ର ଚରଣ ମହାନ୍ତି ଓ ଅନ୍ୟମାନେ । ଅତ୍ୟନ୍ତ ହାଲ୍କା ମୁହୂର୍ତ୍ତରେ ମୃଦୁ ବାକ୍ୟାଳାପ ମଧ୍ୟରେ ପଣ୍ଡିତ ନେହେରୁ ବଖାଣି ଚାଲିଥାନ୍ତି ବାଲ୍ୟକାଳରେ ସ୍ମୃତିପଟ୍ଟରେ ଗଭୀର, ନିବିଡ଼ ଭାବରେ ଉତ୍କୀର୍ଣ୍ଣ ଏବଂ ରେଖାଙ୍କିତ ହୋଇଥିବା ଦୀପ୍ତ ପ୍ରତିଛବିକୁ ଏହିପରି ଭାବରେ-

''ହଁ, ମୁଁ ବାଲ୍ୟକାଳରେ ମଧୁସୂଦନ ଦାସଙ୍କୁ ବହୁବାର ଦୂରରୁ ଦେଖିଛି । ସେ ଆମ ଘରର ଅତିଥିଶାଳାରେ ପିତାଙ୍କ ସହିତ ବାର୍ତ୍ତାଳାପରେ ନିବିଷ୍ଟ ରହିଥିବା ଅବସ୍ଥାରେ ମୁଁ ତାଙ୍କୁ ବହୁବାର ଆବିଷ୍କାର କରିଛି । ସେହି କଥୋପକଥନ ଅତ୍ୟନ୍ତ ଗମ୍ଭୀର ଆଉ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା, ଯହିଁରେ ଦେଶର ମୁକ୍ତି ସଂଗ୍ରାମ ସଂପର୍କରେ ବୋଧହୁଏ ଆଲୋଚନା ହେଉଥିଲା । ଏହି ମାର୍ମିକ ଅନ୍ତରଂଗ ଆଲୋଚନାକୁ ମୁଁ ଅତିଥିଶାଳା କକ୍ଷରେ ଦୂରରେ ରହି ନିରୀକ୍ଷଣ କରୁଥାଏ । ଯେତେବେଳେ ପିତା ଅତିଥିଶାଳାରୁ ସାମାନ୍ୟ ବିରତି ନେଇ ବାହାରକୁ ଯାଆନ୍ତି, ମଧୁସୂଦନ ସେତେବେଳେ ଅତ୍ୟନ୍ତ ବ୍ୟଗ୍ରତାର ସହିତ ମୋତେ ଧରିବାପାଇଁ ମୋ ପାଖକୁ ଦ୍ରୁତ ପଦପାତରେ ଆସନ୍ତି । ମୁଁ ଧରା ଦେଉଦେଉ ଖସି ଚାଲିଯାଉଥାଏ । କାରଣ ତାଙ୍କର ସ୍ପର୍ଦ୍ଧିତ ପ୍ରଲମ୍ବିତ ନିଶ ଦୁଇପଟ ମୋତେ ଯେତିକି ଆକର୍ଷିତ କରୁଥିଲା, ସେତିକି ରୋମାଞ୍ଚଭରା ଉନ୍ମାଦନାରେ ବିସ୍ମିତ କରୁଥିଲା । ଏହି ସମ୍ମୋହନର ବିସ୍ମୟାବୃତ ଦ୍ୱନ୍ଦ୍ୱ ମଧ୍ୟରେ ମୁଁ ଧରା ଦେଉଦେଉ ଖସି ଚାଲିଯାଉଥାଏ ।'' ଏହା ଥିଲା ବିପ୍ରଚରଣଙ୍କର ସ୍ମୃତିଚାରଣରେ ପଣ୍ଡିତ ନେହେରୁଙ୍କ ବକ୍ତବ୍ୟ ।

ପଣ୍ଡିତ ଜବାହରଲାଲ୍ ନେହେରୁଙ୍କର ମଧୁସୂଦନଙ୍କ ପ୍ରତି ଆଗ୍ରହ ଆଉ ଆକର୍ଷଣ ଥିଲା ଅପରିସୀମ । ଭାରତର କେନ୍ଦ୍ର ସ୍ଥଳରେ ଆହ୍ଲାବାଦ ଅବସ୍ଥିତ ଥିବାରୁ ଅନେକ ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀ ଆହ୍ଲାବାଦରେ ଅନୁଷ୍ଠିତ ହେଉଥିଲା, ଯହିଁରେ ମଧୁସୂଦନଙ୍କର ଯୋଗଦାନ ଥିଲା ଅନିବାର୍ଯ୍ୟ । ମଧୁସୂଦନ କଲିକତା ଓ ପାଟଣା ହାଇକୋର୍ଟରେ ବରିଷ୍ଠ ଆଇନଜୀବୀ ଥିବା ସମୟରେ ପରାମର୍ଶ, ସହାୟତା ଆଉ ଆଲୋଚନାପାଇଁ ଆହ୍ଲାବାଦ ହାଇକୋର୍ଟକୁ ଯାଉଥିଲେ । ଏବଂ ମଧୁସୂଦନ ଦ୍ୱୈତଶାସନର ପ୍ରଥମ ପର୍ଯ୍ୟାୟରେ ମନ୍ତ୍ରୀପଦରେ ପାଟଣାରେ ଅଧିଷ୍ଠିତ ଥିବାବେଳେ ଅଶେଷ ଖ୍ୟାତିର ଅଧିକାରୀ ହୋଇଥିଲେ । ସେ ମଧ୍ୟ ପଣ୍ଡିତ ମୋତିଲାଲ୍ ନେହେରୁ ଓ ଚିତ୍ତରଂଜନ ଦାସଙ୍କର ସମ୍ମିଳିତ ଉଦ୍ୟମରେ ପ୍ରତିଷ୍ଠିତ ସ୍ୱରାଜ୍ୟ ଦଳର ଅଂତରଂଗ ସମର୍ଥକ ଥିଲେ । ଏହି କାଳରେ ମଧୁସୂଦନ ବିହାରର ସ୍ୱରାଜ୍ୟ ଦଳର ପ୍ରାର୍ଥୀମାନଙ୍କୁ ଅକୁଣ୍ଠ ସମର୍ଥନ ପ୍ରଦାନ କରି ନିର୍ବାଚିତ କରାଇ ପାରିଥିଲେ । ଏହି ଦୃଷ୍ଟିରୁ ମଧୁସୂଦନଙ୍କର ଆହ୍ଲାବାଦ ଆଉ ନେହେରୁ ପରିବାର ସହିତ ନିବିଡ଼ ଓ ଅଚ୍ଛେଦ୍ୟ ସଂପର୍କ ଗଢ଼ିଉଠିଥିଲା । ଏହା ସହିତ ମଧୁସୂଦନ ୧୯୧୨ ସାଲର ପାଟଣା ଅଧିବେଶନରେ ଜାତୀୟ କଂଗ୍ରେସର ଅଭ୍ୟର୍ଥନା ସମିତିର ଉପ-ସଭାପତି ଏବଂ ୧୯୧୬ରେ ଲକ୍ଷ୍ନୌ କଂଗ୍ରେସର କାର୍ଯ୍ୟକାରିଣୀର ସଭ୍ୟରୂପେ ନିର୍ବାଚିତ ହୋଇ ତାଙ୍କର ପ୍ରଚଣ୍ଡ ଭାବମୂର୍ତ୍ତି ପ୍ରକାଶରେ ଅଜସ୍ର ଗୌରବର ଅଧିକାରୀ ହୋଇଥିଲେ । ଏହାଛଡ଼ା ୧୯୧୩ରୁ ୧୯୧୬ ସାଲ ମଧ୍ୟରେ କେନ୍ଦ୍ରୀୟ ଇମ୍ପେରିଆଲ୍ କାଉନ୍ସିଲର ସଦସ୍ୟ ରୂପେ ତାଙ୍କର ଜ୍ୱାଳାମୁଖୀ ଉଦ୍ଦୀପ୍ତ

ବକ୍ତବ୍ୟ ମାଧ୍ୟମରେ ପ୍ରତିପକ୍ଷକୁ ଭୂଲୁଣ୍ଠିତ କରୁଥିଲେ, ଯେଉଁ ଆସ୍ପର୍ଦ୍ଧାର ସୀମା କୌଣସି ଓଡ଼ିଆ ନେତୃପୁରୁଷ ଏ ପର୍ଯ୍ୟନ୍ତ ସ୍ପର୍ଶ କରିପାରି ନାହାନ୍ତି । ଏହିପରି ତାଙ୍କର ପ୍ରଚଣ୍ଡ ପ୍ରତିଭାର ଉନ୍ମୀଳନରେ ସେ ସର୍ବଭାରତୀୟ ଖ୍ୟାତି ଅର୍ଜନ କରିଥିଲେ ।

ମଧୁସ୍ମୃତିରେ ମଧୁସୂଦନଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନର କିଛି ବର୍ଷ ପରର ଘଟଣା ପ୍ରବାହ । ସେତେବେଳକୁ ଶୈଳବାଳା ରାଜ୍ୟ ସଭାର ସଦସ୍ୟ ରୂପେ ନିର୍ବାଚିତା ହୋଇଥାନ୍ତି ।

ସାହିତ୍ୟ ଓ ସଂସ୍କୃତିଭିତ୍ତିକ ପ୍ରଖ୍ୟାତ ସର୍ବଭାରତୀୟ ଅନୁଷ୍ଠାନ ପି.ଇ.ଏନ୍.ର ସ୍ମାରକୀ ଉତ୍ସବ ଭୁବନେଶ୍ୱରରେ ପାଳନପାଇଁ ପ୍ରଧାନମଂତ୍ରୀ ପଣ୍ଡିତ ନେହେରୁ ଏବଂ ଉପ-ରାଷ୍ଟ୍ରପତି ରାଧାକ୍ରିଷ୍ଣନ୍ ଭୁବନେଶ୍ୱର ଆସିଥାନ୍ତି । ଏହି ଉପଲକ୍ଷେ ଶୈଳବାଳା ପଣ୍ଡିତ ନେହେରୁଙ୍କୁ ପୁନର୍ବାର ମଧୁସ୍ମୃତି ପରିଦର୍ଶନ ପାଇଁ ନିମନ୍ତ୍ରଣ ଜଣାଇଥାନ୍ତି, ଯାହାକୁ ପଣ୍ଡିତ ନେହେରୁ ଅତ୍ୟନ୍ତ ଆବେଗ ମଧ୍ୟରେ ଗ୍ରହଣ କରିଥାନ୍ତି । ଏହି ସମୟରେ ପଣ୍ଡିତ ନେହେରୁ ଓଡ଼ିଶାର ଅନବଦ୍ୟ କାରୁକଳା, ଭାସ୍କର୍ଯ୍ୟର ଗନ୍ତାଘର କୋଣାର୍କକୁ ରାଧାକ୍ରିଷ୍ଣନ୍‌ଙ୍କ ଗହଣରେ ପରିଦର୍ଶନ କରିଥିଲେ । ଉପ-ରାଷ୍ଟ୍ରପତି ଭାରତୀୟ ଶିଳ୍ପଶାସ୍ତ୍ରର ସାଙ୍କେତିକ ବିଧି ଅନୁସାରେ କୋଣାର୍କର କଳା ନୈପୁଣ୍ୟ ଓ ନିର୍ମାଣ ଶୈଳୀ ସଂପର୍କରେ ଏକ ବିଲକ୍ଷଣ ପର୍ଯ୍ୟାଲୋଚନା କରିଥିଲେ ।

ନିର୍ଦ୍ଧାରିତ ଅପରାହ୍ଣରେ ପଣ୍ଡିତ ନେହେରୁ 'ମଧୁସ୍ମୃତି'ରେ ଆସି ପହଞ୍ଚିଥିଲେ। ପ୍ରଥମେ ମଧୁସୂଦନଙ୍କର ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କରି ଅତୀବ ସମ୍ମୋହିତ ଓ ରସାଣିତ କଣ୍ଠରେ ଭାଷଣ ଆରମ୍ଭ କଲେ, ଯହିଁରେ ମଧୁସୂଦନଙ୍କ ପ୍ରତି ତାଙ୍କର ଉଦ୍ଦୀପକ ଭାବ ନିବେଦନ ସମସ୍ତ ହାର୍ଦ୍ଦିକ ଉଦ୍‌ବେଳନର ଉତ୍ତୁଙ୍ଗ ସୀମା ଛୁଇଁଥିଲା । ସେହି ସମୟରେ କର୍ତ୍ତବ୍ୟର ଅନୁରୋଧରେ ପ୍ରଧାନମଂତ୍ରୀଙ୍କ ସହ ଅନୁଗମନ କରିଥିବା ପ୍ରଖ୍ୟାତ ଆଇ.ପି.ଏସ୍. ଅଧିକାରୀ (ବର୍ତ୍ତମାନ ଅବସର ପ୍ରାପ୍ତ) ଗୋବିନ୍ଦ ଚନ୍ଦ୍ର ସେନାପତି ଉପସ୍ଥିତ ଥିଲେ । ତାଙ୍କର ସ୍ମୃତି ଗହଳରୁ ପଣ୍ଡିତ ନେହେରୁଙ୍କ ବକ୍ତବ୍ୟ--

''ସମ୍ମାନନୀୟ ମଧୁସୂଦନ ଦାସ ମୋର ପୂଜ୍ୟ ପିତୃଦେବ ମୋତିଲାଲ ନେହେରୁଙ୍କର ଅତ୍ୟନ୍ତ ନିବିଡ଼ ଆଉ ଅନ୍ତରଂଗ ବଂଧୁ ଥିଲେ । ଉଭୟଙ୍କ ମଧ୍ୟରେ ଥିବା ପ୍ରଗାଢ଼ ବନ୍ଧୁତ୍ୱର ପରିସୀମା ଅନ୍ତରର ଗଭୀର ଭାବ ଉଚ୍ଛ୍ୱାସକୁ ସ୍ପର୍ଶ କରୁଥିଲା । ମଧୁସୂଦନ ମୋର ପିତାଙ୍କଠାରୁ କେବଳ ବୟସ ଓ ଅଭିଜ୍ଞତା ଦୃଷ୍ଟିରୁ ଅଗ୍ରଜ ଆଉ ବରିଷ୍ଠ ନଥିଲେ, ବୁଦ୍ଧିମତ୍ତାର ପରିପ୍ରକାଶ ମଧ୍ୟରେ ଅତୀବ ପାରଦର୍ଶୀ ଆଉ ପ୍ରବୀଣ ଥିଲେ । ଏଣୁ ମୋର ପିତା ମଧୁସୂଦନଙ୍କ ପ୍ରତି ଯେଉଁପରି ଭାବରେ ହୃଦୟର ଆବେଗ ସହିତ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରି ଚାଲିଥିଲେ, ତାହା ସଂଦର୍ଶନ କରି ମୁଁ ଏକାଗ୍ର ଭାବେ ବିହ୍ୱଳିତ ଆଉ ଅଭିଭୂତ ହୋଇ ଯାଇଥିଲି ।''

''ମଧୁସୂଦନ ତାଙ୍କର ପ୍ରଖର ଔଜଲ୍ୟ, ବିଦ୍‌ବତ୍ତା ଆଉ ଔଦାର୍ଯ୍ୟ ମଧ୍ୟରେ ସାରା ଭାରତର ନେତୃବର୍ଗଙ୍କ ମଧ୍ୟରେ ଅଲିଭା ଛାପ ଆଙ୍କି ପାରିଥିଲେ । ତେଣୁ ବହୁ ସମୟରେ ତାଙ୍କୁ ଜାତୀୟ କଂଗ୍ରେସର ସଭାପତି ପଦ ଅଳଂକୃତ କରିବାପାଇଁ ସୁଚିନ୍ତିତ ପ୍ରସ୍ତାବମାନ ଆସିଥିଲା । ମାତ୍ର ଏହା ପ୍ରତି ସେ ନିସ୍ପୃହ ଥିଲେ ।''

ସେଦିନ ସାୟାହ୍ନରେ ସଭା ଉଦ୍‌ଯାପିତ ହୋଇଥିଲା । ଆଉ ଉତ୍ତରା ପବନ ତୁହାଇ ତୁହାଇ ବହି ଚାଲିଥିଲା । ବୃକ୍ଷରାଜିରେ ଅତୀତ ସ୍ମୃତିକୁ ଉଜାଗର କରି, ପତ୍ରସବୁ ପୀତାଭ ରଂଗରେ ବର୍ଣ୍ଣିଳ ହୋଇ ଝରି ପଡୁଥିଲେ । ନିରାଭରଣ ବୃକ୍ଷସବୁ ଦଣ୍ଡାୟମାନ ହୋଇଥିଲେ ବିଗତ ସ୍ମୃତିର ବିଳାପରେ ସ୍ଥାଣୁ ପରି । ଆସନ୍ନ ଅନ୍ଧକାରକୁ ଦୂର କରି ମଧୁସ୍ମୃତି ଆଲୋକମଣ୍ଡିତ ହୋଇଯାଇଥିଲା ।



# ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ: 'ମଧୁସ୍ମୃତି' ଅବଲୁପ୍ତ

ଓଡ଼ିଆ ଜାତୀୟତାର ଦ୍ୱିତୀୟ ବାରବାଟୀ ଦୁର୍ଗ- 'ମଧୁସ୍ମୃତି', ମଧୁସୂଦନଙ୍କ ବାସଭବନ । ସଂତାପିତ ଓଡ଼ିଶା ଭୂଇଁରୁ ଚିରକାଳ ଲାଗି ଏହା ଅବଲୁପ୍ତହେବା ଜାତୀୟ ଅକୃତଜ୍ଞତାର ଏକ ଚରମ ପରିପ୍ରକାଶ । ସେ ସୃଷ୍ଟି କରିଥିବା ଓଡ଼ିଶା ଅଛି, ମାତ୍ର ତାଙ୍କର ସ୍ମୃତିଚିହ୍ନ ଓ ତାଙ୍କ ପ୍ରତି ଶ୍ରଦ୍ଧାଂଜଳି ଅର୍ପଣ କରିବାର ପୀଠ ଏହି ମାଟିରୁ ନିଶ୍ଚିହ୍ନ ହୋଇଯାଇଛି ।

ଏହି ବାରବାଟୀ ଦୁର୍ଗରେ ପ୍ରାୟ ୧୦୦୦ ସାଲରୁ ଆରମ୍ଭ କରି କେଶରୀ, ଗଂଗ, ସୂର୍ଯ୍ୟବଂଶୀ ଆଉ ଅବଶେଷରେ ମୁକୁନ୍ଦ ଦେବଙ୍କର ପରାଭୂତ ଶାସନପରେ, ୧୫୬୮ ସାଲରେ ଏହି ମାଟିରୁ ଓଡ଼ିଶାର ସ୍ୱାଧୀନତା ରବି ଅସ୍ତମିତ ହୋଇଗଲେ । ଦଶମ ଶତାବ୍ଦୀରେ ଯଯାତି କେଶରୀଙ୍କ ଦ୍ୱାରା ପଶ୍ଚିମାଞ୍ଚଳ ଓ ଦ୍ୱାଦଶ ଶତାବ୍ଦୀରେ ଚୋଡ଼ଗଙ୍ଗଙ୍କ ଦ୍ୱାରା ଦକ୍ଷିଣାଞ୍ଚଳ ମିଶ୍ରଣ ପରେ ମଧୁସୂଦନ , ଦ୍ୱିତୀୟ ଦୁର୍ଗ ବାରବାଟୀ 'ମଧୁସ୍ମୃତି'ରୁ ଏହି ସମସ୍ତ ସାଫଲ୍ୟ ଓ ଅସାମାନ୍ୟ ଉପଲବ୍ଧି ଲାଭ କରିଥିଲେ । ଓଡ଼ିଶାର ପଶ୍ଚିମାଞ୍ଚଳ ଆଉ ଉତ୍ତରାଞ୍ଚଳ ୧୯୦୫ରେ ଏବଂ ଦକ୍ଷିଣାଞ୍ଚଳ ୧୯୩୬ ସାଲରେ ଓଡ଼ିଶା ଡିଭିଜନ ସହିତ ସଂଯୁକ୍ତ କରି ସେ ନବ ସ୍ୱତନ୍ତ୍ର ଓଡ଼ିଶାର ସ୍ଥାପନା କରିଥିଲେ । ଏଣୁ ସେ ଥିଲେ ଏ ଜାତିର ଅନ୍ୟତମ ଖାରବେଳ ଯେ ଏକ ବିରାଟ ଶୂନ୍ୟତାର ପରିଧି ମଧ୍ୟରୁ ପ୍ରଥମ ଭାଷାଭିତ୍ତିକ ରାଜ୍ୟ ଓଡ଼ିଶାର ସ୍ଥାପନା କରିଥିଲେ ।

ମଧୁସୂଦନ ଯେଉଁ ଅଂଚଳଗୁଡିକର ମିଶ୍ରଣ କରିଥିଲେ, ତାହାର ଆୟତନ ବର୍ତ୍ତମାନ ତିରିଶିଟି ଜିଲ୍ଲାର ଅର୍ଦ୍ଧାଧିକ ଅର୍ଥାତ୍ ସତର ଗୋଟି ଜିଲ୍ଲା ଅଟେ । ଅନ୍ୟ ଅର୍ଥରେ ଅବିଭକ୍ତ ୧୩ଟି ଜିଲ୍ଲାରୁ ୭ ଗୋଟି ଅବିଭକ୍ତ ଜିଲ୍ଲାର ସମସ୍ତ ଭୂଭାଗ, ଜଳ, ଖଣି, ଅରଣ୍ୟ ତଥା ସମସ୍ତ ପ୍ରାକୃତିକ

ସଂପଦକୁ ସେ ସମ୍ମିଳିତ କରିଥିଲେ । ଅନ୍ୟ ଅର୍ଥରେ ଆଜି ଓଡ଼ିଶା ସରକାରଙ୍କର ମୋଟ ରାଜସ୍ୱ ବା ଆୟର ଅର୍ଦ୍ଧେକ ମଧୁସୂଦନ, ଓଡ଼ିଶା ସରକାରଙ୍କୁ ଅର୍ପଣ କରୁଛନ୍ତି । ପୂର୍ବରୁ ଯେଉଁ କୋରାପୁଟ ଜିଲ୍ଲାର ନାଲ୍‌କୋ, ଅଥବା ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲା ଆଦି ଇସ୍ପାତ କାରଖାନା ଆଜି ପ୍ରତିଷ୍ଠିତ ହୋଇଛି, ଏହି ଜିଲ୍ଲାମାନଙ୍କୁ ମଧୁସୂଦନ ଆଣିଥିବା ଖଣି ଯୋଗୁଁ ତାହା ସମ୍ଭବ ହୋଇଛି । ଏହି ଶିଳ୍ପମାନଙ୍କରୁ ମିଳୁଥିବା ବିପୁଳ ଲାଭାଂଶର କିଛି ଅଂଶ ମଧୁସ୍ମୃତିର ପୁନରୁଦ୍ଧାର ଓ ଜାତୀୟ ସ୍ଥାପନା ପାଇଁ ବିନିଯୋଗ ହେଉ । ବିଗତ ଦୁଇ ତିନି ବର୍ଷରେ ମଧୁସୂଦନ ଆଣିଥିବା ଜମିକୁ ଶିଳ୍ପ ସ୍ଥାପନା ପାଇଁ ବିକ୍ରି ବା ଖଣି ଲିଜ୍ ଦେଇ ଯେଉଁ ପ୍ରଚୁର ଅର୍ଥ ସରକାର ପାଉଛନ୍ତି, ତାହାର କିଛି ଅଂଶ ମଧୁସ୍ମୃତିର ସ୍ମାରକୀ ଲାଗି ବିନିଯୋଗ ହେଉ । ମଧୁସୂନଦ ଆଣିଥିବା ସମସ୍ତ ପ୍ରାକୃତିକ ଖଣିଜ ସଂପତ୍ତିକୁ ସେ ପ୍ରତିବଦ୍ଧତାର ଦାନ ହିସାବରେ ଓଡ଼ିଆ ଜାତି ହସ୍ତରେ ଅର୍ପଣ କରି ସୀମିତ ପରିମାଣର ବିନିଯୋଗ କରିବାପାଇଁ ଆହ୍ୱାନ ଦେଇଥିଲେ । ମାତ୍ର ତାହାର ଏକାନ୍ତ ଉଲ୍ଲଙ୍ଘନ ଆଜିର ସ୍ଥିତି ଓ ଅବସ୍ଥା ।

ମଧୁସୂଦନ ନଥିଲେ ଓଡ଼ିଶା ନଥାନ୍ତା । ଅନ୍ୟ ଅର୍ଥରେ ଆଜି ଆମର ଏହି ସମସ୍ତ ଜିଲ୍ଲାର ସହରମାନଙ୍କରେ ୨/୩ ଭାଗ ବା ୩/୪ଭାଗ ଅଣ- ଓଡ଼ିଆମାନେ ବାସ କରୁଥାଆନ୍ତେ ଆଉ ବଳକା ଓଡ଼ିଆମାନେ ବିଚ୍ଛିନ୍ନ ଓଡ଼ିଶାରେ ବାସ କରୁଥିବା ଓଡ଼ିଆଙ୍କ ପରି ଅତ୍ୟନ୍ତ ଶୋଷିତ ଓ ନିର୍ଯ୍ୟାତିତ ହୋଇ ଅତ୍ୟନ୍ତ ଦୟନୀୟ ସ୍ଥିତିରେ ଥା'ନ୍ତେ । ଏତିକି ସଚେତନତା ଓଡ଼ିଶାବାସୀଙ୍କର ତଥା ସରକାରଙ୍କର ମଧୁସୂଦନଙ୍କ ପ୍ରତି ନାହିଁ । ତେଣୁ ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ ମଧୁସ୍ମୃତି ଅବଲୁପ୍ତିର ଚରମ ପର୍ଯ୍ୟାୟରେ ପହଞ୍ଚିଛି ।

ଓଡ଼ିଶାର ସୁବିଶାଳ କଟକ ସହରରେ ସରକାରଙ୍କ ଓଡ଼ିଶାର ଅନ୍ୟ ସହରମାନଙ୍କ ପରି ମହିଳା କଲେଜ ସ୍ଥାପନା ପରମ କର୍ତ୍ତବ୍ୟ ଥିଲା । ଶୈଳବାଳା, ମଧୁବାବୁଙ୍କର ଗୃହ 'ମଧୁସ୍ମୃତି'କୁ ଯେତେବେଳେ ଦାନସୂତ୍ରରେ ୧୯୫୨ ସାଲରେ ଓଡ଼ିଶା ସରକାରଙ୍କୁ ଦେଲେ, ସେତେବେଳେ ଦାନ ପତ୍ରରେ ଲେଖାଯାଇଥିବା ସର୍ତ୍ତର ଚରମ ଉଲ୍ଲଙ୍ଘନ କରାଯାଇଛି । ଏ ସଂପର୍କରେ ୧୯୯୯ ସାଲରେ ମଧୁସୂଦନଙ୍କର ୧୫୦ତମ ଜୟନ୍ତୀ ବର୍ଷରେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରାଗଲା । ୧୯୯୯ ସାଲ ଓ ୨୦୦୨ ସାଲରେ ସିଦ୍ଧାନ୍ତ ନିଆଗଲା ଯେ ଶୈଳବାଳା କଲେଜକୁ ସଂଲଗ୍ନକରି ଏକ ସ୍ୱତନ୍ତ୍ର ପ୍ରାସାଦ ନିର୍ମିତ ହେବ, ଯେଉଁଠାକୁ ମଧୁସୂଦନଙ୍କ ବାସଭବନରେ କାର୍ଯ୍ୟ କରୁଥିବା ମହିଳା କଲେଜର ସମସ୍ତ କାର୍ଯ୍ୟାଳୟ ଓ ଶ୍ରେଣୀମାନ ସ୍ଥାନାନ୍ତରିତ ହୋଇ, ମଧୁସ୍ମୃତି ସଂସ୍କୃତି ବିଭାଗ ଅଧୀନରେ ଜାତୀୟ ସ୍ମାରକୀ ଓ ସଂଗ୍ରହାଳୟରେ ପରିଣତ କରାହେବ । ମାତ୍ର ଦଶନ୍ଧି ବିତିଯାଇଥିଲେ ମଧ୍ୟ ଆଶନୁରୂପ କାର୍ଯ୍ୟ ହୋଇନାହିଁ ।

ମଧୁସ୍ମୃତିକୁ ଦାନ ସୂତ୍ରରେ ଦିଆଯାଇଥିବାରୁ ୧୯୫୨ ସାଲରୁ ଆଜି ପର୍ଯ୍ୟନ୍ତ ପ୍ରାୟ ୫୮ ବର୍ଷ ଧରି ଶୈଳବାଳା କଲେଜ, ଏହିଠାରେ କାର୍ଯ୍ୟ କରୁଅଛି । ଯଦି ଭଡ଼ା ସୂତ୍ରରେ ଏହି କୋଠାକୁ ନିଆଯାଇଥାନ୍ତା, ସରକାରଙ୍କୁ ଅନ୍ୟୂନ ଦଶକୋଟି ଟଂକା ଭଡ଼ାସୂତ୍ରରେ ଦେବାକୁ ପଡ଼ିଥାନ୍ତା । ସରକାର ମଧୁସୂଦନଙ୍କୁ ବୋଧହୁଏ ଓଡ଼ିଶାର ଦଧିଚୀ ବୋଲି ବିବେଚନା କରନ୍ତି । ମଧୁସୂଦନ

ଜାତି ପାଇଁ ସର୍ବସ୍ୱ ଦାନ କରି ମୃତ୍ୟୁ ବେଳକୁ ନିଜେ ନିଃସ୍ୱ ଆଉ ଦେବାଳିଆ ହୋଇଯାଇଥିଲେ ମଧ୍ୟ ମୃତ୍ୟୁ ପରେ ତାଙ୍କର କୋଠାର କାନ୍ଥ, ଛାତ, ପରିସରର ସମସ୍ତ ଭୂମିଭାଗ ଦେଶ ସେବାରେ ନିୟୋଜିତ ହୋଇ ରହିଛି । ଏକ ମହାନ ଜାତିର ତ୍ରାଣକର୍ତ୍ତା ସେ । ମାତ୍ର ତାଙ୍କର ସ୍ମୃତି ରକ୍ଷାପାଇଁ ସୂଚ୍ୟଗ୍ରେ ମେଦିନୀ ମଧ୍ୟ ବିନିଯୋଗ ହୋଇପାରୁନାହିଁ । ଏହାଠାରୁ ବଳି ଅକୃତଜ୍ଞତାର ସ୍ଥିତି ବା କ'ଣ ହୋଇପାରେ !

ମଧୁସୂଦନ ଥିଲେ ଅର୍ଦ୍ଧଶତାବ୍ଦୀ ଧରି ଓଡ଼ିଆ ଜାତିର ଅକଳ୍ପନୀୟ ଉନ୍ମେଷର ମୂର୍ତ୍ତିମନ୍ତ ବିଗ୍ରହ । ଆଉ ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ 'ମଧୁସ୍ମୃତି'ର ପ୍ରତି ଭୂମିଖଣ୍ଡ ବହନ କରେ ସ୍ୱତନ୍ତ୍ର ଓଡ଼ିଶା ସ୍ଥାପନାର ପରମ ଆଲେଖ୍ୟ । କୁହାଯାଏ, ତାହାଙ୍କର ଟେନିସ୍ କୋର୍ଟ ମଧ୍ୟ ବହୁ ପରିମାଣରେ ଓଡ଼ିଶା ଗଠନ ପାଇଁ ଦାୟୀ । ହେଲେ ଏସବୁ ରହିଯାଇଛି ପ୍ରବେଶାଧିକାର ନିଷିଦ୍ଧାଞ୍ଚଳରେ ।

ଶୈଳବାଳାଙ୍କ ଦାନ ପତ୍ରରେ, ମଧୁସୂଦନ ସାରା ଜୀବନ ଧରି ବ୍ୟବହାର କରୁଥିବା ଉପର ଦୁଇଟି କକ୍ଷରେ ତାଙ୍କର ବ୍ୟବହୃତ ପଦାର୍ଥମାନଙ୍କ ଦ୍ୱାରା ସଜ୍ଜିତ ହୋଇ ଚିରକାଳ ତିଷ୍ଠି ରହିବ ବୋଲି ସୂଚିତ ହୋଇଛି । ମାତ୍ର ଗତ ୧୯୦୭ ସାଲରେ ସ୍ଥାପିତ ମଧୁସୂଦନ ସଂଗ୍ରହାଳୟ ଏହାର ଅନୁରୂପ ଭାବେ ପ୍ରତିଷ୍ଠିତ ନହୋଇ ତାଙ୍କର ସ୍ମୃତିକୁ ପ୍ରତିହତ କରାଯାଇଛି ଓ ସର୍ତ୍ତର ଚରମ ଉଲ୍ଲଙ୍ଘନ କରାଯାଇଛି ।

ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ପଦରଜରେ ପବିତ୍ର ହୋଇଥିଲା ମଧୁସ୍ମୃତି ୧୯୨୫ ଆଉ ୧୯୨୭ ସାଲରେ । ସେହିଠାରେ ସେ ମଧୁସୂଦନଙ୍କଠାରୁ ପରମ ପ୍ରଜ୍ଞାର ବାଣୀ ଗ୍ରହଣ କରି ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ରୂପରେ ଅନେକ ନିବନ୍ଧ ରଚନା କରିଥିଲେ । ମାତ୍ର ଏହି ମହାନ ଜାତୀୟତାର ତୀର୍ଥଭୂମି ରହିଯାଇଛି ନିଷିଦ୍ଧାଞ୍ଚଳରେ ।

ମଧୁସୂଦନ ଥିଲେ ଭାରତୀୟ ପାର୍ଲାମେଣ୍ଟର ୧୯୧୩ରୁ ୧୯୧୬ ସାଲ ମଧ୍ୟରେ ପ୍ରଥମ ଓଡ଼ିଆ ସାଂସଦ, ଯାହାଙ୍କର ଜ୍ୱାଳାମୟୀ ଭାଷଣ ପାର୍ଲାମେଣ୍ଟ ପରିସରକୁ ପ୍ରକମ୍ପିତ କରୁଥିଲା । ତାଙ୍କର ପ୍ରତିକୃତି କିମ୍ବା ପ୍ରତିମୂର୍ତ୍ତି ପାର୍ଲାମେଣ୍ଟରେ ସ୍ଥାପନା ଲାଗି ଓଡ଼ିଶା ସରକାରଙ୍କର ଅନାଗ୍ରହତା କେବଳ ଯନ୍ତ୍ରଣାଦାୟକ ନୁହେଁ, ଅକୃତଜ୍ଞତାର ଏକ ନିଦର୍ଶନ ମଧ୍ୟ ମଧୁସୂଦନଙ୍କର ସମାଧି ହେଉଛି ଓଡ଼ିଶା ପାଇଁ ଦ୍ୱିତୀୟ ରାଜଘାଟ ।

ବିସ୍ତାରିତ ମହାନଦୀର ଧାରରେ ଅବସ୍ଥିତ ମଧୁସୂଦନଙ୍କର ପୁଣ୍ୟ ସମାଧି କଳାତ୍ମକ ନିର୍ମାଣଦ୍ୱାରା ସୁଶୋଭିତ ଆଉ ସୁସଜ୍ଜିତ ହୋଇ ଏକ ଗରିମାମୟ କୀର୍ତ୍ତିଶାଳିନୀ ପୀଠର ମାନ୍ୟତା ଲାଭ କରୁ, ଏହାହିଁ ଏକାନ୍ତ କାମନା ।

ହେ ପାଠକ ବର୍ଗ !

ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ- ମଧୁସ୍ମୃତିରେ ମଧୁସୂଦନଙ୍କର ମହିମାନ୍ୱିତ ଜୀବନର ବିସ୍ତାରିତ ଘଟଣାବହୁଳ ଜୀବନର ଉଦ୍ଦୀପିତ ବିବରଣୀ, ପ୍ରଖ୍ୟାତ ଉତ୍କଳ ଦୀପିକା ପତ୍ରିକାର ପ୍ରାୟ

୩୦୦୦ ପୃଷ୍ଠାର ଆବରଣ ମଧ୍ୟରେ ଉତ୍କୀର୍ଣ୍ଣ ହୋଇ ରହିଛି, ଯାହା ନିରବଧି କାଳର ପ୍ରବାହରେ ଓଡ଼ିଆ ଜାତିକୁ ଅନୁପ୍ରେରଣା ଓ ମାର୍ଗଦର୍ଶନ କରିଚାଲିଥିବ ।

**କାରାରୁଦ୍ଧ ମଧୁସୂଦନ**

ମଧୁସ୍ମୃତିରେ ମଧୁସୂଦନଙ୍କର ସ୍ମୃତି କେବଳ ସ୍ମୃତି ନୁହେଁ, ମଧୁସୂଦନ ସ୍ୱୟଂ ଏଠାରେ କାରାରୁଦ୍ଧ । ମଧୁସୂଦନଙ୍କର ସୁଦୀର୍ଘ ବର୍ଷ ଧରି ସଂଚାଳିତ ସଂଗ୍ରାମର କ୍ଷେତ୍ର, ଯାହାର ରେଣୁ ରେଣୁ ଭୂମି ତାଙ୍କର ପଦପାତରେ ପବିତ୍ରିତ ହୋଇଥିଲା, ଯେଉଁ ଦେଶପାଇଁ ନିଃସ୍ୱ ହୋଇ ତାଙ୍କର ଶେଷଶଯ୍ୟା ଯେଉଁଠାରେ ରଚନା କରିଥିଲେ, ତାହା ଆଜି ମଧ୍ୟ କାରାବାସରେ ବିଡ଼ମ୍ବିତ । ତାହାଙ୍କର ପ୍ରଥମ ମାର୍ବଲ ପ୍ରସ୍ତରର ଅନନ୍ୟ ପ୍ରତିମୂର୍ତ୍ତି, ଯାହା ତାହାଙ୍କର ଜୀବନ୍ତ ଉପସ୍ଥିତିର ଭ୍ରମ ସୃଷ୍ଟିକରେ ତାହା ମଧ୍ୟ ରହିଛି ନିଷିଦ୍ଧ ଅଂଚଳରେ ସଂଗୋପନରେ, ଯାହାକୁ ଅବଲୋକନ କରିବା ଆଉ ଶ୍ରଦ୍ଧା ଜ୍ଞାପନ କରିବା ଆଜି ମଧ୍ୟ ସମ୍ଭବ ନୁହେଁ । ସେଠାରେ ସେ ହୋଇଛନ୍ତି ଅସ୍ପୃଶ୍ୟ ଆଉ କାରାରୁଦ୍ଧ ।

ଏହା ହିଁ ଓଡ଼ିଆ ଜାତିର ଚରମ ବିପର୍ଯ୍ୟୟ ।

ଏଣୁ ମଧୁସ୍ମୃତିରେ ମଧୁସୂଦନ ଜାତୀୟ ସ୍ମାରକୀ ସ୍ଥାପନା ଦେଶ ଓ ଜାତି ମଧ୍ୟରେ ଦୁର୍ବାର ଉନ୍ମାଦନା ଆଉ ଉଦ୍‌ବେଳନ ସୃଷ୍ଟିକରି ଏକ ନୂତନ କ୍ରାନ୍ତିକାରୀ ଯୁଗର ଅୟମାରଂଭରେ ସହାୟକ ହେଉ ।



# ମଧୁସୂଦନଙ୍କ ସିଦ୍ଧି ଓ ଉପଲବ୍ଧି

ସମଗ୍ର ଓଡ଼ିଶା ପ୍ରଦେଶ ହିଁ ହେଉଛି ମଧୁବାବୁଙ୍କର ସିଦ୍ଧି ଆଉ ଉପଲବ୍‌ଧି । ସେ ଥିଲେ ନବ ଓଡ଼ିଶାର ନିର୍ମାତା । ତାଙ୍କର ବିହୁନେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପରିକଳ୍ପନା ଥିଲା ଅଚିନ୍ତନୀୟ । ତାଙ୍କ ଅଧିନାୟକତ୍ୱରେ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି 'ଓଡ଼ିଶା' ପ୍ରଦେଶ ଗଠନପାଇଁ ବିରାମହୀନ ସଂଗ୍ରାମ ଓ ୧୯୩୬ ସାଲରେ ଓଡ଼ିଶା ପ୍ରଦେଶର ସ୍ଥାପନା ହେଉଛି ଏକ ଯୁଗାନ୍ତକାରୀ ଘଟଣା । ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ଯୁଗରେ, ତତ୍‌କାଳୀନ ରାଜନୈତିକ ନେତୃବର୍ଗ, ମଧୁସୂଦନ ତଥା ଓଡ଼ିଶା ପ୍ରଦେଶର ସଂଗ୍ରାମର ସ୍ମୃତିକୁ ନିଶ୍ଚିହ୍ନ କରିଦେବାପାଇଁ ଯତ୍‌ପରୋନାସ୍ତି ଉଦ୍ୟମ କରିଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଗଠନ, ୟୁରୋପରେ ବିସ୍‌ମାର୍କଙ୍କର ନେତୃତ୍ୱରେ ବିଖଣ୍ଡିତ ଜର୍ମାନୀ ଭାଷୀ ଅଞ୍ଚଳର ଏକତ୍ରୀକରଣ ଏବଂ ମାଜନୀ ଆଉ ଗାରିବାଲ୍ଡିଙ୍କ ପ୍ରଚେଷ୍ଟା ବିଭିନ୍ନ ଭାଗରେ ବିଭାଜିତ ଇଟାଲୀଭାଷୀ ଅଞ୍ଚଳରେ ଇଟାଲୀ ଦେଶର ସ୍ଥାପନା ସହ ତୁଳନୀୟ । ପ୍ରାୟ ୧୮୭୦ ବେଳକୁ ସ୍ୱତନ୍ତ୍ର ଇଟାଲୀ ବା ଜର୍ମାନୀ ଦେଶ ପ୍ରତିଷ୍ଠିତ ହୋଇଥିଲା । ମଧୁସୂଦନ ୟୁରୋପ ପରିଭ୍ରମଣ କାଳରେ ୧୮୯୭ ସାଲରେ ଜର୍ମାନୀ ଆଉ ଇଟାଲୀ- ଏହି ଦୁଇ ଦେଶ ପରିଦର୍ଶନ କରି, ସେହି ଦେଶମାନଙ୍କର ସ୍ଥାପନା, ଶାସନ, ଶିଳ୍ପ, ସଂସ୍କୃତି ଆଦି ଅଧ୍ୟୟନ କରି କେବଳ ଅନୁପ୍ରେରଣା ଲାଭ କରିନଥିଲେ , ୟୁରୋପରେ ଏହି ଦେଶମାନଙ୍କ ଭଳି ପୂର୍ଣ୍ଣାଙ୍ଗ ସ୍ୱୟଂସଂପୂର୍ଣ୍ଣ ନେସନ ଭଳି ଓଡ଼ିଶା ପ୍ରଦେଶ ଗଠନପାଇଁ ୨୫.୧୦.୧୯୦୩ରେ ଉତ୍କଳ ସମ୍ମିଳନୀର ଆବାହନୀ ଅଧିବେଶନରେ ଆହ୍ୱାନ ଦେଇଥିଲେ ।

ପରିଣାମରେ ୧୯୦୦ ସାଲର କ୍ଷୁଦ୍ର ଓଡ଼ିଶା ଡିଭିଜନ ସହିତ ୧୯୦୫ ସାଲରେ ବିଭାଜିତ ଓଡ଼ିଆଭାଷୀ ପଶ୍ଚିମ ଓ ଉତ୍ତର ଅଂଚଳର ମିଶ୍ରଣ, ପ୍ରାୟ ୧୯୩୩ ସାଲରେ ଷଢ଼େଇକଳା ଓ ଖରସୁଆଁର ସଂଯୁକ୍ତି ଆଉ ଅବଶେଷରେ ବିଖଣ୍ଡିତ ଓଡ଼ିଆଭାଷୀ ଦକ୍ଷିଣାଞ୍ଚଳ ଓ ଖଡ଼ିଆଳର ୧୯୩୬ ସାଲରେ ସମ୍ମିଶ୍ରଣରେ ମଧୁସୂଦନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନା କରିଥିଲେ । ଏହା ଯେପରି ଥିଲା ପ୍ରସ୍ତର ଖଣ୍ଡ ସହିତ ପ୍ରସ୍ତର ଖଣ୍ଡ ଯୋଡ଼ି ପ୍ରାସାଦ ନିର୍ମାଣର ଯୋଜନା । ଏହିଭଳି ପରିକଳ୍ପନା ସମଗ୍ର ଦେଶରେ ଅନନ୍ୟ ।

ଏଥିରେ କୃଷିଜୀବୀ, ଶ୍ରମଜୀବୀ, କାରିଗର, ଶିଳ୍ପୀ, ବିଦ୍ୱାନ, ନେତୃବର୍ଗ ତଥା ଜମିଦାର ଏବଂ ରାଜାମାନଙ୍କର ସଂଯୁକ୍ତି ରହିଥିଲା । ଆଉ ଏହା ସହିତ ଜାତି, ଧର୍ମ ନିର୍ବିଶେଷରେ ସାର୍ବଜନୀନ ସୌହାର୍ଦ୍ଦ୍ୟ ସ୍ଥାପିତ ହୋଇଥିଲା । ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନରେ ଯେପରି ସମଷ୍ଟିଗତ ଭାବରେ ସାର୍ବଜନୀନ ପ୍ରୀତି, ମୈତ୍ରୀ ପ୍ରତିଷ୍ଠିତ ଆଉ ପରିସ୍ଫୁଟ ହୋଇଥିଲା, ତାହା ଏକାନ୍ତ ଭାବେ ଅକଳ୍ପନୀୟ ଥିଲା । ଏହିଭଳି ଗୋଷ୍ଠୀବଦ୍ଧତା ଓଡ଼ିଆମାନଙ୍କ ଜାତୀୟ ଜୀବନରେ ପ୍ରଥମ ବାର ହିଁ ପ୍ରକଟିତ ହୋଇଥିଲା ।

ବିଖଣ୍ଡିତ ଜର୍ମାନୀ ଭାଷୀ ଅଂଚଳର ଅଧିବାସୀ ତଥା ବିଶ୍ୱ ରାଜନୀତିର ଏକ ଅଭ୍ରାନ୍ତ ଦିଗ୍‌ଦର୍ଶକ କାଲମାର୍କ୍ସଙ୍କୁ ଯେତେବେଳେ ପ୍ରଶ୍ନ ପଚରାଗଲା, "ବିଭାଜିତ ଜର୍ମାନୀ ଭାଷୀ ଅଂଚଳର ମିଶ୍ରଣ କିପରି ହେବ ?" ଏଥିରେ ଅଭିଜାତ ଆଉ ବୁର୍ଜୁଆମାନେ ଅଗ୍ରଣୀ ଭୂମିକାରେ ଅଂଶଗ୍ରହଣ କରିବେ, ଯହିଁରେ ସାଧାରଣ ଜନତାଙ୍କ ସ୍ୱତଃସ୍ଫୂର୍ତ୍ତ ସହଯୋଗ ରହିବ । ଅଭିଜାତ ଏବଂ ବୁର୍ଜୁଆ ଶ୍ରେଣୀ ଉଭୟ କାର୍ଯ୍ୟରେ ସଫଳକାମ ହେଲେ ପରବର୍ତ୍ତୀ ପର୍ଯ୍ୟାୟରେ ଏହି କ୍ଷମତା ଆନ୍ଦୋଳନରତ ସାଧାରଣ ଜନତାଙ୍କୁ ହସ୍ତାନ୍ତରିତ ହେବ । କାର୍ଲମାର୍କ୍ସଙ୍କର ଉତ୍ତର ଏହିପରି ଥିଲା, ଯାହା ଅନେକ କ୍ଷେତ୍ରରେ ସତ୍ୟ ପ୍ରମାଣିତ ହୋଇଥିଲା ।

ଉତ୍କଳ ସମ୍ମିଳନୀର ସଂଚାଳନ କାଳରେ ମଧୁସୂଦନ ସାଧାରଣ ପ୍ରଜା, କୃଷିଜୀବୀ ଆଉ ଶ୍ରମଜୀବୀଙ୍କ ସହିତ ଜମିଦାର ଓ ରାଜାମାନଙ୍କର ସହଯୋଗ ନେଇଥିଲେ ଯଦିଓ ସେ ଜମିଦାରି ପ୍ରଥାର ଉଗ୍ର ବିରୋଧୀ ଥିଲେ ଏବଂ ଜମିଦାରି ପ୍ରଥା ବିନା କ୍ଷତିପୂରଣରେ ତୁରନ୍ତ ଉଚ୍ଛେଦ ପାଇଁ ବିଧାନ ସଭାରେ ଶାଣିତ ଯୁକ୍ତି ଉପସ୍ଥାପନ କରିଥିଲେ । ଏପରିକି ୧୯୦୯ ସାଲରେ ଉତ୍ତର ଓଡ଼ିଶାର ତିନିଗୋଟି ଜିଲ୍ଲାରେ ଜମିଦାର, ସାହୁକାର, ତଥା ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କୁ ସଂପୂର୍ଣ୍ଣ ଅଲଗା ରଖି ମଧୁସୂଦନ ନିଛକ ପ୍ରଜା ଆଉ ଭୂମିହୀନ କୃଷକଙ୍କୁ ନେଇ ପ୍ରଜା ପରିଷଦ କେବଳ ଗଢ଼ି ନଥିଲେ ଏହିମାନଙ୍କୁ ନେଇ ସମାନ୍ତରାଳ ନିର୍ବାଚନ ମଣ୍ଡଳୀ ସୃଷ୍ଟିକରି ୧୯୧୨ରେ ଯେଉଁ ପ୍ରଜାପ୍ରତିନିଧି ସଭା ସ୍ଥାପନ କରିଥିଲେ, ତାହା ଥିଲା ସମଗ୍ର ଭାରତରେ ଆଦ୍ୟ ସମାଜବାଦୀ ପ୍ରତିଷ୍ଠାନ, ଯାହା ଅଜସ୍ର ଖ୍ୟାତିର ଅଧିକାରୀ ହୋଇପାରିଥିଲା । ଏଥିରେ ମଧୁସୂଦନ ତାଙ୍କର ଘନିଷ୍ଠ ବଂଧୁ ଗୌରୀଶଙ୍କର ରାୟଙ୍କ ସଶ୍ରଦ୍ଧ ଆବେଦନ ସତ୍ତ୍ୱେ ତାଙ୍କୁ ଅନ୍ତର୍ଭୁକ୍ତ କରିନଥିଲେ । ଏ ସମସ୍ତ ବୈପ୍ଳବିକ, କ୍ରାନ୍ତିକାରୀ, କାର୍ଯ୍ୟକ୍ରମ ସତ୍ତ୍ୱେ ମଧୁସୂଦନଙ୍କୁ ଓଡ଼ିଶା ପ୍ରଦେଶର ସ୍ଥାପନା କ୍ଷେତ୍ରରେ ଜମିଦାର ଆଉ ରାଜାଙ୍କର ସହଯୋଗ ନେବାକୁ ପଡ଼ିଥିଲା, କାରଣ ଏହା ବହୁ ଦୃଷ୍ଟିକୋଣରୁ ଅପରିହାର୍ଯ୍ୟ ଥିଲା ।

ଏହି ଯୁଗାନ୍ତକାରୀ ଦେଶ ମିଶ୍ରଣ ସଂଗ୍ରାମରେ ସାଧାରଣ ବର୍ଗରୁ ଯେଉଁମାନେ ଏକାନ୍ତ ଭାବେ ମଧୁସୂଦନଙ୍କ ସହିତ ରହିଥିଲେ, ସେମାନଙ୍କ ମଧ୍ୟରେ ଅଛନ୍ତି; ଗୌରୀଶଙ୍କର ରାୟ, ବ୍ରଜ ସୁନ୍ଦର ଦାସ, ଭୁବନାନନ୍ଦ ଦାସ, ରାମଶଙ୍କର ରାୟ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଲକ୍ଷ୍ମୀଧର ମହାନ୍ତି, ବ୍ରଜବଂଧୁ ଦାସ, ଲେଖକ ଗୋଷ୍ଠୀରୁ ରାଧାନାଥ ରାୟ, ଫକୀରମୋହନ, ମଧୁସୂଦନ ରାଓ, ନନ୍ଦକିଶୋର ବଳ, ଗଂଗାଧର ମେହେର, ବିଛନ୍ଦ ପଟ୍ଟନାୟକ, ଆର୍ତ୍ତବଲ୍ଲଭ ମହାନ୍ତି, ପଶ୍ଚିମ ଓଡ଼ିଶାରୁ ଧରଣୀଧର

ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ମଦନ ମୋହନ ମିଶ୍ର, ମଦନ ବିହାରୀ ଦାସ, ଶ୍ରୀପତି ମିଶ୍ର ପ୍ରମୁଖ, ଖରସୁଆଁରୁ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଦକ୍ଷିଣ ଓଡ଼ିଶାରୁ ଶଶିଭୂଷଣ ରଥ, ନରସିଂହ ଦାସ, ନିରଞ୍ଜନ ପଟ୍ଟନାୟକ, ହରିହର ପଣ୍ଡା, ଆଉ ସତ୍ୟବାଦୀ ଗୋଷ୍ଠୀରୁ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ଆଉ ଗୋଦାବରୀଶ ମିଶ୍ର ପ୍ରମୁଖ ।

ଏହି ବିବରଣୀ କିଞ୍ଚିତ୍ ଛାୟାପାତ ମାତ୍ର । ଏହି ସମୟର ବହୁ ସମର୍ପିତ ବ୍ୟକ୍ତି ତାଙ୍କ ସହିତ ଛାୟାପରି ରହିଥିଲେ । ଜଣେ ଅତ୍ୟନ୍ତ ପୁରୋଦୃଷ୍ଟି ସମ୍ପନ୍ନ, ପ୍ରଖର ବୁଦ୍ଧିମତ୍ତାଯୁକ୍ତ ପ୍ରତିଭାଶାଳୀ ଅଧିନାୟକ ରୂପରେ ମଧୁସୂଦନ ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପୂର୍ବଭାଗରେ ତତ୍କାଳୀନ ତରଳ ରାଜନୈତିକ ପରିସ୍ଥିତି ମଧ୍ୟରେ ସଂଗ୍ରାମରେ କିଭଳି କୌଶଳ ଅବଲମ୍ବନ କରିଥିଲେ, ତାହା ଅକଳ୍ପନୀୟ ଆଉ ଅଚିନ୍ତନୀୟ ଥିଲା । ଆଜିର ଏହି ଏକବିଂଶ ଶତାବ୍ଦୀର ମାନସିକତାରେ ଏହାର ଯଥାର୍ଥ ମୂଲ୍ୟାୟନ କିଭଳି ବା କରାଯାଇପାରିବ ?

ମଧୁସୂଦନଙ୍କର ୧୮୮୨ ସାଲରେ ଉତ୍କଳ ସଭା, (ଓଡ଼ିଶା ଏସୋସିଏସନ୍)ର ସ୍ଥାପନା ପଶ୍ଚାତରେ ଲକ୍ଷ୍ୟ ଥିଲା ଓଡ଼ିଆଭାଷୀ ଅଂଚଳର ସମ୍ମିଶ୍ରଣରେ ଓଡ଼ିଶା ପ୍ରଦେଶ ଗଠନ । ପର୍ଯ୍ୟାୟକ୍ରମେ ସୁନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଗ୍ରହଣ ସହିତ, ପ୍ରଥମ ସଂଗ୍ରାମ ସମ୍ବଲପୁର ଜିଲ୍ଲାରେ ହିନ୍ଦୀଭାଷାର ଆକ୍ରମଣରୁ ଓଡ଼ିଆ ଭାଷାର ରକ୍ଷା ପାଇଁ ସଂଚାଳିତ ହୋଇଥିଲା ସମ୍ବଲପୁରବାସୀଙ୍କର ସ୍ୱତଃସ୍ଫୂର୍ତ୍ତ ଆନ୍ଦୋଳନ ସହିତ ମଧୁସୂଦନ ଗୁରୁତ୍ୱପୂର୍ଣ୍ଣ ନିର୍ଣ୍ଣାୟକ ଭୂମିକାରେ ଅବତୀର୍ଣ୍ଣ ଏଥିରେ ହୋଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଭାରତର ବହୁ ପ୍ରାଦେଶିକ ସୀମାର ପରିବର୍ତ୍ତନ ପାଇଁ ବଡ଼ଲାଟ ଲର୍ଡ଼ କର୍ଜନ ଯେଉଁ ପରିକଳ୍ପନା କରୁଥିଲେ, ମଧୁସୂଦନଙ୍କ ପ୍ରଦତ୍ତ ଓଡ଼ିଆଭାଷୀ ଅଂଚଳର ମିଶ୍ରଣପ୍ରସ୍ତାବ ତାହାକୁ ବଳିଷ୍ଠ ଭିତ୍ତିଭୂମି ଯୋଗାଇଥିଲା । ଏହି ପରିପ୍ରେକ୍ଷୀରେ କର୍ଜନ-ରିସ୍‌ଲେ ସାର୍କୁଲାରର ପ୍ରକାଶନ ପାଇଁ ମଧୁସୂଦନ ଅଗ୍ରଣୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ।

ମାତ୍ର ଏହା ମଧ୍ୟରେ ଯେଉଁ ସ୍ପର୍ଶକାତର ବିଷୟ ଥିଲା, ତାହା ହେଉଛି ୨୮.୧୧.୧୯୦୫ରେ ଆସନ୍ନ ବିଦାୟ ନେଉଥିବା ଲର୍ଡ଼ କର୍ଜନ ବିଚ୍ଛିନ୍ନ ଓଡ଼ିଆ ଭାଷୀ ଅଂଚଳର ମିଶ୍ରଣ ପାଇଁ ଏଭଳି ପ୍ରତିଶ୍ରୁତିବଦ୍ଧ ଥିଲେ ଯେ ୧୬.୧୦.୧୯୦୫ରେ ଏହାକୁ ରୂପାୟିତ କରିବା ସହିତ ନିଜ ଜିଦ୍‌ରେ ଅଟଳ ରହି ସେହିଦିନ ବଂଗଭଂଗ କରିଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଶେଷ ସଂଗ୍ରାମ ଇଂଲଣ୍ଡର ଥେମସ୍ ନଦୀ କୂଳବର୍ତ୍ତୀ ଲଣ୍ଡନରେ ସଂଚାଳିତ ହୋଇଥିଲା । ଏଥିରେ ପ୍ରତିପକ୍ଷ ରୂପେ ଆନ୍ଧ୍ରଭାଷୀଙ୍କ ପକ୍ଷରୁ ବୋବଲିର ରାଜା ରାମଚନ୍ଦ୍ର ରାଓଙ୍କ ସହିତ କ୍ଷମତାଶାଳୀ ଧନାଢ଼୍ୟ ଜମିଦାରି ଗୋଷ୍ଠୀ ଅଂଶଗ୍ରହଣ କରିଥିଲେ । ଏଣୁ ମଧୁସୂଦନଙ୍କୁ ଏହି ଶେଷ ସଂଗ୍ରାମରେ ଯୋଗଦେବାପାଇଁ ପାରଳା ମହାରାଜା ୧୯୩୩ ସାଲରେ ଜଏଣ୍ଟ ପାର୍ଲାମେଣ୍ଟାରି କମିଟି ବୈଠକରୁ ଫେରି ଖରସୁଆଁର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କୁ ଲେଖିଥିଲେ ଯେ, ମଧୁସୂଦନଙ୍କ ପ୍ରଚେଷ୍ଟାରେ କର୍ଜନ ଯେଉଁ ରିସ୍‌ଲେ ସର୍କୁଲାର ପ୍ରସାରିତ କରିଥିଲେ, ତାହାହିଁ ଅନ୍ତିମ କାଳରେ ଓଡ଼ିଶା ପ୍ରଦେଶର ଗଠନପାଇଁ ନିଧାର୍ଯ୍ୟ ଆଉ ଐକାନ୍ତିକ ଭାବେ ସହାୟକ ହୋଇଥିଲା ।

ସ୍ୱତନ୍ତ୍ର ଓଡ଼ିଶା ସ୍ଥାପନାର ଶେଷ ପର୍ଯ୍ୟାୟରେ ପ୍ରାୟ ଦଶହଜାର ବର୍ଗମାଇଲ୍‌ରୁ ଊର୍ଦ୍ଧ୍ୱ ଆୟତନ ବିଶିଷ୍ଟ ଜୟପୁର ଜମିଦାରି, ପରବର୍ତ୍ତୀ କାଳରେ ଅବିଭକ୍ତ କୋରାପୁଟ ଜିଲ୍ଲାର ମିଶ୍ରଣ ଓଡ଼ିଶା ପ୍ରଦେଶ ଗଠନର ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ପାରଳା ମହାରାଜା ୧୬.୧.୧୯୩୧ରେ ପ୍ରଥମ ଗୋଲଟେବୁଲ୍ ବୈଠକରେ ଯୋଗଦାନ ପରେ ପ୍ରସ୍ତାବିତ ଓଡ଼ିଶାର ସୀମା ନିର୍ଦ୍ଧାରଣ 'ଓଡନେଲ୍' କମିଟି ଯେଉଁ ରିପୋର୍ଟ ୧୯.୪.୧୯୩୨ରେ ବ୍ରିଟିଶ ସରକାରଙ୍କ ନିକଟରେ ପେଶ କରିଥିଲେ, ତହିଁରେ ବ୍ରିଟିଶ ଓଡ଼ିଶା (ଗଡ଼ଜାତକୁ ବାଦ ଦେଇ)ର ଆୟତନ ୩୩୦୦ ବର୍ଗ ମାଇଲ ବୋଲି ସୂଚିତ ହୋଇଥିଲା । ଏହି ରିପୋର୍ଟରେ ଜୟପୁର ଜମିଦାରି ସଂଯୁକ୍ତ ହୋଇଥିଲେ ମଧ୍ୟ ପାରଳାଖେମୁଣ୍ଡି ଜମିଦାରିକୁ ବାଦ ଦିଆଯାଇଥିଲା । ତୃତୀୟ ଗୋଲ୍‌ଟେବୁଲ୍ ବୈଠକର ସିଦ୍ଧାନ୍ତ ଘେନି ସର୍ବଶେଷ ଶ୍ୱେତପତ୍ର ୧୮.୩.୧୯୩୩ରେ ଯେତେବେଳେ ପ୍ରଚାରିତ ହେଲା, ସେତେବେଳେ ଉଭୟ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରିକୁ ବାଦ ଦିଆଯିବା ପରେ ବ୍ରିଟିଶ ଓଡ଼ିଶା (ଗଡ଼ଜାତକୁ ବାଦ୍ ଦେଇ)ର ପ୍ରସ୍ତାବିତ ଆୟତନ ମାତ୍ର ୨୧,୫୪୫ ବର୍ଗ ମାଇଲ୍‌କୁ ହ୍ରାସ ପାଇଥିଲା । ଏହା ଓଡ଼ିଶା ପାଇଁ ବଜ୍ରପାତ ସଦୃଶ ଥିଲା । ଏହାକୁ ପ୍ରତିହତ କରିବାପାଇଁ ମଧୁସୂଦନ ପାରଳା ମହାରାଜାଙ୍କୁ ଆହ୍ୱାନ କରି ତାଙ୍କ ଅଧିନାୟକତ୍ୱରେ ଏକ ବଳିଷ୍ଠ ପ୍ରତିନିଧି ଦଳ ପ୍ରେରଣ କରିଥିଲେ, ଯହିଁରେ ଭୁବନାନନ୍ଦ ଦାସ, ଖଲ୍ଲିକୋଟ ରାଜା ସାହେବ ଓ ଲିଂଗରାଜ ପାଣିଗ୍ରାହୀ ପ୍ରମୁଖ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଏହି ଦଳ ଓଡ଼ିଶା ପକ୍ଷରୁ ୩.୭.୧୯୩୩ରେ ଲଣ୍ଡନଠାରେ ଜଏଣ୍ଟ ପାର୍ଲାମେଣ୍ଟାରି କମିଟି ଆଗରେ ସାକ୍ଷ୍ୟ ପ୍ରଦାନ ପରେ ଆନ୍ଧ୍ରଭାଷୀ ପ୍ରତିନିଧି ଦଳ ସେହି କମିଟି ଆଗରେ ୧୦.୭.୧୯୩୩ରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ସଂଗ୍ରାମ କିଭଳି ତୀବ୍ର, ଶାଣିତ ଆଉ ପ୍ରତିଦ୍ୱନ୍ଦ୍ୱିତାମୂଳକ ଥିଲା, ତାହା ବର୍ତ୍ତମାନ ମଧ୍ୟ ରୋମାଞ୍ଚ ସୃଷ୍ଟିକରେ । ଏହାପରେ ସମସ୍ତ ଜୟପୁର ଜମିଦାରି ଓ ପାରଳାଖେମୁଣ୍ଡି ଜମିଦାରିର ଏକ ତୃତୀୟାଂଶ ମିଶିବା ପରେ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ଆୟତନ ପୁନରାୟ ୩୨୬୯୫ ବର୍ଗ ମାଇଲ୍‌କୁ ବୃଦ୍ଧି ପାଇଲା । ଏହି ପ୍ରାୟ ଦଶ ହଜାର ବର୍ଗ ମାଇଲ୍‌ର ଜୟପୁର ଓ ପାରଳା ଜମିଦାରି ଅତୀବ ଐଶ୍ୱର୍ଯ୍ୟଶାଳୀ ବିପୁଳ ପ୍ରାକୃତିକ ଆଉ ଖଣିଜ ବିଭବ ସହିତ ଅକଳ୍ପନୀୟ ଜଳ ଆଉ ଅରଣ୍ୟ ସଂପଦରେ ଭରପୂର ହୋଇ ରହିଛି ।

ଏହା ଓଡ଼ିଶାର ଗୌରବୋଜ୍ଜ୍ୱଳ ଇତିହାସର କାଞ୍ଚି ବିଜୟଠାରୁ ଅଧିକ ମହିମାନ୍ୱିତ ଆଉ ଐଶ୍ୱର୍ଯ୍ୟଶାଳୀ । କାଞ୍ଚି ବିଜୟର ପ୍ରାୟ ୫୦ ବର୍ଷର ଅନ୍ତରାଳରେ ସେହି ଭୂଖଣ୍ଡ ଓଡ଼ିଶା ସାମ୍ରାଜ୍ୟରୁ ଅବଲୁପ୍ତ ହୋଇଯାଇଥିଲା । ମାତ୍ର ପ୍ରାକୃତିକ ପ୍ରାଚୁର୍ଯ୍ୟ ପରିପୂର୍ଣ୍ଣ ଅବିଭକ୍ତ କୋରାପୁଟ ଜିଲ୍ଲା ଓଡ଼ିଶାକୁ ବିପୁଳ ସମୃଦ୍ଧି ଆଉ ଗରିମାରେ ପରିପୂର୍ଣ୍ଣ କରି ଚିରକାଳ ରହିଥିବ ।

ମଧୁସୂଦନଙ୍କର ଅନେକ ସହଯୋଗୀ ଏଥିଲାଗି ସହଯୋଗର ହସ୍ତ ପ୍ରସାରିତ କରିଥିଲେ । ବ୍ରିଟିଶ ସରକାରଙ୍କର ସଂଶିତ ବେଳର ଭାରତ ସଚିବ ସାର୍ ସାମୁଏଲ୍ ହେଭ୍ ଓଡ଼ିଶା ଉପକୂଳରେ ରେଲବାଇ ସ୍ଥାପନାକାଳରେ ୧୮୯୫ରୁ ୧୯୦୦ ସାଲ ମଧ୍ୟରେ ରେଲବାଇ ଅଧିକାରୀ ଥିଲେ ଓ କଟକରେ ଅବସ୍ଥାନ କାଳରେ ମଧୁବାବୁଙ୍କର ବାସଭବନରେ ଟେନିସ୍ ଖେଳୁଥିଲେ ।

ଏହି ବେଳର ବ୍ରିଟିଶ ପ୍ରଧାନମନ୍ତ୍ରୀ ସାର୍ ରାମ୍‌ସେ ମ୍ୟାକ୍‌ଡୋନାଲ୍ଡ଼ ମଧୁସୂଦନଙ୍କର ପୂର୍ବ ପରିଚିତ ଥିଲେ ଆଉ ତାଙ୍କର ଭାରତ ଭ୍ରମଣ କାଳରେ ଭ୍ରମଣ ବୃତ୍ତାନ୍ତରେ ମଧୁସୂଦନଙ୍କୁ ଓଡ଼ିଶାର ମୁକୁଟବିହୀନ ରାଜା ବୋଲି ଆଖ୍ୟାୟିତ କରିଥିଲେ । ମଧୁସୂଦନ ୧୯୯୭ ଓ ୧୯୦୭ ସାଲରେ ଲଣ୍ଡନ ଗଲାବେଳେ ଭାରତ ସଚିବ ଅଫିସ୍‌ରେ ଯେଉଁ ତଥ୍ୟ ଉପସ୍ଥାପନା ସହିତ ହାର୍ଦ୍ଦିକ ସଂପର୍କ ସ୍ଥାପନ କରିଥିଲେ, ତାହା ମଧ୍ୟ ସହାୟକ ହୋଇଥିଲା ।

ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ୧୯୦୦ ସାଲରେ ଓଡ଼ିଶା ଡିଭିଜନର ଶାସକୀୟ ପରିଧି ମଧ୍ୟରେ ୧୭ଗୋଟି ଗଡ଼ଜାତ ରହିଥିଲା । ସ୍ୱାଧୀନତାର ପରବର୍ତ୍ତୀ ପର୍ଯ୍ୟାୟରେ ଏହି ୧୭ଗୋଟି ଗଡ଼ଜାତ ମଧ୍ୟରୁ ମୟୂରଭଂଜ ଆଉ କେନ୍ଦୁଝର ଗଡ଼ଜାତ ଦୁଇଟି, ଦୁଇଗୋଟି ଅବିଭକ୍ତ ଜିଲ୍ଲାରେ ପରିଣତ ହୋଇଥିଲା ବେଳେ ଅନ୍ୟ ପନ୍ଦରଟି ଗଡ଼ଜାତ ବିଭିନ୍ନ ଅବିଭକ୍ତ ଜିଲ୍ଲାମାନଙ୍କ ସହିତ ମିଶ୍ରିତ ହୋଇଥିଲେ । ତାହାର ସୂଚନା ନିମ୍ନଲିଖିତ ସାରଣୀରେ ପ୍ରଦାନ କରାଯାଇଛି ।

| କ୍ରନଂ | ଅବିଭକ୍ତ ଜିଲ୍ଲା | ମିଶିଥିବା ଗଡଜାତର ନାମ |
|---|---|---|
| ୧. | ବାଲେଶ୍ୱର ଜିଲ୍ଲା | ୧. ନୀଳଗିରି |
| ୨. | ମୟୂରଭଞ୍ଜ ଜିଲ୍ଲା | ୨. ମୟୂରଭଞ୍ଜ |
| ୩. | କେନ୍ଦୁଝର ଜିଲ୍ଲା | ୩. କେନ୍ଦୁଝର |
| ୪. | ଢେଙ୍କାନାଳ ଜିଲ୍ଲା | ୪. ଢେଙ୍କାନାଳ, ୫ ହିନ୍ଦୋଳ, ୬. ତାଳଚେର, ୭. ଆଠମଲ୍ଲିକ, ୮. ପାଲଲହଡ଼ା |
| ୫. | କଟକ ଜିଲ୍ଲା | ୯. ଆଠଗଡ଼, ୧୦. ତିଗିରିଆ, ୧୧.ବଡ଼ମ୍ବା, ୧୨. ନରସିଂହପୁର |
| ୬. | ପୁରୀ ଜିଲ୍ଲା | ୧୩. ନୟାଗଡ଼, ୧୪ ଦଶପଲ୍ଲା, ୧୫. ଖଣ୍ଡପଡ଼ା, ୧୬. ରଣପୁର |
| ୭. | କନ୍ଧମାଳ ଜିଲ୍ଲା | ୧୭.ବୌଦ |

ସ୍ୱାଧୀନତାର ପରବର୍ତ୍ତୀ କାଳରେ, ଯେଉଁ ଗଡ଼ଜାତ ମାନଙ୍କର ମିଶ୍ରଣ ପାଇଁ ଡିଣ୍ଡିମ ପିଟାଯାଉଛି, ତାହା ସ୍ୱାଧୀନତା ପ୍ରାପ୍ତିପରେ ଗୃହୀତ ରାଜନୈତିକ ସଂସ୍କାରର ବୈପ୍ଲବିକ ପରିବର୍ତ୍ତନ ଆଉ ସିଦ୍ଧାନ୍ତ ଫଳରେ ସମାହିତ ହେଲା । ଏହା ସର୍ବଭାରତୀୟ ସ୍ତରରେ ଗୃହୀତ ନୀତି । ଲର୍ଡ଼ କର୍ଜନଙ୍କ ଦ୍ୱାରା ପ୍ରସାରିତ ରିସ୍‌ଲେ ସର୍କୁଲାର ୧୬.୧୦.୧୯୦୫ରେ କାର୍ଯ୍ୟକାରୀ ହେଲା । ଏହି ଦିନ ମଧ୍ୟପ୍ରଦେଶର ଛତିଶିଗଡ଼ ଡିଭିଜନରୁ କଳାହାଣ୍ଡି, ପାଟନା, ସୋନପୁର, ରେଢ଼ାଖୋଲ ଆଉ ବାମଣ୍ଡା ଗଡ଼ଜାତମାନ (ସମ୍ବଲପୁର ଜିଲ୍ଲା ସମେତ) ଆସି ଓଡ଼ିଶା ଡିଭିଜନରେ ସାମିଲ୍ ହେଲା । ସେହିପରି ଏହି ଦିନ ବିହାରର ଛୋଟନାଗପୁର ଡିଭିଜନ ମଧ୍ୟରୁ ଗାଂଗପୁର ଓ ବଣେଇ

ଗଡ଼ଜାତ ଦୁଇଟି ମଧ୍ୟ ଓଡ଼ିଶା ଡିଭିଜନ ସହିତ ସାମିଲ୍ ହେଲା । ଏହିଦିନ ମଧ୍ୟ ବଂଗଭଂଗ ନୀତି କାର୍ଯ୍ୟକାରୀ ହେଲା । ସେ ଯାହାହେଉ ଏହିପରି ସାତଗୋଟି ଗଡ଼ଜାତ ସାମିଲ ହେଲା ପରେ ଓଡ଼ିଶା ଡିଭିଜନର ଗଡ଼ଜାତ ସଂଖ୍ୟା ୨୪କୁ ବୃଦ୍ଧିପାଇଲା । ମଧୁସୂଦନଙ୍କର ବଟଲାର୍ କମିଟିକୁ ୧୫.୪.୧୯୨୮ରେ ଆବେଦନ ପରେ, ଲୋଥିଆନ କମିଟିର ଅନୁମୋଦନ କ୍ରମେ ପ୍ରାୟ ୧୯୩୩ ବେଳକୁ ଷଢ଼େଇକଳା ଓ ଖରସୁଆଁ ଗଡ଼ଜାତ ଦ୍ୱୟ ଓଡ଼ିଶା ଡିଭିଜନରେ ମିଶିଲେ । ଏଣୁ ୧.୪.୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସୃଷ୍ଟି ହେଲାବେଳେ ଏହାର ଶାସକୀୟ ପରିଧି ମଧ୍ୟରେ ୨୬ ଟି ଗଡ଼ଜାତ ଥିଲା, ଯାହା ୧.୪.୧୯୪୮ରେ (ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ପର୍ଯ୍ୟାୟରେ) ଓଡ଼ିଶା ପ୍ରଦେଶ ସହିତ ବିଭିନ୍ନ ଜିଲ୍ଲା ମଧ୍ୟରେ ବା ଜିଲ୍ଲା ଆକାରରେ ମିଶିଥିଲେ । ମାତ୍ର ସବୁଠାରୁ ନୈରାଶ୍ୟଜନକ ତଥା ବିଷାଦଗ୍ରସ୍ତ ବିଷୟ ହେଲା ଯେ ୧୮.୫.୧୯୪୮ରେ ଷଢ଼େଇକଳା ଓ ଖରସୁଆଁ ପୁନରାୟ ବିହାର ପ୍ରଦେଶକୁ ସ୍ଥାନାନ୍ତରିତ ହେଲା ।

**ମଧୁବାବୁଙ୍କ ମହାର୍ଘଦାନଃ** ଦେଶପାଇଁ ନିଃସ୍ୱ ଆଉ କପର୍ଦ୍ଦକ ଶୂନ୍ୟ ହୋଇ ପରଲୋକ ଗମନ କରିଥିବା ମଧୁସୂଦନ ସମଗ୍ର ଓଡ଼ିଶାର ଭୂମିରୂପୀ ସଂପତ୍ତିକୁ ପ୍ରତିଶ୍ରୁତିବଦ୍ଧତାର ଦାନ (trust property) ରୂପେ ପ୍ରଦାନ କରିଯାଇଛନ୍ତି । ଫକୀରମୋହନଙ୍କର ମହତ୍ତର ମୂଲ୍ୟାୟନରେ ମଧୁସୂଦନ ଏହିଭଳି ଏକ ଗରିମାମୟ ଉର୍ଦ୍ଧ୍ୱସ୍ୱଳ ବ୍ୟକ୍ତିତ୍ୱ ରୂପେ ଚିହ୍ନିତ ହୋଇଛନ୍ତି ଯାହାର ପଟ୍ଟାନ୍ତର ନାହିଁ ।

''କେତେ କୋଟିପତି କେତେ ଭୂପତି
କେତେ ଧନ ରଖି ଯାଇ ଅଛନ୍ତି
ତୁମେ ଚାଲିଗଲେ ତୁମରି ଧନ
ବାଣ୍ଟିବୁଣ୍ଟି ନେବେ କୋଟିଏ ଜନ
ତୁମ୍ଭ ଧନବଣ୍ଟା ରୀତି ଦେଖିଛି
ପ୍ରତିଲୋକ ଭାଗେ ପଡ଼ିବ କିଛି ।'' -(ଅବସର ବାସରେ)ଲ

ସ୍ୱତନ୍ତ୍ର ଓଡ଼ିଶାର ପ୍ରତିଷ୍ଠାତା ରୂପେ ସମଗ୍ର ଓଡ଼ିଶାର ଭୂଖଣ୍ଡ ହେଉଛି ମଧୁସୂଦନଙ୍କର ଓଡ଼ିଆ ଜାତି ପ୍ରତି ପ୍ରତିଶ୍ରୁତିବଦ୍ଧତାର ଦାନ । ମାତ୍ର ଯେଉଁ ଭୂଖଣ୍ଡମାନ ଦେଶ ମିଶ୍ରଣ ପ୍ରକ୍ରିୟା ମାଧ୍ୟମରେ ଓଡ଼ିଶା ଡିଭିଜନ ସହିତ ସେ ସନ୍ନିବେଶିତ କରିଥିଲେ, ସେହି ଅଂଚଳର ସଂପଦ ଆକଳନ କରିବା । ତାହା ହେଉଛି ଓଡ଼ିଶାର ସମଗ୍ର ଅବିଭକ୍ତ ତେରଗୋଟି ଜିଲ୍ଲାରୁ ସାତଗୋଟି ଅବିଭକ୍ତ ଜିଲ୍ଲା ।

ସେସବୁ ହେଉଛି ୧.୪.୧୯୩୬ରେ ମିଶିଥିବା ଦକ୍ଷିଣ ଓଡ଼ିଶାର ତିନିଗୋଟି ଅବିଭକ୍ତ ଜିଲ୍ଲା । ଯଥାଃ ୧. ଅବିଭକ୍ତ କୋରାପୁଟ, (ରାୟଗଡ଼ା, ନବରଂଗପୁର, ମାଲକାନଗିରି ସମନ୍ୱିତ ଜିଲ୍ଲା)୨. ଅବିଭକ୍ତ ଗଂଜାମ (ଗଜପତି ସମନ୍ୱିତ) ଜିଲ୍ଲା । ୩. କନ୍ଧମାଳ ଜିଲ୍ଲା । ସେହିପରି ୧୬.୧୦.୧୯୦୫ରେ ମିଶିଥିବା (୪) ସୁନ୍ଦରଗଡ଼ (ପୂର୍ବତନ ଗାଂଗପୁର ଓ ବଣେଇ ଗଡ଼ଜାତ) ଜିଲ୍ଲା (୫) ଅବିଭକ୍ତ ସଂବଲପୁର (ଦେବଗଡ଼, ବରଗଡ଼, ଝାରସୁଗୁଡ଼ା ସମନ୍ୱିତ ) (୬) ଅବିଭକ୍ତ ବଲାଙ୍ଗିର (ସୋନପୁର ସମନ୍ୱିତ) ଜିଲ୍ଲା (୭) ଅବିଭକ୍ତ କଳାହାଣ୍ଡି (ନୂଆପଡ଼ା ସମନ୍ୱିତ) ଜିଲ୍ଲା ।

ଏହିଭଳି ଭାବରେ ଦେଖିବାକୁ ଗଲେ ଓଡ଼ିଶାର ସମୁଦାୟ ଅବିଭକ୍ତ ୧୩ଗୋଟି ଜିଲ୍ଲାରୁ ୭ଗୋଟି ଜିଲ୍ଲା, ବର୍ତ୍ତମାନର ୩୦ଗୋଟି ଜିଲ୍ଲାରୁ ପ୍ରାୟ ୧୭ଗୋଟି ଜିଲ୍ଲା ମଧୁସୂଦନ ଦେଶମିଶ୍ରଣ ପ୍ରକ୍ରିୟା ମାଧ୍ୟମରେ ନୂତନ ଭାବେ ସମ୍ମିଳିତ କରିଥିଲେ । ଏହି ଦୃଷ୍ଟିରୁ ହାରାହାରି ଦେଖିବାକୁ ଗଲେ ମଧୁସୂଦନ କ୍ରମାଗତ ଆଉ ନିରନ୍ତର ଭାବେ ଓଡ଼ିଶା ସରକାରଙ୍କର ମୂଳ ଆୟର ଦୁଇତୃତୀୟାଂଶ ପ୍ରଦାନ କରିଆସୁଛନ୍ତି । ଏହିଭଳି ଉପଲବ୍ଧି ବା ଗୌରବ ଓଡ଼ିଶାର ଅନ୍ୟ କୌଣସି ବରପୁତ୍ରଙ୍କ ଭାଗ୍ୟରେ ଘଟିନାହିଁ ।

ସ୍ୱାଧୀନତାର ପରବର୍ତ୍ତୀ ପର୍ଯ୍ୟାୟରେ ଗଡ଼ଜାତମାନଙ୍କୁ ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ କରାଯିବା ପରେ ଓଡ଼ିଶାର ମୋଟ ଅବିଭକ୍ତ ଜିଲ୍ଲାମାନଙ୍କର ସଂଖ୍ୟାହେଲା ୧୩ । ଏହି ୧୩ଟି ଜିଲ୍ଲାର ସ୍ୱାଧୀନତା ପରବର୍ତ୍ତୀ ପର୍ଯ୍ୟାୟରେ (ଅର୍ଥାତ୍ ସମୁଦାୟ ଓଡ଼ିଶାର)ଆୟତନ ରହିଛି ୧,୫୫,୮୪୨ ବର୍ଗ କିଲୋମିଟର । ଏଥି ମଧ୍ୟରୁ ୧୯୦୦ ସାଲରେ ଓଡ଼ିଶା ଡିଭିଜନ ମଧ୍ୟରେ ଥିବା ତିନିଗୋଟି ଜିଲ୍ଲା ଆଉ ସତର ଗୋଟି ଗଡ଼ଜାତ, ପରବର୍ତ୍ତୀ ପର୍ଯ୍ୟାୟରେ ବାଲେଶ୍ୱର, ପୁରୀ, କଟକ, ମୟୂରଭଞ୍ଜ, କେନ୍ଦୁଝର ଆଉ ଢେଙ୍କାନାଳ ନାମରେ ଛଅଗୋଟି ଜିଲ୍ଲାରେ ପରିଣତ ହେଲା । ଏହି ଛଅଗୋଟି ଅବିଭକ୍ତ ଜିଲ୍ଲାର ସମୁଦାୟ ଆୟତନ ନିମ୍ନଲିଖିତ ଜିଲ୍ଲାଓ୍ୱାରୀ ହିସାବ ମତେ ୫୭,୨୪୨ ବର୍ଗ କିଲୋମିଟର । ଏହା ସମଗ୍ର ଓଡ଼ିଶାର ସମୁଦାୟ ଆୟତନ ୧,୫୫,୮୪୨ ବର୍ଗ କିଲୋମିଟରର ମାତ୍ର ଏକ ତୃତୀୟାଂଶ ଆୟତନରୁ ଉର୍ଦ୍ଧ୍ୱ ।

| କ୍ର.ନଂ | ଜିଲ୍ଲାରନାମ | ଆୟତନ (ବର୍ଗ କି.ମି.) |
|---|---|---|
| ୧ | ପୁରୀ | ୧୦,୧୫୯ |
| ୨ | କଟକ | ୧୧,୨୧୧ |
| ୩ | ବାଲେଶ୍ୱର | ୬,୩୯୪ |
| ୪ | ମୟୂରଭଞ୍ଜ | ୧୦,୪୧୨ |
| ୫ | କେଉଁଝର | ୮,୨୪୦ |
| ୬ | ଢେଙ୍କାନାଳ | ୧୦୮୨୬ |
| | **ମୋଟ** | **୫୭,୨୪୨** |

ଏହାପରେ ମଧୁସୂଦନଙ୍କର ଦେଶମିଶ୍ରଣ ପ୍ରକ୍ରିୟାରେ ଯେଉଁସବୁ ଅଞ୍ଚଳ ୧୯୩୬ ସାଲ ଆଉ ୧୯୦୫ ସାଲରେ ମିଶିଥିଲେ, ତାହାକୁ ସାତଗୋଟି ଅବିଭକ୍ତ ଜିଲ୍ଲା, ଗଂଜାମ, କୋରାପୁଟ, କନ୍ଧମାଳ, ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗିର ଆଉ କଳାହାଣ୍ଡି ଅବିଭକ୍ତ ଜିଲ୍ଲାରେ ପରିଣତ କରାଯାଇଥିଲା । ଏହି ସାତଗୋଟି ଅବିଭକ୍ତ ଜିଲ୍ଲାର ନିମ୍ନଲିଖିତ ଜିଲ୍ଲାଓ୍ୱାରୀ ହିସାବ ମତେ ଆୟତନ ପ୍ରାୟ ୯୮,୬୦୦ ବର୍ଗ କିଲୋମିଟର, ଯାହା ସମଗ୍ର ଓଡ଼ିଶା ଆୟତନ ପ୍ରାୟ ଦୁଇ ତୃତୀୟାଂଶ ଭାଗରୁ ସ୍ୱଳ୍ପ କମ୍ ।

| କ୍ର.ନଂ | ଜିଲ୍ଲାର ନାମ | ଆୟତନ (ବର୍ଗ କି.ମି.) |
|---|---|---|
| ୧ | ଗଂଜାମ | ୧୨,୫୨୭ |
| ୨ | କୋରାପୁଟ | ୨୭,୦୨୦ |
| ୩ | କନ୍ଧମାଳ | ୧୧,୦୭୦ |
| ୪ | ସୁନ୍ଦରଗଡ଼ | ୯,୬୭୫ |
| ୫ | ସମ୍ବଲପୁର | ୧୭,୫୭୦ |
| ୬ | ବଲାଙ୍ଗିର | ୮,୯୦୩ |
| ୭ | କଳାହାଣ୍ଡି | ୧୧,୮୩୫ |
| | **ମୋଟ** | ୯୮,୬୦୦ |

୧. ଓଡ଼ିଶା ଡିଭିଜନର ଆୟତନ ୧୯୦୦ ସାଲରେ ଗଡ଼ଜାତ ସହ ୫୭,୨୪୨ ବର୍ଗ କିଲୋମିଟର ।

୨. ମଧୁସୂଦନଙ୍କର ଦେଶମିଶ୍ରଣ ପ୍ରକ୍ରିୟାରେ ମିଶିଥିବା ଅଂଶ ଗଡ଼ଜାତ ସହ ୯୮,୬୦୦ ବର୍ଗ କି.ମି. ।

ଓଡ଼ିଶାର ମୋଟ ଆୟତନ ୧,୫୫,୮୪୨ ବର୍ଗ କି.ମି. ।

ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ମଧୁସୂଦନ ଦେଶମିଶ୍ରଣ ପ୍ରକ୍ରିୟା ମାଧ୍ୟମରେ, ସମଗ୍ର ଓଡ଼ିଶାର ଆୟତନର ପ୍ରାୟ ଦୁଇ ତୃତୀୟାଂଶ ସମ୍ମିଳିତ କରିଥିଲେ । ଏହି ଐଶ୍ବର୍ଯ୍ୟଶାଳୀ ଅଞ୍ଚଳ ଅମାପ ପ୍ରାକୃତିକ ଅରଣ୍ୟ ଆଉ ଖଣିଜ ବିଭବ ତଥା ସୁବିସ୍ତାରିତ ଜଳସଂପଦ ଦୃଷ୍ଟିରୁ ପ୍ରାଚୁର୍ଯ୍ୟର ଅକଳ୍ପନୀୟ ପ୍ରସାଦ ରୂପେ ଓଡ଼ିଶାକୁ ଅକଳନ ସମୃଦ୍ଧି ଆଉ ଗାରିମାରେ ଭରି ଦେଇଛି । ଏହି ପରିପ୍ରେକ୍ଷୀରେ ମଧୁସୂଦନ ଓଡ଼ିଶାର ଆୟର ଅର୍ଦ୍ଧେକ ନୁହେଁ, ଦୁଇତୃତୀୟାଂଶ ଆୟ ନିରନ୍ତର ଭାବେ ପ୍ରଦାନ କରିଆସୁଛନ୍ତି ।

ଯେଉଁ ଅବିଭକ୍ତ ସାତଗୋଟି ଜିଲ୍ଲା, ଯଥାକ୍ରମେ ଅବିଭକ୍ତ କୋରାପୁଟ, ଗଂଜାମ, କନ୍ଧମାଳ, ସୁନ୍ଦରଗଡ଼, ସଂବଲପୁର, ବଲାଙ୍ଗିର ଓ କଳାହାଣ୍ଡି ଜିଲ୍ଲା, ୧୯୩୬ ଆଉ ୧୯୦୫ରେ ଓଡ଼ିଶା ଡିଭିଜନ ସହିତ ସମ୍ମିଳିତ ହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସ୍ଥାପନା ହୋଇଥିଲା, ତାହାର ନଦୀ ଜଳସଂପଦ, ଜଳସେଚନ ଶକ୍ତି (ଜଳବିଦ୍ୟୁତ୍), ଅରଣ୍ୟ ସଂପଦ, ଖଣିଜ ସଂପଦ, ତାପଜ ବିଦ୍ୟୁତ୍ ସଂପର୍କରେ କ୍ରମାନ୍ୱୟରେ ଆଲୋଚନା କରାଯିବ ।

**ନଦୀ ଓ ଜଳ ସଂପଦ**

ଓଡ଼ିଶା ଗୋଟିଏ ନଦୀବହୁଳ ରାଜ୍ୟ । ସର୍ବଭାରତରେ ଓଡ଼ିଶାର ଭୂମିଭାଗ ଶତକଡ଼ା ୪ ଥିଲାବେଳେ, ଜଳ ସଂପଦ ଶତକଡ଼ା ୧୧ ଭାଗ ବୋଲି ଆକଳନ କରାଯାଇଛି । ସମଗ୍ର ଓଡ଼ିଶାର ନଦୀ ଆଉ ଜଳସଂପଦର ଚିତ୍ର ପ୍ରଦାନ କରାଯାଇଛି ।

| କ୍ରନଂ | ନଦୀର ନାମ | ଓଡ଼ିଶାରେ ଜଳସଂଗ୍ରହ ଭୂଖଣ୍ଡର ଆୟତନ (ବ.କିମି.) | ଓଡ଼ିଶାରେ ଜଳସଂଗ୍ରହ ଆୟତନର ଶତକଡ଼ା ଭାଗ | ଓଡ଼ିଶାରେ ନଦୀର ଦୈର୍ଘ୍ୟ (କି.ମି) | ନଦୀର ସଂପୂର୍ଣ୍ଣ ଦୈର୍ଘ୍ୟ କି.ମି |
|---|---|---|---|---|---|
| ୧. | ମହାନଦୀ | ୬୫,୬୨୮ | ୪୨.୧୫ | ୪୯୪ | ୮୫୧ |
| ୨. | ବ୍ରାହ୍ମଣୀ | ୨୨,୫୧୬ | ୧୪.୪୬ | ୪୬୧ | ୭୬୫ |
| ୩. | ଋଷିକୁଲ୍ୟା | ୮,୯୬୩ | ୫.୭୬ | ୧୭୫ | ୧୭୫ |
| ୪. | ବାହୁଦୀ | ୮୯୦ | ୦.୫୭ | ୭୪ | ୯୬ |
| ୫. | ଇନ୍ଦ୍ରାବତୀ | ୭,୪୦୦ | ୪.୭୫ | ୧୬୭ | ୫୩୦ |
| ୬. | କୋଲାବ | ୧୦,୩୦୦ | ୬.୬୧ | ୨୭୦ | ୩୪୩ |
| ୭. | ବଂଶଧାରା | ୮,୯୬୦ | ୫.୭୫ | ୧୭୬ | ୨୩୯ |
| ୮. | ନାଗାବଳୀ | ୪,୫୦୦ | ୨.୮୯ | ୧୨୫ | ୨୧୭ |
| ୯. | ବୈତରଣୀ | ୧୩,୪୮୨ | ୮.୬୬ | ୩୬୦ | ୪୪୦ |
| ୧୦. | ବୁଢ଼ାବଳଂଗ | ୬,୩୫୪ | ୪.୦୮ | ୧୯୯ | ୧୯୯ |
| ୧୧. | ସୁବର୍ଣ୍ଣରେଖା | ୨,୯୮୩ | ୧.୯୨ | ୮୧ | ୪୪୬ |
| ୧୨. | ସମୁଦ୍ରରେମିଶିବା ପାଣି | ୩,୭୩୧ | ୨.୪୦ | --- | --- |
| | ମୋଟ | ୧,୫୫,୭୦୭ | ୧୦୦ | --- | --- |

ଏହି ସାରଣୀରେ ପ୍ରଦତ୍ତ ନଦୀମାନଙ୍କ ମଧ୍ୟରୁ ବୈତରଣୀ, ବୁଢ଼ାବଳଙ୍ଗ ଏବଂ ସୁବର୍ଣ୍ଣରେଖା ନଦୀମାନେ ୧୯୦୦ ସାଲର ଓଡ଼ିଶା ଡ଼ିଭିଜନର ଅନ୍ତର୍ଭୁକ୍ତ ଆୟତନର ପରିସରରେ ପ୍ରବାହିତ, ଯଦିଓ ସୁବର୍ଣ୍ଣରେଖା ନଦୀର ଉତ୍ସ ଝାଡ଼ଖଣ୍ଡ ଓ ବୈତରଣୀ ଝାଡ଼ଖଣ୍ଡର ୮୦ କିଲୋମିଟର ଅଞ୍ଚଳରେ ପ୍ରବାହିତ ।

ଏହି ସାରଣୀରେ ନଦୀମାନଙ୍କ ମଧ୍ୟରୁ (ବୈତରଣୀ, ବୁଢ଼ାବଳଙ୍ଗ, ସୁବର୍ଣ୍ଣରେଖାକୁ ବାଦଦେଲେ) ଅନ୍ୟ ସମସ୍ତ ନଦୀର ଉତ୍ସ କିମ୍ବା ଓଡ଼ିଶାରେ ପ୍ରବେଶ କରିଥିବା ସ୍ଥଳ ମଧୁସୂଦନଙ୍କର

ଦେଶ ମିଶ୍ରଣ ପ୍ରକ୍ରିୟାରେ ଆସିଥିବା ଭୂଖଣ୍ଡରେ ଅବସ୍ଥିତ । ଏହି ନଦୀମାନେ ସମଗ୍ର ଓଡ଼ିଶାର ଜଳ ସଂଗହ ଆୟତନର ଶତକଡ଼ା ୮୨.୯୪ ଭୂମିଭାଗ ଅନ୍ତର୍ଭୁକ୍ତ କରୁଥିବା ବେଳେ ଅନ୍ୟ ତିନିଗୋଟି ନଦୀ ବହିଛି ମାତ୍ର ଓଡ଼ିଶାର ଜଳସଂଗ୍ରହ କରୁଥିବା ଆୟତନର ଶତକଡ଼ା ୧୪.୬୬ ଭାଗ ଆୟତନର ଭୂମିଭାଗ ମଧ୍ୟରେ । ବଳକା ଶତକଡ଼ା ୨.୪୦ ସିଧା ସମୁଦ୍ରକୁ ପ୍ରବାହିତ ।

ଏଣୁ ଦେଶ ମିଶ୍ରଣ ପ୍ରକ୍ରିୟା ମଧ୍ୟରେ ଆସିଥିବା ନଦୀମାନେ ଓଡ଼ିଶାର ଜଳସଂପଦର ମୁଖ୍ୟ ଉତ୍ସ ଆଉ ଆଧାର ଏବଂ ଓଡ଼ିଶାକୁ ଜଳ ବିଭବର ପ୍ରାଚୁର୍ଯ୍ୟରେ ଭରିଦେଇ ସମୃଦ୍ଧିର ପଥ ଉନ୍ମୋଚିତ କରିଛନ୍ତି । ଏଣୁ ଦେଶ ମିଶ୍ରଣର ସମସ୍ତ ଅବିସ୍ମରଣୀୟ ନେତୃବର୍ଗଙ୍କର ଚରଣ ପ୍ରାନ୍ତରେ ଭକ୍ତି ପ୍ରଣତ ପୂଜାର୍ଘ୍ୟ ପ୍ରଦାନ କରାଯାଉଛି । ଏହି ସମସ୍ତ ସାମଗ୍ରିକ ସଂପଦ ସେହିମାନଙ୍କର ଓଡ଼ିଶାର ଜନ ସମାଜ ପାଇଁ ପ୍ରତିଶ୍ରୁତିବଦ୍ଧତାର ଦାନ ।

**ଜଳସେଚନ**

ଏହି ପର୍ଯ୍ୟାୟରେ ମଧୁସୂଦନଙ୍କର ଦେଶ ମିଶ୍ରଣ ପ୍ରକ୍ରିୟାରେ ଆସିଥିବା ନଦୀମାନଙ୍କର ମୁଖ୍ୟତଃ ସେହି ଦେଶ ମିଶ୍ରଣ ଅଂଚଳରେ ଜଳସେଚନ ହେଉଥିବା ବିବରଣୀ ପ୍ରଦାନ କରାଯାଇଛି । ଏଣୁ ୧୯୦୦ ସାଲ ପୂର୍ବରୁ ଓଡ଼ିଶା ଡିଭିଜନର ମହାନଦୀ ଓ ବୈତରଣୀର ତ୍ରିକୋଣ ଭୂମିର ଜଳସେଚନ ବିବରଣୀ ବାଦ୍ ଦିଆଯାଇଛି । ଏହି ମହାନଦୀ ଜଳସେଚନ କାର୍ଯ୍ୟ ୧୮୬୦-୭୫ ମଧ୍ୟରେ ହୋଇଥିଲା । ଦେଶ ମିଶ୍ରଣ ପ୍ରକ୍ରିୟାରେ ମଧୁସୂଦନଙ୍କର ପ୍ରଚେଷ୍ଟାରେ ୧.୪.୧୯୩୬ରେ ମାନ୍ଦ୍ରାସ ପ୍ରେସିଡେନ୍‌ସିରୁ ଗଂଜାମ ଜିଲ୍ଲା ଓଡ଼ିଶା ସହିତ ସାମିଲ ହୋଇଥିଲା । ୧୯୦୧ ସାଲରେ ଏହି ଜିଲ୍ଲାରେ ବ୍ରିଟିଶ ଶାସନ କାଳରେ ଋଷିକୂଲ୍ୟା ନଦୀର ଅବବାହିକା ଉପରେ ଯେଉଁ ଅନନ୍ୟ ପୁରୋଦୃଷ୍ଟି ସଂପନ୍ନ ବିସ୍ମୟକର ଯୋଜନା କାର୍ଯ୍ୟକାରୀ ହେଉଥିଲା ଆଉ ଏହା ସହିତ ପରବର୍ତ୍ତୀ ପର୍ଯ୍ୟାୟରେ ସଂପ୍ରସାରଣ ସହ ବର୍ତ୍ତମାନ ଗଂଜାମ ଜିଲ୍ଲାରେ ପ୍ରାୟ ୬୧,୭୯୦ ହେକ୍ଟର ଜମିରେ ଜଳସେଚିତ ହେଉଛି ।

ମହାନଦୀରେ ଛତିଶିଗଡ଼ ଅଞ୍ଚଳରୁ ବହି ଆସୁଥିବା ଜଳ, ସୁନ୍ଦରଗଡ଼ରୁ ଇବ୍ ନଦୀରେ ବହି ଆସୁଥିବା ଜଳ ମହାନଦୀରେ ସମ୍ମିଳିତ ହେବା ସ୍ଥିତିରେ ସମ୍ବଲପୁର ଜିଲ୍ଲାର ହୀରାକୁଦଠାରେ ଯେଉଁ ବହୁମୁଖୀ ଯୋଜନା କାର୍ଯ୍ୟକାରୀ ହେଲା, ତାହା ସେହି ଅଂଚଳରେ ବ୍ୟାପକ ଜଳସେଚନର ସୁଯୋଗ ପ୍ରଦାନ କରିଛି ।

ଏହି ବହୁମୁଖୀ ଯୋଜନା କାର୍ଯ୍ୟକାରୀ ହେବା ପରେ ହୀରାକୁଦ ଜଳବିଦ୍ୟୁତ୍ ପ୍ରକଳ୍ପରୁ ନିତ୍ୟ ବହି ଆସୁଥିବା ଉଦ୍‌ବୃତ୍ତ ଜଳ ତଥା ଅଂଗ, ତେଲ ଆଦି ଅବବାହିକାରୁ ଜଳକୁ ମୁଣ୍ଡଳୀଠାରେ ନଦୀବନ୍ଧ ନିର୍ମାଣ କରାଯାଇ ପୁରୀ ଜିଲ୍ଲାରେ ବ୍ୟାପକ ଜଳସେଚନ ଯୋଜନା କାର୍ଯ୍ୟକାରୀ ହେଲା । ଏହାକୁ ମହାନଦୀ ତ୍ରିକୋଣ ଭୂମି ଦ୍ୱିତୀୟ ଯୋଜନା ନାମରେ ନାମିତ କରାଯାଇଛି । ସେହିପରି ଅବିଭକ୍ତ କୋରାପୁଟ ଜିଲ୍ଲାରେ ବାଲିମେଳା, ଉପର କୋଲାବ, ଉପରର ଇନ୍ଦ୍ରାବତୀ ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ କରାହୋଇଛି ।

କାର୍ଯ୍ୟକାରୀ ହେଉଥିବା ଜଳ ପ୍ରକଳ୍ପର ନାମ ଓ ଜଳସେଚିତ ଅଞ୍ଚଳର ପରିମାଣ ହେକ୍ଟର ଆକାରରେ ନିମ୍ନରେ ପ୍ରଦତ୍ତ ହେଲା ।

| କ୍ରନଂ | ଜଳସେଚିତ ପ୍ରକଳ୍ପର ନାମ | ଜଳସେଚିତ ଅଂଚଳ (ହେକ୍ଟରରେ) |
|---|---|---|
| ୧. | ହୀରାକୁଦ | ୧୫୯,୦୯୦ |
| ୨. | ମହାନଦୀ ତ୍ରିକୋଣ ଭୂମି ୨ୟ ହୀରାକୁଦର ଉଦ୍‌ବୃତ୍ତ ଜଳରେ ପୁରୀ ଜିଲ୍ଲାରେ ଜଳସେଚନ କରାଯାଉଛି | ୯୦,୦୪୦ |
| ୩. | ବାଲିମେଳା ଯୋଜନା | ୬୧,୦୩୦ |
| ୪. | ଉପର ଇନ୍ଦ୍ରାବତୀ ବନ୍ଧ ଯୋଜନା | ୧,୨୮,୦୦୦ |
| ୫. | ଉପର କୋଲାବ ବନ୍ଧ ଯୋଜନା | ୪୭,୭୧୦ |
| ୬. | ଋଷିକୁଲ୍ୟା ଜଳସେଚନ ଯୋଜନା | ୬୧,୭୯୦ |

**କାର୍ଯ୍ୟକାରୀ ହେଉଥିବା ଜଳସେଚନ ଯୋଜନା**

ଦେଶ ମିଶ୍ରଣ ପ୍ରକ୍ରିୟାରେ ଆସିଥିବା ଅଂଚଳରେ ବହିଯାଇଥିବା ନଦୀ ଉପରେ କିଛି ଜଳସେଚନ ଯୋଜନା କାର୍ଯ୍ୟକାରୀ ହେବା ଅବସ୍ଥାରେ ଅସଂପୂର୍ଣ୍ଣ ରହିଯାଇଛି । ଏଥି ମଧ୍ୟରୁ ମୁଖ୍ୟ ହେଉଛି ବ୍ରାହ୍ମଣୀ ଯାହା ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲା, ଶଙ୍ଖ ଓ କୋଏଲ୍ ନଦୀର ମିଶ୍ରଣରୁ ବହିଆସିଥିବା ଅବସ୍ଥାରେ ରେଙ୍ଗାଲିଠାରେ ନଦୀବନ୍ଧ ନିର୍ମାଣ କରାଯାଇଥିବା ବେଳେ ଏହା ନଦୀବନ୍ଧର ସମସ୍ତ ଜଳଧାରଣ ଅଂଚଳ ଦେବଗଡ଼ ଜିଲ୍ଲାରେ ଅବସ୍ଥିତ । ଏହି ନଦୀବନ୍ଧର ୨,୧୫,୫୦୦ ହେକ୍ଟର ଜମିରେ ଜଳସେଚନ କରିବା କ୍ଷମତା ଥିବାବେଳେ, ବିଗତ ବହୁବର୍ଷ ମଧ୍ୟରେ ଅତ୍ୟଳ୍ପ ମାତ୍ର ୨୦,୦୦୦ ହେକ୍ଟର ଜମିକୁ କେନାଲ ଖୋଦନ ମାଧ୍ୟମରେ ଜଳସେଚନ କରାହୋଇଛି । ଏହାଠାରୁ ନୈରାଶ୍ୟଜନକ ବିଷୟ ଏହି ରାଜ୍ୟ ପାଇଁ କ'ଣ ବା ହୋଇପାରେ? । ଏହାଛଡ଼ା ନିମ୍ନ ଇନ୍ଦ୍ର ଆଉ ନିମ୍ନ ସୁକତେଲ ପାଇଁ ନଦୀବନ୍ଧ ଯୋଜନାର ପରିକଳ୍ପନା କରାଯାଇଛି । ମାତ୍ର ବିଶେଷ କିଛି ଅଗ୍ରଗତି ହୋଇନାହିଁ । ଏ ସମସ୍ତର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

| କ୍ରନଂ | କାର୍ଯ୍ୟକାରୀ ହେଉଥିବା ନଦୀବନ୍ଧଯୋଜନା | ଜଳସେଚିତ ହେବା କ୍ଷମତା (ହେକ୍ଟର) | ଜଳସେଚିତ ପରିମାଣ (ହେକ୍ଟର) |
|---|---|---|---|
| ୧. | ରେଙ୍ଗାଲି | ୨,୩୫,୫୦୦ | ୨୦,୦୦୦ |
| ୨. | ନିମ୍ନ ଇନ୍ଦ୍ର | ୨୯,୯୦୦ | |
| ୩. | ନିମ୍ନ ସୁକତେଲ | ୩୧,୮୦୦ | |
| ୪. | ବାଗ | ୧୮,୫୦୦ | |

### ଶକ୍ତି (ଜଳବିଦ୍ୟୁତ୍)

ଏହି ବହୁମୁଖୀ ନଦୀବନ୍ଧ ଯୋଜନା ସହିତ, ବିଦ୍ୟୁତ୍ ଶକ୍ତି ଉତ୍ପାଦନ, ଏକ ସମନ୍ୱିତ ସହଯାତ ପ୍ରକ୍ରିୟା, ଯାହା ସୁଲଭ ରୀତିରେ ଉପଲବ୍ଧ ହୋଇଥାଏ । ଏଥିରେ ଶକ୍ତି ଉତ୍ପାଦନ ପାଇଁ ସ୍ୱଳ୍ପ ଖର୍ଚ୍ଚ ପଡ଼ିଥାଏ । ଦେଶମିଶ୍ରଣ ପ୍ରକ୍ରିୟା ମାଧ୍ୟମରେ ଯେଉଁ ଅଂଚଳ ସମନ୍ୱିତ ହୋଇଥିଲା, ସେଥିରେ ଜଳବିଦ୍ୟୁତ୍ ଶକ୍ତି ଉତ୍ପାଦନ ମେଗାୱାଟ୍ ଆକଳନରେ ନିମ୍ନରେ ପ୍ରଦାନ କରାଗଲା ।

| କ୍ରନଂ | ପ୍ରକଳ୍ପର ନାମ | କେତୋଟି ୟୁନିଟ୍ | କେତେ ମେଗାୱାଟ | ଦୈନିକ ଉତ୍ପାଦନ (ମେଗାୱାଟ) |
|---|---|---|---|---|
| ୧. | ହୀରାକୁଦ | | | ୩୪୭.୫ |
| ୨. | ମାଛକୁଣ୍ଡ | | | ୫୭.୫ |
| ୩. | ବାଲିମେଳା | ୬ | ୬୦ | ୩୬୦ |
| ୪. | ରେଙ୍ଗାଲି | ୫ | ୫୦ | ୨୫୦ |
| ୫. | ଉପର କୋଲାବ | ୪ | ୮୦ | ୩୨୦ |
| ୬. | ଉପର ଇନ୍ଦ୍ରାବତୀ | ୪ | ୧୫୦ | ୬୦୦ |
| | | | ମୋଟ | ୧୯୩୫ |

ଦୈନିକ ମାଛକୁଣ୍ଡ (ଡୁଡୁମା) ଜଳପ୍ରପାତରେ ୧୮୦ ମେଗାୱାଟ ବିଦ୍ୟୁତ୍ ଉତ୍ପାଦନ ହେଉଥିଲାବେଳେ ଓଡ଼ିଶାର ଦୈନିକ ଭାଗ ୫୭.୫ ମେଗାୱାଟ୍ । ଏହାଛଡ଼ା ଦେଶ ମିଶ୍ରଣ ପ୍ରକ୍ରିୟାରେ ଯେଉଁ ଜଳବିଦ୍ୟୁତ୍ ଶକ୍ତି ଯୋଜନାଗୁଡ଼ିକ ଅଚିରେ କାର୍ଯ୍ୟକାରୀ ହେବାର ପ୍ରସ୍ତାବରହିଛି, ତାହାର ବିବରଣୀ ପ୍ରଦାନ କରାଗଲା ।

| କ୍ରନଂ | ପ୍ରକଳ୍ପର ନାମ | କେତୋଟି ୟୁନିଟ୍ | କେତେ ମେଗାୱାଟ୍ | ଦୈନିକ ଉତ୍ପାଦନ (ମେଗାୱାଟ୍) |
|---|---|---|---|---|
| ୧. | ହୀରାକୁଦ-ବି | ୪ | ୫୨ | ୨୦୮ |
| ୨. | ଚିପିଲିମା-ବି | ୪ | ୫୦ | ୨୦୦ |
| ୩. | ସିନ୍ଦୋଳ-୧ | ୫ | ୨୦ | ୧୦୦ |
| ୪. | ସିନ୍ଦୋଳ-୨ | ୫ | ୨୦ | ୧୦୦ |
| ୫. | ସିନ୍ଦୋଳ-୩ | ୨ | ୬୦ | ୧୨୦ |
| ୬. | ବାଲିମେଳା | | | ୨୧୦ |
| | | | ମୋଟ | ୯୩୮ |

ହିରାକୁଦ, ଚିପିଲିମା ଆଉ ସିନ୍ଦୋଳ ଯୋଜନାଗୁଡ଼ିକ ସମ୍ବଲପୁର ଜିଲ୍ଲାରେ ଅବସ୍ଥିତ ।

**ତାପଜ ବିଦ୍ୟୁତ୍**

ଅବିଭକ୍ତ ସମ୍ବଲପୁର ଜିଲ୍ଲାରେ ଝାରସୁଗୁଡ଼ାର ଇବ୍ ଉପତ୍ୟକା ଅଞ୍ଚଳରେ ସର୍ବାଧିକ କୋଇଲା ରହିଛି । ଅବଶ୍ୟ ଓଡ଼ିଶାର ଅବିଭକ୍ତ ଢେଙ୍କାନାଳ ଜିଲ୍ଲାର ତାଳଚେର ଅଞ୍ଚଳରେ ଓଡ଼ିଶାର ସବୁଠାରୁ ଅଧିକ ୨୬,୫୭୯ ନିୟୁତ ଟନ୍ କୋଇଲା ଅଛି । ଏହା ଫଳରେ ନାଲ୍କୋର ଆଲୁମିନିୟମ୍ର ଶେଷ ପ୍ରକ୍ରିୟାର କାରଖାନା ପ୍ରତିଷ୍ଠିତ ହୋଇଛି ।

ଓଡ଼ିଶାରେ ସମୁଦାୟ ଯେତେ ପରିମାଣର କୋଇଲା ଗଚ୍ଛିତ ଅଛି ସେଥିରେ ୨ୟ ସ୍ଥାନରେ ରହିଛି ଇବ୍ ଉପତ୍ୟକା(୨୧,୩୧୦ ନିୟୁତ ଟନ୍)ଯାହା ପରିସ୍ଥିତିର ଅନୁକୂଳତାଯୋଗୁଁ ଅଧିକ ଶିଳ୍ପୋଦ୍ୟୋଗୀମାନଙ୍କୁ ଆକର୍ଷିତ କରିଆଣିଛି । ଏହି ଗଚ୍ଛିତ କୋଇଲା ଓଡ଼ିଶାମୃଦ୍ଧିର ଏକ ମହାନ ବିଭବ । ଜଳବିଦ୍ୟୁତ୍ ଶକ୍ତି ଉତ୍ପାଦନର ଅନିଶ୍ଚିତତା, ଜଳ ଭଣ୍ଡାରର ଜଳଧାରଣର ପରିମାଣ ଉପରେ ନିର୍ଭର କରୁଥିବାରୁ ନୂତନ ଶିଳ୍ପପତିମାନେ ତାପଜ ବିଦ୍ୟୁତ୍ ଉପରେ ଅଗ୍ରାଧିକାର ପ୍ରଦାନ କରୁଛନ୍ତି ।

ଜାତୀୟ କରଣ ଅନୁଷ୍ଠାନ- I.T.P.C ବନହରପାଲିରେ ନିଜସ୍ୱ ତାପଜ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରରେ ପ୍ରତିଦିନ ୪୨୦ ମେଗାୱାଟ୍ ବିଦ୍ୟୁତ୍‌ଶକ୍ତି ଉତ୍ପାଦିତ ହେଉଛି, ଯାହା ବିତରଣ କରାଯାଉଛି ଓଡ଼ିଶା ସରକାରଙ୍କର ନିଜସ୍ୱ ପରିଚାଳିତ ଯୋଜନାରେ ।

ଏହାଛଡ଼ା ନିମ୍ନ ଉଦ୍ୟୋଗଗୁଡ଼ିକ ନିଜସ୍ୱ ତାପଜ କେନ୍ଦ୍ର ସୃଷ୍ଟିକରି ଝାରସୁଗୁଡ଼ା ଅଂଚଳରେ କୋଇଲା ନେଇ ନିମ୍ନଲିଖିତ ପରିମାଣ ପ୍ରତିଦିନ ବିଦ୍ୟୁତ୍ ଉତ୍ପାଦନ କରି ଚାଲିଛନ୍ତି ।

| କ୍ରନଂ | ପ୍ରକଳ୍ପର ନାମ | ଦୈନିକ ବିଦ୍ୟୁତ୍ ଉତ୍ପାଦନ (ମେଗାୱାଟ୍) |
|---|---|---|
| ୧. | ରାଉରକେଲା ଇସ୍ପାତ କାରଖାନା | ୨୦୩ |
| ୨. | ହିଣ୍ଡାଲ କୋ ହୀରାକୁଦ | ୧୦୦ |
| ୩. | ଭୂଷଣ | ୧୦୦ |
| ୪. | ବେଦାନ୍ତ | ୫୦୦ |
| | **ମୋଟ** | **୯୦୩** |

ଏହି ତାପଜ କେନ୍ଦ୍ର ପ୍ରଚୁର ପରିମାଣର ପାଉଁଶ ଆଉ ସଲ୍‌ଫର ଡାଇଅକ୍‌ସାଇଡ୍ ଉତ୍ପନ୍ନ କରେ ଯାହା ପରିବେଶକୁ ବହୁ ପରିମାଣରେ ପ୍ରଦୂଷିତ କରେ । ଶିଳ୍ପର କେନ୍ଦ୍ରୀକରଣ ଝାରସୁଗୁଡ଼ାରେ ଏକ ଆଶୀର୍ବାଦ ଥିଲାବେଳେ ଝାରସୁଗୁଡ଼ା ଅଂଚଳ ଅଧିକ ପ୍ରଦୂଷିତ ଅଂଚଳ ହେବ ବୋଲି ଭାରତୀୟ ପ୍ରଦୂଷଣ ବୋର୍ଡ଼ ଚେତାବନୀ ପ୍ରଦାନ କରିଛନ୍ତି । ଏଣୁ ବିଭିନ୍ନ ପ୍ରତିକାର ବ୍ୟବସ୍ଥା ଗ୍ରହଣ ଅପରିହାର୍ଯ୍ୟ ହୋଇ ପଡ଼ିଛି ।

### ଅରଣ୍ୟ ସଂପଦ

ପ୍ରାକୃତିକ ସଂପଦ ମଧ୍ୟରେ ଅରଣ୍ୟ ସଂପଦ ଏକ ମୁଖ୍ୟ ବିଭବ । ଏହି ଅରଣ୍ୟ ସଂପଦ ପରିବେଶକୁ ସମତୁଲ ରଖିବା ସହିତ ଜଳଧାରଣ ସହିତ ବର୍ଷା ପ୍ରଦାନରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ମିଶିଥିବା ସାତଗୋଟି ଅରଣ୍ୟ ଆଚ୍ଛାଦିତ ଅଂଚଳର ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

| କ୍ରନଂ | ଅବିଭକ୍ତ ଜିଲ୍ଲାର ନାମ | ଜଙ୍ଗଲର ଆୟତନ (ବ.କିମି) |
|---|---|---|
| ୧. | ସମ୍ବଲପୁର | ୬,୬୦୮ |
| ୨. | ବଲାଙ୍ଗିର | ୧,୯୮୫ |
| ୩. | କୋରାପୁଟ | ୧୦,୮୭୧ |
| ୪. | କନ୍ଧମାଳ | ୫,୭୦୯ |
| ୫. | କଳାହାଣ୍ଡି | ୪,୩୮୭ |
| ୬. | ସୁନ୍ଦରଗଡ଼ | ୪,୯୫୭ |
| ୭. | ଗଂଜାମ | ୫,୬୧୭ |
| | **ମୋଟ** | **୪୦,୧୩୪** |

ସମଗ୍ର ଓଡ଼ିଶାର ଅବିଭକ୍ତ ତେରଗୋଟି ଜିଲ୍ଲାରେ ଅରଣ୍ୟ ସଂପଦ ପ୍ରାୟ ୫୮,୧୩୫ ବର୍ଗ କିଲୋମିଟର ଥିଲାବେଳେ ମଧୁସୂଦନଙ୍କର ଦେଶମିଶ୍ରଣ ପ୍ରକ୍ରିୟାରେ ମିଶିଥିବା ସାତଗୋଟି ଅବିଭକ୍ତ ଜିଲ୍ଲାରେ ଅରଣ୍ୟ ସଂପଦର ବ୍ୟାପ୍ତି ୪୦,୧୩୪ ବର୍ଗ କିଲୋମିଟର । ଏହି ଅରଣ୍ୟର ସଂରକ୍ଷଣ ଏକାନ୍ତ ଆବଶ୍ୟକ ଯାହା କ୍ରମଶଃ ଦ୍ରୁତଗତିରେ ଅବକ୍ଷୟମୁଖୀ ।

### ଖଣିଜ ସଂପଦ

ଓଡ଼ିଶା ଖଣିଜ ସଂପଦରେ ସମୃଦ୍ଧ । ଏକ ଆକଳନରୁ ଜଣାଯାଏ ଯେ ସମଗ୍ର ଦେଶର ଖଣିଜ ସଂପଦର ଶତକଡ଼ା ୧୭ ଭାଗ ଓଡ଼ିଶାରେ ଗଚ୍ଛିତ ଅଛି । ଓଡ଼ିଶା ସାରା ଦେଶର କ୍ରୋମାଇଟ୍, ନିକେଲ୍, ବକ୍ସାଇଟ୍, ମାଙ୍ଗାନିଜ୍ ଆଉ ଗ୍ରାନାଇଟ୍‌ରେ ପ୍ରଥମ ସ୍ଥାନ ଅଧିକାର କରିଛି । ଉକ୍ତ ସାତଗୋଟି ଅବିଭକ୍ତ ଜିଲ୍ଲା ମଧ୍ୟରୁ କ୍ରମାନ୍ୱୟରେ ଅବିଭକ୍ତ କୋରାପୁଟ, ସୁନ୍ଦରଗଡ଼, ସମ୍ବଲପୁର ଆଉ କଳାହାଣ୍ଡିରେ ପ୍ରଚୁର ଖଣିଜ ସଂପଦମାନ ରହିଛି ।

**କୋରାପୁଟ-** ଅବିଭକ୍ତ କୋରାପୁଟ ଜିଲ୍ଲା ଖଣିଜ ସଂପଦରେ ବିପୁଳ ଭାବେ ସମୃଦ୍ଧ । ଏହା ୧୯୩୬ ସାଲରେ ଓଡ଼ିଶା ପ୍ରଦେଶକୁ ଆସିଲା । ଏହି ଜିଲ୍ଲାରେ ପ୍ରାୟ ୧୨୦୦ ନିୟୁତ ଟନ୍ ବକ୍‌ସାଇଟ୍ ରହିଛି । ଏହି ଜିଲ୍ଲାର ପଞ୍ଚପଟମାଳି ଅଞ୍ଚଳର ଖଣିରୁ ବକ୍ସାଇଟ୍ ଆହରଣକରି ଆଲୁମିନାରେ ପରିଣତ କରି ନାଲ୍‌କୋ ଦେଶର ସର୍ବବୃହତ୍ ଲାଭ ଉତ୍ପାଦନକାରୀ ସଂସ୍ଥା ରୂପେ

ପରିଗଣିତ ହୋଇଛି । ଦେଶ ମିଶ୍ରଣ ପ୍ରକ୍ରିୟାରେ କୋରାପୁଟ ଜିଲ୍ଲା ଆସି ନଥିଲେ ଏହା ଆନ୍ଧ୍ରପ୍ରଦେଶର ରହିଥାନ୍ତା । ଏହି ପଞ୍ଚପଟମାଳି ଛଡ଼ା ବଫଲିମାଳି, କୁଟୁରୁମାଳି, ସିଦାମାଳି ଖଣି ଅଂଚଳରେ ପ୍ରଚୁର ବକ୍‌ସାଇଟ୍ ରହିଛି । ଏହି ଖଣି ଉତ୍ପାଦନ ଯୋଗୁଁ ବିସ୍ଥାପନ ଏକ ଅଲଂଘ୍ୟ ସମସ୍ୟା ରୂପେ ଉଭାହୋଇ ରହିଛି । ତାହାର ସୁଲଭ ସମାଧାନ ଆବଶ୍ୟକ । ଏହି ଜିଲ୍ଲାରେ ୧୭ ନିୟୁତ ଟନ୍ ମାଙ୍ଗାନିଜ୍ ଅଛି ଆଉ ସୁକି ଅଂଚଳରେ ୬୩ ନିୟୁତ ଟନ୍ ଚୂନ ପଥର ରହିଛି ।

**ସୁନ୍ଦରଗଡ଼-** ୧୬.୧୦.୧୯୦୫ରେ ବିହାରର ଛୋଟନାଗପୁର ଡିଭିଜନରୁ ପ୍ରଚୁର ଲୌହ ସଂପଦ ଭରପୂର ଥିବା ବଣାଇ ଆଉ ଗାଂଗପୁର ଗଡ଼ଜାତ ଦୁଇଟି ମିଶିଥିଲେ, ଯେଉଁ ଅଂଚଳ ଆଜି ସୁନ୍ଦରଗଡ଼ ଜିଲ୍ଲା ରୂପେ ପରିଚିତ । ଏହି ଜିଲ୍ଲାର ବରସୁଆଁ, କାଲଟା, ଦୋଲାନି ଖଣିରୁ ଲୁହାପଥର ଉତ୍ତୋଳନ କରି ଓଡ଼ିଶାର ପ୍ରଥମ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ରାଉରକେଲା ଇସ୍ପାତ କାରଖାନା ପ୍ରତିଷ୍ଠିତ ହୋଇ ବିପୁଳ ଲାଭ କରୁଅଛି । ସୁନ୍ଦରଗଡ଼ ଜିଲ୍ଲା ବାଦାମଗଡ଼ ପାହାଡ଼, ବାଲିପଥର, ବାସଦା, ତିରିଙ୍ଗିବୁରୁ, ମିଥୁରୁଜା, ପତ୍ରପୋଷି ଖଣ୍ଡାଧାର ସମେତ ଅଞ୍ଚଳରେ ୭୦୦ ନିୟୁତ ଟନ୍ ଲୁହାପଥର ଅଛି । ଏଥି ମଧ୍ୟରୁ ଖଣ୍ଡାଧାର ଅଞ୍ଚଳରେ ଥିବା ଅନ୍ୟାନ୍ୟ ଜଳପ୍ରପାତ, ଯାହା ୮୦୦ ଫୁଟ ଉଚ୍ଚତାରୁ ଝରିପଡ଼ି ଓଡ଼ିଶାର ସର୍ବୋଚ୍ଚ ଜଳପ୍ରପାତ ରୂପେ ପରିଚିତ । ସୁନ୍ଦରଗଡ଼ ଜିଲ୍ଲାରେ ୧୦ ନିୟୁତ ଟନ୍ ବକ୍‌ସାଇଟ ଆଉ ୧୨ ନିୟୁତ ଟନ ମାଙ୍ଗାନିଜ୍ ଗଚ୍ଛିତ ଅଛି । ବୀରମିତ୍ରପୁରର ୩୬୦ ନିୟୁତ ଟନର ଡୋଲାମାଇଟ୍ ଓ ୪୦୦ ନିୟୁତ ଟନ ଚୂନପଥର ରହିଛି ।

**ସମ୍ବଲପୁର-** ଏହି ଜିଲ୍ଲା ଦେଶ ମିଶ୍ରଣ ଆନ୍ଦୋଳନ ଆଉ ଭାଷା ସଂଗ୍ରାମ ମାଧ୍ୟମରେ ୧୬.୧୦.୧୯୦୫ରେ ଓଡ଼ିଶା ଡିଭିଜନରେ ସମ୍ମିଳିତ ହୋଇଥିଲା ।

ଅବିଭକ୍ତ ସମ୍ବଲପୁର ଜିଲ୍ଲାର ଝାରସୁଗୁଡ଼ା ଅଞ୍ଚଳରେ ୨୧,୩୧୦ ନିୟୁତ ଟନ କୋଇଲା ଗଚ୍ଛିତ ଅଛି । ତାଳଚେର ପରେ ଏହା ସର୍ବବୃହତ କୋଇଲା ଖଣି ଥିବା ଅଂଚଳ । ଏହି ଅଂଚଳର ଇବ୍ ଅବବାହିକାରେ ଆଉ ହୀରାକୁଦ ଅଞ୍ଚଳରେ ପ୍ରଚୁର କୋଇଲା ରହିଛି । ଏହି ଅଂଚଳରୁ ମିଳୁଥିବା କୋଇଲାକୁ ଟାଟା ରିଫ୍ରେକ୍ଟୋରୀ, ହୀରାକୁଦ ଆଲୁମିନିୟମ୍ ବ୍ୟତୀତ ବହୁ ଆଲୁମିନିୟମ୍ କମ୍ପାନି କୋଇଲାରୁ ଉଦ୍ଭବ ହେଉଥିବା ତାପଜ ଶକ୍ତିକୁ ଆଧାରକରି ଗଢ଼ିଉଠିଛି । ଫଳରେ ଏହା ଦେଶର ସବୁଠାରୁ ପ୍ରଦୂଷିତ ଅଂଚଳ ହେବାର ଆଶଂକା ଦେଖାଦେଇଛି । ସେଥିପାଇଁ ସାମ୍ଭାବ୍ୟ ପ୍ରତିକାର ଆଉ ସମନ୍ୱିତ ଯୋଜନାବଦ୍ଧ ବିନିଯୋଗର ଆବଶ୍ୟକତା ଦେଖାଦେଇଛି ।

ଏହାଛଡ଼ା ବରଗଡ଼ ଅଂଚଳରେ ୫୦ ନିୟୁତ ଟନ ଚୂନପଥର ଆଉ ୬୦ ନିୟୁତ ଟନ ଡୋଲାମାଇଟ୍ ଗଚ୍ଛିତ ରହିଛି ।

ସେହିପରି ପାଇକମାଳର ନୃସିଂହ ନାଥ ଆଉ ବଲାଙ୍ଗିର ଜିଲ୍ଲାର ହରିଶଙ୍କର ସମନ୍ୱିତ ଅଂଚଳରେ ୨୦୦ ନିୟୁତ ଟନ୍ ବକ୍‌ସାଇଟ୍ ଗଚ୍ଛିତ ଅଛି । ଏହି ବିପୁଳ ଅରଣ୍ୟାନୀ ଭରା କ୍ଷେତ୍ରରେ ମନୋମୁଗ୍ଧକର ଝରଣାରୁ ଉଚ୍ଛ୍ୱସିତ ଜଳଧାରା ଏହି ଅଂଚଳକୁ ଏକ ନୈସର୍ଗିକ ପବିତ୍ର ସୁଷମାଭରା

ଅଂଚଳରେ ପରିଣତ କରିଛି । ସେହି ଅଂଚଳର ଜନତାର ପ୍ରବଳ ପ୍ରତିବାଦ ଯୋଗୁଁ ଏହି ଅଂଚଳରୁ ବକ୍‌ସାଇଟ୍ ଉତ୍ତୋଳନ ପ୍ରକ୍ରିୟା ବନ୍ଦ ରହିଛି ।

**କନ୍ଧମାଳ-** କନ୍ଧମାଳ ଜିଲ୍ଲାର ତୁମୁଡ଼ିବନ୍ଧ ଅଂଚଳରେ ଗ୍ରାଫାଇଟ୍ ଖଣି ରହିଛି । ଏହି ଅଂଚଳରେ ରତ୍ନପଥର, ସୁନା ଆଦି ମିଳିବାର ସୂଚନା ମିଳେ । ଏହି ଅଂଚଳ୧.୪.୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶାରେ ମିଶିଥିଲା ।

**କଳାହାଣ୍ଡି-** ଅବିଭକ୍ତ କଳାହାଣ୍ଡି ଜିଲ୍ଲାର କଳାହାଣ୍ଡି ଗଡ଼ଜାତ ୧୬.୧୦.୧୯୦୫ ଆଉ ଖଡ଼ିଆଳ ଜମିଦାରି ୧.୪.୧୯୩୬ରେ ଓଡ଼ିଶାରେ ମିଶିଥିଲା ।

ଏହି ଅବିଭକ୍ତ ଜିଲ୍ଲାର ଖରିଆର ଅଂଚଳରେ ଗ୍ରାଫାଇଟ୍, ଚୂନପଥର, ହୀରା, ସୁନା ମିଳିବାର ସୂଚନା ରହିଛି । ଜୁନାଗଡ଼ ଅଂଚଳର ମଧ୍ୟ ସୁଯୋଗ ରହିଛି ।

କଳାହାଣ୍ଡି ଜିଲ୍ଲାର ପ୍ରାରମ୍ଭିକ ଅଂଚଳରେ ନିୟମଗିରି ପର୍ବତ ଶ୍ରେଣୀରେ ଡଙ୍ଗରିଆ କନ୍ଧ ଅଧ୍ୟୁଷିତ ବହୁ ଘନ ଜଂଗଲ ଆଉ ଅସଂଖ୍ୟ ଉଚ୍ଛ୍ୱସିତ ରୋମାଞ୍ଚକର ଝରଣା ସେବିତ ଏହି ମନୋଜ୍ଞ ପାହାଡ଼ରେ ପ୍ରଚୁର ବକ୍‌ସାଇଟ୍ ଖଣି ରହିଛି । ଏହା ବହୁ ବହିରାଗତ କମ୍ପାନିର ଦୃଷ୍ଟି ଆକର୍ଷଣ କରିଛି ।

ଖଣିଜ ପଦାର୍ଥ ପ୍ରକୃତିର ମହନୀୟ ଦାନ, ଯାହା ପୁନର୍ବାର ଭରଣା କରାଯାଇ ପାରେନାହିଁ । ମଧୁସୂଦନଙ୍କ ଉକ୍ତି ଥିଲା, ''ଭୂଖଣ୍ଡର ଗର୍ଭରେ ପ୍ରକୃତିର ଦାନ ସଂଚିତ ଖଣିଜ ପଦାର୍ଥ ହେଉଛି ମଣିଷର ଅନ୍ତରରେ ସଂଚାଳିତ ହେଉଥିବା ହୃଦୟ ପରି ଯାହା ଗୋପନୀୟ ଭାବେ ସଂଚିତ ହୋଇ ରହିଥାଏ । ଏହାର ବିନିଯୋଗ ହେବା ଆବଶ୍ୟକ ମାତ୍ର ସୀମିତ ଭାବେ ଯେପରି ଏହାର ବିନିଯୋଗ ହୃଦୟର ଚାଳନା ପରି ଶକ୍ତିପ୍ରଦାୟୀ, ମାତ୍ର ଦୀର୍ଘକାଳ ବ୍ୟାପୀ ହେବା ଆବଶ୍ୟକ । ଜଗତୀକରଣ ପ୍ରଭାବରେ ଖଣିଜ ଶିଳ୍ପପାଇଁ ଯେଉଁ ପରିବ୍ୟାପ୍ତ ଉତ୍ତେଜନା ପରିଲକ୍ଷିତ ହେଉଛି, ତାହା ପ୍ରଣିଧାନଯୋଗ୍ୟ । ଖଣିଜ ପଦାର୍ଥ ମୁଖ୍ୟତଃ ପାହାଡ଼ିଆ ଅଂଚଳରେ ଆଦିବାସୀ ଅଧ୍ୟୁଷିତ ଭୂଭାଗରେ ରହିଛି, ଯହିଁରେ ବିସ୍ଥାପନର ଜ୍ୱାଳା ସହିତ ପ୍ରଦୂଷଣର ମାତ୍ରା ମଧ୍ୟ ରହିଛି ।

ଏହି ଅଂଚଳର ଅକଳନ ଖଣିଜ ସଂପତ୍ତିର ମୂଲ୍ୟ ଅକଳ୍ପନୀୟ । ମଧୁସୂଦନ ଅନ୍ତିମ ଅବସ୍ଥାରେ ନିଃସ୍ୱ ଆଉ କପର୍ଦ୍ଦକ ଶୂନ୍ୟ ହୋଇ ମୃତ୍ୟୁବରଣ କରିଥିଲେ ମଧ୍ୟ ଏହି ବିପୁଳ ଖଣିଜ ସଂଭାରକୁ ପ୍ରତିଶ୍ରୁତିବଦ୍ଧତାର ଦାନ ହିସାବରେ ଓଡ଼ିଆ ଜାତି ହସ୍ତରେ ଅର୍ପଣ କରଛନ୍ତି ।

ମଧୁସୂଦନଙ୍କର ଅବଦାନର ଅନ୍ୟକେତେକ ଦିଗ ପ୍ରତି ଦୃଷ୍ଟି ନିକ୍ଷେପ କରିବା ।

**କୃଷି-** ମଧୁସୂଦନ କୃଷିକୁ ଓଡ଼ିଶାରେ ସର୍ବୋଚ୍ଚ ପ୍ରାଥମିକତା ଦେଇଥିଲେ । ନିଜେ ଗୋଟିଏ କୃଷି ଫାର୍ମ କରି ଶସ୍ୟ ଉତ୍ପାଦନାର ପରୀକ୍ଷା ନିରୀକ୍ଷା କେବଳ କରୁନଥିଲେ, ଉତ୍କଳ ସମ୍ମିଳନୀ ଜରିଆରେ କୃଷକର ଜମିର ମାଟି ପରୀକ୍ଷା କରି, ଉତ୍ପାଦନ ଉପଯୋଗୀ ସାର ପ୍ରୟୋଗର ବ୍ୟବସ୍ଥା କରାଉଥିଲେ । ମଧୁସୂଦନ ବଂଗ ବିଧାନସଭାରେ ୪.୪.୧୮୯୬ରେ ବିଧାୟକ ରୂପେ ପ୍ରଥମ ଭାଷଣ ଦେଇ ପ୍ରାଥମିକ ବିଦ୍ୟାଳୟରେ କୃଷିକୁ ଏକ ବାଧ୍ୟତାମୂଳକ ବିଷୟ ରୂପେ ରଖିବା ସହିତ,

ପ୍ରତି ବିଦ୍ୟାଳୟରେ ୨ ଏକର ଜମି ସଂଲଗ୍ନ କରି ତହିଁରେ କୃଷି ବିଦ୍ୟାର କ୍ଷେତ୍ର ସଂଯୋଜିତ କରିବା ପାଇଁ ପ୍ରସ୍ତାବ ଆଗତ କରିଥିଲେ । ଏହା ଫଳରେ ଓଡ଼ିଶାର କିଛି ପ୍ରାଥମିକ ବିଦ୍ୟାଳୟରେ କୃଷି ଏକ ଶିକ୍ଷଣୀୟ ବିଷୟ ରୂପେ ଗୃହୀତ ହୋଇଥିଲା । ଗ୍ରାମ୍ୟ ସମବାୟ ସମିତି ମାଧ୍ୟମରେ କୃଷକକୁ ଉନ୍ନତ ପ୍ରଣାଳୀର କୃଷିଶିକ୍ଷା, ଯନ୍ତ୍ରପାତି ଯୋଗାଣ ଆଉ କୃଷି ଋଣ ପ୍ରଦାନ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ସର୍ବୋପରି କୃଷକ ପ୍ରଜାମାନଙ୍କୁ ନେଇ ମଧୁସୂଦନ ଯେଉଁ ପ୍ରଜା ପରିଷଦ ଆଉ ପ୍ରଜା ପ୍ରତିନିଧି ସଭା ଗଠନ କରିଥିଲେ, ତାହା ଥିଲା ପ୍ରଜାର ସ୍ୱତ୍ୱ ରକ୍ଷା କ୍ଷେତ୍ରରେ ଦେଶର ପ୍ରଥମ ସାମ୍ୟବାଦୀ ଅନୁଷ୍ଠାନ ।

**ଶିଳ୍ପ-** ମଧୁସୂଦନଙ୍କର ଶିଳ୍ପ ଚେତନା ଆକାଶ ଭଳି ସର୍ବବ୍ୟାପକ । ସ୍ୱଳ୍ପ ପରିସରରେ ତାହାର ଉପସ୍ଥାପନା ଦୁରୂହ ବ୍ୟାପାର । ମଧୁସୂଦନଙ୍କ ଆହ୍ୱାନ ଥିଲା - ବିଦେଶୀ ବର୍ଜନ ଆଉ ସ୍ୱଦେଶୀ ନିୟୋଜନ । ସେ ସ୍ୱଦେଶୀ ଶିଳ୍ପାୟନର ଆଦର୍ଶରେ ଗଭୀରଭାବେ ଅନୁପ୍ରେରଣା ଲାଭକରି ସମସ୍ତ ଗ୍ରାମ୍ୟଶିଳ୍ପକୁ ଯାନ୍ତ୍ରିକ (ମେକାନିକାଲ୍) ବିନ୍ୟାସ ଆଧାରରେ, ଦୁର୍ବହ ଶ୍ରମ ନିୟୋଜନକୁ ହ୍ରାସ କରି ବ୍ୟାପକ ପରିବର୍ତ୍ତନ ସଂଘଟିତ କରିଥିଲେ । ଏହାର ଅକଳ୍ପନୀୟ ବିବରଣୀ, ଗୌରୀଶଙ୍କର ରାୟଙ୍କର ଉପସ୍ଥାପନାରେ, ଆମକୁ ହତଚକିତ କରେ । ମହାତ୍ମାଗାନ୍ଧୀ ୧୯୧୫ ସାଲ ସୁଦ୍ଧା ଚରଖାଟିଏ ସନ୍ଦର୍ଶନ କରି ନଥିଲେ ମଧ୍ୟ ମଧୁସୂଦନ ୧୯୦୦ ସାଲ ବେଳକୁ ଉନ୍ନତ ଚରଖା ଉତ୍ପାଦନ କରି ତାହାରି ମାଧ୍ୟମରେ ସୂତା କାଟି ସ୍ୱଦେଶୀ ବସ୍ତ୍ର ଉତ୍ପାଦନ କରି ନିଜେ ପରିଧାନ କରୁଥିଲେ । ମଧୁସୂଦନ ଓଡ଼ିଶାରେ ସର୍ବପ୍ରଥମେ 'ଫ୍ଲାଇ ସଟଲ୍ ଲୁମ୍'ର ବୟନଶିଳ୍ପ ପ୍ରକ୍ରିୟାକୁ ବିନିଯୋଗ କରି ୧୯୦୫ ବେଳକୁ ବସ୍ତ୍ର ବୁଣାକୁ କ୍ଷିପ୍ରତର ତଥା ଲାଭଦାୟକ କରିବା ସହିତ ଏହାର ବିନିଯୋଗ ପାଇଁ ନିଜ ଖର୍ଚ୍ଚରେ ପ୍ରଶିକ୍ଷଣ କେନ୍ଦ୍ର ସ୍ଥାପନା କରିଥିଲେ ।

ମଧୁସୂଦନଙ୍କର ସମବାୟଭିତ୍ତିକ ଉତ୍କଳ ଟ୍ୟାନେରି ଥିଲା ସର୍ବାଧୁନିକ ଚମଡ଼ା କଷେଇ କାରଖାନା, ଯହିଁରେ ଯନ୍ତ୍ରସବୁ ବିଦ୍ୟୁତ୍ ଆଉ ଗ୍ୟାସ୍ ଚାଳିତ ଥିଲା । ଏହାର ବହୁ ଯନ୍ତ୍ରପାତି ମଧୁସୂଦନ ଜର୍ମାନୀରୁ ଆମଦାନି କରିଥିଲେ । ମହାତ୍ମାଗାନ୍ଧୀ ଉତ୍କଳ ଟ୍ୟାନେରି ପରିଦର୍ଶନ ପରେ ଏହିପରି କଳକବ୍ଜା ଆମଦାନିକୁ ସ୍ୱଦେଶୀ ବୋଲି ଆଖ୍ୟାୟିତ କରିଥିଲେ, କାରଣ ଏହା ଦ୍ୱାରା ଚମଡ଼ା ରପ୍ତାନି ରୋକାଯାଇ, ଦେଶରେ ଏହି କଳକବ୍ଜା ଆମଦାନି ହୋଇ ଚମଡ଼ା କଷେଇ ହେବାଦ୍ୱାରା ବହୁ ଦଳିତ ତଥା ପଛୁଆ ବର୍ଗର ଲୋକ, ଜୋତା ଆଦି ବସ୍ତୁ ତିଆରି କରି ବର୍ଷସାରା କର୍ମସଂସ୍ଥାନ ପାଇପାରିବେ । ଏ ସମସ୍ତ କ୍ଷେତ୍ରରେ ମଧୁସୂଦନ ହିଁ ମହାତ୍ମାଗାନ୍ଧୀଙ୍କର ମାର୍ଗଦର୍ଶକ ଥିଲେ ।

**ସାକ୍ଷରତା:** ମଧୁସୂଦନ ୧୮୮୭ ସାଲରୁ କଟକ ଜିଲ୍ଲା ବୋର୍ଡ଼ର ଭାଇସ୍ ପ୍ରେସିଡେଣ୍ଟ ରୂପେ କଲେକ୍ଟରଙ୍କ ତରଫରୁ କ୍ଷମତା ପ୍ରାପ୍ତହୋଇ ପ୍ରେସିଡେଣ୍ଟର କାର୍ଯ୍ୟ ସଂଚାଳନ କରିବା ସମୟରେ କଟକ ଜିଲ୍ଲାରେ ବହୁ ପ୍ରାଥମିକ ବିଦ୍ୟାଳୟ ଓ ବାଳିକାମାନଙ୍କ ପାଇଁ ସ୍ୱତନ୍ତ୍ର ବାଳିକା ବିଦ୍ୟାଳୟ ଖୋଲି ସାକ୍ଷରତା ହାର ବଢ଼ାଇଥିଲେ । କେବଳ ସେତିକି ନୁହେଁ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ଏହି ପ୍ରାଥମିକ ସ୍କୁଲ୍‌ମାନ ଖୋଲିବା ଦିଗରେ ପ୍ରୋତ୍ସାହନ ପ୍ରଦାନ କରି, ବହୁ ସ୍କୁଲ୍ ଖୋଲିଥିଲେ ।

ମଧୁସୂଦନଙ୍କର ପ୍ରବଳ ପ୍ରଚେଷ୍ଟାରେ ଓଡ଼ିଆ ପ୍ରାଥମିକ ସ୍କୁଲ୍‌ର ପ୍ରସାର ଫଳରେ ୧୯୦୦ ସାଲର ଜନଗଣନାରେ ସମଗ୍ର ଭାରତରେ ଓଡ଼ିଶା ଡିଭିଜନର ସାକ୍ଷରତା ହାର ସର୍ବାଧିକ ଥିଲା । ଏହି ଜନଗଣନାରେ ପ୍ରତି ଦଶହଜାର ବ୍ୟକ୍ତିଙ୍କ ମଧ୍ୟରେ ସାକ୍ଷରତା ହାର ବଂଗରେ ୯୩୮, ବିହାରରେ ୫୦୩, ଯୁକ୍ତ ପ୍ରଦେଶରେ୪୨୬, ପଞ୍ଜାବରେ ୫୨୮, ମାନ୍ଦ୍ରାଜରେ ୯୦୯, ବମ୍ବେରେ ୮୩୮ ଥିଲାବେଳେ କଟକ, ପୁରୀ ଆଉ ବାଲେଶ୍ୱର ଜିଲ୍ଲା ବିଶିଷ୍ଟ ଓଡ଼ିଶା ଡିଭିଜନରେ ଏହାର ହାର ଥିଲା ୧୦୧୯ । ଏହା କମ୍ ଗୌରବର ବିଷୟ ନୁହେଁ । ନାରୀଶିକ୍ଷା କ୍ଷେତ୍ରରେ ମଧୁସୂଦନ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲେ ଆଉ ୧୯୦୩ ସାଲର ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଓଡ଼ିଆ ଭାଷାରେ ସମସ୍ତ ପ୍ରସ୍ତାବ ଆଉ ନିର୍ଦ୍ଧାରଣମାନ ଲିପିବଦ୍ଧ କରି ସାରା ଭାରତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ ।

**ଆଦିବାସୀଃ** ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ସମୟରେ ୧୯୩୧ ସାଲରେ ଗଂଜାମର ପାର୍ବତ୍ୟ ଅଂଚଳରେ ତଥା ଜୟପୁର ଜମିଦାରିର ଆଦିବାସୀ ଅଧ୍ୟୁଷିତ ମାଳ ଅଂଚଳରେ, ଆର୍ଥିକ ଦୃଷ୍ଟିରୁ ସ୍ୱଳ୍ପ ଆୟକାରୀ ଆଦିବାସୀ ବାସ କରୁଥିବାରୁ ଏହି ଅଂଚଳ ରାଜସ୍ୱ ଆଦାୟ ଦୃଷ୍ଟିରୁ ନିଅଣ୍ଟିଆ ଥିଲା । ଏଣୁ ଏହି ଅଂଚଳର ମିଶ୍ରଣ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶକୁ ନିଅଣ୍ଟିଆ ରାଜ୍ୟରେ ପରିଣତ କରିବ ବୋଲି ସୀମା ନିର୍ଦ୍ଧାରଣ କମିଟି ପକ୍ଷରୁ ଦର୍ଶାଯାଇଥିଲା । ମଧୁସୂଦନଙ୍କର ଅଧିନାୟକତ୍ୱରେ ଦେଶ ମିଶ୍ରଣ ଆନ୍ଦୋଳନ ପକ୍ଷରୁ ଓଡନେଲ କମିଟିକୁ ନିମ୍ନ ଭାବରେ ପ୍ରତିଶ୍ରୁତି ଦିଆଯାଇଥିଲା ।

''ଓଡ଼ିଆମାନଙ୍କର ନିଜସ୍ୱ ପ୍ରତିଭା ଏପରି ସମନ୍ୱୟକାରୀ ଯେ ତାହା ବ୍ରାହ୍ମଣ ଓ ବୌଦ୍ଧ ସଂସ୍କୃତିକୁ ସନ୍ତୁଳିତ ଆଉ ସମନ୍ୱିତ କରିଛି ଓ ଜାତିଭେଦକୁ ବିଲୋପ କରିଛି । ତେଣୁ ପଛୁଆ ଜାତିର ଉନ୍ନତି ପାଇଁ ଓଡ଼ିଆମାନେ ପ୍ରତିଶ୍ରୁତିବଦ୍ଧ । ଶ୍ରୀ ଜଗନ୍ନାଥଙ୍କ ଚେତନାରେ ମାନବବାଦର ମୂଳଲକ୍ଷ୍ୟ ସାମ୍ୟ ଓ ମୈତ୍ରୀ ଭାବ ଏପରି ସଂଯୁକ୍ତ ଆଉ ସମ୍ମିଶ୍ରିତ ହୋଇ ରହିଛି ଯେ ଓଡ଼ିଆମାନେ ସମତା ଓ ମୈତ୍ରୀବୋଧର ଅଂଗିକ ବିଭବକୁ ଘେନି ପଛୁଆ ଶ୍ରେଣୀର ଉନ୍ନତି ବିଧାନର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିପାରିବେ ।''

ସ୍ୱାଧୀନତା ପ୍ରାପ୍ତିପରେ ଓଡ଼ିଶା ପ୍ରଶାସନ ଏହି ସମସ୍ତ ପ୍ରତିଶ୍ରୁତିକୁ ସଂପୂର୍ଣ୍ଣ ରୂପେ ବିସ୍ମୃତ ହୋଇଯାଇଛି । ସମଗ୍ର ଭାରତରେ ମଧ୍ୟପ୍ରଦେଶକୁ ବାଦ ଦେଲେ ସର୍ବାଧିକ ଆଦିବାସୀ ଓଡ଼ିଶା ଓ ମହାରାଷ୍ଟ୍ରରେ ବାସ କରୁଥିଲେ ମଧ୍ୟ, ଓଡ଼ିଶା ଆଦିବାସୀଙ୍କ କ୍ଷେତ୍ରରେ ଦରିଦ୍ରତା ଶତକଡ଼ା ୭୦ ଭାଗରୁ ଊର୍ଦ୍ଧ୍ୱ ଆଉ ଅପପୁଷ୍ଟି, ଶିଶୁ ମୃତ୍ୟୁହାର ଓ ମାତୃ ମୃତ୍ୟୁହାର ଦିଗରେ କ୍ଷେତ୍ରରେ ସର୍ବାଧିକ ସ୍ଥାନରେ ରହିଛି ।

**ପରିବେଶଃ** ଆଜିର ଏକବିଂଶ ଶତାବ୍ଦୀରେ ପ୍ରଦୂଷଣ, ବିସ୍ଥାପନ, ସଂତାପିତ ଜଳବାୟୁ, ଅରଣ୍ୟ ହ୍ରାସ, ଆବର୍ଜନାର ପ୍ରାବଲ୍ୟ, ଧୂମ୍ର ବିକ୍ଷୋଭିତ ବାତାବରଣ ଯୋଗୁଁ ପରିବେଶର ସଚେତନତା ପ୍ରଗାଢ଼ ଭାବରେ ବୃଦ୍ଧିପାଇବାରେ ଲାଗିଛି । ମାତ୍ର ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଜନ୍ମଗ୍ରହଣ କରିଥିବା ମଧୁସୂଦନ କିଭଳି ଦୁର୍ଲ୍ଲଭ ଐକାନ୍ତିକ ପରିବେଶପ୍ରେମୀ ଥିଲେ ଆଉ

ଶ୍ୟାମଳିମାମୟ ପ୍ରକୃତିର ଦୂରନ୍ତ ଆକର୍ଷଣୀୟ ଦ୍ୟୁତିରେ ଉଚ୍ଛ୍ୱସିତ ଆଉ ଉତ୍‌ଫୁଲ୍ଲିତ ରହୁଥିଲେ, ଏହା ତାଙ୍କର ଏହି ମାର୍ମିକ ଲେଖାର ଅନୁବାଦରୁ ଆକଳନ କରାଯାଇପାରିବ ।

**ପୂର୍ବ ଆଉ ପଶ୍ଚିମଃ** ଗୋଟିଏ ଉକ୍ତି ଅଛି ପୂର୍ବ ହିଁ ପୂର୍ବ ଆଉ ପଶ୍ଚିମ ହିଁ ପଶ୍ଚିମ, ସେମାନେ କେବେ ମଧ୍ୟ ମିଳିତ ହେବେ ନାହିଁ ।

ନା, ସେମାନେ ମିଶିଛନ୍ତି । ବିଶ୍ୱର ପୂର୍ବ ଭାଗର ସଂସ୍କୃତି ଓ ସଭ୍ୟତା ଏକ ପ୍ରକାରର ଆଉ ପଶ୍ଚିମ ଭାଗର ସଂସ୍କୃତି ଓ ସଭ୍ୟତା ଅନ୍ୟ ଧରଣର । ଏହି ଉଭୟଙ୍କର ମଧ୍ୟରେ ବିଭେଦତା ରହିଛି । କାରଣ ସେମାନଙ୍କର ଜୀବନ ଧାରଣର ପରିବେଶ ଆଉ ପ୍ରଗତିର ଚେତନା ଓ ଲକ୍ଷ୍ୟ ମଧ୍ୟ ଭିନ୍ନ, ମାତ୍ର ଉଭୟେ ଉଭୟଙ୍କର ବିପରୀତମୁଖୀ ନୁହନ୍ତି ।

ପୂର୍ବର ସୌମ୍ୟ ପ୍ରକୃତି, ପଶ୍ଚିମରେ ଭିନ୍ନରୂପ ଧାରଣ କରେ, ଯାହା ଜୀବନ ଦୃଷ୍ଟିକୋଣକୁ ବଦଳାଇ ଦିଏ । ପୂର୍ବରେ ଉଦିତ ପ୍ରଶାନ୍ତ ଓ ପ୍ରଗାଢ଼ ସୂର୍ଯ୍ୟକୁ ପଶ୍ଚିମ ଦେଶର କୁହେଳିକା ଆଉ ଘନ ବାଷ୍ପୀୟ ଧୂମର ଆଚ୍ଛାଦନ ଆବରିତ କରେ । ପଶ୍ଚିମରେ ପ୍ରକୃତିର ଉଗ୍ରତା ବୃକ୍ଷମାନଙ୍କରୁ ପତ୍ରସବୁ ଝାଡ଼ିଦିଏ, ଯାହା ଫଳରେ ସେମାନେ ବିଷାଦଗ୍ରସ୍ତା କ୍ରନ୍ଦନରତା ବିଧବା ତରୁଣୀ ପରି ଠିଆ ହୁଅନ୍ତି । ରୁଷ୍ଟ ସାଗର କ୍ରୋଧିତ ଲହରୀମାଳାରେ ପୋତି ପକାଇବା ପାଇଁ କୁପିତ ଦୃଷ୍ଟି ନିକ୍ଷେପ କରେ । ତୁଷାର ଶୀତଳ ଜାଡ଼ୁଆ ପବନ ଦେହକୁ ଛୁଞ୍ଚିଭଳି ଫୋଡ଼ିଦେଇ ରକ୍ତକୁ ଜମାଟ ଭଳି ବାନ୍ଧିପକାଏ ଆଉ ଭୀତତ୍ରସ୍ତ କରେ । ଏହାର ପ୍ରତିକାର ପାଇଁ ମଣିଷ ପ୍ରକୃତି ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଏକମାତ୍ର ବାଟ ବାଛି ନିଏ ।

ମାତ୍ର ପୂର୍ବରେ ପ୍ରକୃତି ଅତ୍ୟନ୍ତ ସମ୍ବେଦନଶୀଳ । ସକାଳର ଉତ୍‌ଥିତ ନବୋଦିତ ସୂର୍ଯ୍ୟ, ନିଦ୍ରିତ ଜଗତକୁ ବିପୁଳ ହର୍ଷ ଆଉ ଉଲ୍ଲାସର ଜାଗ୍ରତ କର୍ମଧାରାରେ ଭରିଦିଏ । ଆଉ ପ୍ରକୃତିର ଉତ୍ତାଳ ସ୍ମିତହାସ୍ୟ ଆକାଶର ଘନ ନୀଳିମାରେ ପ୍ରତିଫଳିତ ହୁଏ । ଶସ୍ୟ କେଦାର ସବୁ ସବୁଜିମାରେ ମଣ୍ଡିତ ହୋଇଯାଏ ଆଉ ପ୍ରକୃତି କରୁଣାମୟୀ ମାତୃରୂପରେ ମଣିଷ ସମାଜକୁ ତାର ମମତାମୟୀ ସ୍ନେହାର୍ଦ୍ର କୋଳକୁ ଟାଣିନିଏ ଓ ମଣିଷ କୃତଜ୍ଞତାର ନିବିଡ଼ ପାଶରେ ଆବଦ୍ଧ ହୋଇ ଆଣ୍ଠୁମାଡ଼ି କବି ମିଲ୍‌ଟନ୍‌ଙ୍କର ଭାଷାରେ ପ୍ରାର୍ଥନା କରେ ।

'' ଏ ସମସ୍ତ ଯଦି ବିଶ୍ୱ ପ୍ରକୃତିର ଐଶ୍ୱର୍ଯ୍ୟ ଆଉ ଗାରିମା, ହେ ବିଶ୍ୱପିତା ! ଆପଣ କିଭଳି ବିପୁଳ ଔଦାର୍ଯ୍ୟ ଆଉ ଉଦାତ୍ତ ସମ୍ଭାରରେ ମହିମାବନ୍ତ ହୋଇଛନ୍ତି ସତେ ?''

ମଧୁସୂଦନଙ୍କ ଗରିମାମୟ ଚାରିତ୍ରିକ ଗୁଣର ବିଶେଷତ୍ୱ ହେଲା ଭୀତିହୀନତା । ଏହି ସଂପର୍କରେ ବିହାରର ପୂର୍ବତନ ପ୍ରଧାନମନ୍ତ୍ରୀ ମିଷ୍ଟର ୟୁନୁସ୍‌ଙ୍କର ବାର୍ତ୍ତା ଏହିପରି ଥିଲା-

''ମଧୁସୂଦନଙ୍କର ଗୁଣାବଳୀ ମଧ୍ୟରେ ଭୀତିହୀନତା ସର୍ବପ୍ରଧାନ ଥିଲା । ମଧୁସୂଦନ ଥିଲେ ସମସ୍ତ ଅନୁଗ୍ରହ ଆଉ ସମାଲୋଚନାର ଊର୍ଦ୍ଧ୍ୱରେ ଜଣେ ନୀତିକୁ ଗ୍ରହଣ କରୁଥିବା ସର୍ବୋତ୍ତମ ବ୍ୟକ୍ତିତ୍ୱ ।'' ଆଉ ପୂର୍ବତନ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କର ଭାଷାରେ ''ପରିଣତି ଯାହା

ହେଉନା କାହିଁକି, ମଧୁସୂଦନ ସଠିକ କଥା କହିବା ଆଉ ସେହି ବକ୍ତବ୍ୟକୁ ନିର୍ଦ୍ଧାରିତ ରୀତିରେ କାର୍ଯ୍ୟ କରାଇବାପାଇଁ ତିଳେ ମାତ୍ର ଭୟ କରୁନଥିଲେ ।''

ମଧୁସୂଦନଙ୍କ ନିକଟରେ କାର୍ଯ୍ୟରତ ବିହାରର ପୂର୍ବତନ ମୁଖ୍ୟ ସଚିବ ଓ ପରବର୍ତ୍ତୀ କାଳରେ ବିହାରର ପୂର୍ବତନ ଗଭର୍ଣ୍ଣର ହ୍ୟୁଗ୍ ମ୍ୟାକ୍ ଫରସନ୍, ମଧୁସୂଦନଙ୍କ ଉପରେ ଗଭୀର ଉଚ୍ଛ୍ୱସିତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହନ୍ତି, ''ମଧୁସୂଦନ ଦାସଙ୍କ ପାଇଁ ଦୁଇଟି ଅତ୍ୟନ୍ତ ମହତ୍ତର ବିଷୟ ଥିଲା । ପ୍ରଥମଟି ଥିଲା କ୍ଷେତରେ ଚାଷ କରୁଥିବା ରୟତଙ୍କର ମଙ୍ଗଳ ସାଧନ ଆଉ ଦ୍ୱିତୀୟଟି ହେଲା ଓଡ଼ିଶାର ସ୍ୱତନ୍ତ୍ରତା । ସେ ନିଷ୍ପେଷିତ ଆଉ ଅଧିକାରବିହୀନ ପ୍ରଜାମାନଙ୍କର ଦୁଃଖ-ଦୁର୍ଦ୍ଦଶା ଦୂରକରିବା ପାଇଁ ଅନମନୀୟ ସଂଗ୍ରାମ ଜୁଟି ଚାଲିଥିଲେ । ମୁଁ ୧୯୦୭ରୁ ୧୭ ପର୍ଯ୍ୟନ୍ତ ଜମିଜମା ସ୍ୱତ୍ୱ ଓ ଦଲିଲ୍‌ର ନିର୍ଦ୍ଦେଶକ ଥିଲାବେଳେ ସେ ଏ ସଂପର୍କରେ ମୋ' ସହିତ ବହୁବାର ଆଲୋଚନା କରି ତାଙ୍କର ହୃଦୟର ଆବେଗ ପ୍ରଦର୍ଶନ କରିଥିଲେ । ଯେତେବେଳେ ଚାଷୀମାନଙ୍କର ଦାବି ଓ ସ୍ୱତ୍ୱ ରକ୍ଷାପାଇଁ ପ୍ରଶ୍ନ ଉତ୍‌ଥାପିତ ହେଉଥିଲା, ମଧୁସୂଦନ ସେହିମାନଙ୍କର ସ୍ୱତ୍ୱ ଓ ସ୍ୱାର୍ଥ ରକ୍ଷାପାଇଁ ଅଗ୍ରାଧିକାର ଭିତ୍ତିରେ ସଂଗ୍ରାମ ସଂଚାଳିତ କରିଥାନ୍ତି ।

ଏଥିରୁ ମଧୁସୂଦନଙ୍କର ମହିମାନ୍ୱିତ ଚରିତ୍ରବତ୍ତା ଉପରେ ସମ୍ୟକ ଧାରଣା ହୋଇପାରିବ । ମଧୁସୂଦନ ଓଡ଼ିଶା ଆଉ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଇଂରାଜୀରେ 'ଦି ଓରିଆ' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ କରୁଥିଲେ, ଯହିଁରେ ମୁଖ୍ୟତଃ ପ୍ରାଶାସନିକ ଦୁରାଚାର ଓ ସରକାରଙ୍କର ଅନିୟମିତତା ଉପରେ ଉଗ୍ର ସମାଲୋଚନା କରିବା ସହିତ ପ୍ରକୃତ ସମସ୍ୟାର ସ୍ୱରୂପ ପ୍ରଦର୍ଶନ କରୁଥିଲେ । ଏଥିରେ ବିଚଳିତ ହୋଇ ସରକାର ମଧୁସୂଦନଙ୍କ ନିକଟକୁ ଏକ ଗୋପନୀୟ ପତ୍ର ଜରିଆରେ ନିବେଦନ କରିଥିଲେ ଯେ, ଏହି ସମସ୍ତ ବିଷୟକୁ ନମ୍ର ଆଉ କୋମଳ ସ୍ୱରରେ ପ୍ରକାଶ କରିବାପାଇଁ । ଏହାର ବିରୋଧରେ ମଧୁସୂଦନଙ୍କର ନିର୍ଭୀକ ପ୍ରତ୍ୟୁତ୍ତର ଥିଲା, 'ମୁଁ ସମସ୍ତ ବକ୍ତବ୍ୟକୁ ପରିସ୍ଥିତିର ଗୁରୁତ୍ୱ ନେଇ ନିରପେକ୍ଷ ଆଉ ଯଥାର୍ଥ ଭାବେ ଉପସ୍ଥାପନ କରିଥାଏ । ମୋର ବକ୍ତବ୍ୟ ଯଦି ଆଇନର କୌଣସି ଧାରାକୁ ଉଲ୍ଲଙ୍ଘନ କରିଥାଏ, ମୁଁ ସେଥିପାଇଁ କାରାବରଣ କରିବାକୁ ପ୍ରସ୍ତୁତ ଅଛି, ମାତ୍ର ମୁଁ କୌଣସି ସ୍ଥିତିରେ ଏ ସମସ୍ତକୁ ନମ୍ର କୋମଳ ଭାବରେ ଉପସ୍ଥାପନ କରି ପାରିବି ନାହିଁ, କାରଣ ତାହା ପ୍ରକୃତ ସତ୍ୟର ଅପଳାପ ହେବ ।'' ଏହି ଚିଠି ମଧୁସୂଦନ ସରକାରଙ୍କୁ ଅର୍ପଣ କରି ସମସ୍ତ ବିଷୟରେ ଭୀତିହୀନତା ସହକାରେ ଏହି ଚିଠିକୁ ଉତ୍କଳଦୀପିକାରେ ପ୍ରକାଶ କରିଥିଲେ ।

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ସ୍ତୁତିଚାରଣରେ ମଧୁସୂଦନଙ୍କ ପାଇଁ ଶ୍ରଦ୍ଧାଞ୍ଜଳି ଏହିପରି ଥିଲା - ହେ ମଧୁସୂଦନ ! ଓଡ଼ିଆ ଜାତି ତୁମପାଇଁ ଭୀଷ୍ମ ଶ୍ରାଦ୍ଧ କରୁଛି ଓ କରିବ । ତୁମ୍ଭର ଦ୍ୱିତୀୟ ଓଡ଼ିଶା ମାତା ଜନ୍ମ କରିନାହିଁ, କରୁନାହିଁ ଓ କରିବ ବି ନାହିଁ ।

ନେପୋଲିୟନ କହିଥିଲେ, ''ନିଜେ ମହାନ ହେବା ଯଥେଷ୍ଟ ନୁହେଁ । ତାଙ୍କର ନେତୃତ୍ୱ ଦେଇ ପାରିବା ଭଳି ବ୍ୟକ୍ତିଙ୍କୁ ଚିହ୍ନିବାର ଅସାଧାରଣ କ୍ଷମତା ରହିଥିବା ଆବଶ୍ୟକ । ଯେଉଁମାନେ ମୁଖ୍ୟ ନେତୃପୁରୁଷଙ୍କ ଆଦର୍ଶରେ ଅନୁପ୍ରେରଣା ଯୋଗାଇ, ମୂଳଲକ୍ଷ୍ୟକୁ ନେଇ ସିଦ୍ଧିସ୍ଥଳରେ

ପହଞ୍ଚାଇ ଦେଇ ପାରବେ ।'' ମଧୁସୂଦନଙ୍କର ଏହି ଅସାଧାରଣ କ୍ଷମତା ରହିଥିଲା, ଯେ'କି ଉପଯୁକ୍ତ ସାମର୍ଥ୍ୟ ଦେଇ ପାରିବା ଭଳି ସହକର୍ମୀଙ୍କୁ ନିର୍ବାଚିତ କରି, ସେହିମାନଙ୍କର ସାହଚର୍ଯ୍ୟରେ ଓଡ଼ିଶା ପ୍ରଦେଶର ସ୍ଥାପନା ପ୍ରକ୍ରିୟାକୁ ତ୍ୱରାନ୍ୱିତ କରି ଅବଶେଷରେ ଲକ୍ଷ୍ୟସ୍ଥଳରେ ଉପନୀତ ହୋଇପାରିଥିଲେ । ସମଗ୍ର ଓଡ଼ିଶାରେ ଭିନ୍ନଭିନ୍ନ ସ୍ଥାନରେ ଓଡ଼ିଆ ଜାତୀୟତାର ଯେଉଁ ସ୍ଫୁଲିଂଗ ସୃଷ୍ଟି ହୋଇଥିଲା ସେହି ସମସ୍ତଙ୍କୁ ଉତ୍କଳ ସମ୍ମିଳନୀ ମଞ୍ଚରେ, ଜାତି,ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଐକ୍ୟବଦ୍ଧତା ସୃଷ୍ଟିକରି, ସମଗ୍ର ବିଭେଦ ଆଉ ବିରୋଧାଭାସକୁ ସମାହିତ କରି ମଧୁସୂଦନ ଅଂଗୀକାରବଦ୍ଧତାର ସହ ସଂଗ୍ରାମ କରିଥିଲେ ।

ସେହି ସଂପର୍କିତ ଉତ୍କଳ ସମ୍ମିଳନୀର ଜାତୀୟ ମଂଚରେ ଅନୁଷ୍ଠିତ, ଏକ ବିରଳ ସମ୍ବେଦନଶୀଳ ଘଟଣା ଏହିପରି ଥିଲା । ୧୯୧୮ ସାଲର ଅଧିବେଶନର ଦ୍ୱିତୀୟ ଦିବସରେ ମଧୁସୂଦନ ସହସା ମଂଚରେ ଆବିର୍ଭୂତ ହୋଇ ବାଷ୍ପରୁଦ୍ଧ , ବିହ୍ୱଳିତ ଏବଂ ଲୋତକାପ୍ଲୁତ ନୟନରେ କହିଥିଲେ, 'କାଲି ସଭା ଶେଷରେ ଶୁଣିଲି , କେତେ ଜଣ ଭ୍ରାତା ସଭା ମଣ୍ଡପରୁ ଧୂଳିନେଇ ମୁଣ୍ଡରେ ବୋଳିଛନ୍ତି, ଆଉ ତାହାକୁ ନିଜ ଘରକୁ ବାନ୍ଧି ନେଇଛନ୍ତି । ସେହି ଭ୍ରାତାମାନଙ୍କର ପରିଚୟ ପାଇବାପାଇଁ ଚେଷ୍ଟାକଲି, ମାତ୍ର ପାଇପାରିଲି ନାହିଁ । ସେହିମାନେ ହିଁ ଉତ୍କଳମାତାର ଯୋଗ୍ୟତମ ସନ୍ତାନ । ସେହିମାନଙ୍କ ପଦଧୂଳିରେ ପବିତ୍ର ହୋଇଥିବା ଏହି ପୀଠର ଧୂଳିକୁ ମୁଁ ଉନ୍ମାଦପ୍ରାୟ ମଥାରେ ବୋଳିଛି ଆଉ ପରମ ଆଗ୍ରହରେ ସାଇତି ରଖିଛି ।'' ମଧୁସୂଦନଙ୍କର ବିକଳ ନୟନରୁ ଅବିରତ ଗତିରେ ଅଶ୍ରୁର ଧାରା ବହି ଚାଲିଥିଲା, ଯାହା ଶ୍ରୋତୃମଣ୍ଡଳୀକୁ ବିପୁଳ ଲୋତକପାତରେ ବିଗଳିତ ଆଉ ପରିପ୍ଲୁତ କରିଦେଇଥିଲା ।

୧୯୩୩ ସାଲର ପ୍ରାୟ ଅକ୍ଟୋବର ମାସରେ ମଧୁସୂଦନ ତାଙ୍କ ତିରୋଧାନର ଚାରିମାସ ପୂର୍ବରୁ, ବ୍ରହ୍ମପୁରରେ ଉପନୀତ ହୋଇ ଶଶିଭୂଷଣ ରଥଙ୍କ ମାଧ୍ୟମରେ ଯେଉଁ ଅନ୍ତିମ ବାର୍ତ୍ତା ଓଡ଼ିଆ ଜାତିକୁ ପ୍ରଦାନ କରିଥିଲେ ତାହାଥିଲା -

'ମୁଁ ଚାହେଁ ନାହିଁ ଯେ ଓଡ଼ିଆମାନେ ଋଷି ଆଉ ମୁନିର ଜୀବନ ଯାପନ କରନ୍ତୁ । ମୁଁ ଚାହେଁ ଯେ ସେମାନେ ନିଜସ୍ୱ ପ୍ରାସାଦମାନଙ୍କରେ କଳାପ୍ରାଣତାର ଜୀବନଯାପନ ମଧ୍ୟରେ ଓଡ଼ିଶାର ଉନ୍ନତିକଳ୍ପେ କୃଷି, ଶିଳ୍ପ, ଚାରୁକଳା, ଆଦି ଭିନ୍ନଭିନ୍ନ ଉଦ୍ୟୋଗରେ ବ୍ରତୀ ହୁଅନ୍ତୁ ।

ଏହିଠାରେ ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନରେ, ୧୯୧୮ ସାଲରେ ମଧୁସୂଦନଙ୍କର ପ୍ରଦତ୍ତ କାଳଜୟୀ ମାତୃ ଆବାହନର କିଛି ମହିମାନ୍ୱିତ ଅଂଶ ଉଦ୍ଧାର କରାଯାଉଛି -

''ଉତ୍କଳବାସୀଙ୍କର ସମ୍ମିଳନୀ-ଜନନୀ ଜନ୍ମଭୂମିଙ୍କର ପୂଜାମଣ୍ଡପ । ପୂଜାକାର୍ଯ୍ୟ ଆରମ୍ଭ ପୂର୍ବରୁ ମାତାଙ୍କର ଆବାହନ ଆବଶ୍ୟକ । ତାହାଙ୍କର ପିତୁଳା ହୃଦୟରେ କିପରି ସ୍ଥାପନ କରାଯାଇପାରେ, ତେବେ କେବଳ ଏହି ଉପରେ ଲେଖା ହୋଇଥିବା 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ପ୍ରତି ଅଂଗୁଳି ନିର୍ଦ୍ଦେଶ କରିବି । ଦେଖନ୍ତୁ ପ୍ରଥମେ ଜନନୀ, ଦ୍ୱିତୀୟରେ ଜନ୍ମଭୂମି, ତୃତୀୟରେ ସ୍ୱର୍ଗ । ମନୁଷ୍ୟ ଜନ୍ମରେ ପ୍ରତ୍ୟେକ ମନୁଷ୍ୟ ଜୀବନକୁ ଗୋଟିଏ ସ୍ରୋତ ମନେକଲେ ଦେଖିବେ

ସେହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି ଏବଂ ଶେଷରେ ସ୍ୱର୍ଗ । ପ୍ରତ୍ୟେକ ଆତ୍ମାର ଏହି ଗତି । ମନୁଷ୍ୟ ଜୀବନର ଆଦ୍ୟ ଜନନୀ, କାର୍ଯ୍ୟ ଜନ୍ମଭୂମି, ପୁରସ୍କାର ମୁକ୍ତି ବା ସ୍ୱର୍ଗ । ଏଥିପାଇଁ ଜନନୀ ଜନ୍ମଭୂମି ସ୍ୱର୍ଗଠାରୁ ଗରୀୟସୀ ।

ପ୍ରଥମେ ମାତା ରକ୍ତ ଦେଇଥିଲେ । ସେହି ରକ୍ତ ବୃଦ୍ଧି କରିବା ପାଇଁ ମୋ' ଜନ୍ମଭୂମି ମୋତେ ଶସ୍ୟାଦି ଦେଉଅଛି । ଅତଏବ ଶରୀରର ଆଦ୍ୟ ପଦାର୍ଥ ଦିଏ ମାତା, ତାହାର ରକ୍ଷକ ଓ ବର୍ଦ୍ଧକ ଜନ୍ମଭୂମି । ଆମ୍ଭେମାନେ ପ୍ରଥମେ ପ୍ରସବ ହେଲାବେଳେ ଭୂମିଷ୍ଠ ହେଲୁ ବୋଲି କହନ୍ତି ଅର୍ଥାତ୍ ଆମ୍ଭମାନଙ୍କୁ ମାତା ଜନ୍ମଭୂମି କ୍ରୋଡ଼ରେ ଅର୍ପଣ କରି, ସେହି ଜନ୍ମଭୂମିର ପୂଜା କରିବାକୁ ଆଦେଶ ଦିଅନ୍ତି ।''

ଏହା ପରେ ମଧୁସୂଦନଙ୍କର ମହୀୟାନ ପ୍ରେରଣାଦାୟୀ କବିତା 'ଉତ୍କଳ ଜନନୀଙ୍କର ଉକ୍ତି'ର କିଛି ଉଦ୍ଦୀପକ ଉଚ୍ଛ୍ୱସିତ ପଙ୍କ୍ତି ପ୍ରଦତ୍ତ ହେଲା-

''ନାହିଁ ମୋର ମାନ ନାହିଁ ମୋର ଧନ
ବଦନେ ଲାଗିଛି ଧୂଳି
ବୀର ପ୍ରସବିନୀ ଶୋଣିତ ରହିଛି
ତୋ' ଶିରାରେ ଦେବି ଢାଳି
ସେ ଶୋଣିତ ବଳେ ବୁଦ୍ଧିର କୌଶଳେ
ହେବୁ ତୁହି କର୍ମ ବୀର ।''

ମଧୁସୂଦନ ଜନ୍ମଭୂମିକୁ ଯେଉଁ ଐଶ୍ୱର୍ଯ୍ୟ, ଗାରିମା, ସମସ୍ତ ପ୍ରାକୃତିକ ବିଭବ ଆଉ ଶସ୍ୟ ସଂଭାରରେ ଯେତେ ସମୃଦ୍ଧି ପ୍ରଦାନ କରିଛନ୍ତି, ତାହାହିଁ ଆମ୍ଭମାନଙ୍କର ଶରୀରରେ ଶୋଣିତ ରୂପରେ ପ୍ରବାହିତ ହୋଇ ବହିଚାଲିଛି । ଅନ୍ୟ ଅର୍ଥରେ ମଧୁସୂଦନଙ୍କର ଏକାନ୍ତ ଦାୟାଦ ରୂପେ ତାଙ୍କର ଅନନ୍ୟ ଚେତନା, ତେଜସ୍ୱିତା ଶୋଣିତ ହୋଇ ଆମ୍ଭମାନଙ୍କର ଶରୀରରେ ପ୍ରବାହିତ ହୋଇ ବହି ଚାଲିଛି ।

ଉତ୍କଳ ଜନନୀ ଆଉ ତାହାଙ୍କର ଏକନିଷ୍ଠ ଦାୟାଦ ଉତ୍ସର୍ଗୀକୃତ ଆଉ ସମର୍ପିତ ସନ୍ତାନ ମଧୁସୂଦନଙ୍କର ମଧ୍ୟରେ କିଭଳି ଅବା ପାର୍ଥକ୍ୟ ରହିଛି ? ଉଭୟେ ଯେ ଏକାତ୍ମା ଶରୀରର ଅଂଶ ବୋଲି ଭାବୁଥିଲେ' (ଉତ୍କଳ ଦୀପିକା) ଏଣୁ ମଧୁସୂଦନ ହିଁ ସମଗ୍ର ଓଡ଼ିଶାର ଭୂଖଣ୍ଡରେ ସର୍ବତ୍ର ସଂପ୍ରସାରିତ ଆଉ ବିସ୍ତାରିତ ହୋଇଛନ୍ତି । ଏତେ ଅକଳ୍ପନୀୟ ବିଭବ ଏତେ ଅନନୁମେୟ ସଂପଦ ପ୍ରଦାନ କରି କିଏବା ଜନ୍ମଭୂମିକୁ ଏହିଭଳି ଐଶ୍ୱର୍ଯ୍ୟଶାଳିନୀ ଆଉ ମହିମାମଣ୍ଡିତ କରିପାରିଛ ? ଏକ ହିଁ ମଧୁସୂଦନ ଯେପରି ସହସ୍ର ରୂପଧରି ସମଗ୍ର ଜାତିଟାର ସହସ୍ର କ୍ଷେତ୍ରରେ ବିଚରଣ କରୁଥିଲେ ।' ଏହାଥିଲା ମହାନ ବ୍ୟାଖ୍ୟାକାର ବିଶ୍ୱନାଥ କରଙ୍କର ପ୍ରଦତ୍ତ ମଧୁସୂଦନଙ୍କ ପ୍ରତି ଅବିସ୍ମରଣୀୟ ଶ୍ରଦ୍ଧାଞ୍ଜଳି ।

ମଧୁସୂଦନଙ୍କର ପ୍ରତି ପ୍ରଦତ୍ତ ଶ୍ରଦ୍ଧାଞ୍ଜଳିରେ ଅନ୍ୟଏକ ଅକଳ୍ପନୀୟ ପ୍ରଗାଢ଼ ଉଚ୍ଚାରଣ -

''ଏହି ନିଃସ୍ୱ ଜାତିକୁ ତାହାଙ୍କର ଦାନ ଏତେ ଆକାଶସ୍ପର୍ଶୀ ଥିଲା ଯେ ସେଥିପାଇଁ ତାଙ୍କ ପ୍ରତି ପ୍ରଦତ୍ତ କୃତଜ୍ଞତାଭରା କ୍ଷୁଦ୍ର ଭକ୍ତି ଓ ଶ୍ରଦ୍ଧା କେତେ ତୁଚ୍ଛକର ଥିଲା ସତେ! ମଧୁବାବୁ ଥିଲେ ଏ ଜାତିର ଜୀବନ ଦେବତା ଏବଂ ଜାଗ୍ରତ ଅଭୀଷ୍ଟ ଶିବ; ଅମଙ୍ଗଳର ସମସ୍ତ ହଳାହଳକୁ ସେ ପାନକରି ଦେଇଥିଲେ ଆଉ ଓଡ଼ିଆକୁ ନବଜୀବନର ଅମୃତ ପ୍ରବାହରେ ଭସାଇ ଦେଇଥିଲେ ।'' **(ଦେଶକଥା)**

ହଁ, ଓଡ଼ିଶା ପ୍ରଦେଶ ଗଠନର ସମୁଦ୍ର ମନ୍ଥନରୁ ଜାତ ହଳାହଳକୁ ଆକଣ୍ଠ ପାନକରି ସେ ହୋଇଥିଲେ ନୀଳକଣ୍ଠ । ନୀଳକଣ୍ଠଙ୍କ ପରି ସେ ଥିଲେ ସର୍ବସ୍ୱ ତ୍ୟାଗୀ, ଅନିକେତ ଆଉ ଶ୍ମଶାନବାସୀ । ତାଙ୍କର ଜୀବନରେ ଦୁର୍ବିପାକ ଥିଲା ଅଚିନ୍ତନୀୟ । ଦୁଃଖ ଆଉ ଦୈନ୍ୟ ଏପରି ଦୁର୍ବିସହ ଯେ, ତାହା ଥିଲା ମାନବୀୟ ପରିକଳ୍ପନାର ଉର୍ଦ୍ଧ୍ୱରେ । ପରିଣାମରେ ସେ ହୋଇଥିଲେ ନିଃସ୍ୱ ଆଉ କପର୍ଦ୍ଦକ ଶୂନ୍ୟ । ମାତ୍ର ସମୁଦ୍ର ମନ୍ଥନରୁ ଜାତ ସମସ୍ତ ଐଶ୍ୱର୍ଯ୍ୟଶାଳୀ ବିଭବ ପରି ସେ ବିଚ୍ଛିନ୍ନ ଆଉ ବିଭାଜିତ ଅଂଚଳରେ ସ୍ଥିତ ସମଗ୍ର ଓଡ଼ିଶାର ଦୁଇ ତୃତୀୟାଂଶ ଭୂମିଭାଗ କେବଳ ସଂଯୁକ୍ତ କରି ନଥିଲେ, ଏହା ସହିତ ଅକଳ୍ପନୀୟ ପ୍ରାକୃତିକ ବିଭବକୁ ସମନ୍ୱିତ କରି ସେ ଓଡ଼ିଶାକୁ କରିଥିଲେ ବିତ୍ତଶାଳୀ ଓ ଗୌରବାନ୍ୱିତ ,ସଂସ୍କୃତିରେ ଔଦାର୍ଯ୍ୟ ବିମଣ୍ଡିତ, ଭାଷା ଆଉ ପ୍ରକାଶଭଂଗୀରେ ପ୍ରାଣବନ୍ତ, ଅଜସ୍ର ମହନୀୟତା ଓ ସର୍ବୋପରି ସମ୍ବେଦନଶୀଳତାରେ ଅଫୁରନ୍ତ କରୁଣାର ପଟାନ୍ତରହୀନ ବ୍ୟାପକତା ।

ଆହାଃ ! ଏହି ଭଳି ସର୍ବଗୁଣ ଆଧାରରେ ମହିମାମଣ୍ଡିତ କିଏ ଅବା ଥିଲା ?

ହଁ, ସେ ହିଁ ଥିଲେ ଏ ଜାତିର ବିପତ୍ତି କାଳରେ 'ବିପତ୍ତୌ ମଧୁସୂଦନଃ !!'

''ଗୋଟିକ ତବ ଜୀବନ କୋଟିକ କୁବେର ଧନ
ତୁଳନେ ନୁହଁ ସମାନ ଗୁଣି ଗଣରତନ ।''

-ଦାମୋଦର ପଟ୍ଟନାୟକ



# ଜାତି ପ୍ରତି ଅନ୍ତିମ ଅଭିଭାଷଣ

ଓଡ଼ିଶା ଠିଆ ହୋଇଥିଲା ଦୋଛକିର ଏକ ସନ୍ଧିକ୍ଷଣରେ, ୧୯୩୨ ସାଲର ଡିସେମ୍ବର ୨୪ ତାରିଖରେ, ତୃତୀୟ ଗୋଲ୍‌ଟେବୁଲ୍ ବୈଠକର ଅନ୍ତିମ ଅଧିବେଶନରେ । ଶେଷ ମୁହୂର୍ତ୍ତରେ ଓଡ଼ିଶା ପ୍ରଦେଶର ସ୍ଥାପନା ଉଦ୍‌ଘୋଷିତ ହୋଇଥିଲା । ଏହା ଉଦ୍‌ବେଳିତ କରିଥିଲା ରୁଗ୍‌ଣକାୟ ଜରାଗ୍ରସ୍ତ ମଧୁସୂଦନଙ୍କୁ । ଏହା ତାଙ୍କର ପ୍ରାଜ୍ଞ ଚିଦାକାଶରେ ଭରି ଦେଇଥିଲା ଦୁର୍ବାର ଶକ୍ତି, ପ୍ରବଳ ଉଦ୍ଦୀପନା ଓ ସର୍ବୋପରି ଅବଦମିତ ପ୍ରାଣସତ୍ତା ।

ଆଗରୁ ୧୯୩୨ ସାଲର ଜୁନ୍ ମାସରେ ପ୍ରକାଶିତ ହୋଇଥିଲା ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ସୀମାନିର୍ଦ୍ଧାରଣ କମିଟି (ଓଡ଼ନେଲ୍) ରିପୋର୍ଟ । ଏହା ନୈରାଶ୍ୟଜନକ ହୋଇଥିଲେ ମଧ୍ୟ, ଓଡ଼ିଶା ଡିଭିଜନ ସହିତ ସଂଯୁକ୍ତ ହୋଇଥିଲା ଗଂଜାମ ଜିଲ୍ଲାର ମୁଖ୍ୟଭାଗ ଏବଂ ଜୟପୁର ଆଉ ଖଡ଼ିଆଳ ଜମିଦାରି । ମାତ୍ର ବାଦ୍ ପଡ଼ିଯାଇଥିଲା ଗଂଜାମର କିଛି ଅଞ୍ଚଳ, ପାରଳାଖେମୁଣ୍ଡି ସମେତ ବହୁ ଜମିଦାରି ଏବଂ ସିଂହଭୂମି ଆଉ ମେଦିନୀପୁର ସମେତ ଅନେକ ବିଚ୍ଛିନ୍ନ ଅଂଚଳ, ହେଲେ ଆଶା ନିରାଶାର ଦୋଛକିରେ ଠିଆ ହୋଇଥିଲା ଓଡ଼ିଶା । ସଂଶୟ ବିଜଡ଼ିତ ଓଡ଼ିଶାର ଗତିପଥ ଯେପରି ବିଧୂରିତ କରିଥିଲା ସମସ୍ତ ପୃଷ୍ଠଭୂମିକୁ । ଆଗାମୀ ଯାତ୍ରାର ପଥ ଥିଲା ଦୁର୍ଗମ ।

ଲଣ୍ଡନର ଗୋଲ୍‌ଟେବୁଲ୍ ବୈଠକରୁ ଫେରି, ଭୁବନାନନ୍ଦ ଦାସଙ୍କର ପ୍ରଚେଷ୍ଟାରେ ଆହୂତ ହୋଇଥିଲା ନେତୃ ସମ୍ମିଳନୀ କଟକର ଶ୍ରୀରାମଚନ୍ଦ୍ର ଭବନରେ । ୧୯୩୩ ସାଲର ଫେବୃଆରି ୧୨ ଆଉ ୧୩ ତାରିଖରେ । ସୁଦୀର୍ଘ ଦୁଇମାସ ଧରି ଦାରୁଣ ଜଠରଯନ୍ତ୍ରଣାରେ ପୀଡ଼ିତ ହୋଇ ମଧୁସୂଦନ ଚିକିତ୍ସିତ ହେଉଥିଲେ କଲିକତାର ଏକ ନର୍ସିଂହୋମ୍‌ରେ ଆଉ ଫେରି ଆସିଥିଲେ କଟକକୁ ଜାନୁଆରି ମାସର ଶେଷ ଭାଗରେ । ଦୀର୍ଘ କାଳ ଧରି ମଧୁସୂଦନ ଯୁଝି ଚାଲିଥିଲେ ମୃତ୍ୟୁ ସହିତ । ମନରେ ଅପରାଜେୟ ଶକ୍ତି ତାଙ୍କୁ ସଂଜୀବିତ କରି ରଖିଥିଲା ସୁଦୀର୍ଘ କାଳଲାଗି । ତାଙ୍କର ତିରୋଧାନ ଲାଗି ମାତ୍ର ବାକି ରହିଥାଏ ଏକ ବର୍ଷରୁ କମ୍ ସମୟ । ନିଜର କୃତି ସଂପର୍କରେ ଆକଳନ କରିବା ଦୁଃସାଧ୍ୟ ହୋଇ ପଡ଼ିଥିଲା ଉତ୍ତରଦାୟାଦମାନଙ୍କୁ । ବହୁ ବକ୍ତବ୍ୟ ରହିଯାଇଥିଲା ଗୋପ୍ୟ ଆଉ ଅନୁଚ୍ଚାରିତ ।

ଭୁବନାନନ୍ଦ ଦାସ ସଭାରେ ଅଧ୍ୟକ୍ଷତା କରି, ମଧୁସୂଦନଙ୍କୁ ସ୍ୱାଗତ ଜଣାଇ କହିଥିଲେ, 'ଆମର ପରମ ସୌଭାଗ୍ୟ ଯେ ଦେଶ ମିଶ୍ରଣ ଆନ୍ଦୋଳନର ବହୁ ପ୍ରବୀଣ ନେତୃବର୍ଗ ପରଲୋକଗତ ହୋଇଯାଇଥିଲେ ମଧ୍ୟ , ଏହି ଦୁର୍ଦ୍ଧର୍ଷ ସଂଗ୍ରାମର ଆଦ୍ୟ ପୁରୁଷ ମଧୁସୂଦନ ଦାସ ସତତ ଅଗ୍ରଣୀ ଭୂମିକାରେ ଅବତୀର୍ଣ୍ଣ ହୋଇ ନିରନ୍ତର ମାର୍ଗଦର୍ଶନ ପ୍ରଦାନ କରି ଆସୁଛନ୍ତି । ଏହି ସଂଗ୍ରାମ ଏକ ବିଭ୍ରାନ୍ତି ମଧ୍ୟରେ ଗତି କରୁଅଛି । ତାଙ୍କର ଅନୁପ୍ରେରଣା ଆଜିର ଏକାନ୍ତ ଆବଶ୍ୟକତା ।

ମଧୁସୂଦନ ପହଞ୍ଚିଥିଲେ ସଭାମଞ୍ଚରେ ଏକ ଦୁର୍ନିବାର ଉତ୍ତେଜନାର ବଶବର୍ତ୍ତୀ ହୋଇ । ଏଥିପାଇଁ ତାଙ୍କର ପ୍ରାକ୍ ପ୍ରସ୍ତୁତିର କୌଣସି ଆବଶ୍ୟକତା ନଥିଲା । ଯାହାଙ୍କର କପୋଳ ଅସଂଖ୍ୟ ଅନୁଭୂତିର ଜ୍ୱାଳାରେ ରେଖାଙ୍କିତ ଥିଲା, ତାଙ୍କପାଇଁ ପ୍ରସ୍ତୁତି ପର୍ବର କ'ଣ ବା ଥିଲା ପ୍ରୟୋଜନ ? ସେ ସ୍ୱୟଂ ଥିଲେ ଦେଶ ମିଶ୍ରଣ ସଂଗ୍ରାମର ମୂର୍ତ୍ତିମନ୍ତ ଅବତାର । ସେ ନିରବଚ୍ଛିନ୍ନ ଭାବରେ ଦେଢ଼ଘଣ୍ଟାରୁ ଊର୍ଦ୍ଧ୍ୱକାଳ ସ୍ୱତଃସ୍ଫୂର୍ତ୍ତ ଭାବେ ଇଂରାଜୀରେ ବଜ୍ର ନିର୍ଘୋଷ କଣ୍ଠରେ ଭାଷଣ ପ୍ରଦାନ କରି ଚାଲିଥିଲେ-

''ମୁଁ ଯେତେବେଳେ ଏହି ସଂଘର୍ଷପୂର୍ଣ୍ଣ ସଂଗ୍ରାମର ପୃଷ୍ଠଭୂମିକୁ ପର୍ଯ୍ୟାଲୋଚନା କରେ କଅଣ ବା ଦେଖିବାକୁ ପାଏ ? ମୁଁ ଯେତେବେଳେ ଏହି ଆନ୍ଦୋଳନ ଆରମ୍ଭ କଲି ଜାତି (ଓଡ଼ିଆ) ବୋଲି କିଛି ନଥିଲା । ମୁଁ ସେତେବେଳେ ସର୍ବତ୍ର ଶୁଷ୍କ କଙ୍କାଳ ଆଉ ଅସ୍ଥିମାନଙ୍କର ସ୍ତୂପୀକୃତ ପାହାଡ଼ମାନଙ୍କୁ ହିଁ ଦେଖୁଥିଲି, କେବଳ ଅସ୍ଥି, ଅସ୍ଥି, ଅସ୍ଥି, ଆଉ ଅନ୍ୟ କିଛି ନୁହେଁ କେବଳ ହିଁ ଅସ୍ଥି । ମତେ ସେହି ନିର୍ଜୀବ ଶୁଷ୍କ ଅସ୍ଥିକଂକାଳ ମଧ୍ୟରେ ଜୀବନର ସଂଚାର କରିବାକୁ ପଡ଼ିଥିଲା । ଆଉ ସେହି ଅସ୍ଥିସାର କଙ୍କାଳ ମଧ୍ୟରେ ମତେ ମାଂସପେଶୀକୁ ସଂଯୁକ୍ତ କରିବାକୁ ପଡ଼ିଲା । ସେହି ଶୀର୍ଣ୍ଣ ହସ୍ତମାନଙ୍କୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବା ସହିତ ସେମାନଙ୍କୁ ଘେନି ମୋତେ ଦୁର୍ଦ୍ଧର୍ଷ ସଂଗ୍ରାମରେ ଅବତୀର୍ଣ୍ଣ ହେବାକୁ ପଡ଼ିଲା । ଊର୍ଦ୍ଧ୍ୱରୁ ଭଗବାନଙ୍କର ବ୍ୟତୀତ ଏହି ଦୁରୂହ କାର୍ଯ୍ୟରେ ମତେ ଆଉ କେହି ସାହାଯ୍ୟ ପ୍ରଦାନ କରି ନଥିଲେ ।

ଏହାଥିଲା ୧୯୩୩ ସାଲର ଫେବ୍ରୁଆରି ତେର ତାରିଖ । ସେ କହିଚାଲିଥିଲେ-

''ମୁଁ ଅନେକ ଦିନର ଅନ୍ତରାଳରେ ଏଠାରେ ଦଣ୍ଡାୟମାନ ହୋଇଛି , ଯେତେବେଳେ ମୋର ସୁଦୀର୍ଘ ଦିନର ଅଭିଳଷିତ ଆକାଙ୍କ୍ଷା ପରିପୂର୍ଣ୍ଣତା ଲାଭ କରିବାକୁ ଯାଉଛି । ମୁଁ ଏହି ଦୁଃସାଧ୍ୟ ସଂଗ୍ରାମର ଶୁଭାରମ୍ଭ କରିବାପରେ, ଆମ୍ଭମାନଙ୍କୁ ବହୁ କ୍ଲେଶଯୁକ୍ତ ସମୟ ମଧ୍ୟଦେଇ ଗତି କରିବାକୁ ପଡ଼ିଛି । ମତେ ବହୁ ଦୁର୍ଦ୍ଦାନ୍ତ ପୁରୁଷଙ୍କ ସମ୍ମୁଖୀନ କରିବାକୁ ପଡ଼ିଥିଲା, ଯେଉଁମାନେ ଅର୍ଥ, ସଂପତ୍ତି ଓ ବୁଦ୍ଧିମତ୍ତାରେ ମୋଠାରୁ ଅଧିକ ପ୍ରମତ୍ତ ଆଉ ଶକ୍ତିଶାଳୀ ଥିଲେ । ଊର୍ଦ୍ଧ୍ୱରେ ଭଗବାନ ଆଉ ଅନ୍ତରରେ ପ୍ରାଜ୍ଞଚେତନାକୁ ସ୍ଥାପିତ କରି ମତେ ଏକାକୀ ହିଁ ଏହି ନିଦାରୁଣ ଯୁଦ୍ଧ ଯୁଝିବାକୁ ପଡ଼ିଥିଲା । ଥରେ ସହସା ମନର ଅନ୍ତରାଳରେ ଏକ ଦୁର୍ଦ୍ଦମନୀୟ ଭାବ ଉଦିତ ହେଲା ଯେ, ମୋତେ ବିଧାତା ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ (ସ୍ନାତକ)ର ଗୌରବ ପ୍ରଦାନ କରିବାର ପଶ୍ଚାତରେ କିଛି ମହତ ଉଦ୍ଦେଶ୍ୟ ନିହିତ ଅଛି । ତାହାଥିଲା ବିଭାଜିତ ଓଡ଼ିଆ ଜାତିର ମିଶ୍ରଣ । ମୁଁ ଏହି ବିଷୟରେ ଚିନ୍ତାକଲି ଆଉ ଉପଲବ୍ଧି କଲି ଯେ ଏହି ଜାତିର ଇତିହାସର ପଶ୍ଚାତରେ ଏହି ଯେଉଁ

ଗୌରବର ଗାଥା ଆଉ ଉତ୍କର୍ଷ ନିହିତ ଅଛି, ଯାହା ବିଶ୍ୱର ଅନ୍ୟ କୌଣସି ଜାତିକୁ ମଧ୍ୟ ଉଦ୍‌ବୁଦ୍ଧ କରିଥାନ୍ତା । ମୋର ଜାତିପାଇଁ ମୋତେ କିଛି କର୍ତ୍ତବ୍ୟ ସଂପାଦନ କରିବାକୁ ପଡ଼ିବ । ମାତ୍ର ମୁଁ ଯେ ଏକାକୀ, ସଂପୂର୍ଣ୍ଣ ଭାବେ ଏକୁଟିଆ । ପ୍ରତ୍ୟେକ ଓଡ଼ିଆ ରାଜା ନିଜକୁ ଓଡ଼ିଆ ରୂପେ ପରିଚିତ କରାଇବାପାଇଁ ନିଜକୁ ଲଜ୍ଜିତବୋଧ କରୁଥିଲେ ଆଉ ସ୍କୁଲ୍‌ରେ ଓଡ଼ିଆ ଛାତ୍ରମାନେ ନିଜକୁ ବଂଗାଳୀ ବୋଲି ଆଖ୍ୟାୟିତ କରୁଥିଲେ ।''

ମଧୁସୂଦନ ସର୍ବଦା ନିଜସ୍ୱ ସମ୍ବର୍ଦ୍ଧନା ଗ୍ରହଣ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଆସୁଥିଲେ ।

ଏହାର ପ୍ରାୟ ଦୁଇବର୍ଷ ପୂର୍ବର ଘଟଣା ପ୍ରବାହ । ମଧୁସୂଦନ ୧୮୮୧ ସାଲରେ କଲିକତାରୁ ଫେରି କଟକରେ ଓକିଲାତି ବୃତ୍ତିର ପ୍ରାରଂଭ କରିଥିଲେ । ଏହାର ଅର୍ଦ୍ଧଶତାବ୍ଦୀ ପୂର୍ତ୍ତି ହେଉଥିଲା ୧୯୩୧ ସାଲରେ । ଏହି ଉପଲକ୍ଷେ କଟକ ବାର୍ ଆସୋସିଏସନ୍ ପକ୍ଷରୁ ତାଙ୍କୁ ସମ୍ବର୍ଦ୍ଧନା ପ୍ରଦାନ ପାଇଁ ଏକ ପ୍ରସ୍ତାବ ଆଗତ ହୋଇଥିଲା । ସେହି ପ୍ରସ୍ତାବକୁ ଦୃଢ଼ଭାବରେ ପ୍ରତ୍ୟାଖ୍ୟାନ କରିଥିଲେ ମଧୁସୂଦନ । ଏହାର ପ୍ରତ୍ୟୁତ୍ତରରେ ଜଣେ ନେତୃପୁରୁଷଙ୍କର ଜୀବନର ନିରପେକ୍ଷ ମୂଲ୍ୟାୟନପାଇଁ ଏକ ମାପଦଣ୍ଡର ସେ ନିର୍ଦ୍ଧାରଣ କରିଥିଲେ , ଯାହାକୁ ଆଧାର କରି ସର୍ବକାଳୀନ ଭିତ୍ତିରେ ତାହାର ନିରୂପଣ କରାଯାଇପାରେ । ମଧୁସୂଦନଙ୍କ ବକ୍ତବ୍ୟ ଥିଲା- ''ଯେଉଁ ଯୁଗରେ ଜଣେ ନେତୃପୁରୁଷ ଜନ୍ମଲାଭ କରିଛି, ସେହି ଯୁଗର ଇତିହାସରେ ତାହାର ସ୍ଥାନ ନିର୍ଣ୍ଣିତ ହେବା ଉଚିତ ନୁହେଁ । କାରଣ ସେହି ଯୁଗର ବ୍ୟକ୍ତିମାନଙ୍କ କଳୁଷିତ ଦୃଷ୍ଟିଭଂଗୀରେ ତାଙ୍କର ମୂଲ୍ୟାୟନ ସଂଭବ ନୁହେଁ । **X X X** ମାତ୍ର ପରବର୍ତ୍ତୀ ଯୁଗରେ ଦେଶବାସୀ ବିଚାର କରିଦେଖିବେ ୧. ଏହି ନେତୃପୁରୁଷ ଉପରେ ଜାତି କି ଗୁରୁଦାୟିତ୍ୱ ନ୍ୟସ୍ତ କରିଥିଲା, ତାହାକୁ କି କ୍ଷମତା ଅର୍ପଣ କରିଥିଲା । ୨. ବିପଦ ଓ ଧ୍ୱଂସ ସମ୍ମୁଖରେ ତାହାର ନେତୃତ୍ୱକୁ ଚାହିଁଥିଲା କି ନାହିଁ, ବିଶ୍ୱାସ ରଖିଥିଲା କି ନାହିଁ । ୩. ଏହାଙ୍କର ନିଷ୍ପତ୍ତି ଉପରେ ଜାତିର ଇତିହାସର ଗତି ନିର୍ଭର କରୁଥିଲା କି ନାହିଁ । ଏହି ସମସ୍ତ ବିଷୟ ପରବର୍ତ୍ତୀ ଯୁଗରେ ଲୋକଙ୍କ ଦ୍ୱାରା ନିରୂପିତ ନହେବା ପର୍ଯ୍ୟନ୍ତ କୌଣସି ନେତୃପୁରୁଷଙ୍କର ସ୍ଥାନ ଇତିହାସରେ ନିର୍ଣ୍ଣିତ ହେବା ଉଚିତ ନୁହେଁ ।'' ଏହା ଥିଲା ମଧୁସୂଦନଙ୍କର କାଳୋତୀର୍ଣ୍ଣ ମାପଦଣ୍ଡରେ ନେତୃପୁରୁଷଙ୍କ ଜୀବନର ଯଥାର୍ଥ ମୂଲ୍ୟାୟନ ।

ନିଜ ଜୀବନର ମୂଲ୍ୟାୟନ ପାଇଁ ସତତ ଅନାଗ୍ରହୀ ଥିବା ମଧୁସୂଦନ, ୧୯୩୩ ସାଲର ଫେବୃଆରି ତେର ତାରିଖରେ ନିଜର ସଂପୂର୍ଣ୍ଣ ଅଗୋଚରରେ ନିଜ ଜୀବନର ମୂଲ୍ୟାୟନ କରି ଚାଲିଥିଲେ ତୀକ୍ଷ୍ଣ କ୍ଷୁରଧାରରେ ପଦଚାଳନା ଭଳି ପରିପୂର୍ଣ୍ଣ ନିରପେକ୍ଷତାର ପରିଧି ମଧ୍ୟରେ । ତାଙ୍କର ପ୍ରଦତ୍ତ ପରବର୍ତ୍ତୀ ବକ୍ତବ୍ୟ ସବୁ ଏହିପରି ଥିଲା, ସେହି ଶୀତଳ ପୂର୍ବାହ୍ନର କାଳଜୟୀ ମୁହୂର୍ତ୍ତରେ, ଯେଉଁ ବେଳାରେ ସମୟ ମଧ୍ୟ ଗତି ହରାଇ ସ୍ଥିର ହୋଇ ଯାଇଥିଲା ।

''ଥରେ ଜଣେ ପ୍ରଖ୍ୟାତ ରାଜା, ଯାହାଙ୍କର ନାମରେ ଏହି ସୁବିଦିତ ସଭାଗୃହଟି ନାମିତ ହୋଇଛି, ସେ ବଂଗ ଦେଶରେ ବଂଗାଳୀ ରୂପେ ପ୍ରସିଦ୍ଧି ଲାଭ କରିଥିଲେ । ହେ ଶ୍ରୋତାବର୍ଗ ! ଆପଣ ମନେରଖିବୁ ଦିନେ ରାତ୍ର ଆଠଘଟିକାଠାରୁ ରାତ୍ରି ଗୋଟାଏ ପର୍ଯ୍ୟନ୍ତ, ତାଙ୍କ ସହିତ ଗଭୀର ପର୍ଯ୍ୟାଲୋଚନା ସମୟରେ କହିଥିଲି, ''ହେ ରାଜନ୍ ! ମୁଁ ଆପଣଙ୍କୁ ଆଜି ଓଡ଼ିଆ ରୂପେ ପରିଚିତ

କରାଇବାକୁ କୃତସଂକଳ୍ପ । ସେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ସଭାପତିର ଆସନ ଅଳଂକୃତ କରିଥିଲେ । ମାତ୍ର ଗଡ଼ଜାତର ସୁପରିଟେଣ୍ଡେଣ୍ଟ, ଏହି ଗଡ଼ଜାତ ରାଜ୍ୟର ଓଡ଼ିଆ ରାଜାମାନଙ୍କୁ, ଉତ୍କଳ ସମ୍ମିଳନୀର ସଭାରେ ଯୋଗଦେବାପାଇଁ ନିଷିଦ୍ଧ କରିଥିଲେ, ଯେଉଁଠାରେ ଉତ୍କଳୀୟମାନେ ଏକତ୍ରିତ ହୋଇ ନିଜକୁ ଏକତାର ସୂତ୍ରରେ ନିବଦ୍ଧ ରହିବାକୁ ପ୍ରତିଶ୍ରୁତିବଦ୍ଧ ଥିଲେ । ସୁପରିଟେଣ୍ଡେଣ୍ଟ ନିର୍ଦ୍ଦେଶ ଦେଇଥିଲେ ଯେ 'ମିଷ୍ଟର ଦାସଙ୍କର ସଭାରେ କେହି ଯୋଗଦାନ କରନାହିଁ ।''

ବହୁଦିନର ଗହଳ ସ୍ମୃତି ମଧ୍ୟରୁ ଉଜାଣି ବହି ଆସୁଥାଏ କିଛି ଯୁଗାନ୍ତକାରୀ ଘଟଣାବଳୀ । ଉନବିଂଶ ଶତାବ୍ଦୀର ଶେଷ ପାଦରେ ୧୮୯୯ ସାଲରେ ଯୋଗ ଦେଇଥାନ୍ତି ଭାରତର ବଡ଼ଲାଟ ଭାବରେ ସଂସ୍କୃତି ଓ ପ୍ରତ୍ନତତ୍ତ୍ୱ ଅଭିରୁଚି ରଖିଥିବା ଅଭିଜାତ ପୁରୁଷ ଲର୍ଡ଼ କର୍ଜନ । ସେହି ବଡ଼ଲାଟଙ୍କ ପାଖକୁ ମଧୁସୂଦନ ଲେଖିଥିଲେ ଯୁକ୍ତିରେ ଶାଣିତ କରି ଏକ ଦୀର୍ଘ ଦାବିପତ୍ର, ଓଡ଼ିଆ ଜାତିର ଅସ୍ତିତ୍ୱ ତଥା ମୁକ୍ତି ପାଇଁ । ମଧୁସୂଦନଙ୍କର କଣ୍ଠ ଉଦ୍‌ବେଳିତ ହୋଇଯାଇଥିଲା ସେହି ଘଟଣାର ବର୍ଣ୍ଣନାରେ-

''ମୁଁ ଲର୍ଡ଼ କର୍ଜନଙ୍କୁ ପ୍ରେରିତ ଏକ ପତ୍ରରେ ଲେଖିଥିଲି, ''ଆପଣ ଏହି ଚିଠି ପଢ଼ିବାର ସମ୍ଭାବନା ନାହିଁ, ତେଣୁ ଏହା ହୁଏତ ଆପଣଙ୍କର ଜୋତା ତଳେ ସ୍ଥାନ ପାଇପାରେ । ଯେ ଏହି ପତ୍ର ପାଠକରୁ , ସେ ଅବଗତ ହେବ, ମୋର ଓଡ଼ିଆ ଜାତିପ୍ରତି କର୍ତ୍ତବ୍ୟ ରହିଛି । ଏ ଜାତିର ଅନ୍ତର୍ଦାହ ଓ ମର୍ମବେଦନା, ମୁଁ ଆପଣଙ୍କୁ ଜଣାଇବାକୁ ଇଚ୍ଛାକରୁଛି ।'' ମୁଁ ବଡ଼ଲାଟଙ୍କର ପ୍ରାଇଭେଟ ସେକ୍ରେଟେରୀଙ୍କଠାରୁ ଗୋଟିଏ ପ୍ରତ୍ୟୁତ୍ତର ପାଇଲି । ସେ ମୋର ପ୍ରେରିତ ଚିଠି ବିଷୟରେ ଲେଖିଥିଲେ ଯେ, ''ଆପଣ ଜଣେ ଦକ୍ଷ ଆଉ ସଂସ୍କୃତିସମ୍ପନ୍ନ ପୁରୁଷ, ଏଣୁ ଆପଣ ଆସନ୍ତୁ । ବଡ଼ଲାଟ ଏହି ବିଷୟରେ ଆପଣଙ୍କ ସହିତ ଆଲୋଚନା କରିବାକୁ ଚାହାନ୍ତି ।'' ବଡ଼ଲାଟ ଜଣେ ପୁରଦୃଷ୍ଟିସମ୍ପନ୍ନ ଦୃଢ଼ ବ୍ୟକ୍ତି ଥିଲେ, ମାତ୍ର ତାଙ୍କଠାରେ କିଛି ଯଥେଚ୍ଛାଚାର ଗୁଣ ରହିଥିଲେ ମଧ୍ୟ, ତାଙ୍କର ଏକ ସମ୍ବେଦନଶୀଳ ହୃଦୟ ଥିଲା । ''

''ହୁଏତ ସେ ପ୍ରଥମ ଦେଖାରେ ଭାବିଥିବେ, ମୁଁ ଜଣେ ବୋକା ବ୍ୟକ୍ତି ବୋଲି । ମାତ୍ର ସେ ମୋ'ଠାରେ ଜଣେ ଗଭୀର ଦେଶବତ୍ସଳ ବ୍ୟକ୍ତିତ୍ୱ ଓ ସ୍ୱଜାତି ପ୍ରାଣ ହୃଦୟ ପାଇଥିଲେ । ମୁଁ ଓଡ଼ିଆ ଜାତିର ମର୍ମନ୍ତୁଦ ସ୍ଥିତି ବିଷୟରେ ଯେତେବେଳେ ଉପସ୍ଥାପନା କଲି, ସେତେବେଳେ ମୋର ନୟନଯୁଗଳ ଲୋତକାପ୍ଲୁତ ହୋଇ ଧାରଧାର ଅଶ୍ରୁ ବହି ଯାଇଥିଲା । ଆଉ କଣ୍ଠ ମଧ୍ୟ ଅତୀବ ବିହ୍ୱଳିତ ହୋଇଥିଲା । ମୁଁ କହିଲି, ମୁଁ ସେତେବେଳେ ବଂଗଳାର ଏକମାତ୍ର ଓଡ଼ିଆ ଛାତ୍ର ଥିଲି, ଆଉ ସମସ୍ତ ଲାଞ୍ଛନା, ତାଚ୍ଛଲ୍ୟ ଆଉ ଉପହାସ ମୋ' ଉପରେ ଆରୋପିତ ହୋଇଥିଲା । ପ୍ରତି ମୁହୂର୍ତ୍ତରେ ମୋତେ 'ମଧୁ ଉଦେ' ବୋଲି ଉପହାସିତ କରି ସେମାନେ ମତେ ଲାଞ୍ଛନାର ତୀବ୍ର ଜ୍ୱାଳାରେ ସର୍ବଦା ମର୍ମାହତ କରି ଚାଲିଥିଲେ । ବଡ଼ଲାଟ ମହୋଦୟ ମିଲିଟାରୀ ସେକ୍ରେଟାରୀଙ୍କୁ ଆହ୍ୱାନ କଲେ ଆଉ ପଚାରିଲେ ଓଡ଼ିଶାରେ ସର୍ବୋଚ୍ଚ ପ୍ରାଶାସନିକ ଅଧିକାରୀ କିଏ ଅଛନ୍ତି ? ଏହାର ଉତ୍ତର ପାଇଲା ପରେ ଲର୍ଡ଼ କର୍ଜନ କହିଲେ 'ଓଡ଼ିଶାର କମିଶନରଙ୍କୁ ବାର୍ତ୍ତାପ୍ରେରଣ

କର ଯେ ମୁଁ ଓଡ଼ିଶା ପରିଦର୍ଶନରେ ଆସୁଅଛି ।' ବଡ଼ଲାଟଙ୍କର ପରିଦର୍ଶନ ଉପଲକ୍ଷେ ପୁରୀଠାରେ ଗୋଟିଏ ଭବ୍ୟ ଦରବାରର ଆୟୋଜନ ହୋଇଥିଲା, ମାତ୍ର ମୋ' ପରି ବ୍ୟକ୍ତିଙ୍କପାଇଁ ସେଠାରେ ସ୍ଥାନ ନଥିଲା । ସେ ମୋ' ବିଷୟରେ ଅନୁସନ୍ଧାନ କଲେ ଆଉ ପ୍ରଶ୍ନ କଲେ, 'ମିଷ୍ଟର ଦାସ କାହାନ୍ତି ?'

ହଁ, ମଧୁସୂଦନ ଏଥର ତାଙ୍କର କାଳଜୟୀ ଅଭିଭାଷଣରେ ସେହି ଗୌରବଦୀପ୍ତ ଘଟଣା ପ୍ରବାହକୁ ଉପସ୍ଥାପିତ କରୁଛନ୍ତି ଅତୀବ ବିହ୍ୱଳିତ ଆଉ ବଜ୍ର ନିର୍ଘୋଷ କଣ୍ଠରେ, ଯାହା ଶ୍ରୋତୃମଣ୍ଡଳୀକୁ ନବ ଉଦ୍ଦୀପନାରେ ରସାଣିତ ଆଉ ମନ୍ତ୍ରମୁଗ୍ଧ କରି ଦେଇଥିଲା ।

''ଲର୍ଡ଼ କର୍ଜନଙ୍କର ମହନୀୟ ଉଦ୍ଦେଶ୍ୟ ଥିଲା ଓଡ଼ିଶା ଜାତି ପ୍ରତି ହୋଇଥିବା ସମସ୍ତ ଭୁଲ ସିଦ୍ଧାନ୍ତର ପ୍ରତିବିଧାନ କରିବା । ସେ ଓଡ଼ିଆଭାଷୀ ଅଂଚଳ ସଂପର୍କୀୟ ସମସ୍ତ ଦଲିଲ୍ ଆଉ କାଗଜପତ୍ର ଆଣିବା ପାଇଁ ଆହ୍ୱାନ କଲେ ଏବଂ ଏହାର ଆଧାରରେ ଯେଉଁସବୁ ଅଂଚଳରେ ମିଶ୍ରଣ ହେବ ତାହାର ସିଦ୍ଧାନ୍ତ ଗ୍ରହଣ କଲେ । ପାରଳାଖେମୁଣ୍ଡି ପ୍ରଶ୍ନର ଉତ୍ଥାପନ କରିବା ପାଇଁ ସେତେବେଳେ କୌଣସି ଆର୍ବଶ୍ୟକତା ନଥିଲା । ଏହାର କିଛିକାଳ ପରେ ମାନ୍ଦ୍ରାଜର ଲାଟ କାର୍ଯ୍ୟକାରୀ ବଡ଼ଲାଟ ହେଲେ । ମୁଁ ତାହାଙ୍କୁ ପ୍ରଶ୍ନ କଲି, ଏହି ମକଦ୍ଦମାରେ ଆପଣ ଜଣେ ପକ୍ଷ । ଏହିଭଳି ସ୍ଥିତିରେ ମୋର ଏହି ମକଦ୍ଦମାରେ ରାୟଦେବା ପାଇଁ ଅଧିକାର ଇଂରେଜୀ ପ୍ରଣୋଦିତ ନ୍ୟାୟବିଧି ଅନୁସାରେ ଆପଣଙ୍କର ନାହିଁ । ମୁଁ କାର୍ଯ୍ୟକାରୀ ବଡ଼ଲାଟଙ୍କୁ ପଚାରିଲି, ଏହା ପ୍ରକୃତରେ କ'ଣ ନ୍ୟାୟ ନୀତି ଉପରେ ପର୍ଯ୍ୟବସିତ ? ତୁମ୍ଭେ ଏବେ କେଉଁଠି ଦଣ୍ଡାୟମାନ ? କର୍ଜ୍ଜନଙ୍କ ସମୟରେ ମୁଁ ଯେଉଁଠାରେ ଦଣ୍ଡାୟମାନ ହୋଇ ରହିଥିଲି, ଏବେ ମଧ୍ୟ ସେହିଠାରେ ଦଣ୍ଡାୟମାନ ହୋଇ ରହିଛି । ସେତେବେଳେ ଆମର ଯେଉଁ ଦାବି ଥିଲା ବର୍ତ୍ତମାନ ମଧ୍ୟ ସେହି ଦାବି ରହିଛି । ସେହିଠାରୁ ପୁଣି ଆମେ ଆନ୍ଦୋଳନ ଆରମ୍ଭ କରୁଛୁ । ପାରଳାଖେମୁଣ୍ଡିର ପ୍ରଶ୍ନ ଆଦୌ ଉଠୁନାହିଁ । ଜାତିର ଦୃଢ଼ନ୍ତ ଚେତନାକୁ ଉଦ୍‌ବୁଦ୍ଧ କରନ୍ତୁ । ତାହା ଉଦ୍ଦୀପିତ ଜାଗରଣରେ ନିଶ୍ଚୟ ପ୍ରଜ୍ୱଳିତ ହେବ ।

ମୋର କର୍ଣ୍ଣର ଗହ୍ୱରରେ ପ୍ରତିଧ୍ୱନିତ ହେଉଛି ତାହାର ଉଦାତ୍ତ ମହିମାଦୀପ୍ତ ଆହ୍ୱାନ ।

ଯା'ର ଜୟଭେରୀ ଗଂଗା ଗୋଦାବରୀ

ଶୁଣିଥିଲେ ଚକିତେ

ଓଡ଼ିଆ ବୋଲିଣ ଘୃଣିତ ଏତେ ଦିନେ ।

ତୁମ୍ଭର ଜୀବନକୁ ଜାତୀୟ ଯଜ୍ଞବେଦୀରେ ସମର୍ପିତ କର । ପୂର୍ବ ଇତିହାସର ସେହି ଶୌର୍ଯ୍ୟତାର ଗୌରବଦୀପ୍ତ ବେଳାରେ ଜାତି ଯେଉଁଭଳି ଦୁର୍ବାର ସଂଗ୍ରାମ କରିଥିଲା, ସେହି ଗରିମାମୟ ସ୍ଥିତିକୁ ପ୍ରାପ୍ତକର । ''

ମଧୁସୂଦନଙ୍କର ସେହି ବଜ୍ର ନିର୍ଘୋଷ କଣ୍ଠରେ ଏହି ଉଦ୍‌ଘୋଷଣା ପ୍ରତିଧ୍ୱନିତ ହୋଇଥିଲା ପ୍ରମତ୍ତ ଉଦ୍ଦାମତାରେ । ଏକ ବିପୁଳ ଉଦ୍ଦୀପନା ସଭାସ୍ଥଳକୁ ପ୍ରକମ୍ପିତ କରିଥିଲା । ମଧୁସୂଦନ ଭାବର ପ୍ରଖର ଉନ୍ମାଦନାରେ ଯେପରି ନିଜର ସ୍ଥିତି ହରାଇ ବସୁଥାନ୍ତି । କ୍ରମଶଃ ତାହାଙ୍କର ସ୍ୱର ନମ୍ରତା ଆଉ ସ୍ନିଗ୍ଧତା ଲାଭକଲା । ପୁଣି ସେ କହି ଚାଲିଲେ-

''ଇଂରେଜୀମାନେ ବ୍ୟବସାୟୀ ଆଉ ବାଣିଜ୍ୟରେ ଆଗ୍ରହ ପ୍ରକାଶ କରୁଥିବା ଗୋଟିଏ ଜାତି। ସେମାନଙ୍କର ମୂଳଲକ୍ଷ୍ୟ ଥିଲା ଅର୍ଥର ଆହରଣ । ତାହାଙ୍କର ଅଧୀନରେ କାର୍ଯ୍ୟରତ ଇଂରେଜୀ ଅଧିକାରୀଗଣଙ୍କର ଭାରତୀୟ ଭାଷା ସଂପର୍କରେ ବିଶେଷ ଜ୍ଞାନ ନଥିଲା । ବଂଗାଳୀମାନେ ମୁସଲମାନ ରାଜତ୍ୱରେ ସରକାରୀ ପରିଚାଳନାର ବିଧିବ୍ୟବସ୍ଥା ଆଉ ପ୍ରାଶାସନିକ କୌଶଳ ପ୍ରୟୋଗର ଚକ୍ରାନ୍ତ ବିଷୟରେ ଅବଗତ ଥିଲେ । ଏହି ସମୟରେ ବ୍ରିଟିଶମାନେ ଏକ ବିପଦଶଙ୍କୁଳ ବ୍ୟବସ୍ଥାର ପ୍ରଚଳନ କଲେ । ସେମାନେ ବଂଗାଳୀମାନଙ୍କୁ ମଧ୍ୟବର୍ତ୍ତୀ ଶାସକ ଗୋଷ୍ଠୀରୂପେ ନିଯୁକ୍ତ କଲେ । ଓଡ଼ିଆମାନଙ୍କର ଅନ୍ତର୍ନିହିତ ସ୍ୱାର୍ଥର ବିରୋଧୀ ଥିଲେ ବଂଗାଳୀମାନେ । ବର୍ତ୍ତମାନ କେତେ ବର୍ଷ ତଳେ ବ୍ରିଟିଶମାନେ ପ୍ରକୃତ ସ୍ଥିତି ସଂପର୍କରେ ଅବଗତ ହେଲେ । ସେମାନେ ଉପଲବ୍ଧି କଲେ ଯେ ଏହି ସମସ୍ତ ବ୍ୟବସ୍ଥା ବିଧିବଦ୍ଧ ଡକାୟତି ଛଡ଼ା ଅନ୍ୟ କିଛି ନୁହେଁ । ସେମାନେ ଏକ ଦିଗରେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ଅନ୍ୟ ଦିଗରେ ବଂଗାଳୀମାନେ ଇଂରେଜୀମାନଙ୍କ ମାଧ୍ୟମରେ ଆମ୍ଭମାନଙ୍କୁ ଅବନତ କରି ରଖିଥିଲେ । ମୁଁ ଏହି ବ୍ୟବସ୍ଥାର ପରିବର୍ତ୍ତନ ଆଣିବାକୁ ଚେଷ୍ଟାକଲି । ମାତ୍ର ପ୍ରତ୍ୟେକ ପ୍ରାଶାସନିକ ପରିବର୍ତ୍ତନ ଆମ୍ଭମାନଙ୍କୁ ଅସୁବିଧା ଆଡ଼କୁ ଟାଣି ନେଉଥିଲା । ତାହାର ପ୍ରତିବିଧାନ କରିବାପାଇଁ ନିରବଚ୍ଛିନ୍ନ ଭାବେ ଉଦ୍ୟମ ସଂଚାଳିତ କରିଥିଲି ।''

''ନ୍ୟାୟ କଅଣ ଦରକାର କରେ ? କର୍ଜନଙ୍କର ନିକଟରେ ଯଥାଯଥ ଆଉ ଧାର୍ଯ୍ୟ ଦାବି ଉପସ୍ଥାପନା କରାଯାଇଥିଲା । ସେହି ସମୟରେ ରେଳପଥ ନଥିଲା । ବର୍ତ୍ତମାନ ବହୁ ଅଂଚଳ ରେଳପଥଦ୍ୱାରା ସଂଯୁକ୍ତ । କିଛି ସମସ୍ୟାର ଦୂରୀକରଣ ସଂପର୍କରେ ଏହା ସଂକ୍ଷିପ୍ତ ବିବରଣୀ । ମୁଁ ଦେଶଲାଗି ମୋର ନ୍ୟାୟୋଚିତ ଦାବିଗୁଡ଼ିକ ଉପସ୍ଥାପନ କରିଥିଲି । ମୋର ଉଦ୍ୟମ ଗୁଡ଼ିକ ଲର୍ଡ଼ କର୍ଜନଙ୍କର ଦ୍ୱାରା ଫଳବତୀ ହୋଇଥିଲା । ବ୍ରିଟିଶ ଜାତିର ଚେତନାକୁ ଜାଗରିତ କର ଆଉ ଉଦ୍‌ବୁଦ୍ଧ କର । ସେମାନଙ୍କର ଦ୍ୱାରଦେଶରେ ଠୁକ୍‌ଠୁକ୍ କରି ଶବ୍ଦକର, କିନ୍ତୁ ଗୋଇଠା ମାରି ଆଘାତ କରନାହିଁ । ସେମାନଙ୍କର ଦ୍ୱାର ନିଶ୍ଚୟ ଖୋଲିବ ।''

ତାହା ଥିଲା ଫେବ୍ରୁଆରି ମାସର ପ୍ରଥମାର୍ଦ୍ଧ । ପ୍ରବଳ ଶୀତର ପ୍ରଚଣ୍ଡ ଆକ୍ରମଣରେ ଶରୀର ପ୍ରକମ୍ପିତ ହୋଇ ଉଠିଥିଲା । ଆଉ କୋହଲା ଉତ୍ତରା ପବନ ବହି ଚାଲିଥିଲା ଅବିରାମ ଗତିରେ ଆନମନା ହୋଇ ତାହା ପ୍ରବେଶ କରିଥିଲା ଅବାରିତ ଗତିରେ ସଭାକକ୍ଷର ସୁଦୃଶ୍ୟ ଅଳିନ୍ଦମାନଙ୍କରେ, ଉତ୍ତଳା ଶୀତର ଶିହରଣରେ ସଭିଙ୍କୁ ଜଡ଼ୀଭୂତ କରି । ମାତ୍ର ମଧୁସୂଦନଙ୍କର ଜ୍ୱାଳାମୟୀ ବକ୍ତବ୍ୟ ଛୁଟିଚାଲିଥିଲା ଅପ୍ରତିହତ ଭାବରେ ।

''ମୁଁ ଏହି ମହାନ ଜାତୀୟ ସମାବେଶରେ ଅଦ୍‌ଭୁତ ବେଶଭୂଷା ପିନ୍ଧି ଦଣ୍ଡାୟମାନ ରହିଛି । ମୁଁ ସମସ୍ତଙ୍କ ମଧ୍ୟରେ ଅତୀବ ବୃଦ୍ଧ । ଶୀତର ପ୍ରକୋପରୁ ରକ୍ଷାପାଇବା ପାଇଁ ମୋତେ ନିଜକୁ ଉଷ୍ମ ରଖିବାକୁ ପଡୁଛି । ମତେ ଦିନକୁ ତିନିଥର ଇଲେକ୍‌ଟ୍ରିକ୍ ଉତ୍ତାପ ନେବାକୁ ପଡୁଛି । ଅନ୍ୟଥା ଦଣ୍ଡାୟମାନ ହୋଇ ରହିବା ମୋ ପକ୍ଷରେ ସମ୍ଭବପର ହୋଇନଥାନ୍ତା ।''

ମଧୁସୂଦନଙ୍କର ଲଣ୍ଡନରେ ଅବସ୍ଥାନ କାଳରେ, ଲଣ୍ଡନର ବିଭିନ୍ନ ମଞ୍ଚରେ ଜ୍ୱାଳାମୟୀ ଭାଷଣ, ଯାହା ସେଠାରେ ସମଗ୍ର ସମ୍ବାଦପତ୍ରରେ ପ୍ରକାଶିତ ହୋଇ ଯେଉଁ ଉଦ୍‌ବେଳନ ସୃଷ୍ଟି କରିଥିଲା, ତାହା ଏପର୍ଯ୍ୟନ୍ତ ଓଡ଼ିଆମାନଙ୍କ ପାଇଁ ଦୁଷ୍ପ୍ରାପ୍ୟ ହୋଇ ରହିଛି । ସେହି ଘଟଣାପ୍ରବାହର କିଛି ସ୍ନାୟୁ ଉତ୍ତେଜନାକାରୀ ବିବରଣୀ ମଧୁସୂଦନ ପ୍ରଦାନ କରିଥିଲେ ତାଙ୍କର ଅଗ୍ନିଗର୍ଭ କଣ୍ଠରେ ।

"ମୁଁ ଆଜି କିଛି ବକ୍ତୃତା ଶୁଣିଛି । ଭାରତର ସୁରକ୍ଷା କ୍ଷେତ୍ରରେ ଓଡ଼ିଶା ସର୍ବାଧିକ ବଳଶାଳୀ ଭୂମିକା ଗ୍ରହଣ କରୁ । ବର୍ତ୍ତମାନ ଆପଣଙ୍କର କାର୍ଯ୍ୟ ଅପେକ୍ଷାକୃତ ସହଜସାଧ୍ୟ ହୋଇଯାଉଛି । ମୁଁ ବ୍ରିଟିଶ ପାର୍ଲାମେଣ୍ଟର ଏକ କକ୍ଷରେ, ହାଉସ୍ ଅଫ୍ କମନ୍‌ର ୭୦ ଜଣ ସଦସ୍ୟଙ୍କ ସହିତ ଓଡ଼ିଶା ତଥା ଭାରତର ସଚିବ ଲର୍ଡ଼ ମର୍ଲେଙ୍କୁ ସାକ୍ଷାତ କରିବା ଉଦ୍ଦେଶ୍ୟରେ ତାଙ୍କର ପ୍ରାଇଭେଟ ସେକ୍ରେଟେରୀଙ୍କୁ ଭେଟିଲି । ଲର୍ଡ଼ ମର୍ଲେ ସର୍ତ୍ତ ରଖିଥିଲେ ଯେ ମଧୁସୂଦନ ଦାସଙ୍କୁ ଓଡ଼ିଆ ଜାତିର ପ୍ରତିନିଧି ଭାବରେ ଭେଟିବାକୁ ଚାହେଁ ନାହିଁ । ମାତ୍ର ମଧୁସୂଦନ ଦାସ ଭାବେ । ସେ ମୋର ସାକ୍ଷାତ କରି ପାରନ୍ତି । ହଁ, ତାହା ହେଲା ,ମୁଁ ଲର୍ଡ଼ ମର୍ଲେଙ୍କୁ ପ୍ରଥମ ସାକ୍ଷାତକାରରେ ଭେଟିଲା ପରେ ତାଙ୍କୁ କହିଲି, ଆପଣମାନେ ଯଥେଚ୍ଛାଚାର ରୀତିରେ ଶାସନ କରି ଇଂରେଜୀ ଜାତିର ପ୍ରତିଷ୍ଠିତ ମହାନ ପରମ୍ପରା ଓ ମର୍ଯ୍ୟାଦାକୁ କ୍ଷୁଣ୍ଣ କରୁଛନ୍ତି । ବିଲାତର ଏହି ଅଧିକାରୀଗଣ ସମ୍ବେଦନଶୀଳ ପ୍ରଶାସନରୀତିରେ ପ୍ରଶିକ୍ଷିତ ହୋଇଥିଲେ ମଧ୍ୟ, ବହୁକ୍ଷେତ୍ରରେ ସ୍ୱେଚ୍ଛାଚାରୀ ଶାସକ ରୂପେ ଭାରତରେ ଅବତୀର୍ଣ୍ଣ ହୋଇ ପ୍ରଶାସନ ଚଳାଉଛନ୍ତି । ରାଣୀ ଭିକ୍ଟୋରିଆଙ୍କୁ ଋଷିଆର ଜାର୍‌ଙ୍କ ସ୍ଥାନରେ ଅବସ୍ଥାପିତ କରନ୍ତୁ । ସେ ନିରର୍ଥକ ଆଉ ଅସଫଳ ହୋଇଯିବେ । ଆଉ ଋଷିଆର ଜାରଙ୍କୁ ଯଦି ବ୍ରିଟିଶ ସିଂହାସନରେ ଅବସ୍ଥାପିତ କରାଯାଏ, ମାତ୍ର ୨୪ ଘଣ୍ଟା ମଧ୍ୟରେ ତାଙ୍କର ଶିରଚ୍ଛେଦ ସଂଘଟିତ ହେବ ।"

ଏହାଥିଲା ୧୯୦୭ ସାଲର ମଧୁସୂଦନଙ୍କର ଦ୍ୱିତୀୟବାର ଲଣ୍ଡନ ଯାତ୍ରାର ବିବରଣୀ, ଯାହା ଲଣ୍ଡନରେ ଏକ ଚାଞ୍ଚଲ୍ୟକର ସ୍ଥିତିର ସୂତ୍ରପାତ କରିଥିଲା । ଏହାର ଅବ୍ୟବହିତ ପରେ ଓଡ଼ିଶାରେ ସର୍ବଗ୍ରାସୀ ବନ୍ୟା ସହିତ କରାଳ ଦୁର୍ଭିକ୍ଷର ଅବସ୍ଥା ସୃଷ୍ଟି ପରେ ବ୍ରିଟିଶ ସାମ୍ବାଦିକ ନାଭିନ୍‌ସନ୍‌ଙ୍କ ସହ ସେ ଓଡ଼ିଶା ପ୍ରତ୍ୟାବର୍ତ୍ତନ କରିଥିଲେ । ଦୁର୍ଭିକ୍ଷଗ୍ରସ୍ତ ଅଂଚଳରେ ମଧୁସୂଦନଙ୍କର ସେବା ପ୍ରଦାନର କାଳଜୟୀ ବିବରଣୀ ନାଭିନ୍‌ସନ୍‌ଙ୍କର New Sprit in India ରେ ସଂକଳିତ ହୋଇଛି । ମଧୁସୂଦନ କହିଚାଲିଲେ "ଗୋଟିଏ ଦାରୁଣ ସଂଶୟର ମୁହୂର୍ତ୍ତ ବର୍ତ୍ତମାନ ଓଡ଼ିଆ ଜାତିର ସମ୍ମୁଖରେ ଉପନୀତ । ମୋର ଶତ୍ରୁପକ୍ଷ ବିଚାରାଳୟରେ ଆସି ଉପସ୍ଥିତ ହୋଇଛନ୍ତି । ଏହା ମୋର ମାନସିକତାକୁ ପ୍ରଚଣ୍ଡ ଆଘାତ ପ୍ରଦାନ କରିଛି । ମାତ୍ର ମୋର ଦୃଢ଼ ବିଶ୍ୱାସ ସେହି ଜଗତାଧିପତିଙ୍କ ଉପରେ ସମର୍ପିତ ଭାବରେ ଆବିଷ୍ଟ ଆଉ ନିବଦ୍ଧ ରହିଛି । କୌଣସି ଜାତିର ଅମଙ୍ଗଳ ଚିନ୍ତା କରନାହିଁ । ଭଗବାନ ତୁମକୁ ଆଶୀର୍ବାଦ ପ୍ରଦାନ କରିବେ । ତୁମେ ଯଦି ନେତୃତ୍ୱ ନେବାପାଇଁ ଆଗ୍ରହାନ୍ୱିତ ହୁଅ, ଅଗ୍ରଭାଗରେ ନିଜକୁ ସଂଚାଳିତ କରନାହିଁ । ଯେତେବେଳେ ଦୁର୍ଦ୍ଧର୍ଷ ଯୁଦ୍ଧ ସଂଯୋଜିତ ହୁଏ, କମାଣମାନେ ତୀବ୍ର ଶବ୍ଦରେ ଗର୍ଜନ କରି ଆକ୍ରମଣ ଜାରି ରଖନ୍ତି, ସେତେବେଳେ ସେନାପତି ବହୁଦୂରରେ ଅବସ୍ଥିତ ରହନ୍ତି । ଗୋଟିଏ ବୃକ୍ଷକୁ ନିରୀକ୍ଷଣ କର, ତାହାର ବିସ୍ତାରିତ

ଚେରଗୁଡ଼ିକ ମୃତ୍ତିକାର ଅନ୍ତରାଳରେ ଲୁକ୍କାୟିତ ହୋଇ ସୁରକ୍ଷିତ ଭାବରେ ଅବସ୍ଥିତ ରହନ୍ତି । ସେହିପରି ମଣିଷର ହୃଦୟ ତାହା ଯେମିତି କମନୀୟ ଆଉ ସୁକୁମାର ସେହିପରି ତାତ୍ପର୍ଯ୍ୟପୂର୍ଣ୍ଣ, ତେଣୁ ଅନ୍ତରର ଗହ୍ୱର ମଧ୍ୟରେ ଲୁକ୍କାୟିତ ରହିଥାଏ, ଅନ୍ୟଥା ନାସିକାର ଅଗ୍ରଭାଗରେ ସ୍ଥାପିତ ହୋଇଥାନ୍ତା । ଗୋଟିଏ ଘଡ଼ିକୁ ନିରୀକ୍ଷଣ କର, ତାହାର ଡାଏଲ୍‌ଟି ସମ୍ମୁଖରେ ରହିଥାଏ ମାତ୍ର ଗୁରୁତ୍ୱପୂର୍ଣ୍ଣ ଲିଭର ଯନ୍ତ୍ରଟି ପଶ୍ଚାତରେ ରହିଥାଏ ।''

ଏହାଥିଲା ଜୀବନବ୍ୟାପୀ ସଂଗ୍ରାମ କ୍ଷେତ୍ରରେ, ମଧୁସୂଦନଙ୍କ ନେତୃତ୍ୱର ସଂପାଦନରେ ତାତ୍ପର୍ଯ୍ୟପୂର୍ଣ୍ଣ ମାର୍ଗପ୍ରଦର୍ଶନର ଭୂମିକା, ଯାହାକୁ ସେ ନିର୍ବାହ କରିଥିଲେ ତେଜୋଦୀପ୍ତ ଗରିମାମୟ ରୀତିରେ । ଏଥର ସେ ଉପସ୍ଥାପିତ କରୁଛନ୍ତି ସେ କାଳର ସଙ୍କଟମୟ ସ୍ଥିତିର ସମ୍ମୁଖୀନ ହେବାପାଇଁ ନିର୍ଦ୍ଦେଶନାମା, ଯହିଁରେ ଓଡ଼ିଶା ଜାତୀୟତାର ପରିପ୍ରକାଶ ଥିଲା ଦେଦୀପ୍ୟମାନ । ଜନସଂଖ୍ୟାର ସମସ୍ୟା ବର୍ତ୍ତମାନ ଉଠୁଛି । କିନ୍ତୁ ପ୍ରକୃତ କଥା ହେଉଛି ଅନ୍ୟ ଜାତିକୁ ଶାସନ କରିବାପାଇଁ କେଉଁ ଜାତିର ଅଧିକ ଜୀବନୀଶକ୍ତି ଅଛି ?

ପଡ଼ୋଶୀ ଜାତିମାନେ ଆମ୍ଭମାନଙ୍କୁ ନିଶ୍ଚେଷ୍ଟ କରିବାପାଇଁ ଚେଷ୍ଟା କରିଥିଲେ । ଆମର ଆତ୍ମା ଓ ଚେତନାକୁ ଲୋପ କରିଦେବାପାଇଁ ଚକ୍ରାନ୍ତ କରିଥିଲେ । କିନ୍ତୁ ସେମାନେ ଏ କ୍ଷେତ୍ରରେ ଜୟଯୁକ୍ତ ହୋଇଛନ୍ତି କି ? ତୁମ୍ଭେମାନେ କେବେ ମଧ୍ୟ ପରାଜିତ ହେବ ନାହିଁ, ନିର୍ମୂଳ ହେବନାହିଁ । ଓଡ଼ିଆ ଜାତିର ଅନ୍ତର୍ନିହିତ ସତ୍ତା ଓ ସାମର୍ଥ୍ୟ କେବେ ମଧ୍ୟ ନିର୍ବାପିତ ହେବନାହିଁ । ଗୋଟିଏ ଜାତିର ଅନ୍ୟ ଜାତିକୁ ପ୍ରଭାବିତ କରିବାପାଇଁ ଯେଉଁ କ୍ଷମତା ଓ ଶକ୍ତି ରହିଥାଏ, ତାହା ହିଁ ଅନ୍ୟ ଜାତି ଉପରେ ଶାସନ କରିବା କ୍ଷମତା ପ୍ରମାଣିତ କରେ । ବଂଗାଳୀଙ୍କ ସଂପର୍କରେ ଆଲୋଚନା କର । ସେମାନେ ଆମ୍ଭମାନଙ୍କୁ ଅବନତ କରି ରଖିବାପାଇଁ ଯତ୍ପରୋନାସ୍ତି ଚେଷ୍ଟା କରିଥିଲେ । ସେମାନେ କ'ଣ ସଫଳ ହୋଇଛନ୍ତି ? ଓଡ଼ିଆ ପରିବାରରେ ବର୍ଦ୍ଧିତ ଜଣେ ବଂଗାଳୀ ମହିଳା ଭାରତର ପ୍ରଥମ ମହିଳା ଓକିଲ ରୂପେ ପ୍ରତିଷ୍ଠିତ ହୋଇ ପାରିଛି । ଓଡ଼ିଆମାନଙ୍କର ପ୍ରବର୍ତ୍ତିତ ଧର୍ମ ସମଗ୍ର ଭାରତରେ ଗୃହୀତ ହୋଇଛି । କେଉଁ ଜାତି ଶ୍ରୀଜଗନ୍ନାଥଙ୍କର ମହାନୁଭବତା ପ୍ରତି ଆକର୍ଷିତ ହୋଇନାହିଁ । ଓଡ଼ିଆ ଭାଷାର ଅତୀବ ଉର୍ଜ୍ଜସ୍ୱଳ ଶକ୍ତିକୁ ଅନୁଧ୍ୟାନ କର । ବଂଗାଳୀମାନଙ୍କ ଦ୍ୱାରା ସର୍ବତ୍ର ଆରାଧିତ 'ଚୈତନ୍ୟ ଜଣେ ଉତ୍କଳୀୟ' ।

ମଧୁସୂଦନଙ୍କର ଦୃଷ୍ଟିରେ 'ଓଡ଼ିଶା' ୟୁରୋପର ଏକ ନେସନ ଭଳି ପରିବ୍ୟାପ୍ତ । ମଧୁସୂଦନଙ୍କ ବକ୍ତବ୍ୟର ଅନ୍ତରାଳରେ ଜାତି ଜାତି ଆଉ ଦେଶ ଦେଶ ମଧ୍ୟରେ ସମସ୍ତ ସଂକୀର୍ଣ୍ଣତା ଅବଲୁପ୍ତ ଆଉ ବିଶ୍ୱମାନବିକତା ସମସ୍ତ କ୍ଷେତ୍ରରେ ହିଁ ପ୍ରକଟିତ । ସେ ପୁଣି କହୁଛନ୍ତି-

''ଆପଣମାନେ ଅଧିକ ଅନୁଧ୍ୟାନ କରୁଛନ୍ତି । ଏହି ଉତ୍ତୀର୍ଣ୍ଣ ବୟସରେ, ମୁଁ ମୋ ଜୀବନରେ ସଂଘଟିତ ତାତ୍ପର୍ଯ୍ୟପୂର୍ଣ୍ଣ କାର୍ଯ୍ୟାବଳୀର ସଂକ୍ଷିପ୍ତ ରୂପରେଖ ପ୍ରଦାନ କଲି । କେବେ ମଧ୍ୟ ନିଜସ୍ୱ ଅହଂ ବା ବ୍ୟକ୍ତିଗତ ସତ୍ତାକୁ ଉଜ୍ଜୀବିତ କରନାହିଁ । ଆକାଶରୁ ପତିତ ବର୍ଷାବିନ୍ଦୁ ଝରଣାରେ ପ୍ରବାହିତ ଜଳଧାରା ସହିତ ମିଳିତ ହୁଏ । ତାହା ଅନ୍ୟ ଝରଣାର ଜଳସହିତ

ପ୍ରବାହିତ ହୋଇ ସ୍ରୋତସ୍ୱତୀରେ ପରିଣତ ହୁଏ । ଏବଂ ସ୍ୱଳ୍ପ ଦୂରତାରେ ଢାଲୁ ପଥରେ ପ୍ରବାହିତ ହୋଇ ସାଗର ସହିତ ମିଳିତ ହୁଏ । ଏହି ସ୍ରୋତସ୍ୱତୀ ତାହାର ଯାତ୍ରାପଥରେ ଥିବା ଭୂମି, ଜୀବଜନ୍ତୁ ଆଉ ମଣିଷ ସମାଜକୁ ଜଳଧାରା ବିତରଣ କରି ହିଁ ପ୍ରବାହିତ ହୋଇଥାଏ । ଏକ ମହାନଜାତି ଅନ୍ୟ ଜାତିମାନଙ୍କ ପ୍ରତି ଉପକାର ହିଁ ପ୍ରଦାନ କରି ଚାଲିଥାଏ । ମହାସାଗର ନିରନ୍ତର ଆହ୍ୱନ କରେ ଯେ, ସଭିଏଁ ନିଜସ୍ୱ ରଂଗକୁ ବିସର୍ଜନ କରିଦିଅନ୍ତୁ ଆଉ ଏକୀଭୂତ ହୋଇଯାଆନ୍ତୁ ।''

ଓଡ଼ିଶାରୁ ସର୍ବପ୍ରଥମେ ମଧୁସୂଦନ ହିଁ ପ୍ରାୟ ସମସ୍ତ ୟୁରୋପ ଆଉ ଏସିଆର ବହୁ ଭାଗ ପରିଭ୍ରମଣ କରି ସଂପ୍ରସାରିତ ବିଶ୍ୱ ଚେତନାରେ ଅଭିମନ୍ତ୍ରିତ ହୋଇଥିଲେ । ତାଙ୍କର ରଚନାର ପରିଧି ମଧ୍ୟରେ ବିଶ୍ୱମାନବିକତାର ଦୃଷ୍ଟି ସାଗର ପରି ଉତ୍ତାଳ, ଯହିଁରେ ବିଭିନ୍ନ ମାନବଗୋଷ୍ଠୀ, ସେମାନଙ୍କର ବର୍ଣ୍ଣ ଆଉ ଧର୍ମ ବିସୋରି ମହାମାନବୀୟ ମହାସାଗରରେ ବିଲୀନ ହୋଇଯାନ୍ତି । ଏହି ଦୃଷ୍ଟିରୁ ମଧୁସୂଦନ ପ୍ରଥମେ ବିଶ୍ୱମାନବ, ତାହାପରେ ଭାରତୀୟ ଆଉ ସର୍ବଶେଷରେ ଉତ୍କଳୀୟ । ମାତ୍ର ପ୍ରତିଟି କ୍ଷେତ୍ରରେ ସେମାନଙ୍କର ସ୍ୱତନ୍ତ୍ର ସତ୍ତା ହିଁ ଅକ୍ଷୁଣ୍ଣ ରହିଥାଏ, ଆଉ ପ୍ରୟୋଜନ ବିଧିରେ ମଧ୍ୟ ଅବଲୁପ୍ତ ହୋଇଯାଏ । ଏହାହିଁ ମହାମାନବର ମହାସାଗର ଯାତ୍ରା ।- ବ୍ୟାଖ୍ୟାନ କରି ଚାଲିଛନ୍ତି ମଧୁସୂଦନ ନିଜସ୍ୱ ଭଂଗୀରେ । ବିଶ୍ୱ ମାନବିକତାଠାରୁ ମଧୁସୂଦନଙ୍କର ପୁଣି ଉତ୍ତରଣ ଘଟିଛି ଆଧ୍ୟାତ୍ମିକତାର ଜଗତକୁ । ସେ ସମସ୍ତ ସଂକୀର୍ଣ୍ଣତା ଭୁଲି ଜଗତ ଆଉ ମାନବ ସମାଜକୁ ବିତରଣ କରି ଚାଲିଛନ୍ତି- ସାମ୍ୟ, ମୈତ୍ରୀ ଆଉ ଅଫୁରନ୍ତ କରୁଣା । ତାହାହେଲେ ଯାଇ ଈଶ୍ୱରଙ୍କର ସାମ୍ରାଜ୍ୟ ମଣିଷପାଇଁ ଚିରକାଳ ଲାଗି ଉନ୍ମୁକ୍ତ ରହିବ । ଏହାହିଁ ତାଙ୍କ କାଳଜୟୀ ବକ୍ତବ୍ୟର ସର୍ବୋତ୍ତମ ପରିପ୍ରକାଶ ।

ଏହା ପରେ ସେ ତାଙ୍କର ସୁଦୀର୍ଘ ଦେଢ଼ଘଣ୍ଟା କାଳ ଅବିରାମ ଗତିରେ ପ୍ରଦତ୍ତ ବକ୍ତବ୍ୟର ଚରମ ପର୍ଯ୍ୟାୟରେ ପହଞ୍ଚିଛନ୍ତି, ଯହିଁରେ ଉଦାତ୍ତ ଆଧ୍ୟାତ୍ମିକତା ଆଉ ସଂପ୍ରସାରିତ ମାନବିକତାର ପରିପ୍ରକାଶ ଘଟିଛି ।

''ବୋଧହୁଏ ପ୍ରକୃତରେ ସ୍ୱଳ୍ପ କେତେକ ଦୀର୍ଘଜୀବୀ ଓଡ଼ିଆଙ୍କ ମଧ୍ୟରେ ମୁଁ ଅନ୍ୟତମ । ଜୀବନର ଅନ୍ତିମ ବେଳାରେ ମୁଁ ଗୋଟିଏ ମାତ୍ର ଶ୍ରେୟସ୍କର ବଚନ ଶୁଣାଉଛି-

ଆମ୍ଭେମାନେ ଭାରତରେ ସବୁଠାରୁ ଅଧିକ ଆଇନ ଆଚରଣ କରୁଥିବା ଜାତି ରୂପରେ ସୁପରିଚିତ । ଭଗବାନଙ୍କ ସହିତ ସମନ୍ୱିତ ହୁଅ । କର୍ତ୍ତବ୍ୟର ଆହ୍ୱାନରେ ସଂଗ୍ରାମ କରିଚାଲ । ଅନ୍ୟ ଜାତିମାନଙ୍କୁ ସାହାଯ୍ୟ ପ୍ରଦାନ କରିବାକୁ ତତ୍ପର ହୁଅ । ପୁଣି ସେହିଦିନ ଆସିବ, ଯେତେବେଳେ ତୁମ୍ଭମାନଙ୍କୁ କର୍ତ୍ତବ୍ୟ ସଂପାଦନର ହିସାବ ପ୍ରଦାନ କରିବାକୁ ପଡ଼ିବ । ତୁମେ ଯଦି ଜଗତର ମଂଗଳ ସାଧନ କରିଥାଅ, ସେହି ବିଧାତା ପୁରୁଷ ଆସି କହିବେ ହେ, ମୋର ସନ୍ତାନ, ମୋର ସମୀପକୁ ଆସ । ମୁଁ ତୁମକୁ ଜୀବନର ମହିମାମଣ୍ଡିତ ମୁକୁଟ ପିନ୍ଧାଇ ଦେବି ।''

ଆହାଃ ! ସମାପ୍ତ ହୋଇଗଲା ସେହି ଯୁଗାନ୍ତକାରୀ ବକ୍ତବ୍ୟର ଅପୂରନ୍ତ ଅବତରଣ, ଯାହା ଅକ୍ଷୟ ଶିଳାଲିପି ଭଳି ଉତ୍‌କୀର୍ଣ୍ଣ ହୋଇ ରହିବ ଓଡ଼ିଆ ଜାତୀୟତାର ଉଦ୍ଦାମ ଇତିହାସରେ । ବହୁ ଅନନ୍ୟ ଅନାଲୋଚିତ ତଥ୍ୟ ଉନ୍ମୀଳିତ ହୋଇଥିଲା, ସେହି ବକ୍ତବ୍ୟ ମାଧ୍ୟମରେ, ଯାହା ଏହି ପ୍ରଦେଶ ଗଠନର ଗତିପଥକୁ ମାର୍ଗଦର୍ଶନ ଆଉ ଦିଶା ନିର୍ଦ୍ଦେଶ କରିଥିଲା । ଏହାଥିଲା ମଧୁସୂଦନଙ୍କର ଓଡ଼ିଆ ଜାତି ପ୍ରତି ଅନ୍ତିମ ଅଭିଭାଷଣ । ଏହି ଭାଷଣର ଏକ ସମ୍ବତ୍ସର ପୂରଣ ନହେଉଣୁ, ତାଙ୍କର ତିରୋଧାନ ଘଟିଥିଲା ୧୯୩୪ ସାଲର ଫେବ୍ରୁଆରି ୪ ତାରିଖରେ । ସେ ଥିଲେ ସମସ୍ତ ସଂକୀର୍ଣ୍ଣତାର ଉର୍ଦ୍ଧ୍ୱରେ ଏକ ମହିମାନ୍ୱିତ ବିଶ୍ୱମାନବୀୟ ବ୍ୟକ୍ତିତ୍ୱ । ଏହା ହିଁ ତାହାଙ୍କର ନିଜସ୍ୱ ପରିଚୟ ।



# ପ୍ରଣାମ ଘେନ ପ୍ରଣାମ

ତାହାଥିଲା ଅତ୍ୟନ୍ତ ମେଘମୁକ୍ତ ମଧୁଝରା ଶୁଭ୍ର ତାରକିତ ତିଥି । ଭଗ୍ନ ବାରବାଟୀ ଦୁର୍ଗର ପରିଖା ତେଇଁ ବିସ୍ତୀର୍ଣ୍ଣ ମହାନଦୀର ଜଳରାଶିର ଅନ୍ତରାଳରୁ ଉଦିତ ହୋଇଛି ପୌର୍ଣ୍ଣମାସର ଶଶି । ତା'ର ରକ୍ତିମ ଆଭା ବିଛୁରିତ ହୋଇଛି ବାରବାଟୀ ବକ୍ଷରେ ।

ଐତିହାସିକ ଏ ଦୁର୍ଗ ବାରବାଟୀ

ବୀର ରକ୍ତ ପିଣ୍ଡେ ଗଢ଼ା ଯା'ର ମାଟି

ବାରବାଟୀ ଯହିଁ ମନ ସ୍ମୃତି ପୋତେ

ବହିଯାଏ ପ୍ରତିଲୋମେ କାଳସ୍ରୋତେ ।

(ରାଧାନାଥ)

କ୍ରମେ ଦେବଦାରୁ ବୃକ୍ଷଗୁଡିକ ହୋଇ ଉଠିଛନ୍ତି ଧବଳଐଶ୍ୱର୍ଯ୍ୟରେ ମହିମାମୟ । ଅସଂଖ୍ୟ ପତ୍ରର ରନ୍ଧ୍ର ଦେଇ ଝରିପଡୁଛି ବିନ୍ଦୁବିନ୍ଦୁ ଜ୍ୟୋତ୍ସ୍ନା ।

ତାହାଥିଲା ୧୯୩୪ର ଶୀତଋତୁ, ଜାନୁଆରି ତିରିଶି ତାରିଖ । ମଧୁସ୍ମୃତିର ୨ୟ ମହଲାରେ ଶାୟିତ ମଧୁସୂଦନ । ନିର୍ନିମେଷ ନୟନରେ ଚାହିଁରହିଛନ୍ତି ସମ୍ମୁଖର ଟେନିସ୍ ପଡ଼ିଆକୁ, ଜ୍ୟୋତ୍ସ୍ନାର ଲହରିତ ପ୍ଲାବନକୁ । ସୁନୀଳ ଆକାଶରେ ଖଣ୍ଡିଏ ଖଣ୍ଡିଏ ଚହଲା ମେଘର ଉଡରୀ ଭାସି ଚାଲିଛି ଜ୍ୟୋତ୍ସ୍ନା ଆଲୁଅରେ ହକାଳି ହୋଇ, ପ୍ରଲମ୍ବିତ ଛାୟାପାତ ଢାଙ୍କି ରଖିଛି ମଧୁସ୍ମୃତିର ଉତ୍ତୁଙ୍ଗ ପ୍ରାସାଦକୁ । ଏହା ସହିତ ଅଚ୍ଛେଦ୍ୟ ଭାବେ ନିବଦ୍ଧ ରହିଥିବା ମଧୁସୂଦନଙ୍କ ସ୍ମୃତିର ଗନ୍ତାଘର କ୍ରମେ ଉନ୍ମୋଚିତ ହେଉଛି । ହଁ ଏହି ମଧୁସ୍ମୃତି ପରିଣତ ହୋଇଯାଇଥିଲା ମହିମାନ୍ୱିତ ତୀର୍ଥ କ୍ଷେତ୍ରରେ ୧୯୨୫ ସାଲର ଅଗଷ୍ଟ ୧୯ ଆଉ ୨୦ ତାରିଖରେ, ଯେଉଁ ଦୁଇଦିନ ମହାତ୍ମାଗାନ୍ଧୀ ଉତ୍କଳ ଟ୍ୟାନେରି ପରିଦର୍ଶନ ଅବସରରେ ଅବସ୍ଥାନ କରିଥିଲେ ଏଠାରେ । ମାତ୍ର ଠିକ୍ ଏହାର ଦୁଇମାସର ବ୍ୟବଧାନରେ ମଧୁସ୍ମୃତି ଉପରେ ଡିଗ୍ରୀ ଜାରି ହୋଇଥିଲା ୨୫.୧୦.୧୯୨୫ରେ

ମାତ୍ର ୨୫,୦୦୦ ଟଙ୍କାର ପାରଳା ମହାରାଜାଙ୍କ ବକେୟା ଦେୟ ବାବଦକୁ । ଓଡ଼ିଶା ଦେଶ ମିଶ୍ରଣ ଆନ୍ଦୋଳନର ଆଦ୍ୟ ଯଜ୍ଞଶାଳା ଆଉ ଓଡ଼ିଶାର ଦ୍ୱିତୀୟ ଦୁର୍ଗ ବାରବାଟୀର ଅଧ୍ୟକ୍ଷ ମଧୁସୂଦନ ସେହିଦିନ ଗୃହବାନ ସ୍ଥିତିରୁ ଗୃହହୀନ ଅନିକେତ ଅବସ୍ଥାକୁ ପ୍ରାପ୍ତ ହୋଇଥିଲେ । ସେହିଦିନ ଶୈଳବାଳାଙ୍କର ମଧ୍ୟମ ଭ୍ରାତା ଚନ୍ଦ୍ର କୁମାର ହାଜରା ଡିଗୀଟାକୁ ୨୫, ୦୦୦ ଟଙ୍କାରେ କିଣି ନେଇଥିଲେ । ଆଉ ନିଦାରୁଣ ଭାଗ୍ୟର କ୍ରୀଡ଼ନକ ମଧୁସୂଦନ ସେହି ଦିନଠାରୁ ବାସ କରୁଥିଲେ ମଧୁସ୍ମୃତିରେ, ଏକମାତ୍ର ଅଲଂଘ୍ୟ ସର୍ତ୍ତରେ, ଭଡ଼ାଦାତା ଭାବରେ ମାସିକ ଅଢ଼େଇ ଶହ ମୁଦ୍ରା ବିନିମୟରେ ।

କ୍ରମେ ଉତ୍ତରା ପବନଟି ବହିଥିଲା ଉତ୍ତଳା ହୋଇ ଆଉ ତାହାରି ଆଘାତରେ ଭସାମେଘ ସବୁ ନିରୁଦ୍ଦିଷ୍ଟ ହୋଇଗଲେ । କ୍ଷଣକ ମଧ୍ୟରେ ଜ୍ୟୋସ୍ନାର ପ୍ଲାବନ ମଧୁସ୍ମୃତିକୁ ରୂପାନ୍ତରିତ କରିଥିଲା ମହୋତ୍ସବରେ । ହେଲେ ତାହା ଥିଲା ସ୍ୱଳ୍ପକାଳ ସ୍ଥାୟୀ । ମଝିରେ ମଝିରେ ଜାଡ଼ୁଆ ପବନ ବହି ଚାଲିଥିଲା ଉଚ୍ଚାଟ ହୋଇ । କୁହେଳିର ଘନ ଆସ୍ତରଣ ଆକ୍ରାନ୍ତ କରିଦେଲା ସମସ୍ତ ପରିବେଶକୁ, ମଧୁସ୍ମୃତିକୁ ନିରୁଦ୍ଦିଷ୍ଟ କରି । ମଧୁସୂଦନ ଚାହିଁ ରହିଛନ୍ତି ସେହି ଝାପ୍‌ସା କୁହେଳି ମଧ୍ୟରେ ଲୁକ୍କାୟିତ ମଧୁସ୍ମୃତିକୁ ଆଉ ତାହାରି ଭିତରେ ସ୍ମୃତିର ପ୍ରବାହ ବହି ଚାଲିଛି ଅତୀତକୁ ରୋମନ୍ଥନ କରି । ତାହାଥିଲା ୨୨.୧୧.୧୯୨୬ ତାରିଖ । ମଧୁସୂଦନଙ୍କ ଜୀବନରେ ସେହି ଦିବସଟି ଥିଲା ଘନକାଳିମାରେ ଆବରିତ ବେଦନାବିଦ୍ଧ ଅଲଂଘ୍ୟ ଦିନ, ଯହିଁରେ କ୍ରମାଗତ କର୍ଷଣ ଆଉ ବିଷାଦର ଦୁର୍ନିବାର ଯାତନା ବହି ଚାଲିଥିଲା କୁହେଳିର ଆବର୍ତ୍ତନ ପରି । ତାହାରି ପ୍ରଚ୍ଛଦପଟ୍ଟରେ କ୍ରମଶଃ ଉଦ୍ଦୀପ୍ତ ହୋଇ ଆସୁଥିଲା ତାଙ୍କ ଜୀବନର ସବୁଠାରୁ କ୍ଳେଶଦାୟକ ଶୋକାକୂଳ ମୁହୂର୍ତ୍ତଟି । ସମଗ୍ର ଦେଶରେ ଦଳିତ ଜାତିର ଅର୍ଥନୈତିକ ସଂସ୍ଥାପନ ଲାଗି ପ୍ରତିଷ୍ଠିତ ପ୍ରଥମ ଉଦ୍ୟୋଗ 'ଉତ୍କଳ ଟ୍ୟାନେରି' ଯାହା ମହାତ୍ମାଗାନ୍ଧୀଙ୍କୁ ଦିଗ୍‌ଦର୍ଶନ ଦେଇଥିଲା, ତାହା ଚିରକାଳ ଲାଗି ବିଲୁପ୍ତ ହୋଇଗଲା । ଉତ୍କଳ ଟ୍ୟାନେରିର ପ୍ରକୃତ ମୂଲ୍ୟ୨.୫୦ ଲକ୍ଷ ଟଙ୍କା ଥିଲାବେଳେ, ତାହା ମାତ୍ର ୬୨,୦୦୦ ଟଙ୍କାରେ ନିଲାମ ହୋଇଗଲା ୨୨.୧୧.୧୯୨୬ରେ, ଯାହା ମହାତ୍ମାଗାନ୍ଧୀଙ୍କୁ ମଧ୍ୟ ଦାରୁଣ ଭାବରେ ମର୍ମାହତ କରିଥିଲା । ଜ୍ୱାଳା ଆଉ ଯନ୍ତ୍ରଣାରେ ମଧୁସୂଦନ ସଂଜ୍ଞାହୀନ ହୋଇ ପଡ଼ି ରହିଲେ ଦୀର୍ଘ ଛଅଘଣ୍ଟା କାଳ । ମାତ୍ର ସଂଜ୍ଞାପ୍ରାପ୍ତ ହେବାବେଳକୁ ବିଷାଦର କାଳିମା ଅନ୍ତର୍ହିତ ହୋଇଯାଇଥିଲା । ସେହି ଉଦାତ୍ତ ମହତ୍ତର ଶକ୍ତି ନିକଟରେ ସମର୍ପିତ ଆବେଦନରେ ସେ ଯେପରି ଫେରିପାଇଥିଲେ ଅସୀମ ତିତିକ୍ଷା ଆଉ ଉତ୍ତରଣର ଅନୁତ୍ତରିତ ଜିଗୀଷା ।

ମଧୁସ୍ମୃତି ଉପରୁ କୁହେଳିର ଆସ୍ତରଣ ହଟିଗଲା, ଆଉ ଜ୍ୟୋସ୍ନାର ଆବର୍ତ୍ତନରେ ଉଦ୍‌ବେଳିତ ପବନଟି ବହି ଆଣିଥିଲା ପ୍ରସ୍ଫୁଟିତ ଆମ୍ର ବଉଳର ଭୁରୁଭୁରୁ ଗନ୍ଧ । ମାତ୍ର କିଛିକ୍ଷଣଲାଗି । ପର ମୁହୂର୍ତ୍ତରେ ପୁଣି ବହି ଆସିଲା କୁହେଳିର ନିବିଡ଼ ଆବରଣ । ଆଉ ତାହାରି ପ୍ରଚ୍ଛଦ ପଟ୍ଟରେ ମଧୁସୂଦନଙ୍କର ସ୍ମୃତିର ଗବାକ୍ଷଟି ଯେପରି ଫିଟିପଡ଼ିଲା ଏକ ମର୍ମନ୍ତୁଦ ବିଷାଦଭରା ଘଟଣାପ୍ରବାହକୁ ରୂପାୟିତ କରି । ତାହା ଥିଲା ୪.୮.୧୯୨୭ର ଶୋକାର୍ତ୍ତ ମୁହୂର୍ତ୍ତଟି । ହଁ, ସେହିଦିନ ମଧୁସୂଦନ ଉଦ୍‌ଘୋଷିତ ହୋଇଥିଲେ ଦେଓ୍ୱାଳିଆ ଭାବରେ । ଆଇନର ପରିପ୍ରେକ୍ଷୀରେ ସେ ଚିହ୍ନିତ

ହୋଇଗଲେ ଅପାଂକ୍ତେୟ ବ୍ୟକ୍ତି ଭାବରେ, ଯାହାଙ୍କର ଆୟର ସମସ୍ତ ପନ୍ଥା ନିରୁଦ୍ଦିଷ୍ଟ ହୋଇଗଲା । ଦାରୁଣ ବିପର୍ଯ୍ୟୟର ମୁହୂର୍ତ୍ତରେ, ସେ ଅତ୍ୟନ୍ତ ବିସ୍ମୟକର ଭାବରେ ଥିଲେ, ସ୍ଥିତପ୍ରଜ୍ଞ । କିଛିଦିନ ପରେ ହାଇକୋର୍ଟକୁ ଆବେଦନ କରି ପୁନରାୟ ଓକିଲାତି କରିବାପାଇଁ ଅନୁମତି ପ୍ରାପ୍ତ ହେଲେ ।

ମହାତ୍ମାଗାନ୍ଧୀ ୧୯୨୭ ସାଲର ଡିସେମ୍ବର ମାସରେ ଖଦୀ କାର୍ଯ୍ୟ ପରିଦର୍ଶନ ପାଇଁ ଓଡ଼ିଶା ଗସ୍ତକାଳରେ ଉଚ୍ଚ ରକ୍ତଚାପଯୋଗୁଁ ଅଠରରୁ ଏକୋଇଶି ତାରିଖ ପର୍ଯ୍ୟନ୍ତ ମଧୁସ୍ମୃତିରେ ଅବସ୍ଥାନ କରିଥିଲେ । ମଧୁସୂଦନଙ୍କ ଶୁଶ୍ରୂଷାରେ ସେ ଅଚିରେ ଆରୋଗ୍ୟ ଲାଭ କରିଥିଲେ ।

ଏହାର ଠିକ୍ ବର୍ଷକ ପରେ, ମଧୁସୂଦନଙ୍କର ପରାମର୍ଶରେ ୧୨.୧୨.୧୯୨୮ରେ ପାଟଣାଠାରେ ଓଡ଼ିଶା ପ୍ରତିନିଧି ଦଳ ସାଇମନ୍ କମିଶନଙ୍କୁ ସ୍ୱାଗତ ଜଣାଇ ଦାବି ଉପସ୍ଥାପନ କଲେ । ଏହା ପରେ ସୁଦୀର୍ଘ ବାଇଶି ବର୍ଷ ଧରି ନିବୁଜ ରହିଥିବା ଓଡ଼ିଶା ପ୍ରଦେଶ ଗଠନର ଦ୍ୱାର ହଠାତ୍ ଉନ୍ମୋଚିତ ହେଲା । ପରବର୍ତ୍ତୀ ବେଳାଟି ଥିଲା ଦୁର୍ବାର ସଂଗ୍ରାମର ସମୟ । ୧୯୩୦ ରେ ଅଟଲି କମିଟିର ରିପୋଟ ଉପସ୍ଥାପନ, ୧୬.୧.୧୯୩୧ରେ ପ୍ରଥମ ଗୋଲଟେବୁଲ୍ ବୈଠକରେ ପାରଳା ମହାରାଜାଙ୍କର ଦାବି ସଂସ୍ଥାପନ, ୧୯୩୧-୩୨ରେ ଓଡ଼ନେଲ୍ ସୀମା ନିର୍ଦ୍ଧାରଣ କମିଟିର ଅନୁସନ୍ଧାନ, ଆଉ ୨୪.୧୨.୧୯୩୨ରେ ତୃତୀୟ ଗୋଲ୍‌ଟେବୁଲ୍ ବୈଠକର ଅନ୍ତିମ ଦିବସରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନାର ଉଦ୍‌ଘୋଷଣା ଆଉ ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ୩.୭.୧୯୩୩ରେ ଜଏଣ୍ଟ ପାର୍ଲାମେଣ୍ଟାରି କମିଟିରେ ଓଡ଼ିଶା ପ୍ରତିନିଧି ଦଳର ଦାବି ଉପସ୍ଥାପନା ପରେ ଓଡ଼ିଶା ପ୍ରଦେଶ ଗଠନର ସମ୍ଭାବନା କ୍ରମଶଃ ବାସ୍ତବ ରୂପ ପରିପ୍ରକାଶ କରିବାକୁ ଲାଗିଲା । ଏହି ସମୟଟି ଥିଲା ବିପୁଳ ଖର୍ଚ୍ଚ ଆଉ ଉପଚାରର ପର୍ବ ଯହିଁରେ ଅକୁଳାନ ଖର୍ଚ୍ଚର ପରିପୂରଣ କରିଥିଲେ ମଧୁସୂଦନ ତାଙ୍କର ସୀମିତ ଆୟର ପରିଧି ମଧ୍ୟରେ । ତାଙ୍କର ଅବକ୍ଷୟପ୍ରାପ୍ତ ଦୁର୍ବଳ ସ୍ୱାସ୍ଥ୍ୟ ଘେନି ୨୪.୬.୧୯୩୩ରୁ ୧୬.୧୦.୧୯୩୩ ମଧ୍ୟରେ ମଧୁସୂଦନ ପ୍ରାଶାସନିକ କମିଟିର ସଦସ୍ୟ ରୂପେ ଓଡ଼ିଶାର ସମସ୍ତ ଉପାନ୍ତ ଅଞ୍ଚଳ ପରିଭ୍ରମଣ କରିଥିଲେ । ଏଥିଯୋଗୁଁ ତାଙ୍କ ସ୍ୱାସ୍ଥ୍ୟାବସ୍ଥାରେ ଅପୂରଣୀୟ କ୍ଷତି ଘଟିଥିଲା । ବହିରାଗତ ସମ୍ଭ୍ରାନ୍ତ ଅତିଥିଙ୍କର ବ୍ୟୟବହୁଳ ଚର୍ଚ୍ଚା ସହିତ ମଧୁସୂଦନ ପ୍ରଦାନ କରିଥିଲେ, ୧୯୩୨ ସାଲର ପ୍ରଥମ ସପ୍ତାହରେ ଓଡ଼ନେଲ୍ କମିଟିକୁ ମଧୁସ୍ମୃତିରେ ବିଦାୟ ସମ୍ବର୍ଦ୍ଧନା ଓ ପ୍ରାଶାସନିକ କମିଟିର ଅଭ୍ୟର୍ଥନାରେ ଆବାହନୀ ଉତ୍ସବ । ୧୯୨୮ରୁ ୧୯୩୩ର ମଧ୍ୟଭାଗ ପର୍ଯ୍ୟନ୍ତ ଏହି ସଂଗ୍ରାମ କାଳରେ ସେ ଅକୁଳାନ ଖର୍ଚ୍ଚ କରି ଚାଲିଥିଲେ । ମାତ୍ର ୧୯୩୩ ସାଲର ଅକ୍ଟୋବର ମାସରୁ ଅତ୍ୟନ୍ତ ଶୀର୍ଣ୍ଣ ଶରୀର ଓ ଦୁର୍ବଳ ସ୍ୱାସ୍ଥ୍ୟ ଘେନି ସେ ଆଉ କଚେରିକୁ ଯାତାୟାତ କରିବା ସଂଭବ ହେଲାନାହିଁ । ସେ ବହୁ ସମୟରେ ଶଯ୍ୟାଶାୟୀ ହୋଇ ରହୁଥିଲେ । ଆୟର ସମସ୍ତ ପନ୍ଥା ତିରୋହିତ ହୋଇଗଲା । ପୂର୍ବବେଳର ଅତ୍ୟଧିକ ଖର୍ଚ୍ଚ ତାଙ୍କୁ କିଛିପରିମାଣରେ ଦାୟଗ୍ରସ୍ତ କରିଥିଲା । କଚେରିରୁ ଆଉ ଆୟ ପାଇବା ଅସମ୍ଭବ ଥିଲା ।

ଜ୍ୟୋତ୍ସ୍ନାର ଉତ୍ତାଳ ଲହରୀମାଳା ମଥାପିଟି ଚାଲିଛନ୍ତି ମଧୁସ୍ମୃତିର ପରିସର ମଧ୍ୟରେ । ହଠାତ୍ ଆକାଶରେ ଭାସି ଯାଉଥିବା ମେଘମାଳା ସବୁ ଜମାଟ ବାନ୍ଧିଛନ୍ତି ଆଉ ଉନ୍ମାଦ ପବନ ବହି

ଚାଲିଛି ଆନମନା ହୋଇ । ମେଘଛପା ଆକାଶରୁ ଝରିପଡୁଛି ବାରିପାତ । ଘନ ବରଷାର ମନ୍ଦ୍ରଧ୍ୱନି ଆବରିତ ହୋଇଛି ସର୍ବତ୍ର । ମଧୁସୂଦନଙ୍କର ସ୍ମୃତିର ଫଗୁଆରୁ ଉନ୍ମୋଚିତ ହେଉଛି ଅଛିଣ୍ଡା ଘଟଣାର ଖିଅସବୁ , ଯାହା ଛନ୍ଦି ହୋଇ ଯାଇଛି, ସମୟର ବୁଣାଜାଲରେ ।

୧୯୩୪ ସାଲର ଜାନୁଆରି ଆରମ୍ଭରୁ ମଧୁସୂଦନଙ୍କର ସ୍ୱାସ୍ଥ୍ୟ କ୍ରମଶଃ ଅବନତି ଆଡ଼କୁ ଗତିକରିଛି । ପାଖରେ ରହୁଥାନ୍ତି ପୂର୍ବତନ ମହିଳା ଆଇନଜୀବୀ, ପରବର୍ତ୍ତୀ କାଳରେ ପ୍ରଧାନ ଶିକ୍ଷୟିତ୍ରୀ ସୁଧାଂଶୁବାଳା ହାଜରା ଆଉ ରହଥାନ୍ତି ବିଶ୍ୱସ୍ତ ପରିଚାରକ ହାଡ଼ିବନ୍ଧୁ ଓ ଅନ୍ୟାନ୍ୟ କର୍ମଚାରୀବୃନ୍ଦ । ଏହି ସମୟରେ ଜାନୁଆରି ୧୬ ତାରିଖରେ ବିହାରରେ ହୋଇଥିଲା ମର୍ମନ୍ତୁଦ ଭୂମିକମ୍ପ, ଯାହା ସାରା ଦେଶରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ।

ଏହାର କିଛିଦିନ ପରେ ଶ୍ରୀ ମନ୍ଦିରରେ ବଡ଼ଠାକୁର, ତାଙ୍କ ଆସ୍ଥାନରୁ ଖସି ପଡ଼ିଲେ, ଯାହା ଥିଲା ଏକ ଅଶୁଭ ସଙ୍କେତ । ରୋମ ସାମ୍ରାଜ୍ୟର ଅଧୀଶ୍ୱର ଜୁଲିଏସ୍ ସିଜରଙ୍କ ମୃତ୍ୟୁକାଳ ପୂର୍ବରୁ ପ୍ରାକୃତିକ ବିପ୍ଳାତ ପରି ଏହା ଯେପରି ସୂଚିତ କରୁଥିଲା ଏକ ଦୁର୍ବିପାକ । ମଧୁସୂଦନଙ୍କର ଦ୍ରୁତ ସ୍ୱାସ୍ଥ୍ୟହାନି ପ୍ରଚାରିତ ହେଲା ସର୍ବତ୍ର । ସୁଧାଂଶୁବାଳାଙ୍କଠାରୁ ତାର ପାଇ ଶୈଳବାଳା ଜାନୁଆରି ୨୨ ତାରିଖରେ ପାଟଣାରୁ ଆସି କଟକରେ ପହଞ୍ଚିଲେ । ମଧୁସୂଦନ ତାଙ୍କୁ କହିଲେ, 'ମୋର ବାହୁଡାଣି ବେଳ ଆସି ଉପସ୍ଥିତ ହେଲାଣି, ତୁମେ ନ ଆସିଥିଲେ ମୋତେ ପାଟଣା ଯାଇ ବିଦାୟ ନେବାକୁ ପଡ଼ିଥାନ୍ତା । ଭୂମିକମ୍ପ କ୍ଷତିଗ୍ରସ୍ତ ଅଞ୍ଚଳରେ କିଛି ସେବା ପ୍ରଦାନ କରିବାକୁ ହୋଇଥାନ୍ତା । ତାହା ଥିଲା ମୋ' ପାଇଁ ଅନିବାର୍ଯ୍ୟ କର୍ତ୍ତବ୍ୟ, ଯାହା ପାଳନ ନ କରିବା ମୋ' ପାଇଁ ହୋଇଥାନ୍ତା ଅକୃତଜ୍ଞତା । ମାତ୍ର ମୋର ଏହି ଅବସ୍ଥାରେ ତାହା ସଂଭବ ହୋଇ ନଥାନ୍ତା । ଏହା ପରେ ଶୈଳବାଳାଙ୍କୁ ମହିଳା ମହଲରୁ କିଛି ଚାନ୍ଦା ସଂଗ୍ରହ କରି ବିହାରକୁ ପଠାଇବାପାଇଁ ନିର୍ଦ୍ଦେଶ ଦେଇ ନିଜର ଆବଶ୍ୟକୀୟ ସାହାଯ୍ୟ ଶୈଳବାଳାଙ୍କୁ ପ୍ରଦାନ କଲେ । ଆପଣାର ଅନ୍ତରଂଗ ବଂଧୁ ସଚ୍ଚିଦାନନ୍ଦ ସିହ୍ନାଙ୍କୁ ବିହାର ଭୂମିକମ୍ପ ଉପଲକ୍ଷେ ସମବେଦନା ଆଉ ସହୃଦୟତାର ବାର୍ତ୍ତା ପ୍ରେରଣ କଲେ । ଏହି ଘଟଣାର ଦୁଇ ତିନିଦିନ ପରେ ଶୈଳବାଳାଙ୍କର ମଧ୍ୟମ ଭ୍ରାତା ଚନ୍ଦ୍ର କୁମାର ହାଜରା ମେଦିନୀପୁର ଆଉ କନିଷ୍ଠ ଭ୍ରାତା ଉଦ୍ୟୋଗପତି ଜିତେନ୍ଦ୍ର କୁମାର କଲିକତାରୁ ଆସି ପହଞ୍ଚିଲେ ।

ହେ ପାଠକ ବର୍ଗ ! ଏହିଠାରେ କ୍ରମାଗତ ଧାରାବାହିକ ବକ୍ତବ୍ୟକୁ ସ୍ଥଗିତ ରଖି ପୁଣି ଯିବା ୧୯୨୭ ସାଲର ବି.ସି. ମୁଖାର୍ଜୀ ଆଇ.ସି.ଏସ୍‌ଙ୍କର ସ୍ମୃତିଚାରଣକୁ-

ନୀଳମଣି ସେନାପତିଙ୍କ ସହ ମୁଁ ୧୯୨୭ ସାଲରେ ଓଡ଼ିଶାର କୁଳବୃଦ୍ଧ ମଧୁସୂଦନ ଦାସଙ୍କୁ ଭେଟିବାକୁ ଯାଇଥିଲି ।

ପ୍ରଥମ ଦର୍ଶନରେ ତାଙ୍କର ବୟସାଧିକ୍ୟ ଆଉ ଦୁର୍ବଳ ଶରୀର ମଧ୍ୟରେ ଅଦ୍‌ଭୁକ୍ତ ଶକ୍ତି ଓ ପ୍ରଖର ମାନସିକ ଜାଗରୁକତାର ପରିଚୟ ପାଇଥିଲି । ତାଙ୍କର ବାଳ ପାଚି ଯାଇଥିଲା, ଶରୀରଟି ଜରାଜୀର୍ଣ୍ଣ ହୋଇଯାଇଥିଲା । ମାତ୍ର ସେ ଯେତେବେଳେ କହିବାକୁ ଆରମ୍ଭକଲେ ତାଙ୍କର

ଆଖିଦୁଇଟି ଜ୍ୱଳନ୍ତ ଅଂଗାରର ପ୍ରଜ୍ୱଳିତ ଦୀପ୍ତିରେ ଉଦ୍‌ଭାସିତ ହୋଇଉଠିଲା । ତାଙ୍କ ସ୍ୱାସ୍ଥ୍ୟ ବିଷୟରେ ପଚାରିବାରୁ ସେ କହିଲେ, ମୋର କାନ୍ଧ ତଳଠାରୁ ଶରୀରଟି କେଉଁଦିନୁ ମରିସାରିଛି । ମାତ୍ର କେବଳ ମଥାଟି ଜୀବନ୍ତ ରହିଛି । ହଁ ସେହି ମଥା ଭିତରେ ଥିଲା ଅଦମ୍ୟ ଇଚ୍ଛାଶକ୍ତି ଆଉ ଅଦ୍‌ଭୁତ ମାନସିକତା, ଯାହା ତାହାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା ।

ଆମେ ପୁଣି ଫେରିଯିବା ୧୯୩୪ ସାଲ ଜାନୁଆରି ମାସ ତିରିଶି ତାରିଖର ସେହି ଅତିକ୍ରାନ୍ତ ସାୟାହ୍ନକୁ । ସେହି ଉତ୍ସୁଳ ବାରିପାତ ଯେପରି ଥମିବାର କୌଣସି ସୂଚନା ନଥିଲା । ମଧୁସୂଦନଙ୍କ ଶୟନ କକ୍ଷରେ ଆଳାପରତ ଭଦ୍ରବ୍ୟକ୍ତିଙ୍କ ମଧ୍ୟରେ ଥିଲେ ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରମୁଖ । ଆଲୋଚନା ଚାଲିଥିଲା କିପରି କିଛି ସାହାଯ୍ୟ ସଂଗ୍ରହକରି ବିହାରର ଭୂକମ୍ପ ପୀଡ଼ିତମାନଙ୍କୁ ପ୍ରେରଣ କରିବା ଏବଂ କିଛି ସ୍ୱେଚ୍ଛାସେବକଙ୍କୁ ବିହାର ପଠାଇବା ସଂପର୍କରେ । ସେଥିପାଇଁ କିଛି କାର୍ଯ୍ୟସୂଚୀ ମଧ୍ୟ ପ୍ରସ୍ତୁତ ହୋଇଥିଲା । କ୍ରମେ ବରଷା ଥମିଗଲା, ଜଣଜଣ ହୋଇ ଭଦ୍ରବ୍ୟକ୍ତିଗଣ ନିର୍ଗତ ହେଲେ । ମଧୁସୂଦନଙ୍କ ଶୟନ କକ୍ଷ - ବିଳାସବ୍ୟସନର ସାମାନ୍ୟ ମାତ୍ର ସଂକେତ ନଥିଲା । ପ୍ରବଳ ଗ୍ରୀଷ୍ମରେ ମଧ୍ୟ ପଙ୍ଖା ଚାଲେ ନାହିଁ । ତାଙ୍କ ଚୌକିରେ ଗଦିର କୌଣସି ବ୍ୟବସ୍ଥା ନଥିଲା । ତାଙ୍କ ବ୍ୟଥାକ୍ଲିଷ୍ଟ ଜୀବନରେ ବିଳାସର କୌଣସି ସଂକେତ ନଥିଲା । ଯଦିଓ ଅତିଥିଶାଳାରେ ସେଥିଲାଗି ସମସ୍ତ ବ୍ୟବସ୍ଥା ଥିଲା । ମଧୁସୂଦନ ପଲଙ୍କ ଛାଡ଼ି ଶୟନ କରୁଥିଲେ ଫିତା ଖଟରେ, ଯହିଁରେ ଜମା ରହିଥିଲା କିଛି ତକିଆ ଆଉ ପ୍ରବଳ ଶୀତକୁ କାଟିବା ପାଇଁ ଖଣ୍ଡିଏ ଅବା ଦୁଇଖଣ୍ଡ କମ୍ବଳ । ମଧୁସୂଦନ ବର୍ଷବର୍ଷ ଧରି ରାତ୍ରିଭୋଜନ ବିରହିତ ଥିଲେ । ଗଲା କିଛିମାସ ଧରି ମଧ୍ୟ ସେ ପୁଷ୍ଟିକର ଖାଦ୍ୟ ନେବାରୁ ବଂଚିତଥିଲେ । ଏହାର ମନ୍ଦ ପ୍ରଭାବ ତାଙ୍କ ସ୍ୱାସ୍ଥ୍ୟ ଉପରେ ଅଶେଷ କ୍ଷତି ପହୁଞ୍ଚାଇଥିଲା ।

ଶୟନ କକ୍ଷରେ ହାଡ଼ିବନ୍ଧୁ ସେବାରତ ଥିଲେ । ପହଞ୍ଚିଲେ ବାରିଷ୍ଟର ଚନ୍ଦ୍ର କୁମାର ଆଉ କ୍ଷଣକ ପରେ ଆସିଲେ ସୁଧାଂଶୁବାଳା । ଅବଶେଷରେ ଆସି ପହଞ୍ଚିଲେ ଶୈଳବାଳା ଗ୍ଲାସ୍‌ରେ କିଛି ହରଲିକ୍ସ ଆଉ ପ୍ଲେଟ୍‌ରେ ଦୁଇଖଣ୍ଡ ବାଇଗଣ ସିଝା ଧରି । ସମୟ ଅତିକ୍ରାନ୍ତ ହେଲାଣି । ସର୍ବତ୍ର ନୀରବତାର ରାଜୁତି । ସ୍ତବ୍ଧତାର ପରିବେଶରେ ଆଣ୍ଠୁମାଡ଼ି ମଧୁସୂଦନଙ୍କର ଦୀର୍ଘ ଜୀବନ କାମନା କରି ପ୍ରାର୍ଥନା କରୁଥିଲେ ଚନ୍ଦ୍ର କୁମାର ଆଉ ଅନ୍ୟ ପକ୍ଷରେ ସୁଧାଂଶୁବାଳା ।

ଶୈଳବାଳାଙ୍କ ବହୁ ଅନୁନୟ ପରେ କେବଳ ମାତ୍ର ଦୁଇଚାମଚ ହର୍ଲିକ୍ସ ପିଇଲେ ମଧୁବାବୁ । ମାତ୍ର ବାଇଗଣ ସିଝା ଖଣ୍ଡିଏ ନନେବା ପାଇଁ ଜିଦ୍ ଧରି ବସିଲେ । ଶୈଳବାଳା ବହୁ ଅନୁରୋଧ କରି କହିଲେ,"ନଖାଇଲେ ଆପଣଙ୍କର ସ୍ୱାସ୍ଥ୍ୟର ଉନ୍ନତି କିପରି ହେବ ଆଉ ଆପଣ ସବଳ କିପରି ହେବେ ?

"ହଁ, ମୁଁ ଖାଇବି ଯେ, ମୁଁ କ'ଣ ନିଜ ରୋଜଗାରରେ ଚଳୁଛି ?" ମଧୁସୂଦନ ପ୍ରଶ୍ନକଲେ । ହଁ, ଆପଣ ତ ନିଜ ରୋଜଗାରରେ ଚଳୁଛନ୍ତି ।" ଶୈଳବାଳା କହିଲେ ।

ନା, ମୁଁ ତ ଆଉ ରୋଜଗାର କରିପାରିବି ନାହିଁ । ଆଉ କାହିଁକି କାହା ଉପରେ ବୋଝ ହୋଇ ରହିବି ? ନା, ମୋର ଯିବାର ସମୟ ଆସି ଉପନୀତ ହେଲାଣି ।'' ମଧୁଦସୂଦନ କହିଲେ ଧୀର ଆଉ ସମାହିତ କଣ୍ଠରେ, ଯହିଁରେ ଉତ୍କଣ୍ଠାର ସାମାନ୍ୟ ମାତ୍ର ସ୍ପର୍ଶ ନ ଥିଲା । ମଧୁସୂଦନ ପ୍ରକୃତରେ ଥିଲେ ସ୍ଥିତପ୍ରଜ୍ଞ । ପରିବେଶ ହୋଇଗଲା ଶୋକାକୁଳ ଆଉ ଅଶ୍ରୁବିଜଡ଼ିତ । ଅନୁତ୍ତରିତ ରହିଗଲା ସମସ୍ତ ପରିସ୍ଥିତି । ଦୀର୍ଘକାଳ ଧରି ଆଣ୍ଠୁମାଡ଼ି ବସି ପ୍ରାର୍ଥନା କରୁଥିବା ଚନ୍ଦ୍ର କୁମାରଙ୍କର ଆଖିରେ ଆସିଗଲା ଲୁହର ବନ୍ୟା, କଣ୍ଠରେ କୋହଭରା ଦୀର୍ଘଶ୍ୱାସ ।

ଜାନୁଆରି ୩୧ ତାରିଖର ସକାଳ । ରାତ୍ରିର ଜଡ଼ତା କାଟିଦେଇ ସୂର୍ଯ୍ୟ ଉଇଁଲେ । ଆଲୋକର ଝଲସା କିରଣରେ ଗଛଲତାସବୁ ଚହଟି ଉଠଲେ । ହେଲେ ସକାଳର ଶୀତୁଆ ପବନ ଯେପରି ରକ୍ତକୁ ଜଡୀଭୂତ କରିପକାଉଥାଏ । ସଚେତ ଥିଲେ ମଧୁସୂଦନ । ତାଙ୍କ ଅସୁସ୍ଥତାର ଖବର ପାଇ ସତ୍ୟଭାମାପୁର ଅଞ୍ଚଳର କିଛି ମହିଳା ଆସି ପହଞ୍ଚିଲେ ଆଉ ଅତ୍ୟନ୍ତ ଶଙ୍କାଗ୍ରସ୍ତ କଣ୍ଠରେ ପଚାରିଲେ ସ୍ୱାସ୍ଥ୍ୟାବସ୍ଥା ସଂପର୍କରେ । ମଧୁସୂଦନ ଉତ୍ତର ଦେଲେ, 'ମୋର ହାତରେ ଆଉ କ'ଣ ବା ଅଛି ?' ସବୁ ତାଙ୍କରି ନିର୍ଦ୍ଦେଶ । ହେଲେ ଉତ୍କଟ ଯନ୍ତ୍ରଣାର ପରିପ୍ରକାଶ କରି କହିଲେ-

ଆଉ ଦିନକାଳ ଆସିବ

ବାଉଁଶ ଗଛରେ ମଳୟ ବହିଲେ

ତାହାକି ଚନ୍ଦନ ହୋଇବ ?

ଦିନ ଏଗାରଟା । ଡାକବାଲା ଆସି ବଢ଼ାଇଦେଲା ଗୋଟିଏ ରେଜେଷ୍ଟ୍ରି ଚିଠି । ପାଖରେ ବସିଥାନ୍ତି ଶୈଳବାଳା । ଚିଠିଟି ଖୋଲି ଶୈଳବାଳା ମଧୁସୂଦନଙ୍କ ହାତକୁ ବଢ଼ାଇଦେଲେ । ମଧୁସୂଦନ ତନ୍ନତନ୍ନ କରି ଚିଠିଟି ପଢ଼ିଲେ, ସ୍ମିତହାସ୍ୟର ଲହରୀ ଖେଳିଗଲା । ଉଲ୍ଲାସଭରା କଣ୍ଠରେ କହିଲେ, ''ହେ ଶୈଳ ! ତୁମେ ପରା କୁହ ଭଗବାନ ନାହାନ୍ତି ବୋଲି ? ଭଗବାନ ଏକାନ୍ତଭାବେ କରୁଣାମୟ । ମାସେ ତଳେ ସେ କେଉଟ ସାହିରେ ଗୋଟିଏ ଟ୍ୟୁବ୍ ୱେଲ୍ ବସାଇବାପାଇଁ ସାହିବାଲାକୁ ପ୍ରତିଶ୍ରୁତି ଦେଇଥିଲି ଆଉ ମ୍ୟୁନିସିପାଲିଟି ଚେୟାରମ୍ୟାନ ଭାଗୀରଥି ମହାପାତ୍ରଙ୍କୁ ଜଣାଇଥିଲି । ଦେଖିତ ଶୈଳ ! ମୋର କଥା ରକ୍ଷା କରିବାପାଇଁ ପରମ ପିତା ଏହି ଡ୍ରାଫ୍‌ଟଟି ପଠାଇଦେଇଛନ୍ତି ପୁରୁଣା ବକେୟା ଦେୟ ବାବଦରେ । ଏହି ଡ୍ରାଫ୍‌ଟଟିକୁ ଉଠାଇବାର ବ୍ୟବସ୍ଥାକର ଆଜି । ଆଉ ମ୍ୟୁନିସ୍‌ପାଲିଟି ଚେୟାରମ୍ୟାନ୍ ମହାପାତ୍ର ବାବୁଙ୍କୁ ଖବର ଦିଅ, କାଲି ଆସି, ଏ ଟଙ୍କାଟା ନେଇଯିବେ ।

ସନ୍ଧ୍ୟା ନଇଁଆସିଲା । ଘଡ଼ିକ ପରେ କୃଷ୍ଣ ପ୍ରତିପଦାର ଜହ୍ନ ଉଇଁଲା ରାତ୍ରିର ଅନ୍ଧକାରକୁ ବିଦୀର୍ଣ୍ଣ କରି । ଜ୍ୟୋସ୍ନାର ଜୁଆର ଆସି ଲହଡ଼ି ଭାଂଗିଲା ମଧୁସ୍ମୃତିକୁ ରଜତ ଶୁଭ୍ର ଆଲୋକରେ ବିଧୌତ କରି । ଦେବଦାରୁ ଗଛର ଶାଖା ପ୍ରଶାଖା ଦେଇ ଝରି ପଡ଼ିଲା ଅଜଡ଼ା ଆଲୋକର କିରଣ ରାଶି । ସର୍ବତ୍ର ତିଳତଣ୍ଡୁଳିତ ଜ୍ୟୋସ୍ନା ।

ତଳେ ଅପେକ୍ଷାରତ ଭଦ୍ରବ୍ୟକ୍ତି ସବୁ ଆସିଲେ ମଧୁସୂଦନଙ୍କ କକ୍ଷକୁ । ସେମାନେ ପହଞ୍ଚୁ ପହଞ୍ଚୁ ମଧୁସୂଦନ ସେମାନଙ୍କୁ ସ୍ମିତହାସ୍ୟରେ ସ୍ୱାଗତ ଜଣାଇ ସାରିବା ପରେ କହି ଉଠିଲେ, "ବିଦାୟ ! ମତେ ବିଦାୟ ଦିଅନ୍ତୁ ଆପଣଙ୍କ ପ୍ରତି ଯଦି କିଛି ଭୁଲ ଭ୍ରାନ୍ତି ଅଥବା ଅପରାଧ କରିଥାଏ ମତେ ସର୍ବାନ୍ତଃକରଣରେ କ୍ଷମାପ୍ରଦାନ କରନ୍ତୁ ।"

ଏ କ'ଣ କହୁଛନ୍ତି ମହାଭାଗ ! ଆପଣ ଚିରଞ୍ଜୀବୀ ରହନ୍ତୁ ଦେଶପାଇଁ । ଦେଶ ଆପଣଙ୍କଠାରୁ ବହୁ ପ୍ରତ୍ୟାଶା ରଖିଛି ।" ଭଦ୍ରବ୍ୟକ୍ତିଗଣ ଅତ୍ୟନ୍ତ ଶୋକ ଜର୍ଜରିତ କଣ୍ଠରେ ନିବେଦନ କରି କହିଲେ, "ଆପଣ ଏ ଜାତିର ସାହା ଭରସା । ଭଗବାନ ନୂତନ ଓଡ଼ିଶାକୁ ମାର୍ଗଦର୍ଶନ କରିବାପାଇଁ ଆପଣଙ୍କୁ ଦୀର୍ଘକାଳ ଜୀବିତ କରି ରଖିବେ । ମଧୁସୂଦନ ଉତ୍ତର ଦେଲେ, ଉପରୁତ ନିର୍ଦ୍ଦେଶ ଆସି ଯାଇଛି । ମୁଁ ଯିବାକୁ ପ୍ରସ୍ତୁତ ହୋଇ ରହିଛି । ସବୁ ପରମପିତାଙ୍କର ନିର୍ଦ୍ଦେଶ । ଯଦି ମୋର ରହିବାକୁ ଆପଣମାନେ ଚାହୁଁଛନ୍ତି ତାହାହେଲେ ତାଙ୍କୁ ଆବେଦନ କରନ୍ତୁ ।"

କ୍ରମେ ସମ୍ଭାଷଣ ଆଉ ହାର୍ଦ୍ଦିକ ଆଳାପ ସରିଗଲା ପରେ ଭଦ୍ରବ୍ୟକ୍ତିମାନେ ଜଣ ଜଣ କରି ବିଦାୟ ନେଲେ । ଏହାପରେ ଆସିଲେ ପର୍ଦ୍ଦାନସୀନ ମହିଳାଗଣ । ସେମାନଙ୍କ ହସ୍ତରେ ଶିଶିରସ୍ନାତ ପୁଷ୍ପଭଳି ଶିଶୁପୁତ୍ର ଆଉ କନ୍ୟାଗଣ । ସେମାନେ ଆସିଥିଲେ ପବିତ୍ରତାର ଉର୍ଜ୍ଜସ୍ୱଳ ପ୍ରତୀକ ମଧୁସୂଦନଙ୍କ ସମୀପକୁ । ପବିତ୍ରତା କ'ଣ ଏଭଳି ମହିମାନ୍ୱିତ ବିଗ୍ରହ ଘେନି ଅବତରିତ ହୋଇପାରେ? ତାଙ୍କର ମୁଖମଣ୍ଡଳ ଉଦ୍‌ବେଳିତ ହୋଇଥିଲା ଜ୍ୟୋତିର୍ମୟ ଆଭାରେ । ମଧୁସୂଦନ ଉପବେଶନ କରିଥିଲେ ଖଟ ଉପରେ । ପ୍ରତିଟି ଶିଶୁକୁ ସ୍ପର୍ଶ କରି ଚାଲିଥିଲେ ଆଶିଷର ଅମୃତ ଢାଳି ।

ସେଦିନ ସନ୍ଧ୍ୟାରେ ମଧୁସୂଦନଙ୍କ ଅବସ୍ଥାରେ କ୍ରମଶଃ ଅବନତି ଦେଖାଗଲା । ସ୍ୱାସ୍ଥ୍ୟର ସ୍ଥିତି କ୍ରମଶଃ ଗମ୍ଭୀର ହୋଇ ଉଠିଥିଲା । ଛାତିରେ କଫ ଘଡ଼ଘଡ଼ ହେଉଥିଲା । ସର୍ବତ୍ର ସଂପ୍ରସାରିତ ହୋଇଥିଲା ଘନ ବିଷାଦର ଛାୟା । ସନ୍ଧ୍ୟାର କାଳିମା କ୍ରମଶଃ ଏହାକୁ ପ୍ରଗାଢ଼ କରି ଚାଲିଥିଲା । ସଂଶୟର ଦୋଳାରେ ସମସ୍ତ ପରିବେଶ ବିଧୂରିତ ହେଉଥିଲା । ସ୍ଥିତିର ଗମ୍ଭୀରତା ଦେଖି ସୁଧାଂଶୁବାଳା ଧର୍ମ ସଂଗୀତ ଗାଇବାକୁ ଆରମ୍ଭ କଲେ ଏବଂ ତାହାଥିଲା ଏହିପରି ।

"I heard the voice of Jesus say
come unto me and rest
Lay down thou weary one, lay down
the head upon my breast."

ମୁଁ ଯୀଶୁଙ୍କର ବାଣୀ ଶୁଣିଲି । ସେ କହୁଛନ୍ତି, 'ମୋର ସମୀପକୁ ଆସ ଆଉ ବିଶ୍ରାମ ନିଅ । ହେ ଶ୍ରାନ୍ତ ମାନବ ! ତୁମ୍ଭର ଶିର ମୋ ବକ୍ଷସ୍ଥଳରେ ସ୍ଥାପନ କର ।"

ଯେତେବେଳେ ସୁଧାଂଶୁବାଳା ଏହି ସଂଗୀତ ଗାଇବାକୁ ଆରମ୍ଭ କଲେ, ଶ୍ରାନ୍ତ ଆଉ କ୍ଳାନ୍ତ ହୋଇ ଅର୍ଦ୍ଧ ନିଦ୍ରିତ ଅବସ୍ଥାରେ ଶାୟିତ ମଧୁସୂଦନ ହଠାତ୍ ଜାଗ୍ରତ ହୋଇଉଠିଲେ । ସହସା

ତାଙ୍କର ପ୍ରଭାବାନ୍ୱିତ କଣ୍ଠରୁ , ଏହି ଗୀତିକା ବଜ୍ର ନିର୍ଘୋଷ ଅଥଚ ଲୀଳାୟିତ ସ୍ୱରରେ ପ୍ରତିଧ୍ୱନିତ ହୋଇ ଉଠିଲା । ସମସ୍ତେ ସ୍ତମ୍ଭୀଭୂତ ଆଉ ହତଚକିତ ହୋଇ ଏହା ଶୁଣିବାକୁ ଲାଗିଲେ । ସମସ୍ତଙ୍କର ନୟନ ଲୋତକାପ୍ଳୁତ ହୋଇଯାଇଥିଲା ସ୍ତବ୍ଧ ନୀରବତାରେ । କ୍ରମଶଃ ସୁଧାଂଶୁବାଳା ମଧୁସୂଦନଙ୍କ ନିର୍ବାଚିତ ଅନ୍ୟ ଏକ ଗୀତିକା ଗାଇବାକୁ ଆରମ୍ଭ କଲେ ।

" Abide with me, fast falls the even tide

the darkness deepens

Lord with me abide

When other helpers fail and comforts fail

Help of the helpless abide with me."

''ମୋ ପାଖରେ ଆଶ୍ରିତ ହୁଅ । ସଂଧ୍ୟାର ଲହରୀ ତ୍ୱରିତ ଗତିରେ ଭାଙ୍ଗିଭାଙ୍ଗି ଯାଉଛି । ଅନ୍ଧାର ଗାଢ଼ ଆଉ ନିବିଡ଼ ହୋଇ ଉଠୁଛି । ହେ ପ୍ରଭୁ ! ମୋର ସମୀପରେ ଅବସ୍ଥାନ କର ।ଯେତେବେଳେ ଅନ୍ୟ ସାହାଯ୍ୟକାରୀମାନେ ହାରି ଯାଆନ୍ତି ଆଉ ଆରାମଦାୟକ ଶାନ୍ତି ଅପସୃତ ହୁଏ । ହେ ପ୍ରଭୁ ! ନିଃସହାୟ ଓ ଆଶ୍ରୟହୀନ ବ୍ୟକ୍ତିମାନଙ୍କୁ ସାହାଯ୍ୟ କର । ଆଉ ମୋର ସମୀପରେ ଅବସ୍ଥାନ କର ।

ସୁଧାଂଶୁବାଳାଙ୍କ ସହିତ ସ୍ୱରମିଳାଇ ମଧୁସୂଦନ ଗାଇଚାଲିଛନ୍ତି ଧର୍ମଗ୍ରନ୍ଥର ପଙ୍କ୍ତିସବୁ, ଅବାରିତ ଭାବରେ ଆହ୍ଲାଦିତ ସ୍ୱର ଲହରୀରେ । ପରବର୍ତ୍ତୀ ପଦ୍ୟାଂଶଟି ସୁଧାଂଶୁବାଳା ଗାଇ ଉଠିଲେ ।

ଅବୋଧ ଶିଶୁପରି ମୁଣ୍ଡ ହଲାଇ ମଧୁସୂଦନ କହିଲେ, ''ନା ନା '', ଶୈଳବାଳା ଉଦ୍‌ବିଗ୍ନ କଣ୍ଠରେ ପଚାରିଲେ 'କଅଣ ହେଲା ?' ମଧୁସୂଦନ ଧୀର ଅଥଚ ଉଦାତ୍ତ କଣ୍ଠରେ କହିଲେ, 'ଡେଭିଡ୍‌ଙ୍କର ଏହି ଦୁଃଖପୂର୍ଣ୍ଣ ଗୀତିକା କାହିଁକି ? ତାଙ୍କର ଦୁଃଖ ତ ମୋର ନଥିଲା । ପରମ ପିତା ଈଶ୍ୱରଙ୍କର ଦୟା ମୋ ପ୍ରତି ଅପରିସୀମ'' ମଧୁସୂଦନଙ୍କର କଣ୍ଠ ଅତ୍ୟନ୍ତ ହର୍ଷ ଆଉ ଉଲ୍ଲାସରେ ବିଗଳିତ ହୋଇ ଉଠିଲା ।

ସମୟ ରାତ୍ରି ପ୍ରାୟ ନଅଟା । ଫାଲ୍‌ଗୁନ କୃଷ୍ଣ ପ୍ରତିପଦାର ଜହ୍ନ ନିର୍ବାକ ଆଉ ନିସ୍ତବ୍ଧ, ମାତ୍ର ଲହରିତ ଦ୍ୟୁତି ଅକ୍ଷୁଣ୍ଣ । ମଧୁସ୍ମୃତିରେ ପ୍ରାର୍ଥନାର ପୁଲକ । ସାମୂହିକ ଧର୍ମଗ୍ରନ୍ଥର ଆବୃତ୍ତି ପରେ, ବ୍ୟକ୍ତିଗତ ଉପାସନାର ପର୍ଯ୍ୟାୟ । ଶୈଳବାଳାଙ୍କର ଆକୁଳ ଅନୁରୋଧରେ ମଧୁସୂଦନ କେବଳ ଦୁଇ ଚାମଚ ହର୍ଲିକ୍ସ ଗ୍ରହଣ କରିଛନ୍ତି । ଫିତାଖଟର ଏକ ପାଖରେ ଚନ୍ଦ୍ରକୁମାର ଆଉ ଅନ୍ୟ ପାଖରେ ସୁଧାଂଶୁବାଳା ଆଣ୍ଠୁମାଡ଼ି ପ୍ରାର୍ଥନା କରୁଛନ୍ତି । ଚନ୍ଦ୍ର କୁମାରଙ୍କର ଅଶ୍ରୁ ଛଳଛଳ ଆକୁଳ ପ୍ରାର୍ଥନା ଦେଖି ମଧୁସୂଦନ କହିଲେ , 'ହେ ଚନ୍ଦ୍ର ! ଏହି ଦୁଃସାଧ୍ୟ ପ୍ରାର୍ଥନାରେ ବ୍ରତୀ ରହିଛ କାହିଁକି ?' ଚନ୍ଦ୍ରକୁମାର ପ୍ରତ୍ୟୁତ୍ତରରେ ପ୍ରଶ୍ନକଲେ, 'ହେ ଦାଦା ! ଯଦି ଆମର ପ୍ରାର୍ଥନା

ଆପଣଙ୍କ ପାଇଁ ଗ୍ରହଣଯୋଗ୍ୟ ନୁହେଁ, ତେବେ କାହାପାଇଁ ଆପଣଙ୍କର ଦୀର୍ଘ ଦିନର ଶ୍ରମସାଧନା ଓ ଯାତନା ? 'ହଁ, କେବଳ ଓଡ଼ିଆ ଜାତିପାଇଁ, ଆଉ କେବଳ ଓଡ଼ିଆ ଜାତିପାଇଁ '। ହଁ, ଓଡ଼ିଆ ଜାତିକୁ ବିଶ୍ୱ ଦୃଷ୍ଟିକୁ ଆଣିବା ମୋର ଜୀବନର ଏକାନ୍ତ ଆଉ ଅନ୍ତିମ ଲକ୍ଷ୍ୟ ।' ମଧୁସୂଦନ କହିଲେ ପ୍ରତିଶ୍ରୁତିବଦ୍ଧତାର ଦୃଢ଼ ନିର୍ଘୋଷରେ ।

'ହେ ଦାଦା ! ଆପଣ ଦୀର୍ଘ ଜୀବନ ଲାଭ କରି ଓଡ଼ିଶା ପ୍ରଦେଶର ଅୟମାରମ୍ଭ ପର୍ଯ୍ୟନ୍ତ ବଂଚି ରହନ୍ତୁ, ଏହାହିଁ ମୋର ଏକାନ୍ତ ପ୍ରାର୍ଥନା । ହେ ଦାଦା ! ଆପଣ ଏଥିପାଇଁ ପରମପିତାଙ୍କ ନିକଟରେ ଆକୁଳ ପ୍ରାର୍ଥନା କରୁନାହାନ୍ତି କାହିଁକି? ତାହା ଯେ ନିଶ୍ଚୟ ଗୃହୀତ ହେବ ।'' ଚନ୍ଦ୍ର କୁମାର କହିଲେ ଅତ୍ୟନ୍ତ ଦରଦଭରା କଣ୍ଠରେ ।

ଟିକିଏ ନୀରବ ରହିଲେ ମଧୁସୂଦନ । ମୁହଁରେ ଦ୍ୟୁତିର ଅଲଂଘ୍ୟ ଉଚ୍ଛ୍ୱାସ । ''ହଁ, ଚନ୍ଦ୍ର କୁମାର ! ମୁଁ ପରମ ପିତାଙ୍କ ପାଖରେ ପ୍ରାର୍ଥନା କରିଥିଲି ଓଡ଼ିଶା ପ୍ରଦେଶର ଆଶୁ ସ୍ଥାପନା ପାଇଁ । ଆଉ ଓଡ଼ିଶା ପ୍ରଦେଶର ସ୍ଥାପନା ପରେ ଓଡ଼ିଆ ଜାତିକୁ କିଛିକାଳ ଲାଗି ମାର୍ଗ ଦର୍ଶନ ପ୍ରଦାନ କରିବା ପାଇଁ । '' ମଧୁସୂଦନ ନୀରବିଗଲେ କିଛିକାଳ ପାଇଁ । ଚନ୍ଦ୍ର କୁମାର ରହିଥିଲେ ଉତ୍ତର ଅପେକ୍ଷାରେ ।

ପରମେଶ୍ୱରଙ୍କ ପାଖରେ ମଧୁସୂଦନଙ୍କ ସେହି ବଂଚି ରହିବାର ସର୍ତ୍ତଥିଲା ଅଲଗା ବୋଧହୁଏ । ମହାତ୍ମାଗାନ୍ଧୀଙ୍କ ଆନ୍ଦୋଳନରେ ତାଙ୍କର ସହଯାତ୍ରୀ ଆଉ ଆଶ୍ରମର ସମସ୍ତ ଖର୍ଚ୍ଚ ବହନ କରୁଥିଲେ ଶିଳ୍ପପତି ବିରଳା । ତଥାପି ଯୀଶୁଙ୍କ ପରି ଦାରିଦ୍ର୍ୟର ସୀମା ଭିତରେ ଚଳୁଥିଲେ । ମାତ୍ର ସମସ୍ତ ବ୍ୟୟର ବିସ୍ତାରିତ ଖର୍ଚ୍ଚ ଫର୍ଦ୍ଦ ବିରଳାଙ୍କ ପାଖରେ ଦାଖଲ କରୁଥିଲେ ମହାତ୍ମାଗାନ୍ଧୀ । କିନ୍ତୁ ତାହାର କିଛି ପ୍ରୟୋଜନ ବିରଳାଙ୍କ ପାଇଁ ନଥିଲା । ମାତ୍ର ମଧୁସୂଦନଙ୍କର ଆପ୍ତ ବାକ୍ୟ ଥିଲା, ''ଯେଉଁ ହାତରେ ରୁଟି ଖାଉଛି, ସେହି ହାତର ପରିଶ୍ରମରେ ସେହି ରୁଟିକୁ ଉପାର୍ଜନ କରିବାକୁ ପଡ଼ିବ ।'' ଏହା ଥିଲା ତାଙ୍କ ଜୀବନଯାପନର ଅଲଂଘ୍ୟ ସର୍ତ୍ତ । ଓଡ଼ିଆ ଜାତିଠାରୁ ମଧୁସୂଦନଙ୍କର ଅନେକ ପ୍ରତ୍ୟାଶା, ଅନେକ ଅଭିଳାଷ ତ ରହିଥିଲା । ମାତ୍ର ଜାତିର ଅକ୍ଷମତା, ଦୁର୍ବଳତା ଆଉ ପ୍ରତିକ୍ରିୟାଶୂନ୍ୟତା ପ୍ରତି ସଚେତନ ଥିବା ତାଙ୍କର ଓଡ଼ିଆ ଜାତି ପ୍ରତି ଆକ୍ଷେପ କେବେ ବି ନଥିଲା । ଜୀବନର ଚରମ ସ୍ଥିତିରେ ଦେବାଳିଆ ଘୋଷିତ ହେବାର ଦୁର୍ବାର ପରିସ୍ଥିତିରେ ସେ ଯେତେବେଳେ ଠିଆ ହୋଇଥିଲେ, ସେତେବେଳେ ସମଗ୍ର ଓଡ଼ିଆ ଜାତି ଠିଆ ହୋଇଥିଲା, ଜଡ଼ ଓ ନିର୍ବେଦତାର ତୁଷାର ଖଣ୍ଡିପରି । ସେ ହାଜରା ପରିବାରକୁ ଗ୍ରହଣ କରିଥଲେ, ସେମାନେ ତାଙ୍କର ଦାରୁଣ ପରିସ୍ଥିତିରେ ସହାୟତାର ହାତ ବଢ଼ାଇଥିଲେ । ଚନ୍ଦ୍ର କୁମାର ହାଜରା ଡିଗ୍ରୀଟି କିଣିଥିଲେ ଆଉ ଅନ୍ତତଃ ମଧୁସୂଦନ ନିଜର ଗୌରବ ଆଉ ସମ୍ମାନ ଅକ୍ଷୁଣ୍ଣ ରଖି ମଧୁସ୍ମୃତିରେ ବାସ କରିପାରିଥିଲେ ଲୋକ ଚକ୍ଷୁର ଅନ୍ତରାଳରେ ଜଣେ ଭଡ଼ାଦାତା ରୂପରେ । ଯେତେବେଳେ ସହଧର୍ମିଣୀ ପ୍ରସନ୍ନମୟୀଙ୍କର ଅକାଳ ବିୟୋଗ ପରେ ଅମ୍ବିକା ପ୍ରସାଦ ହାଜରା ନୂତନ ସ୍ତ୍ରୀ ଗ୍ରହଣ କରି ସିମଳା ଚାଲିଗଲେ, ତାଙ୍କର ଅରକ୍ଷ ସନ୍ତାନଗଣଙ୍କୁ ମଧୁସୂଦନ ଗ୍ରହଣ କରି ଶିକ୍ଷା ପ୍ରଦାନ କରିଥିଲେ । ଚନ୍ଦ୍ରକୁମାର ହାଜରା

ବିଲାତରେ ବାରିଷ୍ଟରୀ ପାଠପଢ଼ି ମେଦିନୀପୁରରେ ସଫଳ ଆଇନଜୀବୀ, ଜିତେନ୍ଦ୍ର କୁମାର ପୂର୍ବତନ ଟ୍ୟାନେରି ମ୍ୟାନେଜର, ଜଣେ ଉଦ୍ୟୋଗପତି ଆଉ ସୁଧାଂଶୁବାଳା ପୂର୍ବତନ ପ୍ରଥମ ମହିଳା ଆଇନଜୀବୀ ଆଉ ପ୍ରଧାନ ଶିକ୍ଷୟିତ୍ରୀ ରହିଥିଲେ । ହେଲେ ମଧୁସୂଦନଙ୍କର ସାହାଯ୍ୟ ଦାନ ଓ ଶିକ୍ଷାଦାନରେ ବହୁ ତରୁଣ ଓଡ଼ିଆ ସମୃଦ୍ଧିଶାଳୀ, ବିଭବଶାଳୀ, ଐଶ୍ବର୍ଯ୍ୟଶାଳୀ ବ୍ୟକ୍ତିଙ୍କ ସହିତ ଅନେକ ପ୍ରତିଷ୍ଠିତ ସମ୍ଭ୍ରାନ୍ତ ବ୍ୟକ୍ତି ଆଉ ଅଧିବକ୍ତା ଥିଲେ ମଧ୍ୟ ଏହି ବିପଦବେଳାରେ ସେମାନେ ଥିଲେ ନିରୁଦ୍ଦିଷ୍ଟ । ୧୯୦୯ ସାଲରୁ ୧୯୧୮ ସାଲ ପର୍ଯ୍ୟନ୍ତ କଲିକତାରେ ସ୍ନାତକୋତ୍ତର ଡିଗ୍ରୀ ସହ ଆଇନ ଏବଂ ପରେ ପାଟଣାରେ ଅଧ୍ୟୟନ କରୁଥିବା ଛାତ୍ରମାନେ ମଧୁସୂଦନଙ୍କ ଆୟୋଜିତ ବୃତ୍ତିର ଅଧିଭୋକ୍ତା ଥିଲେ । ମାତ୍ର ଏ ବିଷୟରେ ସେମାନେ ଏକାନ୍ତ ଭାବେ ଅନୁତ୍ତରିତ, ତେଣୁ ସେମାନଙ୍କ ପକ୍ଷରେ ସାହାଯ୍ୟଦାନ ତ ଦୁରୂହ କଥା, କୃତଜ୍ଞତା ମଧ୍ୟ ଅଲଭ୍ୟ ଥିଲା ।

ମଧୁସୂଦନଙ୍କର ନିଜସ୍ୱ ଖର୍ଚ୍ଚ ଅବା କେତେ ? ଦିନରେ ଦୁଇଚାରି ଚାମଚ ହର୍ଲିକ୍ସ, ଦୁଇଚାରି ଖଣ୍ଡ ବାଇଗଣ ବା ଅମୃତଭଣ୍ଡା ସିଝା, ଦୁଇ ତୋଳା ଚାଉଳର ଭାତ, ଆଉ ମେଞ୍ଚାଏ ହିଡ଼ିମିଚା ଶାଗର ଖରଡ଼ା । ଓଡ଼ିଶା ପ୍ରଦେଶ ସ୍ଥାପନାଜନିତ ବ୍ୟୟଭାର ସାଙ୍ଗକୁ ବନ୍ୟା, ବାତ୍ୟା, ମରୁଡ଼ିରେ ତାଙ୍କର ସାହାଯ୍ୟ ଦାନ ଆଉ ସେବା ଦାନ ଅପର୍ଯ୍ୟାପ୍ତ ଦାରୁଣ ଦୁଃସ୍ଥିତିପ୍ରାପ୍ତ ବ୍ୟକ୍ତିଙ୍କ ପାଇଁ ତାଙ୍କ ଦ୍ୱାର ସର୍ବଦା ଉନ୍ମୁକ୍ତ । ଅଭାବୀ ଛାତ୍ରଙ୍କ ପାଇଁ ସାହାଯ୍ୟ ଆଉ ବୃତ୍ତିର ପରିମାଣ ଅସୀମିତ । ଏହାଛଡ଼ା ଓଡ଼ିଶାକୁ ଆଗତ ଅତିଥିଗଣଙ୍କ ସ୍ୱାଗତ ସମ୍ବର୍ଦ୍ଧନାପାଇଁ ମଧୁସ୍ମୃତିରେ ଅପରିସୀମିତ ବ୍ୟବସ୍ଥା । ତାଙ୍କର ଦୈନିକ ଜୀବନଚର୍ଯ୍ୟାରେ ଶିଳ୍ପାଗାରର ସଂଚାଳନ ବ୍ୟବସ୍ଥା, ଶିଳ୍ପୀ ଆଉ କଳାକାରଙ୍କ ସହିତ ଅଲଭ୍ୟ କଳାପ୍ରାଣତା ତାଙ୍କ ଜୀବନରଏକ ଅପରିହାର୍ଯ୍ୟ ଅଂଗ । ଏହା ବାହାରେ ରହିଥାଏ ଥାଟ ପଟାଳି ଭାଙ୍ଗିବା ପରି, ଭିକାରି, ଦୁରାରୋଗ୍ୟ କୁଷ୍ଠରୋଗୀ ଆଉ ସର୍ବୋପରି ମାନସିକ ବିକୃତିଗ୍ରସ୍ତ ରୋଗୀଙ୍କପାଇଁ ଉପଚାର ବ୍ୟବସ୍ଥା ।

କୃଷ୍ଣ ପ୍ରତିପଦା ରାତିର ଅନ୍ତିମ ପର୍ଯ୍ୟାୟ । ସାରା ରାତ୍ରି ଧରି ଉଜାଗର ରହିଥିବା ଚନ୍ଦ୍ରମା ବର୍ତ୍ତମାନ ପଶ୍ଚିମ ଦିଗନ୍ତର କିଛି ଉର୍ଦ୍ଧ୍ୱରେ । ପୂର୍ବାକାଶରେ ସାମାନ୍ୟ ଅରୁଣିମାର ଛଟା । ଏହି ସମୟରେ ଶ୍ୱେତ ବସ୍ତ୍ର ପରିହିତ ଜଣେ ଦୀପ୍ତିମନ୍ତ ଦେବପୁରୁଷ ମଧୁସୂଦନଙ୍କ ଶୟନ କକ୍ଷରେ ଅବତୀର୍ଣ୍ଣ ହେଲେ । ଅର୍ଦ୍ଧ ସୁପ୍ତ ରହିଥିବା ମଧୁସୂଦନ ତ୍ୱରିତ ବେଗରେ ଜାଗରିତ ହୋଇ ଶଯ୍ୟାଧାରରେ ଭକ୍ତିପ୍ରଣତ ମୁଦ୍ରାରେ ଉପବେଶନ କଲେ । ନୟନରୁ ତାଙ୍କର ଧାରଧାର ଅଶ୍ରୁ ବହିଯାଉଥିଲା । ସେହି ଜ୍ୟୋତିର୍ମୟ ପୁରୁଷ ଖଟର ଚାରିପାଖ ପ୍ରଦକ୍ଷିଣ କରି ବହିର୍ଗତ ହେଲେ । ମଧୁସୂଦନ ବିସ୍ମୟାଭିଭୂତ ଓ ଅଶ୍ରୁ ପ୍ଲାବିତ ନୟନରେ ରହିଥିଲେ ଭକ୍ତିପ୍ରଣତ ମୁଦ୍ରାରେ । ତାହାଥିଲା ସ୍ୱପ୍ନାୟିତ ଅର୍ଦ୍ଧ ଜାଗରଣର ଅବସ୍ଥା । ମଧୁସୂଦନଙ୍କ ମୁଖମଣ୍ଡଳରେ ଲାଖି ରହିଥିଲା, ସ୍ୱର୍ଗୀୟ ଜ୍ୟୋତିର ଅନିର୍ବଚନୀୟ ଝଲକ । କ୍ରମେ ରଜନୀର ଅନ୍ତିମ କ୍ଷଣଟି ଅପସରିଗଲା । ପ୍ରଭାତର ଉତ୍ତାଳ ପବନ ବହିଲା ଉଚ୍ଚାଟ ହୋଇ । ପୂର୍ବ ଆକାଶରେ ମୃଦୁ ଆଲୋକର ସଂଚାର ମଧ୍ୟରେ ଫାଟିଲା ସିନ୍ଦୂରା ।

ଖଟ ଉପରେ ମଧୁସୂଦନଙ୍କ ପ୍ରଣତ ମୁଦ୍ରା ଦେଖି ସମସ୍ତେ ହତଚକିତ ହୋଇଗଲେ । ହର୍ଷ ବିହ୍ୱଳିତ ଭାବରେ ସେ ସମସ୍ତଙ୍କୁ ପ୍ରଭାତୀ ସମ୍ଭାଷଣ ଜଣାଇଲେ । କିଛି ସମୟ ପରେ ହାଡ଼ିବନ୍ଧୁ ତାଙ୍କର ପ୍ରାଣପ୍ରିୟ ହୁକାଟି ସଜିଲ କରି ତାଙ୍କୁ ଧରାଇ ଦେଲେ ।

ଏହା ଥିଲା ଫେବ୍ରୁଆରି ମାସର ପହିଲା ତାରିଖ , ଫାଲ୍‌ଗୁନ ମାସ କୃଷ୍ଣପକ୍ଷ ଦ୍ୱିତୀୟା ତିଥି । ବିହାରର ଭୂମିକମ୍ପ ପରେ ଶୀତର ପ୍ରକୋପ ବଢ଼ି ଚାଲିଛି ଅବାରିତ ଭାବରେ । ମୃଦୁ ସୂର୍ଯ୍ୟ କିରଣରେ ଉଷ୍ଣତାର ପରଶ ଆଉ ଆଲୋକର ଦୀପ୍ତି ସମୁଜ୍ଜ୍ୱଳ କରିଛି ପ୍ରଗାଢ଼ ସବୁଜିମା ଭରା ପରିବେଶକୁ । ପୂର୍ବାହ୍ଣର ଏଗାରଟା ବେଳ । ମ୍ୟୁନିସିପାଲିଟି ଚେୟାରମ୍ୟାନ୍ ଭାଗୀରଥି ମହାପାତ୍ର ଆସି ମଧୁସୂଦନଙ୍କୁ ଭକ୍ତିଭରା ପ୍ରଣାମ କରି ସ୍ୱାସ୍ଥ୍ୟ ସଂପର୍କରେ ଆଲୋଚନା କଲେ । ପରେ ଟ୍ୟୁବ୍‌ୱେଲ୍ ଖୋଳିବାପାଇଁ ଆବଶ୍ୟକୀୟ ଅର୍ଥ ନେଇଗଲେ । କେଉଟ ସାହିର ଧୀବରଙ୍କୁ ମିଳିଲା ପ୍ରତିଶ୍ରୁତି ମୁତାବକ ଟ୍ୟୁବ୍‌ୱେଲ୍ ପରିଚ୍ଛନ୍ନ ପରିବେଶରେ ସ୍ୱାସ୍ଥ୍ୟପ୍ରଦ ଜୀବନଯାପନ ପାଇଁ । ସ୍ୱର୍ଗୀୟ ପିତାଙ୍କର ଅସରନ୍ତି କରୁଣାରୁ ଦାୟମୁକ୍ତ ହୋଇଗଲେ ମଧୁସୂଦନ । ଏହା ସହିତ ବ୍ୟାଙ୍କ୍ ପାଶ୍ ବହିରୁ ଶେଷ କପର୍ଦ୍ଦକ ମଧ୍ୟ ନିଶ୍ଚିହ୍ନ ହୋଇଗଲା । ଏଣିକି ଶୂନ୍ୟ ହସ୍ତରେ ନିର୍ବାଣ ପଥରେ ଯାତ୍ରା । ସର୍ବତ୍ୟାଗୀ ଗୋପବଂଧୁଙ୍କର କିଛି ସଂପତ୍ତି ରହିଥିଲା, ସେଥିପାଇଁ ତାହାଙ୍କୁ ଇଚ୍ଛାପତ୍ର ସଂପାଦନ କରିବାକୁ ପଡ଼ିଲା । ନବକୃଷ୍ଣ ଚୌଧୁରୀଙ୍କର କିଛି ସଂପତ୍ତି ଏବଂ ଆଶ୍ରୟସ୍ଥଳ ମଧ୍ୟ ଥିଲା । ମାତ୍ର ମଧୁସୂଦନ ଥିଲେ ଅନ୍ତିମ ବେଳାରେ ନିଃସ୍ୱ, ନିରାଧାର ଆଉ ନିରାଲମ୍ବ ପୁରୁଷ ।

ଋଷି ଟଲଷ୍ଟୟ ସୁବିଶାଳ ସମ୍ପତ୍ତି ଦାନରୁ ମୁକ୍ତ ହୋଇ, ଗୃହହୀନ ଅବସ୍ଥାରେ ଶୀତଋତୁରେ, ପ୍ରବଳ ତୁଷାରପାତର ସମ୍ମୁଖୀନ ହୋଇ ରେଳ ଯାତ୍ରାର ଅନ୍ତିମ ଷ୍ଟେସନରରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ମାତ୍ର ଦେଶ ପାଇଁ ଛାଡ଼ି ଯାଇଥିଲେ ଅଜସ୍ର ଆଧ୍ୟାତ୍ମିକ ଆଉ ସାଂସ୍କୃତିକ ବିଭବ । ସେହିପରି ମଧୁସୂଦନ ଗୃହହୀନ ଆଉ କପର୍ଦ୍ଦକଶୂନ୍ୟ ହୋଇ ନିଃସ୍ୱ ସ୍ଥିତିରେ ଓଡ଼ିଶାର ଭୂମି ଛାଡ଼ି ଚାଲିଯାଇଥିଲେ ମଧ୍ୟ, ଏହି ଓଡ଼ିଶା ପ୍ରଦେଶର ସୀମାକୁ ଦୁଇ ତୃତୀୟାଂଶ ବୃଦ୍ଧି କରି ଏଥିରେ ଭରି ଦେଇଥିଲେ ଅକୁଳାନ ପ୍ରାକୃତିକ ବିଭବ, ଜଳ, ଅରଣ୍ୟ ଓ ସର୍ବୋପରି ଅଜସ୍ର ଖଣିଜ ସଂପଦ ।

ସେହି ଫେବ୍ରୁଆରି ପହିଲାର ଅପରାହ୍ଣ ବେଳ । ସାୟାହ୍ନକୁ ଅଳ୍ପ ସମୟ ବାକିଥାଏ । ପହଞ୍ଚିଲେ ନୀଳକଣ୍ଠ ଦ୍ୱିତୀୟ ବାର । ତାଙ୍କ ସାଥିରେ ଆସିଥାନ୍ତି, ବ୍ରଜସୁନ୍ଦର, ଲକ୍ଷ୍ମୀଧର ମହାନ୍ତି ଆଉ ବିଚିତ୍ରାନନ୍ଦ ଦାସ । ଓଡ଼ିଶା ପ୍ରଦେଶ ସ୍ଥାପନାର ଅନ୍ତିମ ପର୍ଯ୍ୟାୟର ଆଲୋଚନା । ଯହିଁରେ ମଧୁସୂଦନ ଅତ୍ୟନ୍ତ ଉତ୍ସାହପ୍ରଦ ଭାବେ ଅଂଶ ନେଇଥାନ୍ତି ଆଉ ଗଭୀର ସ୍ଥିତପ୍ରଜ୍ଞ ଅବସ୍ଥାରେ ମନୋନିବେଶ କରିଥାନ୍ତି । ପଣ୍ଡିତ ନୀଳକଣ୍ଠ ପ୍ରଶ୍ନକଲେ, ଆଉ କ'ଣ ପାରଳାଖେମୁଣ୍ଡି ଆଉ ଜୟପୁର ଜମିଦାରି ଆସି ପ୍ରସ୍ତାବିତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସହିତ ମିଶିବ ନାହିଁ ? ମଧୁସୂଦନଙ୍କ ମୁଖ ମଣ୍ଡଳରେ ବିରାଜୁଥିଲା ଆତ୍ମପ୍ରତ୍ୟୟର ଅମ୍ଳାନଦୀପ୍ତି । ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ହେ ନୀଳକଣ୍ଠ, ତାହା ତ ନିଶ୍ଚୟ ମିଳିବ ଏଥିରେ ସନ୍ଦେହ ନାହିଁ, ମାତ୍ର ସ୍ୱତନ୍ତ୍ର ଓଡ଼ିଶାକୁ ପରିଚାଳିତ କରିବାପାଇଁ ଆବଶ୍ୟକ ସମର୍ପିତ ଆଉ ଉତ୍ସର୍ଗୀକୃତ ନେତୃପୁରୁଷ ଆଉ ମିଳିପାରିବେ ନାହିଁ ।

କିଛିକ୍ଷଣ ପରେ ନୀଳକଣ୍ଠ ପ୍ରଶ୍ନ କଲେ 'ଆପଣଙ୍କର ଓଡ଼ିଆ ଜାତି ପ୍ରତି ଅନ୍ତିମ ବାର୍ତ୍ତା କଅଣ ? ମଧୁସୂଦନଙ୍କର ମୁଖମଣ୍ଡଳ ଉଦ୍‌ଭାସିତ ହୋଇଗଲା ଅପୂର୍ବ ଦ୍ୟୁତିରେ । ଆଉ ସେ ଉଦ୍ଦୀପିତ କଣ୍ଠସ୍ୱରରେ ଉତ୍ତର ପ୍ରଦାନ କଲେ, ହେ ନୀଳକଣ୍ଠ ! ଦେଶବାସୀଙ୍କୁ ମୋର ବାର୍ତ୍ତା ଶୁଣାଅ, ଯେ ସେମାନେ ନିଜର ଅନ୍ତଃକରଣକୁ ସର୍ବଦା ଶୁଦ୍ଧ ଆଉ ନିର୍ମଳ ରଖନ୍ତୁ । ଅନ୍ତର ନିର୍ମଳ ରହିଲେ ବାହ୍ୟ ପ୍ରକୃତି ମଧ୍ୟ ସ୍ୱତଃ ନିର୍ମଳ ରହିବ ।'' ଏହା ଥିଲା ଓଡ଼ିଆ ଜାତି ପ୍ରତି ମଧୁସୂଦନଙ୍କର ଅନ୍ତିମ ବାର୍ତ୍ତା । ତାଙ୍କ କଣ୍ଠ ସ୍ୱରର ପ୍ରଗାଢ଼ ଉଦ୍‌ବେଳନରେ ସମସ୍ତେ ସ୍ତବ୍ଧ ହୋଇଯାଇଥିଲେ । ଆଲୋଚନା ଦୀର୍ଘ ସମୟ ଧରି ଚାଲିଲା । କ୍ରମେ ଭଦ୍ର ବ୍ୟକ୍ତିଗଣ ପ୍ରଣତି ଜଣାଇ ସେହି ସ୍ଥାନରୁ ଅପସରିଗଲେ ଆଉ ପଣ୍ଡିତ ନୀଳକଣ୍ଠ ଉପର ମହଲାର ମୁକ୍ତ ଛାତରେ ବସି ଗଭୀର ଚିନ୍ତାରେ ନିବିଷ୍ଟ ରହିଥାନ୍ତି ।

ସନ୍ଧ୍ୟା ଆଗତ ପ୍ରାୟ । ମଧୁସୂଦନ ଏକାକୀ ଶୟନ କକ୍ଷରେ ଶାୟିତ ରହିଥିଲେ । କେତେକ ଉଦୀୟମାନ ଛାତ୍ର ସେମାନଙ୍କ ଅଧ୍ୟାପକମାନଙ୍କ ସହିତ ଆସିଲେ । ମଧୁସୂଦନ ସେମାନଙ୍କୁ ଆଶୀର୍ବାଦ ପ୍ରଦାନ କଲେ । ଛାତ୍ରମାନେ ମଧୁସୂଦନଙ୍କ ଦୀର୍ଘ ଜୀବନ କାମନାକରି ଭକ୍ତିପୂର୍ଣ୍ଣ ପ୍ରାର୍ଥନା କଲେ । ପ୍ରାର୍ଥନା ପରେ ସେମାନେ ବିଦାୟ ନେବାପାଇଁ ପ୍ରସ୍ତୁତ ହେଲେ, ମାତ୍ର ଅନୁରୋଧ କଲେ କିଛି ବାର୍ତ୍ତାପାଇଁ । ମଧୁସୂଦନ ହଠାତ୍ ବିହ୍ୱଳିତ ହୋଇଉଠିଲେ । ତାଙ୍କ କଣ୍ଠରୁ ଉଚ୍ଚାରିତ ହେଲା, 'ହଁ, ଏହିପରି ଜଣେ ଓଡ଼ିଆ ଥିଲା, ଯେ କି ଶାସନ ଶକ୍ତିକୁ ଆଦୌ ଭୟ କରି ନ ଥିଲା । ଆଉ କୌଣସି ପ୍ରଲୋଭନର ବଶବର୍ତ୍ତୀ ନ ହୋଇ ନିଜର ନିର୍ଦ୍ଧାରିତ ମାର୍ଗରୁ ତିଳେ ମାତ୍ର ଘୁଞ୍ଚି ନ ଥିଲା । ସେ କେବଳ ନୀରବରେ ଈଶ୍ୱରଙ୍କର ସାହାଯ୍ୟକୁ ପ୍ରାର୍ଥନା କରିଥିଲା ।'

ଏହି ଉଦ୍‌ଘୋଷଣାରେ ଅପେକ୍ଷାରତ ନୀଳକଣ୍ଠଙ୍କ ସମେତ ମଧୁସ୍ମୃତିର ସମସ୍ତ ଅନ୍ତେବାସୀ ସ୍ତମ୍ଭୀଭୂତ ହୋଇଗଲେ । ଏହି ଦୁର୍ବାର ଘଟଣା ପ୍ରବାହ ମଧ୍ୟରେ ଫାଲ୍‌ଗୁନ କୃଷ୍ଣ ଦ୍ୱିତୀୟାର ଲୋହିତାଭ ଜହ୍ନ, ସନ୍ଧ୍ୟାର ଅନ୍ଧକାରକୁ ବିଦୀର୍ଣ୍ଣ କରି ମଧୁସ୍ମୃତିକୁ ବିଧୌତ କରୁଥିଲା । ମଧୁସୂଦନଙ୍କ ସ୍ୱାସ୍ଥ୍ୟ ଅବସ୍ଥାରେ ଆଶୁ ଉନ୍ନତିର ସୂଚନାମାନ ପରିଲକ୍ଷିତ ହେଲା । ଆଉ ସମସ୍ତ ରାତିଟି ବିତି ଯାଇଥିଲା ଝଲସା ଜହ୍ନର ସ୍ୱନିରୂପିତ ଆବର୍ତ୍ତନ ମଧ୍ୟରେ ।

ଫେବୃଆରି ଦୁଇ ତାରିଖ, ଫାଲ୍‌ଗୁନ କୃଷ୍ଣ ତୃତୀୟାର ତିଥି । ବିଳମ୍ବିତ ରାତିରେ ଚକ୍ରବାଳରୁ ଉଇଁ ଆସିଲା ରକ୍ତାଭ ଜହ୍ନ । କ୍ରମେ ତାହାର ପ୍ରଗାଢ଼ ଶୁଭ୍ର ଦ୍ୟୁତି ଅଜାଡ଼ି ହୋଇ ପଡ଼ିଲା ସର୍ବତ୍ର । ମଧୁସ୍ମୃତି ମଧ୍ୟ ଅବର୍ଣ୍ଣନୀୟ ଆଲୋକ ଜ୍ୟୋତିରେ ପଖାଳି ହୋଇଗଲା ଅପରୂପ ସୌନ୍ଦର୍ଯ୍ୟରେ ମଣ୍ଡିତ ହୋଇ । ସାରା ରାତି ଆକାଶରେ ବୁଲି ବୁଲି ଶେଷରେ ପଶ୍ଚିମ ଆକାଶରେ ଅସ୍ତ ହୋଇଗଲା । ପାହାନ୍ତି ପ୍ରହରର ଘନ କୁହୁଡ଼କୁ ଭେଦି ଉଇଁଲେ ସୂର୍ଯ୍ୟ । ରକ୍ତିମ ଛଟାରେ ପୂର୍ବ ଆକାଶ ଲାଲ୍ ରଙ୍ଗ ଧାରଣ କଲା ।। ମଧୁସୂଦନ ଉଠିବସିଥିଲେ ଶଯ୍ୟାଧାରରେ । ହାଡ଼ିବନ୍ଧୁ ଆସି ହୁକାଟି ସଜାଡ଼ି ଦେଇ ମଧୁସୂଦନଙ୍କୁ ଧରାଇଦେଲା । ପାଖରେ ବସିରହିଲା ହାଡ଼ିବନ୍ଧୁ । ପାଖ କୋଠରିରେ ଶୈଳବାଳା ବସି ହର୍ଲିକ୍ସ ତିଆରି କରୁଥିଲେ । ଚାମଚ୍‌ର ଶବ୍ଦ ବାରମ୍ବାର ଶୁଣାଯାଉଥିଲା । ମଧୁସୂଦନ କହିଲେ-

''ନେ ରେ ବଳଦ ଟାଣିଚୁଣି,

ଆଉ ନାହିଁରେ ଦୋହରାପାଣି ।''

ହାଡ଼ିବନ୍ଧୁ କହିଲେ, ଆପଣ ଚାରି ଚାମଚରୁ ଅଧିକ ହର୍ଲିକ୍ସ ନେଉ ନାହାନ୍ତି । ଆଉ କହୁଛନ୍ତି, ଆଉ ନାହିଁରେ ଦୋହରାପାଣି ।'' ମଧୁସୂଦନ ଆଉ ହାଡ଼ିବନ୍ଧୁ ହସି ଉଠିଲେ, ଆନନ୍ଦର ଆତିଶଯ୍ୟରେ । ଶୈଳବାଳା ଆସି ବହୁ କଷ୍ଟରେ ତିନି ଚାମୁଚ ହର୍ଲିକ୍ସ ପିଆଇଲେ ।

ମଧ୍ୟାହ୍ନର ଯତ୍‌ସାମାନ୍ୟ ଭୋଜନ, ଦୁଇ ଚାମୁଚ ଭାତ ଆଉ ଦୁଇଖଣ୍ଡ ଅମୃତଭଣ୍ଡା ସିଝାରେ ସମାପ୍ତ ହେଲା । ଏହାପରେ ଆସି ପହଞ୍ଚିଲେ ବିଚିତ୍ରାନନ୍ଦ ଦାସ, ଲକ୍ଷ୍ମୀଧର ମହାନ୍ତି, ଚିନ୍ତାମଣି ଆଚାର୍ଯ୍ୟ ଆଉ ନବକିଶୋର ଦାସ ପ୍ରମୁଖ । ଆଲୋଚନା ଚାଲିଥିଲା ଲଣ୍ଡନରେ ଜଏଣ୍ଟ ପାର୍ଲାମେଣ୍ଟାରି କମିଟି ବିଷୟରେ ଆଉ ଏହାର ପ୍ରଭାବରେ ଜୟପୁର, ପାରଳାଖେମୁଣ୍ଡି ସହର ଓ ପାରଳା ଜମିଦାରିର ମାତ୍ର ଏକ ତୃତୀୟାଂଶ ଜମିଦାରି ପ୍ରସ୍ତାବିତ ଓଡ଼ିଶାର ସୀମା ମଧ୍ୟରେ ରଖି ବଳକା ଦୁଇତୃତୀୟାଂଶ ଜମିଦାରି ମାଡ୍ରାସ ପ୍ରେସିଡେନ୍‌ସିକୁ ଦେଇଛନ୍ତି । ପରିଣାମରେ ସମାଧାନର ପନ୍ଥା ସହଜ ହୋଇ ଯାଇଛି । ଏଣୁ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରି ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରେ ମିଶିବାର ସମ୍ଭାବନା ଉଜ୍ଜ୍ୱଳ ହୋଇଛି । ଏହି ଆଲୋଚନାର ଉପସଂହାରରେ ମଧୁସୂଦନ କହିଲେ, ''ଜୟପୁର ଆଉ ପାରଳାଖେମୁଣ୍ଡି ଜମିଦାରି ନିଶ୍ଚୟ ଆସୁଛି । ହେଲେ ଏହି ଓଡ଼ିଶାକୁ ପରିଚାଳିତ କରିବାପାଇଁ ପ୍ରଭାବଶାଳୀ ଉତ୍ସର୍ଗୀକୃତ ନେତୃପୁରୁଷ କାହାନ୍ତି? ହଁ, ଏହାରି ଉପରେ ଓଡ଼ିଶାର ଭାଗ୍ୟ ନିର୍ଭର କରୁଛି । ଏହା ପରେ ଆଲୋଚନା କ୍ରମ ପରିବର୍ତ୍ତନ କରି ମଧୁସୂଦନ ବିହାର ଭୂମିକମ୍ପରେ ପ୍ରପୀଡ଼ିତ ଲୋକଙ୍କର ସାହାଯ୍ୟପାଇଁ ଅର୍ଥ ସଂଗ୍ରହର କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦେଲେ । ଏଣୁ ବଧିବଦ୍ଧ ତ୍ୱରାନ୍ୱିତ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା ।

ଉଜ୍ଜ୍ୱଳ ସୂର୍ଯ୍ୟତାପର ପ୍ରଖରତା ସତ୍ତ୍ୱେ ଶୀତର ପ୍ରକୋପ ବଢ଼ିଚାଲିଛି । ମଧୁସୂଦନଙ୍କର ସ୍ୱାସ୍ଥ୍ୟାବସ୍ଥାରେ କୌଣସି ଉନ୍ନତି ପରିଲକ୍ଷିତ ହେଉନାହିଁ । ଡାକ୍ତର ପରୀକ୍ଷା କରି ରାତିପାଇଁ ନିର୍ଦ୍ଦେଶ ଦେଇ ଗଲେଣି । ସନ୍ଧ୍ୟା ଆଗତ ପ୍ରାୟ । ଏଇ ଶେଷ ଶଯ୍ୟାରେ ଶୋଇ ମଧ୍ୟ ମଧୁସୂଦନ ବେଳେବେଳେ ପରିହାସ ଖେଳୁଥିଲେ । ଡାକ୍ତରବାବୁ ତାଙ୍କ ପରୀକ୍ଷା ଶେଷ କଲାପରେ ସେ ପଚାରିଲେ-

ଦେଖୁଛନ୍ତି ଆଉ କେତେକ୍ଷଣ ବଞ୍ଚିବି? ଡାକ୍ତରବାବୁ କୌଣସି ଉତ୍ତର ଦେବା ପୂର୍ବରୁ ମଧୁବାବୁ ହସିହସି କହିଲେ-

" There is no hope the sick man said

The silent doctor shook his head."

ଅର୍ଥାତ୍ ରୋଗୀ କହିଲା ଯେ, ଆଉ ଆଶା ନାହିଁ । ମନ ଭୁଲାଣିଆ ଡାକ୍ତର କେବଳ ମୁଣ୍ଡ ହଲାଇଲେ ।

ବନ୍ଧୁ ହୁକାଟି ସଜାଡ଼ି ଦେଇ କହିଲା, ହଉ ।

ମଧୁସୂଦନ ସେଇ ପଦର ରାହା ଧରି କହିଲେ,

''ହଉ ହଉ ଆରେ କାଉ

ମଲା ଉପରେ ଶଗଡ଼ ଯାଉ ।''

ଟିକେ ପରେ ମଧୁସୂଦନଙ୍କ କଣ୍ଠରୁ ସ୍ୱତଃ ଉଚ୍ଚାରିତ ହେଲା-

''ଚଲୋ ମୁସାଫିର୍ ବାନ୍ଧ ଗଠରିଆ

ଦୁନିଆ ଦୌଲତ ରହେଗା ନେହିଁ

ତୁମ୍ ଭି ଯାଏଗା ହମ୍‌ଭି ଯାଏଗା

ଯାଏଗା ଦୁନିଆ ସାରା ।''

ସନ୍ଧ୍ୟା ଉତ୍ତୀର୍ଣ୍ଣ ହେଲାଣି । ଫାଲ୍‌ଗୁନ କୃଷ୍ଣ ତୃତୀୟାର ନିରନ୍ଧ୍ର ରଜନୀ । ମଧୁସୂଦନ ନିଜସ୍ୱ ପ୍ରାର୍ଥନାରେ ନିମଗ୍ନ ରହିଛନ୍ତି । ରାତ୍ରି ପ୍ରାୟ ସାଢ଼େ ଆଠଟା । ପୂର୍ବାକାଶର ଦିଗ୍‌ବଳୟରୁ ରକ୍ତାଭ ଜହ୍ନଟି ଉଦିତ ହେଲା । କ୍ରମେ ତାର ଅମ୍ଳାନ ଶୁଭ୍ର ଜ୍ୟୋତିରେ ମଧୁସ୍ମୃତିକୁ ବିଧୌତ କରିଦେଲା ।

ରାତ୍ରିକାଳୀନ ସେବାପାଇଁ ଆସି ପହଞ୍ଚିଛନ୍ତି ବସନ୍ତକୁମାରୀ, ରମାଦେବୀ, ସରଳା ଦେବୀ ପ୍ରମୁଖ ମହିଳା ସେବାଦାତ୍ରୀଙ୍କ ସହିତ ଚିନ୍ତାମଣି ଆଚାର୍ଯ୍ୟ, ଲକ୍ଷ୍ମୀଧର ମହାନ୍ତି, ବ୍ରଜ ସୁନ୍ଦର ଦାସ ପ୍ରମୁଖ ।

ଆଜି ରାତ୍ରି ଭୋଜନର ଦାୟିତ୍ୱ ଅର୍ପିତ ହୋଇଛି ରମାଦେବୀ, ସରଳା ଦେବୀ ଆଉ ବସନ୍ତକୁମାରୀଙ୍କ ଉପରେ । ହେଲେ ମଧୁସୂଦନ ଖାଦ୍ୟ ଗ୍ରହଣ କରିବାକୁ ନଛୋଡ଼ ବନ୍ଧା । ତିନି ଚାମୁଚ ହର୍ଲିକ୍ସ, ଦୁଇଖଣ୍ଡି ଅମୃତଭଣ୍ଡା ସିଝା ନେବାକୁ ପ୍ରାୟ ଘଣ୍ଟାଏ ବିତିଗଲା ।

ତଥାପି ମହିମାବନ୍ତ ରାତ୍ରିରେ ଜହ୍ନ ରାଜୁତି କରୁଛି ବିସ୍ତାରିତ ଆକାଶରେ ।

ଫେବ୍ରୁଆରି ତିନି ତାରିଖ, ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀର ପାହାନ୍ତି ପ୍ରହର । ଜହ୍ନ ଆଲୁଅରେ ସୃଷ୍ଟି ହୋଇଥାଏ ଇନ୍ଦ୍ରଜାଲ । ଧୀରେ ଧୀରେ ଜ୍ୟୋତି ହରାଇ ଲୁଚିଗଲା ପଶ୍ଚିମ ଆକାଶରେ । ପୂର୍ବ ଦିଗରେ ନବୋଦିତ ସୂର୍ଯ୍ୟର ରକ୍ତିମ ଛଟା । ସକାଳଟି ଆନନ୍ଦମୟ ଥିଲା । ମଧୁସୂଦନଙ୍କର ସ୍ୱାସ୍ଥ୍ୟରେ ଉଲ୍ଲେଖନୀୟ ଉନ୍ନତି ପରିଲକ୍ଷିତ ହୋଇଥିଲା । ସମସ୍ତେ ଭାବିନେଲେ ମଧୁସୂଦନ ଏଥର ଘାଟିରୁ ପାରି ହୋଇଗଲେ । ମାତ୍ର ସକାଳୁ ଯେତେବେଳେ ତାଙ୍କର ମୁହଁ ଧୁଆଗଲା ସେ କହିଲେ, ''ଏବେ ନୁହେଁ, ମତେ ଯେତେବେଳେ କଫିନରେ ରଖିବ ସେତେବେଳେ ମୁହଁ ଧୋଇଦେବ ।''

ଏହା ସତ୍ତ୍ୱେ ତାଙ୍କର ଦୈନନ୍ଦିନ କର୍ମସୂଚୀ ନିର୍ଦ୍ଧାରିତ ରୀତିରେ ଚାଲିଥିଲା । ପୂର୍ବଭଳି କଣ୍ଟେଲ୍ ପାଲିତ୍ ମଧ୍ୟେ ମଧ୍ୟେ ସ୍ୱାସ୍ଥ୍ୟାବସ୍ଥାର ପରୀକ୍ଷା ନିରୀକ୍ଷା କରୁଥାନ୍ତି । ହେଲେ ମଧୁସୂଦନ ମଧ୍ୟେ ମଧ୍ୟେ କହୁଥାନ୍ତି, ''ଏତେ କଷ୍ଟରେ ବାପା, ଆଉ ସହିପାରୁ ନାହିଁ ।'' ହେଲେ ସେଦିନ ମଧ୍ୟାହ୍ନରେ ୨ ଚାମଚ ଭାତ ଆଉ କିଛି ପରିବା ସିଝା ନେଇଥିଲେ ।

ମଧୁସୂଦନଙ୍କର ଇଚ୍ଛାଶକ୍ତି ଅତ୍ୟନ୍ତ ଦୃଢ଼ ଥିଲା । ସାଂଘାତିକ ଦୁର୍ବଳତା ସତ୍ତ୍ୱେ ସେ ଥିଲେ ଅସୀମ ତିତିକ୍ଷାର ପ୍ରତୀକ । ଜାତି ପ୍ରତି ତାଙ୍କର ଜୀବନ ସମର୍ପିତ ଥିଲା । ତେଣୁ ପ୍ରଶାନ୍ତିର ପ୍ରତିବିମ୍ବ ତାଙ୍କର ମୁଖମଣ୍ଡଳରେ ସଦା ବିରାଜୁ ଥିଲା । ତାଙ୍କର ସେବା ଆଉ ଶୁଶ୍ରୂଷାରେ ନିମଗ୍ନ ଥାଆନ୍ତି ଅସଂଖ୍ୟ ଜ୍ଞାତି ପରିଜନ ଆଉ ଶୁଭେଚ୍ଛୁ । ଗୋପାଳ ବଲ୍ଲଭଙ୍କ ସ୍ତ୍ରୀ ବସନ୍ତ କୁମାରୀ, ରମାଦେବୀ , ସରଳା ଦେବୀ, ବ୍ରଜସୁନ୍ଦର, ଲକ୍ଷ୍ମୀଧର, ବିଚିତ୍ରାନନ୍ଦ, ଚିନ୍ତାମଣି ସମେତ ବହୁବ୍ୟକ୍ତି ମଧ୍ୟେ ମଧ୍ୟେ ପରିଚର୍ଯ୍ୟାରେ ନିଯୁକ୍ତ ରହିଥାନ୍ତି ।

ଅପରାହ୍ଣ ଚାରିଟା ସମୟ । କୋହଲା ପାଗର ଜଡ଼ତା ମଧ୍ୟେ ମଧ୍ୟେ ଯେପରି ଶ୍ୱାସରୁଦ୍ଧ କରି ଦେଉଥାଏ । ମାତ୍ର ଖରା ତେଜର ନାତିଶୀତୋଷ୍ଣ ଉଷ୍ଣତା ଆଉ ମୁଲାୟମ ସ୍ନିଗ୍ଧତା ପରିବେଶକୁ ଉପଭୋଗ୍ୟ କରିଥାଏ । ସର୍ବତ୍ର ଏକ ଆହ୍ଲାଦର ପ୍ରଫୁଲ୍ଲତା ପରିବ୍ୟାପ୍ତ ହୋଇଥାଏ । ଆସି ପହଞ୍ଚିଲେ ଡାକ୍ତର ପାଲିତ୍ । ମଧୁସୂଦନଙ୍କ ସ୍ୱାସ୍ଥ୍ୟରେ ଅକଳ୍ପନୀୟ ଉନ୍ନତି ଦେଖି ସେ ସଂଶୟମୁକ୍ତ ହେଲେ । ତାଙ୍କର ପରାମର୍ଶ କ୍ରମେ ସେବାକାରୀ ଦଳ ଜଣେ ଜଣେ ସେଠାରୁ ବିଦାୟ ନେଲେ । ମଧୁସୂଦନ ମଧ୍ୟ ଅତ୍ୟନ୍ତ ଆନନ୍ଦଦାୟକ ସ୍ଥିତିରେ ଥିଲେ । ମଧ୍ୟେ ମଧ୍ୟେ ପରିହାସରେ ସମସ୍ତଙ୍କୁ ଆପ୍ୟାୟିତ କରୁଥିଲେ । ସ୍ୱାମୀ ବିଚିତ୍ରାନନ୍ଦଙ୍କୁ ସେ ଆମୋଦିତ ଭାଷାରେ ସମ୍ବୋଧିତ କରୁଥିଲେ, ''ଗାନ୍ଧୀଚେଲା'' ବୋଲି । ମଧୁସୂଦନ ନିଜେ ଗଭୀର ଭାବେ ଆଶ୍ୱସ୍ତ ହୋଇ କହିଲେ, ''ଆଜି ରାତିରେ ମୋ' ପାଖରେ କାହାରି ଉପସ୍ଥିତି ଆବଶ୍ୟକ ନାହିଁ ।'' ଦୀର୍ଘ ତିନି ଚାରି ଦିନର ସଂଶୟାବସ୍ଥାର ଅବସାନ ଘଟିଲା । ସର୍ବତ୍ର ଏକ ଆମୋଦପ୍ରମୋଦ ବାତାବରଣ ଯେପରି ଘୂରି ବୁଲୁଥିଲା ।

ସନ୍ଧ୍ୟା ପାଞ୍ଚଟା ବେଳ । ମାତ୍ର ଦିବସର ମୃଦୁ ଆଲୋକ ଯେପରି ବଳବତ୍ତର ରହିଥାଏ । ଏକାକୀ ମଧୁସୂଦନ ଶୟନରତ ରହିଥାନ୍ତି । ହାଡ଼ିବନ୍ଧୁ ସେବା କରୁଥାନ୍ତି । ଏହି ସମୟରେ ମଧୁସୂଦନ ଦୁଇଭଉଣୀ ଶୈଳବାଳା ଆଉ ସୁଧାଂଶୁବାଳାଙ୍କୁ ଆହ୍ୱାନ କଲେ । ତାଙ୍କ ମନର ଗହନକୁ ଆକ୍ରାନ୍ତ କରି ରଖିଥାଏ ବିହାରର ସତ୍ୟାନାଶୀ ଭୂମିକମ୍ପ । ପୀଡ଼ିତ ଜନର ଆର୍ତ୍ତ ଚିତ୍କାର ଆଉ ବୁଭୁକ୍ଷୁ ଜନତାର ଅକଥନୀୟ କଷଣ । ସେ ପ୍ରାୟ ୧୯୧୨ ସାଲରୁ ସୁଦୀର୍ଘ ୨୨ ବର୍ଷ ଧରି ନିବିଡ ଭାବରେ ଜଡିତ ରହିଥିଲେ ବିହାର ପରିସ୍ଥିତି ସହିତ, କାଉନସିଲର ସଦସ୍ୟ ଓ ମନ୍ତ୍ରୀ ପଦର କର୍ତ୍ତବ୍ୟ ବୋଧରେ ।

୧୯୩୪ ସାଲ । ସେତେବେଳକୁ ,ବିହର ଓଡ଼ିଶା ଥାଏ ଏକ ଯୁଗ୍ମ ପ୍ରଦେଶ । ଯହିଁରେ ଓଡ଼ିଶାର ଭାଗ୍ୟ ସଂଯୋଜିତ ରହିଥାଏ ବିହାର ସହିତ । ବିହାରର ପ୍ରଳୟଙ୍କରୀ ଭୂମିକମ୍ପ, କ୍ଷତିର ପରିମାଣ ଓ ମୃତ୍ୟୁହାର ସମସ୍ତ ସମ୍ଭାବ୍ୟ ଆକଳନର ପରିସୀମାକୁ ଯେପରି ଟପି ଯାଇଥାଏ । ସର୍ବତ୍ର ଶୁଣାଯାଉଥାଏ ଅପେକ୍ଷାମାଣ ମୃତ୍ୟୁର କାକୁସ୍ଥ ହାହାକାର । ଏ କ୍ଷେତ୍ରରେ ସେବା ଆଉ ସାହାଯ୍ୟ ଦାନ ଓଡ଼ିଶା ପାଇଁ ଥିଲା ପରମ କର୍ତ୍ତବ୍ୟ । ବିହାରର ଏହି ଭୟାନକ ସ୍ଥିତିକୁ ମୁକାବିଲା କରିବାପାଇଁ ବିହାରର ସର୍ବମାନ୍ୟ କଂଗ୍ରେସ ନେତା ରାଜେନ୍ଦ୍ର ପ୍ରସାଦଙ୍କୁ ଜେଲରୁ ମୁକ୍ତ କରି ଦୁର୍ଗତଙ୍କ ସେବାର ଭାର ତାଙ୍କୁ ପ୍ରଦାନ କରାଯାଇଥିଲା । ଛାତ୍ରାବସ୍ଥାରୁ ରାଜେନ୍ଦ୍ର ପ୍ରସାଦ

ମଧୁସୂଦନଙ୍କର ପ୍ରିୟପାତ୍ର ଥିଲେ ଓ ତାଙ୍କ ପ୍ରତି ବହୁ ଭାବରେ ସମର୍ପିତ ଥିଲେ । ବିହାର କାଉନ୍‌ସିଲ୍‌ର ଉତ୍ତୁଙ୍ଗ ନେତୃପୁରୁଷ ସଚ୍ଚିଦାନନ୍ଦ ସିହ୍ନାଙ୍କ ସହିତ ମଧୁସୂଦନ ଅତ୍ୟନ୍ତ ନିବିଡ଼ ଭାବେ ସମ୍ବନ୍ଧିତ ଥିଲେ । ମଧୁସୂଦନଙ୍କୁ ସେ ଅଗ୍ରଜର ସମ୍ମାନ ପ୍ରଦର୍ଶନ କରି ଆସୁଥିଲେ । ଭାରତୀୟ ଇମ୍ପେରିଆଲ କାଉନ୍‌ସିଲ୍‌ର ପ୍ରମୁଖ ସଦସ୍ୟ ରୂପେ (୧୯୧୩ରୁ ୧୯୧୬) ସେ ତାଙ୍କୁ ନିର୍ବାଚିତ କରାଇଥିଲେ । ଓଡ଼ିଶା ପ୍ରଦେଶର ସ୍ଥାପନା ପାଇଁ ବଙ୍ଗ, ମଧ୍ୟପ୍ରଦେଶ ଅଥବା ମାଡ୍ରାସ କାଉନ୍‌ସିଲ୍‌ରୁ ପ୍ରସ୍ତାବ ଗ୍ରହଣ କରାଇବା ଏକାନ୍ତ ଭାବେ ଅକଳ୍ପନୀୟ ଥିଲା । ଏଣୁ ସାମ୍ବିଧାନିକ ପରମ୍ପରାର ମର୍ଯ୍ୟାଦା ରକ୍ଷାପାଇଁ ବିହାର ଓ ଓଡ଼ିଶା ପ୍ରଦେଶ କାଉନ୍‌ସିଲ୍‌ରେ ସର୍ବସମ୍ମତ ପ୍ରସ୍ତାବ ଗ୍ରହଣ କରିବା ଏକାନ୍ତ ଭାବେ ପ୍ରୟୋଜନୀୟ ଥିଲା । ମଧୁସୂଦନଙ୍କର ବିହାର ଓ ଓଡ଼ିଶା କାଉନ୍‌ସିଲ୍‌ର ସମସ୍ତ ସଦସ୍ୟଙ୍କ ସହିତ ନିବିଡ଼ ଅନ୍ତରଂଗତା ସ୍ଥାପିତ ହୋଇଥିଲା, ଯେଉଁମାନଙ୍କୁ ସେ ବହୁବାର ବିଭିନ୍ନ ଉତ୍ସବରେ ସମ୍ବର୍ଦ୍ଧିତ ଆଉ ଅଭିନନ୍ଦିତ କରିଥିଲେ । ବିହାର ସରକାରଙ୍କ ସର୍ବୋଚ୍ଚ ବରିଷ୍ଠ ସର୍ବଭାରତୀୟ ଅଧିକାରୀଗଣ , ଯେଉଁମାନେ ସେମାନଙ୍କର ପ୍ରାଶାସନିକ ଜୀବନ ଓଡ଼ିଶାରେ ଆରମ୍ଭ କରିଥିଲେ, ସେମାନେ ସର୍ବାନ୍ତକରଣରେ ମଧୁସୂଦନଙ୍କ ପ୍ରତି ସମର୍ପିତ ଥିଲେ । ଏଣୁ ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ଓଡ଼ିଶା ପ୍ରଦେଶ ସ୍ଥାପନାପାଇଁ ସର୍ବସମ୍ମତି କ୍ରମେ ପ୍ରସ୍ତାବ ଗ୍ରହଣ ମଧୁସୂଦନଙ୍କ ପ୍ରଭାବଯୋଗୁଁ ଅନୁକୂଳ ଥିଲା । ତେଣୁ ଏହି ସଂପର୍କକୁ ସୁଦୃଢ଼ ଓ ଚିରସ୍ଥାୟୀ କରିବା ପାଇଁ ଓଡ଼ିଶାବାସୀଙ୍କ ପକ୍ଷରୁ ଏକାନ୍ତ ଆବଶ୍ୟକ ଥିଲା ବିହାର ଭୂମିକମ୍ପର ପୀଡ଼ିତ ବ୍ୟକ୍ତିମାନଙ୍କୁ ତୁରନ୍ତ ସର୍ବୋଚ୍ଚ ପରିମାଣର ସାହାଯ୍ୟ ପ୍ରଦାନ ଓ ପୀଡ଼ିତ ବ୍ୟକ୍ତିଙ୍କ ସେବା , ଶୁଶ୍ରୂଷା ।

ସେହି ଫେବ୍ରୁଆରି ତିନି ତାରିଖ ସନ୍ଧ୍ୟା ସାତଘଣ୍ଟା ସମୟରେ ଅନୁଷ୍ଠିତ ହେଉଥିଲା ମହିଳା ସଂଘ ପକ୍ଷରୁ ସାହାଯ୍ୟ ସଂଗ୍ରହ ଅଭିଯାନ ସଭା । ଏଣୁ ମଧୁସୂଦନ ଅତ୍ୟନ୍ତ ଉତ୍‌କଣ୍ଠିତ ହୋଇ ଶୈଳବାଳା ଆଉ ସୁଧାଂଶୁବାଳାଙ୍କୁ ଆହ୍ୱାନ କଲେ, ସେହି ସଭାରେ ଯୋଗଦାନ କରି ସର୍ବୋଚ୍ଚ ପରିମାଣର ସାହାଯ୍ୟ ସଂଗ୍ରହ କରିବାପାଇଁ । ଏହି ଅବସରରେ ମଧୁସୂଦନ ତାଙ୍କର ସମସ୍ତ ସ୍ୱଳ୍ପ ମାତ୍ର ସଂଚିତ ଅର୍ଥ ଯାହା ତକିଆ ତଳେ ଗଚ୍ଛିତ ଥିଲା ,ସେ ସମସ୍ତ ବଢ଼ାଇ ଦେଲେ ଶୈଳବାଳାଙ୍କୁ , ତାଙ୍କର ସମସ୍ତ ପ୍ରତିବାଦ ସତ୍ତ୍ୱେ । ଶୈଳବାଳା ଆଉ ସୁଧାଂଶୁବାଳା ଚାଲିଗଲେ ସେଇ ନିର୍ଦ୍ଧାରିତ ସଭାକୁ ।

ନିଃସ୍ୱ ମଧୁସୂଦନ ଏହାପରେ ହୋଇ ଯାଇଥିଲେ ଏକାନ୍ତ ଭାବେ ନିଃସ୍ୱ ଆଉ କପର୍ଦ୍ଦକ ଶୂନ୍ୟ । ମାତ୍ର ଅନୁଶୋଚନା ନଥିଲା ତାଙ୍କର । ମଧୁସୂଦନଙ୍କର ସଂଚାଳିତ ସମସ୍ତ ପ୍ରକଳ୍ପ ବନ୍ଦ ହୋଇଯାଇଥିଲେ ମଧ୍ୟ ମଧୁସ୍ମୃତିରେ କାର୍ଯ୍ୟ କରୁଥିଲା ଶିଳ୍ପାଗାର; କିଛି ମୋଚି, ବଣିଆ ଆଉ କଳାକାରଙ୍କୁ ଘେନି । ଏହାର ଆୟ ସହିତ ମଧୁସୂଦନ ସଂପର୍କିତ ନ ଥିଲେ ମଧ୍ୟ, ଏହି କଳାକାରଙ୍କ ସହିତ ସର୍ଜନାତ୍ମକ କାର୍ଯ୍ୟରେ ମଧୁସୂଦନଙ୍କର ସଖ୍ୟତା ଥିଲା ଅତ୍ୟନ୍ତ ନିବିଡ଼ । ଜୀବନର ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ମଧୁସୂଦନ, କଳାକାରଙ୍କ ସହିତ ଅତ୍ୟନ୍ତ ଅନ୍ତରଂଗତାର ସହିତ ସଂପର୍କିତ ଥିଲେ । ଏଣୁ ଲକ୍ଷ୍ମୀନାରାୟଣ ସାହୁଙ୍କର ପ୍ରଦତ୍ତ ଶ୍ରଦ୍ଧାଞ୍ଜଳିରେ ଶ୍ରମିକ, ବଣିକ, ମେକାନିକ, ପୁଣି ଜ୍ଞାନୀ, ମାନୀ, ଧ୍ୟାନୀ ମଧୁସୂଦନଙ୍କଠାରେ ଏ ସମସ୍ତ ଏକୀଭୂତ ହୋଇଥିଲା ।

ପ୍ରଖ୍ୟାତ୍ ଭାଷାବିତ୍ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ମଧୁସୂଦନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଏହିପରି ଥିଲା- ''ହେ ମଧୁସୂଦନ !ଜାତି ପାଇଁ ଖରଚ କରି କାଙ୍ଗାଳ ହେଲ, ଓଡ଼ିଆ ଜାତିର ନାମ ଦେଲ । ଓଡ଼ିଆ ଜାତି ଜଗତରେ ବିଶିଷ୍ଟ ସ୍ଥାନ ପାଇ, ଓଡ଼ିଆମାନେ ସ୍ୱଦେଶ ବିଦେଶରେ ସମ୍ମାନିତ ଆସନ ପାଆନ୍ତୁ, ଏଥିପାଇଁ ତୁମେ ବାଲି ମାଟି ମୁଠାମୁଠା ଫିଙ୍ଗିଲାଭଳି ଯେତେକ କମେଇଥିଲ ସେତକ ଗମେଇଲ । ପଥର ଭିକାରି ହେଲ, ବେମଗଦୁର ହେଲ, ତଥାପି ମୃତ୍ୟୁ ପର୍ଯ୍ୟନ୍ତ ନିଜର ଅର୍ଜନ ଛଡ଼ା, ନିଜର ଝାଳବୁହା କଉଡ଼ି ଛଡ଼ା ନିଜ ପେଟ ପୋଷିବା ପାଇଁ ଅନ୍ୟର ଖଇରାତି ବା ହାତଟେକା ଧନ କାହାଠାରୁ ଆଶା କରିନାହଁ । କାହାକୁ ମାଗିନାହଁ ଓ କାହାଠାରୁ ଗ୍ରହଣ କରିନାହଁ । ବ୍ୟାଙ୍କରେ ଥିବା ତୁମର ଶେଷ ପୁଞ୍ଜି ଆସି ସେଥିରେ ତୁମର ଅନ୍ତିମ ରୋଗର ଉପଚାରାଦିର ବ୍ୟୟ ଚଳିଅଛି ।''

ଶୈଳବାଳା ଆଉ ସୁଧାଂଶୁବାଳା ଚାଲି ଯାଇଛନ୍ତି ସେହି ନିର୍ଦ୍ଧାରିତ ସଭାକୁ । ପାଖରେ ବସି ରହିଛନ୍ତି ହାଡ଼ିବନ୍ଧୁ । ମଧୁସୂଦନଙ୍କ ମୁଖମଣ୍ଡଳରେ ବିରାଜୁଛି ଦୀର୍ଘ ଦୁଇଦିନ ଧରି ଉଦ୍‌ବେଳିତ ଜ୍ୟୋତିର ନିର୍ଲିପ୍ତ ତରଙ୍ଗ । ହେଲେ ସେଥିରେ ସଂଲଗ୍ନ ରହିଛି ନିବିଡ଼ ସୌମ୍ୟ ଆଉ ସ୍ନିଗ୍ଧତାର ଅପରୂପ ଝଲକ, ଯହିଁରେ ସ୍ତବ୍ଧ ପ୍ରଶାନ୍ତିର ପରିପ୍ରକାଶ ଅବର୍ଣ୍ଣନୀୟ ଥିଲା ।

ସେବା ପ୍ରଦାନ କରୁକରୁ ହାଡ଼ିବନ୍ଧୁ ପଚାରିଲେ, ''ହେ, ବାବା ! ମତେ କ'ଣ କିଛି କହିବେ ନାହିଁ । କପର୍ଦ୍ଦକ ଶୂନ୍ୟ ମଧୁସୂଦନଙ୍କ ପାଖେ ଆଉ କଅଣ ବା ସଞ୍ଚିତ ଥିଲା ? ଯାହାକୁ ଅର୍ପଣ କରି ମଧୁସୂଦନ ହାଡ଼ିବନ୍ଧୁଙ୍କୁ କିଛି ଆଶ୍ୱସ୍ତି ପ୍ରଦାନ କରିଥାନ୍ତେ! ହାଡ଼ିବନ୍ଧୁ କିନ୍ତୁ ତାହାର ପ୍ରତ୍ୟାଶାରେ ନଥିଲେ । ମଧୁସୂଦନ ନିଜର ହାତଟିକୁ ନେଇ ଆଶୀର୍ବାଦ ଭଂଗୀରେ ହାଡ଼ିବନ୍ଧୁଙ୍କ ମଥାରେ ଥୋଇ ସଂଚାଳିତ କରି ଚାଲିଲେ ଆଶିଷ ପ୍ରଦାନର ଉତ୍ତୁଙ୍ଗ ଅବଧାରଣା ରୂପେ । ସେହି ଧାରାର ପ୍ରବାହ ଅବାରିତ ଥିଲା । ହେଲେ ତାହା କ୍ରମଶଃ ତୀବ୍ରତା ହରାଇ ଶିଥିଳ ହୋଇଗଲା । ମଧୁସୂଦନ ଏହି ଅବକାଶରେ ଆହୁରି ନିର୍ଲିପ୍ତ, ନିରାସକ୍ତ ହୋଇଗଲେ । ପ୍ରଶ୍ନ ପଚାରିଲେ ଉତ୍ତର ପ୍ରଦାନ କରୁନଥିଲେ । ମାତ୍ର ଅଂଗଭଂଗୀରେ ସୂଚିତ କରୁଥିଲେ । ଶ୍ୱାସ ପ୍ରଶ୍ୱାସର ଗତି କ୍ରମେ ଅସ୍ୱାଭାବିକ ଆଉ ଧୀର ହୋଇଗଲା ।

ଏହି ସମୟର ମାତ୍ର ଘଣ୍ଟାକ ମଧ୍ୟରେ ଶୈଳବାଳା ଫେରି ଆସିଲେ ଆଉ ହାଡ଼ିବନ୍ଧୁ ଏହି ଅସ୍ୱାଭାବିକତା ସଂପର୍କରେ ତାଙ୍କୁ ଜଣାଇଲେ । ଶୈଳବାଳା ମଧୁସୂଦନଙ୍କୁ ପଚାରିଲେ, ''ହେ ଦାଦା ! କ'ଣ ଭଲ ଲାଗୁନାହିଁ, କଷ୍ଟ ହେଉଛି କି ? ମଧୁସୂଦନ ଧୀର କଣ୍ଠ ସ୍ୱରରେ କହିଲେ, 'ନାହିଁ ।' ଶରୀରରେ ସାମାନ୍ୟ ମାତ୍ର ଯଂତ୍ରଣାର ସୂଚନା ନଥିଲା । ମୁଖମଣ୍ଡଳରେ ଶାନ୍ତିପ୍ରଦ ଆଶ୍ୱାସ ଆଉ ପ୍ରଶାନ୍ତିର ସ୍ନିଗ୍ଧଜ୍ୟୋତି ବିକୀରିତ ହେଉଥିଲା, ଯାହାର ଉଦ୍‌ଭାସ ଥିଲା ଅକଳ୍ପନୀୟ । ସେତେବେଳକୁ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀର ଜହ୍ନ ପ୍ରଗାଢ଼ ତିମିରର ଅବଗୁଣ୍ଠନ ହଟାଇ ରକ୍ତିମ ବର୍ଣ୍ଣର ଲହରୀରେ ଆବିର୍ଭୂତ ହେଲାଣି । କ୍ରମେ ମଧୁସ୍ମୃତିର ପରିସରଟି ବିଧୌତ ହୋଇଗଲା, ଅସରନ୍ତି ଆଲୋକର ପରିପ୍ରକାଶ ମଧ୍ୟରେ । ଏହି ସମୟରେ ଶୀତର ତୀବ୍ରତା ମଧ୍ୟ ଅଲଂଘ୍ୟନୀୟ ଥିଲା ।

ଶୈଳବାଳା ମଧ୍ୟ ମଧୁସୂଦନଙ୍କ ସ୍ୱାସ୍ଥ୍ୟସ୍ଥିତିରେ କିଛିଟା ଅସ୍ୱାଭାବିକତା ଲକ୍ଷ୍ୟ କଲେ । ଏଣୁ ସମସ୍ତଙ୍କୁ ସ୍ଥିତି ସଂପର୍କରେ ଜଣାଇଦେଲେ । ରାତ୍ରି ଦଶଟା ବେଳକୁ ପ୍ରାୟ ଶହେରୁ ଅଧିକ ଭଦ୍ର ବ୍ୟକ୍ତି ଓ ମହିଳାଗଣ ସମବେତ ହୋଇଥାନ୍ତି । ଆତ୍ମୀୟଙ୍କ ବ୍ୟତୀତ ଥାଆନ୍ତି ଡାକ୍ତର ଜୟନ୍ତ ରାଓ, ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ, ଡାକ୍ତର ବିଭୂତି ଭୂଷଣ ପଟ୍ଟନାୟକ, ବ୍ରଜସୁନ୍ଦର ଦାସ, ଏନ୍. କେ. ରାୟ, ଶ୍ରୀମତୀ ବସନ୍ତ କୁମାରୀ ଦେବୀ, ଶ୍ରୀମତୀ ରମାଦେବୀ, ଶ୍ରୀମତୀ ସରଳା ଦେବୀ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଲକ୍ଷ୍ମୀଧର ମହାନ୍ତି, ଚିନ୍ତାମଣି ଆଚାର୍ଯ୍ୟ, ପି.ସି. ବୋଷ, ଗୁଣନିଧି ମହାନ୍ତି ପ୍ରମୁଖ ବହୁ ଭଦ୍ରବ୍ୟକ୍ତି ଆଉ ମହିଳାଗଣ । ଶୟନ କକ୍ଷଟି ଲୋକାରଣ୍ୟରେ ପରିପୂର୍ଣ୍ଣ ହୋଇଯାଇଥାଏ । ତଳମହଲାର ବୈଠକଖାନାରେ ଅନେକ ସମ୍ମାନାସ୍ପଦ ବ୍ୟକ୍ତି ଅତ୍ୟନ୍ତ ଆତୁରିତ ହୋଇ ଅପେକ୍ଷା କରିଥାନ୍ତି । ସେହି ରାତିଟି ଥିଲା ବର୍ଷର ସବୁଠାରୁ ଶୀତଳତମ । ସମସ୍ତେ ପରିଧାନ କରିଥାନ୍ତି କୋଟ କିମ୍ବା ଓଭରକୋଟ । କେହିକେହି ଶାଲ୍ ବା ଚଦର ଘୋଡ଼ିହୋଇଥାନ୍ତି । ଲୋକଙ୍କର ଅସରନ୍ତି ଉଦ୍‌ବେଗ, ଭୀତିପ୍ରଦ ସଂଶୟ ଆଉ ଉଦ୍‌ବେଳିତ ଉଚ୍ଚାଟର ସୀମା ନଥାଏ । ହଠାତ୍ ଡାକ୍ତର ପାଲିତ ପହଞ୍ଚି ଗବାକ୍ଷ ସବୁକୁ ଖୋଲିଦେଲେ । ବାହାରେ ନିବିଡ଼ ହେମାଳ । ଶୁଭ୍ରାଭ ଜହ୍ନ କିରଣର ଢେଉ । ଉତଳା ପବନ ବହି ଚାଲିଥାଏ ଅଣାୟତ୍ତ ହୋଇ । ଚାରିଆଡେ କେବଳ କାକୁସ୍ଥତାର ଭାବ ।

ମଧୁସୂଦନଙ୍କ ମୁଖ ମଣ୍ଡଳ ଅପରୂପ ଜ୍ୟୋତିରେ ଉଦ୍‌ଭାସିତ ହୋଇ ଉଠିଥାଏ । ଶରୀରରେ କ୍ରମଶଃ ଶୀତଳତାର ପରିପ୍ରକାଶ । ନାଡ଼ିର ଗତି କ୍ରମଶଃ ଶିଥିଳ ଆଉ ଧୀର ହେଉଥାଏ । ପୁଚ୍ଛା କରନ୍ତେ ମଧୁସୂଦନ ଧର୍ମଗ୍ରନ୍ଥ ପଠନ ପାଇଁ ନିର୍ଦ୍ଦେଶ ଦେଲେ ଆଉ ଧର୍ମଯାଜକ ତାଙ୍କର ଉଦାତ୍ତ କଣ୍ଠରେ ପ୍ରାର୍ଥନାର ପଦଗୁଡ଼ିକ ଆବୃତ୍ତି କରି ଚାଲିଥାନ୍ତି -

" I heard the voice of Jesus say

come unto me and rest,

Lay down thou weary one, lay down

The head upon my breast."

ଗଭୀର ତନ୍ମୟତା ମଧ୍ୟରେ ଉଦ୍‌ଗ୍ରୀବ ଆଉ ଧ୍ୟାନସ୍ଥ ହୋଇ ଶ୍ରବଣ କରୁଥାନ୍ତି ମଧୁସୂଦନ ଧର୍ମର ସେହି ମହିମାମୃତ ଅମୀୟବଚନ । ଗଭୀର ପ୍ରଶାନ୍ତିର ସୀମାହୀନ ଉଚ୍ଛ୍ୱାସ ତାଙ୍କର ଚକ୍ଷୁ ଯୁଗଳକୁ ଜ୍ୟୋତିଷ୍ମାନ୍ କରିଥାଏ ।

ରାତ୍ରି ଏଗାରଟା ସମୟରୁ ଶୈଳବାଳା ମଧୁସୂଦନଙ୍କୁ ପ୍ରତି ଦଶମିନିଟ୍‌ରେ ଏକ ଚାମଚ୍ ଲେଖାଏଁ ଜଳ ପାଟିରେ ଦେଇ ପାନ କରାଉଥିଲେ । ମଧୁସୂଦନ ତାକୁ ଅତ୍ୟନ୍ତ ଆରାମଦାୟକ ସ୍ଥିତିରେ ଗ୍ରହଣ କରି ଚାଲିଥାନ୍ତି । ସମ୍ମୁଖରେ ଶୟନ କକ୍ଷରେ ସମ୍ମିଳିତ ହୋଇଥାନ୍ତି ତାଙ୍କର ତେଜସ୍ୱୀ ସହଯୋଦ୍ଧାଗଣ ଆଉ ନିରୀକ୍ଷଣ କରୁଥାନ୍ତି ତାଙ୍କର ଦୀପ୍ତିମୟ ଲଲାଟକୁ । ମଧୁସୂଦନ ଏକା, ଓଡ଼ିଶା ଇତିହାସର ଗୋଟିଏ ଶତାବ୍ଦୀ । ତାଙ୍କ ତେଜୋଦୀପ୍ତ ଲଲାଟରେ ଗୋଟିଏ ଶତାବ୍ଦୀର କୋଟିଏ ଅନୁଭୂତିର ମୁଦ୍ରା ଅଂକିତ ହୋଇଥିଲା ।

ଫେବ୍ରୁଆରି ତିନି ତାରିଖର ବାରଟା ସମୟ ଅତିକ୍ରାନ୍ତ ହେଲାଣି । କ୍ରମାନ୍ୱୟରେ ପହଞ୍ଚିଲାଣି ଚାରି ତାରିଖର ରାତି ସାଢ଼େ ଗୋଟାଏ ସମୟ । ମଧ୍ୟ ଆକାଶରୁ ମେଘାଚ୍ଛନ୍ନ କୁହେଳି କେତେବେଳୁ ଅପସରି ଗଲାଣି । ନିର୍ମଳ ଚନ୍ଦ୍ର କିରଣ ଝରି ପଡୁଛି ଶୁଭ୍ରତାକୁ ବହନ କରି ଅବାରିତ ଭାବରେ ।

ହଁ, ସେହି ରାତ୍ରିର ସାଢ଼େ ଗୋଟାଏ ସମୟ । ସେବାରେ ଥିବା ଶୈଳବାଳା, ଚାମୁଚାଏ ମାତ୍ର ପାଣି ନେଇ ମଧୁସୂଦନଙ୍କ ତୁଣ୍ଡରେ ଦେଲେ, ଯାହା ଅତ୍ୟନ୍ତ ଅକ୍ଳେଶରେ ସେ ଗ୍ରହଣ କରିନେଲେ । ଏକାନ୍ତ ଜାଗରୁକତା ସହ ସହସା ତାଙ୍କର ଜ୍ୟୋତିସ୍ନାତ ମୁଖମଣ୍ଡଳ ପରିପ୍ଲୁତ ଆଉ ଉଦ୍‌ଭାସିତ ହୋଇଗଲା ସ୍ମିତ ହାସରେ । ତାଙ୍କର ଚକ୍ଷୁଯୁଗଳରେ ଦୋଳାୟିତ ହେଉଥିଲା ଅନିର୍ବାଣ ଜ୍ୟୋତି ଶିଖା । ଶୁଚିଶୁଭ୍ର ପବିତ୍ରତା ଆଉ ସ୍ତବ୍ଧ ପ୍ରସନ୍ନତାର ସ୍ୱର୍ଗୀୟ ଆଭାମୟ ଉତ୍ତାଳ ଦୀପ୍ତି ଆବରିତ କରିଥିଲା ସର୍ବାଙ୍ଗ ଶରୀରକୁ । ବାହାରେ ଚନ୍ଦ୍ର କିରଣର ଉଦ୍‌ବେଳିତ ଲହରୀମାଳା ଖେଳୁଥାଏ ମଧୁସ୍ମୃତିର ମହିମାନ୍ୱିତ ପରିସରରେ । ସର୍ବତ୍ର ଆଲୋକର ସମାରୋହ ଆଉ ବିଭାମୟ ଦୀପ୍ତିର ପରିପ୍ରସାର । ଠିକ୍ ରାତି ଗୋଟାଏ ପଞ୍ଚତିରିଶି ମିନିଟ୍ ସମୟ । ଅତନ୍ଦ୍ର ସଚେତନତା ଆଉ ନିର୍ଲିପ୍ତ ଜାଗରୁକତା ମଧ୍ୟରେ ମଧୁସୂଦନଙ୍କର ମହାପ୍ରୟାଣ ଯାତ୍ରାର ଆରମ୍ଭହେଲା ଏକ ପର୍ଯ୍ୟାୟରୁ ଅନ୍ୟ ଏକ ପର୍ଯ୍ୟାୟର ଊର୍ଦ୍ଧ୍ୱାୟିତ ସ୍ତରକୁ , ସ୍ୱର୍ଗୀୟ ସାମ୍ରାଜ୍ୟର ଅନିର୍ବଚନୀୟ ସ୍ଥିତିକୁ ।

ମଧୁସୂଦନ କୌଣସି ସମୟରେ ଇଚ୍ଛା ପ୍ରକାଶ କରିଥିଲେ- ତାଙ୍କର ଉତ୍ସର୍ଗୀକୃତ ଜୀବନର ଏକାନ୍ତ ଅନୁପ୍ରେରଣାର ଆଗ୍ନେୟ ଉତ୍ସ-ସତୀପୀଠ (ତାଙ୍କ ପଣଜେଜୀମାଙ୍କର ସ୍ମୃତି କ୍ଷେତ୍ର)ରେ ତାଙ୍କର ସଂସ୍କାର ପାଇଁ । ସେ ବେଳର ସ୍ଥିତି ବଦଳି ଯାଇଥିଲା । ତାଙ୍କର ଭ୍ରାତୃଜାୟା ବସନ୍ତ କୁମାରୀଙ୍କର ଅଭିଳାଷ ଥିଲା ହିନ୍ଦୁରୀତିରେ ମଧୁସୂଦନଙ୍କର ମୃତପିଣ୍ଡକୁ ସତ୍କାର କରିବାପାଇଁ । ବହୁ ଆଲୋଚନା ପରେ ଲୋକାଚାର ପଦ୍ଧତିରେ ସ୍ଥିର ହେଲା ଯେ ତାଙ୍କର ପୁଣ୍ୟ ଶରୀରକୁ ସନ୍ଥ ସନ୍ନ୍ୟାସୀଙ୍କ ପବିତ୍ର ଶରୀର ପରି ଗୋରା କବରରେ ସମାଧିସ୍ଥ କରିବାପାଇଁ । ଏହାଥିଲା ସର୍ବସମ୍ମତ ଆଉ ସର୍ବଶ୍ରେଷ୍ଠ ସିଦ୍ଧାନ୍ତ ।

ତାହାଥିଲା ୧୯୩୪ ସାଲର ଫେବ୍ରୁଆରି ୪ ତାରିଖ, ଫାଲ୍‌ଗୁନ କୃଷ୍ଣ ପଞ୍ଚମୀର ତିଥି । ସେହି ଶୁଭ୍ରାଭ ଚନ୍ଦ୍ର କିରଣର ପରିପ୍ଲୁତ ରଜନୀରେ ରାତ୍ରି ଅବସାନ ହେବାର ବହୁପୂର୍ବରୁ ପ୍ରାତଃ ତିନିଘଣ୍ଟା ସମୟରେ ମଧୁସୂଦନଙ୍କର ପବିତ୍ର ଶରୀରକୁ ସ୍ନାନ ମାର୍ଜନା କରାଗଲା । ତିରୋଧାନ ପୂର୍ବରୁ ତାଙ୍କର ବାଣୀ ଥିଲା, ‘‘ଅନ୍ତରକୁ ପରିଷ୍କାର କର, ସ୍ୱତଃ ବାହାର ମଧ୍ୟ ପରିଷ୍କୃତ ହୋଇଯିବ ।’’ ଶୁଚିଶୁଭ୍ର ପବିତ୍ରିତ ମଧୁସୂଦନଙ୍କ ଶରୀରରେ ହାତକଟା ସୂତାରେ ତିଆରି ଧୋତି ପଞ୍ଜାବୀ, ଆଉ ହାତକଟା ସୂତାରେ ତିଆରି ମୋଟା କୋଟ ପିନ୍ଧାଇ ଦିଆଗଲା ଶୀତକୁ ପ୍ରତିହତ କରିବାପାଇଁ, ଯାହାକୁ ପରିଧାନ କରି ସେ ଶୀତଋତୁରେ ସଭାସ୍ଥଳକୁ ଯାଉଥିଲେ । ଖଣ୍ଡପଡ଼ାର ହାତବୁଣା ଚାଦରକୁ ପରସ୍ତ ପରସ୍ତ ଭାଂଗି ବେକରେ ଥାପି ଦିଆଗଲା । ତାଙ୍କର ସୁକୁମାର କମନୀୟ ଶିଳ୍ପୀର ବୈଚିତ୍ର୍ୟ ବିମଣ୍ଡିତ କଳାପ୍ରାଣ ହସ୍ତ ଦୁଇଟି, ଯାହା ମହାତ୍ମାଗାନ୍ଧୀଙ୍କୁ ବାରମ୍ବାର ଆକର୍ଷିତ କରୁଥିଲା କଳାନୈପୁଣ୍ୟର ପରାକାଷ୍ଠାରେ, ସେହି ହସ୍ତ ଦୁଇଟିର କଳାନୈପୁଣ୍ୟ ସୃଜନଶୀଳ ଅଙ୍ଗୁଳିକୁ ଯୋଡ଼ ହସ୍ତ କରି ରଖାଯାଇଥିଲା ବିଦାୟକାଳୀନ ପ୍ରଣିପାତ ମୁଦ୍ରାରେ ସୁବିସ୍ତାରିତ ବକ୍ଷ

ଉପରେ । ହଁ, ସେହି ବକ୍ଷର ଅନ୍ତରାଳରେ ଯାହା ଗୁଞ୍ଜରଣରେ ଧ୍ୱନିତ ହେଉଥିଲା ଏହି ପଦ୍ୟାଂଶରେ, ''ସ୍ୱାର୍ଥମେଧ ଯଜ୍ଞେ ଚାରିଆଡ଼େ ନାଚ ଛାତିକୁ ମିଶାଇ ଛାତି ।''

ତଳମହଲାର ବୈଠକଖାନା, ଯହିଁରେ ଶ୍ୱେତ ମାର୍ବଲର ଫଳକ ସବୁ ବିଛା ଯାଇଥିଲା, ତାହାର ମଧ୍ୟଭାଗରେ ପଲଙ୍କଟିଏ ରଖି ମଧୁସୂଦନଙ୍କ ପୁଣ୍ୟ ପିଣ୍ଡକୁ ଶୁଆଇ ଦିଆଗଲା । ପୁଷ୍ପ ଓ କର୍ପୂର ମାଳାରେ ଶରୀର ବିମଣ୍ଡିତ ହେଲା । ପ୍ରତ୍ୟୂଷରୁ ହଜାର ହଜାର ଲୋକ ତାଙ୍କର ଶେଷ ଦର୍ଶନପାଇଁ ଆସିଲେ । ପ୍ରଶାନ୍ତି ଲହରୀ ସର୍ବତ୍ର ପରିବ୍ୟାପ୍ତ ହେଉଥିଲା । ସକାଳ ସୂର୍ଯ୍ୟର ଝଲସା କିରଣ ଶରୀରକୁ ସ୍ୱର୍ଗୀୟ ଆଭାରେ ଭରିଦେଇଥାଏ । ସ୍ମିତହାସ୍ୟ ଯେପରି ଲାଖି ରହିଥାଏ ଓଠରେ । ପର୍ଦାନସୀନ ମହିଳାମାନେ, ପ୍ରଭାତର ଶିଶିରସିକ୍ତ ଅର୍ଦ୍ଧ ପ୍ରସ୍ଫୁଟିତ ଫୁଲପରି ଶିଶୁ ପୁତ୍ର ଆଉ କନ୍ୟାମାନଙ୍କୁ ଆଣି ତାଙ୍କର ଚରଣ ତଳେ ଲୋଟାଇ ଦେଇ ଦୀର୍ଘ ଜୀବନ କାମନା କରୁଥିଲେ । ଏହି ଦୃଶ୍ୟଥିଲା ଅତ୍ୟନ୍ତ ମନୋଜ୍ଞ ଓ ପ୍ରାଣବନ୍ତ । ସକାଳ ନଅଟାରୁ ଭିଡ଼ କ୍ରମଶଃ ବଢ଼ିବାକୁ ଲାଗିଲା । ବିଗତ ରାତ୍ରି ମଧ୍ୟରେ ମଧୁସୂଦନଙ୍କର ତିରୋଧାନ ସଂବାଦ ପୁରୀ, କେନ୍ଦ୍ରାପଡ଼ା, ଯାଜପୁର ଆଉ ବାଣପୁର ପର୍ଯ୍ୟନ୍ତ ପ୍ରଚାରିତ ହୋଇଯାଇଥିଲା । ଏହି ସମସ୍ତ ଅଂଚଳର ଶୋକାକୁଳ ଜନତା କ୍ରମେ ପହଞ୍ଚିବାକୁ ଲାଗିଲେ । ଏହା ସହିତ ଏହି ସମଗ୍ର ଅଞ୍ଚଳରୁ ସଂକୀର୍ତ୍ତନ ଦଳ ମଧ୍ୟ ଆସି ପହଞ୍ଚିଲା ।

ଦିନ ଗୋଟାଏ ପର୍ଯ୍ୟନ୍ତ ତାଙ୍କର ଅନ୍ତିମ ଦର୍ଶନ ଚାଲିଲା । ଶୀତର ଜଡ଼ତା ମଧ୍ୟରେ ଉଷ୍ମ ସୂର୍ଯ୍ୟାଲୋକ ଏକ ସ୍ୱସ୍ତିପ୍ରଦ ବାତାବରଣ ସୃଷ୍ଟିକରି ଶୋକାକୁଳ ପରିବେଶକୁ ସ୍ନିଗ୍ଧତା ପ୍ରଦାନ କରୁଥିଲା । ତାଙ୍କୁ ବାହାର ପୋର୍ଟିକକୁ ଅଣାଯାଇ ଏକ ପ୍ରଶସ୍ତ ପଲଙ୍କରେ ପୁଷ୍ପାଭରଣରେ ବିମଣ୍ଡିତ କରି ଦିଆଗଲା । ଏହା ପରେ ବିଭିନ୍ନ ସାମାଜିକ ଗୋଷ୍ଠୀମାନଙ୍କୁ ଘେନି ସଂଘବଦ୍ଧ ଫଟୋ ଉତ୍ତୋଳନ କରାଗଲା ।

ଅପରାହ୍ଣ ତିନିଟା ସମୟ । ଢଳି ଯାଇଥିବା ସୂର୍ଯ୍ୟଙ୍କ କିରଣରେ ବୃକ୍ଷରାଜିର ଛାୟାସବୁ ଲମ୍ବି ଯାଇଥିଲେ । ଶୀତଳ ପବନ ଉଚ୍ଚାଟ ହୋଇ ବହିବାକୁ ଲାଗିଲା । ବ୍ରଜସୁନ୍ଦର ଦାସଙ୍କ ସଂକ୍ଷିପ୍ତ ଘୋଷଣା ପରେ ଅନ୍ତିମ ଶୋଭାଯାତ୍ରା ଆରମ୍ଭ ହେଲା । କମନୀୟ ପୁଷ୍ପର ଆଚ୍ଛାଦନରେ ସୁସଜ୍ଜିତ ପଲଙ୍କକୁ ନେଇ ଆରମ୍ଭ ହେଲା ଯାତ୍ରା । ସୂର୍ଯ୍ୟାଲୋକର ପ୍ରଖର ଦୀପ୍ତିରେ ତାଙ୍କ ମୁଖମଣ୍ଡଳ ଅପୂର୍ବ କାନ୍ତିରେ ଝଲସି ଉଠୁଥାଏ । ପ୍ରଥମେ ବ୍ରଜସୁନ୍ଦର ଦାସ, ବିଚିତ୍ରାନନ୍ଦ ଦାସ, ପ୍ରାଣକୃଷ୍ଣ ପରିଜା ଆଉ କଲେଜ ଛାତ୍ରଗଣ ଶବାଧାରକୁ ଧରି ଯାତ୍ରା ଆରମ୍ଭ କଲେ । ଆଗରେ ସୁବିଶାଳ ସଂକୀର୍ତ୍ତନ ଦଳ ନାମ ସଂକୀର୍ତ୍ତନ ଗାନ କରି ସମସ୍ତ ପରିବେଶକୁ ପବିତ୍ରତାର ବାତାବରଣରେ ଋଦ୍ଧିମନ୍ତ କରୁଥିଲେ, ଯହିଁରେ ଶୋକଚ୍ଛ୍ୱାସର କାରୁଣ୍ୟ ଅତ୍ୟନ୍ତ ଭାବପ୍ରବଣତାର ସହ ଉକୁଟି ଥିଲା । ଅଶ୍ରୁପ୍ଲାବିତ ନୟନରେ ଚାପା କ୍ରନ୍ଦନର ଗୁଞ୍ଜରଣ ଅତୀବ ହୃଦୟ ବିଦାରକ ହୋଇଥିଲା । ମଝିରେ ମଝିରେ ଶୋଭାଯାତ୍ରାକୁ ସ୍ଥଗିତ ରଖି ବିଭିନ୍ନ ସ୍ଥାନର ଚିତ୍ର ଉତ୍ତୋଳନ କରାଯାଉଥିଲା । ରାସ୍ତାର ଦୁଇପାଖରେ କୋଠା ଛାତରୁ ମହିଳାଗଣ ପୁଷ୍ପବୃଷ୍ଟି ସହ ଗଂଗାଜଳ ଆଉ ଅତର ସିଞ୍ଚନ କରି ଚାଲିଥିଲେ । ସଂକୀର୍ତ୍ତନ ଦଳ ପଶ୍ଚାତରେ ଛାତ୍ରଗଣ ମଧୁସୂଦନଙ୍କ ରଚିତ ଦେଶାତ୍ମବୋଧକ ସଂଗୀତ ଐକ୍ୟତାନିକ ସ୍ୱରରେ ଗାନ କରୁଥିଲେ ।

ଜାତିପ୍ରେମ ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି
ସ୍ୱାର୍ଥମେଧ ଯଜ୍ଞେ ଚାରିଆଡ଼େ ନାଚ
ଛାତିକୁ ମିଶାଇ ଛାତି ।

କ୍ଷଣକ ପରେ ପୁଣି ଉଦ୍‌ବେଳିତ କଣ୍ଠରେ ନିନାଦିତ ହେଉଥିଲା ଦେଶମାତୃକାର ମହିମାନ୍ୱିତ ଗାନ ଉଚ୍ଛସିତ ଆବେଗରେ ଆଉ ମନ୍ଦ୍ରିତ ସ୍ୱର ଝଙ୍କାରରେ-

କୋଟିଏ ସନ୍ତାନ ଗୋଟିଏ ସ୍ୱରରେ
ଜନନୀ ଜନନୀ ଡାକ
ତୃଷ୍ଣାରେ କାତର ଜନନୀଙ୍କୁ ଚାହିଁ
ଯେସନେ ଡାକେ ଚାତକ ।

ଏହି ଅମୃତସ୍ରାବୀ ସଂଗୀତ ଗାନ, ପରିବେଶକୁ ଅତ୍ୟନ୍ତ ମହିମାନ୍ୱିତ କରିବା ସହିତ ଶୋକ ବିଧୂରିତ କରିଦେଇଥିଲା । ଶୋଭାଯାତ୍ରାର ଚାକ୍ଷୁଷ ବିବରଣୀ ପ୍ରଦାନ କରିଛନ୍ତି ସାରସ୍ୱତ ପୁରୁଷ ଗୋପାଳ ଚନ୍ଦ୍ର ପ୍ରହରାଜ ଏହିପରି ଭାବରେ-

''ହେ ମଧୁସୂଦନ ! ସେହି ୪.୨.୧୯୩୪ରେ ଦିବା ତିନିଟାଠାରୁ ସନ୍ଧ୍ୟା ପାଞ୍ଚଟା ପର୍ଯ୍ୟନ୍ତ ତୁମ ଶବ ଯେତେବେଳେ ବିମାନରେ ବାହିତ ହୋଇ କଟକର ପ୍ରଧାନ ରାଜଦାଣ୍ଡ ବାଟେ ମିଶନ୍ ରୋଡ୍, ବକ୍ସି ବଜାର, ତିନିକୋଣିଆ ବଗିଚା, ଚଉଧୁରୀ ବଜାର, ନୂଆ ସଡ଼କ, ବାଲୁବଜାର, ଚାନ୍ଦିନୀଚୌକ, ମେହେନ୍ଦୀପୀର, କଟକ ଚଣ୍ଡୀ, କନିକା କୋଠି ଓ ତୁଳସୀପୁର ବାଟେ ଗଲା, ସେ ବିମାନରେ କାନ୍ଧ ଲଗାଇଛନ୍ତି ସମସ୍ତେ । ସେ ବିମାନକୁ ଫୁଲ ପକାଇଛନ୍ତି ସମସ୍ତେ । ପୁରୁଷଙ୍କ ହରିବୋଲ ଏବଂ ମାଇପଙ୍କ ହୁଳହୁଳି ଶବ୍ଦରେ କଟକ ସହର ଉଚ୍ଛୁଳି ପଡ଼ିଲା । ତୁମ ଶବାଧାର ସଂଗେ ପଦବ୍ରଜରେ ଯାଉଥାନ୍ତି ୫ରୁ ୭ହଜାର ସରିକି ଲୋକ । ରାସ୍ତା ଦୁଇପାଖରେ ଚାଳଘର, କୋଠାଛାତ, ପାରାପେଟ, ଗଛଡ଼ାଳ ଉପରେ ଚଢ଼ି ଦେଖୁଥାଆନ୍ତି ଆଉ ପ୍ରାୟ ପାଞ୍ଚ ହଜାର ଜନତା । ଯାହା କହନ୍ତି ଏ ଭିଡ଼ ଭିତରେ ପିମ୍ପୁଡ଼ି ଗଳି ଯିବାକୁ ବାଟ ନଥିଲା । ଶବ ଯାତ୍ରାରେ ଏତେ ଲୋକ ଶବ ସଙ୍ଗେ ପଟୁଆର କରି ଚାଲିବାର କଟକ ସହରର ଇତିହାସରେ ଏହା ହିଁ ଅଭିନବ ଦୃଶ୍ୟ । ସତକୁ ସତ ଦେଖାଗଲା ''ତୁମେ ଉତ୍କଳର ମୁକୁଟହୀନ ରାଜ ଚକ୍ରବର୍ତ୍ତୀ ।''

ଏହି ବିବରଣୀ ଏଠାରେ ସ୍ଥଗିତ ରଖି ପରବର୍ତ୍ତୀ ପର୍ଯ୍ୟାୟକୁ ଯିବା । ଏହି ସୁଦୀର୍ଘ ଶୋଭାଯାତ୍ରାରେ ମୁହ୍ୟମାନ ଶୋକାକୁଳ ଜନତାର ସ୍ତବ୍ଧୀଭୂତ ଯାତ୍ରା । ନୀରବତା ଯେପରି ଆକୃତିରେ ଲୋତକ ପ୍ଲାବିତ ହୋଇ ଚାଲିଥାଏ । ହଠାତ୍ ସେହି ନୀରବତାକୁ ବିଦୀର୍ଣ୍ଣ କରି ଗୁଞ୍ଜରି ଉଠିଲା, ଲଳିତ ହେଲେ ମଧ୍ୟ ବଜ୍ର ନିର୍ଘୋଷ କଣ୍ଠରେ ସଂଗୀତର ମୂର୍ଚ୍ଛନା-

'ଭାଇ କାନ୍ଦିବା ହେ ସତ, ଫେରି ଆସେ କି ପୁଷ୍ପକ ରଥ ହେ ।'

ଅତ୍ୟନ୍ତ ବିହ୍ୱଳିତ ଆଉ ଶୋକାଭିଭୂତ ହୋଇ ମଧୁସୂଦନଙ୍କର ଏକାନ୍ତ ଅନୁଗାମୀ, ପ୍ରବୀଣ

ବିଧାୟକ ଏବଂ ଆଶୁ କବି ନିକୁଞ୍ଜ କିଶୋର ଦାସ ଏହି ଗୀତର ପଦକୁ ରଚନା କରୁକରୁ, ତାଙ୍କ ସହିତ ଯାତ୍ରା କରୁଥିବା ଉଦୀୟମାନ ତରୁଣ ଗାୟକ ନିମାଇଁ ହରିଚନ୍ଦନ ହାର୍‌ମୋନିୟମ୍‌ରେ ତତ୍କାଳ ସୁରଦେଇ ସଂଗୀତଟିଏ ଗାଇଉଠିଲେ, ଯାହା ଶୋଭାଯାତ୍ରାକୁ ବିପୁଳ ପ୍ରାଣବନ୍ତ କରିଥିଲା -

'' ସୁମେରୁର ଶୃଙ୍ଗ ପଡ଼ିଲାରେ ଟଳି
ଲୁଚିଗଲା ଅଂଶୁମାଳି ହେ,
ଗମ୍ଭୀରି ଘରର ସୁନାଦୀପ ଆଜି
ଲିଭିଗଲା ଶେଷେ ଜଳି ହେ
ଭାଇ କାନ୍ଦିବା ହେ ସତ- ଫେରି ଆସେ କି ପୁଷ୍ପକ ରଥ ହେ ।୧।
ଓଡ଼ିଆ ଜାତିର ମଥାମଣି ଆଜି
ହଜି ଯାଇଛି ଅତଳେ ହେ,
ଅରଚନା ଠୁଳ କୋଣାର୍କ ଦେଉଳ,
ଲୋଟି ପଡୁଛି ଭୂତଳେ ହେ,
ଭାଇ କାନ୍ଦିବା ହେ ସତ- ଫେରି ଆସେ କି ପୁଷ୍ପକ ରଥ ହେ ।୨।
ଦେଶସାରା ଆଜି ଅଶ୍ରୁ ହାହାକାରେ
ବୁକୁଫଟା ଦୀର୍ଘଶ୍ୱାସେ ହେ
ଅଶ୍ରୁର ଅତୀତ ଏ ଦାରୁଣ ଖେଦ,
ମରମେ ଦିଏ ପରାଶ ହେ ।
ଭାଇ କାନ୍ଦିବା ହେ ସତ- ଫେରି ଆସେ କି ପୁଷ୍ପକ ରଥ ହେ ।୩।
ଯାଅ ବୀରମଣି ଫୁଲପରାପଥେ
ପୂର୍ଣ୍ଣ ବଇକୁଣ୍ଠ ଧାମେ ହେ
ଦେଶ ଧୂଳି ମାଟି ମହୁରି ଯାଇଛି
ତୁମରି ପବିତ୍ର ନାମେ ହେ
ଭାଇ କାନ୍ଦିବା ହେ ସତ- ଫେରି ଆସେ କି ପୁଷ୍ପକ ରଥ ହେ ।୪।''

ସେହି ଗୀତି ସର୍ବତ୍ର ବହିଚାଲିଛି ଏକ ଶିହରଣରେ ସଭିଙ୍କର ପ୍ରାଣ ପିଞ୍ଜରାକୁ ଉଦ୍‌ବେଳିତ କରି । ସେହି ସଂଗୀତ ହୃଦୟର ତନ୍ତ୍ରୀରେ ସୃଷ୍ଟି କରିଥିଲା ବିଷାଦର ନିବିଡ଼ ବିହ୍ୱଳତା । ସେହି ଶୋଭାଯାତ୍ରା ଚାଲିଛି ଦ୍ୱରିତ ଗତିରେ । ଅବାରିତ ତା'ର ଯାତ୍ରାପଥ । ''ତାଙ୍କର ଶବକୁ ଯିଏ ଦେଖିଛି, ସେ ମରିଛନ୍ତି ବୋଲି ବିଶ୍ୱାସ ହୁଏ ନାହିଁ । ସତେ ଯେପରି ପିତାମହ ଭୀଷ୍ମ ଶରଶଯ୍ୟାରେ ଶୋଇ ଇଚ୍ଛାମୃତ୍ୟୁ ବରି ନେଇଛନ୍ତି । ମୁହଁରେ କି ପ୍ରଶାନ୍ତିର ଭାବ । ଆଖି ଦୁଇଟି ବୁଜି ହୋଇ ରହିଛି । ହାତ ଦୁଇଟି ଯୋଡ଼ିହୋଇ ରହିଛି । ସତେଯେପରି କି ମହାଯୋଗୀ ତାଙ୍କର ସର୍ବସ୍ୱ ସେହି

ସ୍ରଷ୍ଟାଙ୍କ ଚରଣରେ ଅର୍ପଣ କରି ଧ୍ୟାନମଗ୍ନ ରହିଛନ୍ତି । ସେହି ଧ୍ୟାନ ହିଁ ତାଙ୍କର ଶେଷଧ୍ୟାନ ହେଲା ।''(ଉତ୍କଳଦୀପିକା)

ମଧୁସୂଦନଙ୍କର ସେହି ମହାଯାତ୍ରା ଚିରକାଳ ଲାଗି ରହିଛି ଅନତିକ୍ରମ୍ୟ । ଜନଶ୍ରୁତି କହେ, ଏହାକୁ ଅତିକ୍ରମ କରିବା ଭଳି ଶୋଭାଯାତ୍ରା, ଏ ପର୍ଯ୍ୟନ୍ତ କଟକ କିମ୍ବା ଓଡ଼ିଶାରେ ସଂଘଟିତ ହୋଇନାହିଁ । ଅଶ୍ରୁପାତର ଅଥଳ ବନ୍ୟା ଓ ହୃଦୟ ଉଦ୍‌ବେଳନର ଅକୁହା କୁହାଟରେ ସତେ ଯେପରି ଏହା ଦଗ୍ଧ କରିଦେଇଥିଲା ସାରା ଓଡ଼ିଶା ଆଉ କଟକ ସହରକୁ । ଯେପରି ସାରା ଭୂଖଣ୍ଡ ଆପ୍ଲୁତ ହୋଇଯାଇଥିଲା ଉତ୍ତାଳ ଜୁଆରରେ । କଟକ, କେଉଁଝର, ମୟୂରଭଞ୍ଜ, ସୋନପୁର କିମ୍ବା ମଣିଆବନ୍ଧ  ଶିଳ୍ପୀକୁଳର ଶୋକ କିଭଳି ବେଦନା ବିଧୂରିତ  ତାହା ଥିଲା ଅକଳନୀୟ ।

ବୁଦ୍ଧିଜୀବୀଙ୍କ ମହଲରେ ସେ ପରିଚିତ ଥିଲେ ନବ ଓଡ଼ିଶାର ନିର୍ମାତା ରୂପରେ; ଅଥଚ କଟକର ପ୍ରତିଟି ଦରିଦ୍ର, ନିରନ୍ନ କାରିଗରଙ୍କ ମେଳରେ ସେ ଥିଲେ  ନିତିଦିନିଆ ସାଥୀ, ନିୟାମକ ଆଉ ଜୀବନପ୍ରଦାୟକ ସଂସ୍ଥାପକ ।

କଟକର ଲୋକସଂଖ୍ୟା ସେତେବେଳେ ପ୍ରାୟ ପଚିଶି ହଜାରରୁ କମ୍ ଥିବାବେଳେ ଏହି ଶୋଭାଯାତ୍ରାରେ ସହଯାତ୍ରୀ ଥିଲେ ପ୍ରାୟ ଷୋହଳ ହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତି । ବିଭିନ୍ନ ସ୍ଥାନରେ ଉପସ୍ଥିତ ରହି ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଚାଲିଥିଲେ । ଏଥିରୁ କେବଳ ବାଦ୍ ଯାଇଥିଲେ ଶିଶୁ, କିଛି ବୃଦ୍ଧ ଆଉ କଛି ପର୍ଦାନସୀନା ମହିଳା । ପ୍ରାୟ ପାଞ୍ଚ ହଜାର ପରିବାର ମଧ୍ୟରୁ କେତକ ମୁଷ୍ଟିମେୟ ସମ୍ଭ୍ରାନ୍ତ ପରିବାରକୁ ଛାଡ଼ିଦେଲେ ନିଃସ୍ୱବର୍ଗର ପ୍ରତ୍ୟେକ ପରିବାର ଏହି ଶୋଭାଯାତ୍ରାରେ ଅଂଶ ଗ୍ରହଣ କରିଥିଲେ । ଅନ୍ୟ ଅର୍ଥରେ କଟକର ସମସ୍ତ ପରିବାରଙ୍କ ମଧ୍ୟରୁ ଶତକଡ଼ା ନବେ ଭାଗ ପରିବାର ଏହି ଶୋଭାଯାତ୍ରାରେ ଅଂଶଗ୍ରହଣ କରିଥିଲେ ।

ଏହି ଶୋଭାଯାତ୍ରାରେ ପ୍ରତିଟି ଶ୍ରମଜୀବୀ, କାରିଗର , ନିରନ୍ନ ଭିକାରୀ, ମାନସିକ ଭାରସାମ୍ୟ ହରାଇଥିବା  ପାଗଳ, ଗୀତଗାଇ ଭିକ୍ଷା ଆହରଣ କରୁଥିବା ଅନ୍ଧ ଭିକାରି,  କୁଷ୍ଠରୋଗୀ, ଅନାଥାଶ୍ରମର  ଅନ୍ତେବାସୀ, ଚମାର  ଆଉ ମୋଚି, କୁଶଳୀ ଶିଙ୍ଗ କାରିଗର ଆଉ ଜାତି ଭେଦର ପ୍ରାଚୀରକୁ କାଟିଦେଇ ବ୍ରାହ୍ମଣଠାରୁ ଶୂଦ୍ର  ପର୍ଯ୍ୟନ୍ତ, ତାରକସି ଶିଳ୍ପୀ ,ତନ୍ତୀ, ତୈଳିକ ଓ ଦଳିତ ଆଦି ସମସ୍ତେ ଯୋଗ ଦେଇଥିଲେ ।

ଆହାଃ ! ମଧୁସୂଦନ ବ୍ୟକ୍ତିଗତ ଭାବରେ ଏହି ସମସ୍ତ ପରିବାର ସହିତ ଅଚ୍ଛେଦ୍ୟ ଭାବେ ନିବଦ୍ଧିତ ରହିଥିଲେ ଆଉ ପ୍ରତିଟି ପରିବାରର ପ୍ରତିପୋଷଣର ମାର୍ଗଦର୍ଶକ  ଭାବରେ ଦଣ୍ଡାୟମାନ ରହି ସେମାନଙ୍କୁ ନିତିଦିନିଆ ରୋଜଗାରର ପନ୍ଥା ଯୋଗାଇ ଚାଲିଥିଲେ ।

ଏହି ମହାଯାତ୍ରାର ବେଳାରେ ବିଳପିତ ହୃଦୟର ଆବେଗରେ ଜଣେ ଓଡ଼ିଆ ଦୀର୍ଘଶ୍ୱାସ ଛାଡ଼ି  କହି ଉଠିଥିଲା-''ଆହାଃ ! ଓଡ଼ିଆ ଜାତିର କେଡ଼େ ବଡ଼ ଥାଟ ଆଜି ଚାଲିଗଲା !!''

ଆଉ ଯାହା ରହିଲା, ତାହା କେବଳ ପ୍ରତାରଣାର ଖାଁ ଖାଁ ବିରାଟ ଶୂନ୍ୟତା ।

ସେ ଥିଲେ ଓଡ଼ିଆ ଜାତିର ତ୍ରାଣକର୍ତ୍ତା । ଦୀର୍ଘ ସାଢ଼େ ତିନିଶହ ବର୍ଷର ଅନ୍ତରାଳରେ ହେଲେ ସ୍ୱତନ୍ତ୍ର ପ୍ରଦେଶର ପ୍ରତିଷ୍ଠାତା । ତାଙ୍କ ଜୀବନର ଯାତ୍ରାପଥ ଥିଲା ବାଧା ନିପୀଡ଼ିତ । ଏ ସମସ୍ତ ସତ୍ତ୍ୱେ ସେ ରହିଛନ୍ତି ଅପରାଜେୟ । ତାଙ୍କର ଅପରାଜିତ ପ୍ରାଣସତ୍ତା କଙ୍କାଳ ସାର ଓଡ଼ିଆ ଜାତିର ମର୍ମରେ ଜୀଜୀବିଷା ଆଉ ଜୈତ୍ର ପ୍ରାଣର ଜିଗୀଷା ସୃଷ୍ଟି କରିଥିଲା । ସେ ମୃତପ୍ରାୟ ଜାତିର ପ୍ରାଣରେ ସଂଜୀବନୀ ସିଞ୍ଚି ଜାତିକୁ ଜୀବନ୍ୟାସ ପ୍ରଦାନ କରିଥିଲେ । ଏବେ ତାଙ୍କ ବିଜୟର ବାହୁଡ଼ାଯାତ୍ରା ।

ନିମାଇଁ ହରିଚନ୍ଦନଙ୍କର ଗୀତି ମୂର୍ଚ୍ଛନା ନୀରବିତ ହେଲାଣି । ଯାତ୍ରା ପହଞ୍ଚିଛି ତୁଳସୀପୁରରେ । ଶୀର୍ଣ୍ଣ ଦେବଦାରୁ ବୃକ୍ଷଗୁଡିକରେ ଅସ୍ତଗାମୀ ସୂର୍ଯ୍ୟଙ୍କର ରକ୍ତିମ ଆଭା । ଘରବାହୁଡ଼ା ପକ୍ଷୀମାନଙ୍କ କାକଳିରେ ପରିସର ମୁଖରିତ । ଓଡ଼ିଆ ଜାତିର ଦ୍ୱିତୀୟ ବାରବାଟୀ ମଧୁସ୍ମୃତିରୁ ଆରମ୍ଭ ହୋଇଥିବା ଯାତ୍ରା ଆସି ପହଞ୍ଚିଛି, ଐତିହାସିକ ଜୀର୍ଣ୍ଣ ବାରବାଟୀର ପରିଖା ଧାରରେ, ଯାହା ବହୁ ଶହ ବର୍ଷ ଧରି ଓଡ଼ିଶା ସାମ୍ରାଜ୍ୟକୁ ସୁରକ୍ଷା ପ୍ରଦାନ କରି ଆସିଥିଲା । ଏହି ପରିଖା ଧାରର ନିର୍ଦ୍ଧାରିତ ରାସ୍ତା ଥିଲା ମଧୁସୂଦନଙ୍କ ପ୍ରଭାତୀ ଭ୍ରମଣର ଯାତ୍ରାପଥ । ଏହି ପଥରେ ଚାଲିଥିଲା ମଧୁସୂଦନଙ୍କ ବିଜୟ ବାହୁଡ଼ାର ଯାତ୍ରା । କ୍ରମେ ତ୍ୱରିତ ଗତିରେ ସେହି ଶୋଭାଯାତ୍ରା ଯାଇ ପହଞ୍ଚିଲା, ମହାନଦୀ ତୀରସ୍ଥ ଗୋରା କବରରେ। ସନ୍ଧ୍ୟା ପୂର୍ବରୁ ହିଁ ସମସ୍ତ କର୍ମ ସଂପାଦନ କରିବାର ବିଧିବ୍ୟବସ୍ଥା । ପତ୍ର ଗହଳିରେ ଶୀର୍ଣ୍ଣ ସୂର୍ଯ୍ୟାଲୋକ କ୍ରମଶଃ ଅପସାରିତ ହେବାକୁ ଲାଗିଲା । ଏକ ଉଦାସ ଭାବବିହ୍ୱଳିତ ବିଷର୍ଣ୍ଣତାର ଛାୟା ସମସ୍ତ ପରିବେଶକୁ ଆକ୍ରାନ୍ତ କରିଥାଏ । ସେହି ସମୟର ବର୍ଣ୍ଣନା 'ସମାଜ' ପୃଷ୍ଠାରେ ଏହିଭଳି ରୂପାୟିତ ହୋଇଛି -

ହଜାର ହଜାର ଜନତା କବର ଭୂମିରେ ଜମା ହୋଇଥାନ୍ତି । ରାଜ ଦ୍ୱାରେ ଶ୍ମଶାନେ ଚ ଯଃ ତିଷ୍ଠତି ସଃ ବାନ୍ଧବ । ହିନ୍ଦୁ, ମୁସଲମାନ, ଶିଖ, ଖ୍ରୀଷ୍ଟିଆନ, ଦେଶୀ, ବିଦେଶୀ, କଳା, ଗୋରା ସମସ୍ତେ ଯେ ତାଙ୍କର ବନ୍ଧୁ ଥିଲେ ଏହାର ପ୍ରମାଣ ସେହି କବର ଭୂମିରେ ମିଳିଗଲା । ହାଇକୋର୍ଟ ଜଜ୍ ମିଷ୍ଟର ଜେମ୍ସ, ଜିଲ୍ଲା ଜଜ୍ ମିଷ୍ଟର ମେଡ଼ମ୍, ପଞ୍ଜାବର ମିଷ୍ଟର ବେରିଲିଙ୍ଗଠାରୁ ଆରମ୍ଭ କରି କଟକର ସମସ୍ତ ବିଶିଷ୍ଟ ସରକାରୀ ଲୋକ, ଶ୍ରୀଯୁକ୍ତ ଜାନକୀନାଥ ବୋଷଙ୍କଠାରୁ ଆରମ୍ଭ କରି କଟକର ସମସ୍ତ ଓକିଲ, ଅଧ୍ୟାପକ ପରିଜାଙ୍କଠାରୁ ଆରମ୍ଭ କରି କଲେଜର ପ୍ରାୟ ସମସ୍ତ ଅଧ୍ୟାପକ, ବହୁ ସ୍କୁଲ୍ କଲେଜର ଛାତ୍ର, କଂଗ୍ରେସ ଏବଂ କଂଗ୍ରେସର ସକଳ କର୍ମୀ, ଖ୍ରୀଷ୍ଟ ସମାଜର ସମସ୍ତ ଲୋକ, ରାଜା, ଜମିଦାର, ଜନସାଧାରଣ, ଖବରକାଗଜର ବହୁ ପ୍ରତିନିଧି, ସ୍କୁଲ୍‌ର ଶିକ୍ଷକ ସମାଜ ସମସ୍ତେ ଉପସ୍ଥିତ ଥିଲେ । ପ୍ରସ୍ତୁତିର ସମୟ ଶେଷ ପର୍ଯ୍ୟାୟରେ ଆସି ପହଞ୍ଚିଲା । ଆସନ୍ନ ପ୍ରାୟ ସନ୍ଧ୍ୟାରେ ଗୋଧୂଳିର ଅର୍ଦ୍ଧ ଆଲୋକିତ ରକ୍ତିମ ଛାୟାର ଉଦ୍‌ଭାସ ସମସ୍ତ ପରିବେଶକୁ ସ୍ତବ୍ଧତାର ବିସ୍ମୟରେ ଭରି ଦେଇଥାଏ । ବୃକ୍ଷ ଶାଖାର ନିଶ୍ଚଳ ସମୟ ଯେପରି ସ୍ଥାଣୁତାର ପରିଧି ମଧ୍ୟରେ ସ୍ଥିର ହୋଇ ଶୋଇଯାଇଥାଏ । ଠିକ୍ ଏହି ସମୟରେ ପୁରୀ ଶ୍ରୀକ୍ଷେତ୍ରରୁ ଆସି ପହଞ୍ଚିଲେ ଲୋକନାଥ ମିଶ୍ର, ଜଗବନ୍ଧୁ ସିଂହ, ଜଗନ୍ନାଥ ମିଶ୍ର ପ୍ରମୁଖ । ସାଥିରେ ଆଣିଥିଲେ ଶ୍ରୀ ଜଗନ୍ନାଥଙ୍କୁ ଲାଗି ହୋଇଥିବା ଗଜରା ଆଉ କର୍ପୂର ମାଳ । ଏହି ସବୁ ପୁଣ୍ୟ ପ୍ରସାଦ ଗୁଣରେ ଆଧାରିତ ମାଳାସବୁକୁ ମଧୁସୂଦନଙ୍କର ପବିତ୍ର ଶରୀରରେ ଆଚ୍ଛାଦିତ କରି ଦିଆଗଲା । ହଁ, ମଧୁସୂଦନ ଥିଲେ

ଶ୍ରୀଜଗନ୍ନାଥଙ୍କର ଏକନିଷ୍ଠ ପୂଜାରୀ । ତାହାଙ୍କ କଣ୍ଠରେ ଶ୍ରୀଜଗନ୍ନାଥଙ୍କର ଶରଣାଗତିର ଭଜନମାନ ବେଳେବେଳେ ଗୁଞ୍ଜରି ଉଠୁଥାଏ ।

କ୍ରମେ ସେହି ସମସ୍ତ ମୃଦୁ କୋଳାହଳ ସ୍ତିମିତ ହୋଇଗଲା । ଏକ ନିସ୍ତବ୍ଧତାର ରାଜୁତି ସବୁଆଡ଼େ ପରିବ୍ୟାପ୍ତ ହୋଇଗଲା । ସେହି ନୀରବତା ମଧ୍ୟରେ ଧର୍ମଯାଜକଙ୍କ ସଂଗୀତର ମୂର୍ଚ୍ଛନା ମଧ୍ୟରେ ଶ୍ଳୋକ ଉଚ୍ଚାରଣ ସମସ୍ତ ପରିବେଶକୁ ବିସ୍ମୟ ଆଉ ତନ୍ମୟତାରେ ଭରି ଦେଇଥିଲା । ସେହି ମାନ୍ତ୍ରିକ ଶ୍ଳୋକ ଉଚ୍ଚାରଣରର ଧ୍ୱନି ମୂର୍ଚ୍ଛନାର ସର୍ବତ୍ର ପ୍ରତିଧ୍ୱନିତ ହେଉଥିଲା ବରାଭୟର ଉଦାତ୍ତ ଆଶୀର୍ବାଦ ଆଉ ନିବିଡ଼ କରୁଣାର ମୈତ୍ରୀଧାରା ବହନ କରି । ତାହାଥିଲା ଏହିପରି-

I came to Jesus as I was
Weary and worn and sad,
I found in Him a resting place
And He has made me glad.

"ଯେଣୁ ଦୁଃଖ ଜଞ୍ଜାଳରେ ଅଥୟ
ଅବସାଦ ଭଜିଲି
ଏ ମର ସଂସାରେ ଯୀଶୁଙ୍କୁ
ଏକା ଆଶା ମଣିଲି
ଦେଖିଲି ସେହିଟି ଅଟନ୍ତି
ମୋର ଆଶ୍ରୟ ସ୍ଥଳୀ
ମୋ ପ୍ରାଣେ ଆନନ୍ଦ ସେ ଏକା
ଦେଇ ଅଛନ୍ତି ଢାଳି ।"

ଏହାପରେ ଧୀରେଧୀରେ ସେହି କଫିନ୍‌ଟିକୁ ଗୋରା କବରର ସେହି ଗହ୍ୱର ମଧ୍ୟକୁ ଖସାଇ ଦିଆଗଲା । ତାଙ୍କର ଅନୁଗାମୀଙ୍କର ଧୂଳିପୂର୍ଣ୍ଣ ଆଞ୍ଜୁଳିରେ ଗହ୍ୱରଟି ପରିପୂର୍ଣ୍ଣ ହୋଇଗଲା । ଏଣିକି ଶୋକ ଉଚ୍ଛ୍ୱାସର ବିହ୍ୱଳତା ସମସ୍ତ ସୀମା ଅତିକ୍ରମ କରିଗଲା ।

ଏହି ସମସ୍ତ ବିବରଣୀ ଉପସ୍ଥାପିତ ହୋଇଛି ପ୍ରତ୍ୟକ୍ଷଦର୍ଶୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ମାର୍ମିକ ସ୍ମୃତିଚାରଣରେ ଏହିପରି ଭାବରେ-

ହେ ମଧୁସୂଦନ !

ଗୋରା କବରଠାରେ ତୁମର ସମାଧି ହେଲା । ସେଠାରେ ଲୋକ ୫/୭ ହଜାର ଗୁଣ୍ଡ ହେଲେ ଓ ସେ ହତାଟି ଲୋକଙ୍କଦ୍ୱାରା ଭରପୂର ହୋଇଗଲା । ଗୋରାକବର ପ୍ରଥମ ଆରମ୍ଭ ହେବାଠାରୁ ଆଜିଯାକେ ସେଠାରେ ଏତେ ଲୋକ ଜମି ନଥିଲେ କି ଜମିବେ ନାହିଁ । ତୁମ ଶବ ସଂଗେ କି ହିନ୍ଦୁ, କି ମୁସଲମାନ, କି ଜୈନ, କି ଖ୍ରୀଷ୍ଟାନ, କି ବ୍ରାହ୍ମ, କି ପୁରୁଷ, କି ସ୍ତ୍ରୀ, କି ବାଳକ, କି ବାଳିକା, କି ରାଜା, କି ପ୍ରଜା, କି ଧନୀ, କି କାଙ୍ଗାଳ, କି ସାହେବ, କି ଦେଶୀ, କି ଅଶୀତିପର ବୃଦ୍ଧ, କି ସ୍ତନନ୍ଧୟ

ଶିଶୁ ସମସ୍ତେ ନିଜ ନିଜର ଅସ୍ମିତାକୁ ପାସୋରି ଚାଲି ଥାଆନ୍ତି । ଧର୍ମ ବିଶ୍ୱାସରେ ତୁମ୍ଭେ ଖ୍ରୀଷ୍ଟାନ୍ ଥିଲ ବୋଲି, ଖ୍ରୀଷ୍ଟାନ ବିଧିରେ ତୁମର କବର ହେଲା । କିନ୍ତୁ ହିନ୍ଦୁ ମତରେ ତୁମେ ଜାତି ଭାଇଙ୍କର କାନ୍ଧରେ ଗଲ । ହିନ୍ଦୁ ମତରେ ହରିବୋଲ ହୁଳହୁଳିରେ ଗଗନ ଉଚ୍ଛୁଳିଲା, ମୁସଲମାନ ମତରେ ତୁମ ଶବ ବିମାନକୁ ବାଟରେ ଯେ ହାବୁଡ଼ିଲା, ସେ ବିମାନ ବାଉଁଶରେ କାନ୍ଧ ଲଗାଇଲା, ବ୍ରାହ୍ମମତରେ ଶବଯାତ୍ରାବେଳେ ସହଯାତ୍ରୀମାନେ ଉପାସନା କରୁଥାଆନ୍ତି ଓ ବୌଦ୍ଧ ମତରେ ତୁମର ସମାଧି ହେଲା ଓ ତୁମେ ନିର୍ବାଣ ଲାଭ କଲ ।

ଯାଅ ମହାତ୍ମା ! ପରାତ୍ପର ତୁମର ସଦ୍‌ଗତି କରନ୍ତୁ । ତୁମ ଆତ୍ମା ମଙ୍ଗଳମୟଙ୍କର ଅମୃତମୟ କ୍ରୋଡ଼ରେ ଅମୃତ ସେବନ କରି ଶାନ୍ତି ଲାଭ କରୁ । ତୁମେ ଓଡ଼ିଆ ଜାତିକୁ ଯେଉଁ ପ୍ରେରଣା, ଯେଉଁ ଉତ୍ସାହ, ଯେଉଁ ବଳ, ଯେଉଁ ସାହସ, ଯେଉଁ ଆଦର୍ଶ, ଯେଉଁ ଉଦ୍ୟମ ଓ ଉଦାହରଣ ଦେଇଯାଇଅଛ ଓଡ଼ିଆ ଜାତି ତାହାରି ବଳରେ ସମଗ୍ର ଜଗତରେ ଆନ୍ତର୍ଜାତିକ ପ୍ରତିଷ୍ଠା ଲାଭ କରୁ ।

ସେତେବେଳେ 'ସମାଜ' ପତ୍ରିକାରେ 'ଶହେ ବର୍ଷର ଶୃଙ୍ଗ ଭାଙ୍ଗିଲା' ଶିରୋନାମାରେ ମଧୁସୂଦନଙ୍କ ପ୍ରତି ଯେଉଁ ଭାବ ଉଚ୍ଛ୍ୱାସଭରା ବିହ୍ୱଳିତ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇଥିଲା, ତାହାର କିଛି ସ୍ମରଣୀୟ ଅଂଶ ନିମ୍ନରେ ପ୍ରଦତ୍ତ ହେଲା ।

'ସମାଜ'ର ଶ୍ରଦ୍ଧାଞ୍ଜଳି-

''ଶହେ ବର୍ଷର ଶୃଙ୍ଗ ଭାଙ୍ଗିଲା''

ଯେ କାଲି କଟକରେ ଥିଲେ ସେ ଆଜି ନାହାନ୍ତି । ଦୁଃଖ ବିପଦରେ ଯାହାଙ୍କ ପରାମର୍ଶ ନେବାପାଇଁ କାଲି ହୁଏତ କେତେ ଲୋକ ବିଚାରୁ ଥିବେ, ସେ ଦେଖିବେ ଆଜି ସେ ନାହାନ୍ତି । ସେ ପ୍ରାୟ ଶହେ ବର୍ଷର ଲୋକ । ହେତୁ ପାଇଲା ଦିନୁ ୬୦/୬୫ ବର୍ଷର ଅଭିଜ୍ଞତା ଯେ ବୁକୁରେ ଧରି ବସିଥିଲେ କେତେ ଦୁଃଖ, କେତେ ବିଘ୍ନ, କେତେ କୌଶଳ ଭିତରେ ସେ ନିଜର ଜୀବନ ଗଢ଼ି ଆସିଥିଲେ, କାର୍ଯ୍ୟ କରି ଆସିଥିଲେ । ତାଙ୍କ ମସ୍ତିଷ୍କରେ, ତାଙ୍କ ଅନ୍ତରରେ, ତାଙ୍କ ଅନୁଭୂତିରେ, ତାଙ୍କ ସ୍ମୃତିରେ କେତେ ସଂପଦ ନଥିଲା ! ରକ୍ତ, ମାଂସ ଦେହ ଶୁଖିଶୁଖି କଳାକାଠ ପଡ଼ିଯାଇଥିଲା, ପ୍ରତ୍ୟେକ ଅଂଗ କ୍ଷୀଣ ହୋଇ ଯାଇଥିଲା; କିନ୍ତୁ ଦୃଷ୍ଟି ଓ ସ୍ମୃତି ତିଳେମାତ୍ର କ୍ଷୁଣ୍ଣ ହୋଇ ନଥିଲା । ସେ ଗୁରୁ ଗମ୍ଭୀର କଣ୍ଠ ବରାବର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବୀଣାପରି ବାଜୁଥିଲା । ଯାହା ବୁକୁରେ ଯାହା ମନରେ ଏତେ କଥା, ଏତେ ସ୍ମୃତି ସଂଚିତ ହୋଇ ରହିଥିଲା, ତାଙ୍କରି ନିଃଶ୍ୱାସ ଟିକକ ବନ୍ଦ ହେବା ମାତ୍ରେ ସେ ସବୁ କୁଆଡ଼େ ଉଭେଇଗଲା । ସେ ପବନ ଟିକ ରହିଥିଲେ ସବୁ ରହିଥାନ୍ତା ।

ମଧୁସୂଦନଙ୍କର ପବିତ୍ର ଶରୀରର ଅନ୍ତିମ ସମାଧି ପ୍ରଦାନ ପରେ ସେହି ଚରମ ଦୁଃଖର ମୁହ୍ୟମାନତା ଥିଲା ଅତୀବ ସ୍ତବ୍‌ଧାୟିତ ଆଉ ନିରାଲମ୍ବ । ନିର୍ବାକ୍ ଜନତା କବର ଭୂଇଁରୁ ଫେରୁଥାନ୍ତି ଓଡ଼ିଶାର ଶ୍ରେଷ୍ଠ ସମ୍ପଦକୁ ଭୂମିର ଗହ୍ୱରରେ ସଂପାଦି ଦେଇ । ହେଲେ କାଳକାଳ ଲାଗି ସେହି ତେଜୋଦୀପ୍ତ ଶରୀରର ସମାଧି ହୋଇଛି ଅନୁପ୍ରେରଣାର ଉତ୍ସ । ସେହି ଦୁର୍ବାର ଅବସାଦର ନିବିଡ଼ ଗହ୍ୱରରୁ ଯେଉଁ ଜ୍ୟୋତିର୍ମୟ ଆଶାର ଆଲୋକ, ପ୍ରତିଶ୍ରୁତିର ଦୃଢ଼ ନିର୍ଭରତା ଆଉ ଜାଗରଣର

ଉଦ୍ଦାମ ଉଦ୍ଦୀପନା ସୃଷ୍ଟି ହୋଇଥିଲା ତାହା କବି ପ୍ରାଣର ପ୍ରଗାଢ଼ ଅନ୍ତଃସ୍ଥଳୀରେ ବହି ଚାଲିଥିଲା କାଳଜୟୀ ଉଚ୍ଛ୍ୱସିତ କବିତା ରୂପରେ । ସେଥିମଧ୍ୟରୁ ପ୍ରଖ୍ୟାତ କବି ଚନ୍ଦ୍ର ଶେଖର ମିଶ୍ରଙ୍କର ଅମୃତ ଲେଖନୀରୁ ନିସୃତ ପରମ ଅଭ୍ୟୁତ୍‌ଥାନର ବାର୍ତ୍ତା ବହନ କରିଥିବା ଶ୍ରଦ୍ଧାଞ୍ଜଳି 'ବାହୁଡ଼ା ବିଜୟ' ନିମ୍ନରେ ପ୍ରଦତ୍ତ ହେଲା ।

## ବାହୁଡ଼ା ବିଜୟ

**ଚନ୍ଦ୍ରଶେଖର ମିଶ୍ର**

(୧) ଜୀବନର ରଣ ଶୁଝି
ରଣଭୂମେ ଯୁଝିଯୁଝି,
ପଡ଼ିଗଲା ତଳେ ଆଜି ସଂଗ୍ରାମ କେଶରୀ
ତାହାରି ଜନମ ମାଟି
ଯାଇଅଛି ଆଜି ଫାଟି,
ମାଆ କୋଳ ଶେଷେ ବୀର ନେଇଅଛି ବରି ।

(୨) ଶୋଇଗଲା ଐରାବତ
ହିମାଳୟ ପରବତ,
ଶୁଖିଗଲା ଶେଷେ ତାର ଶାଶ୍ୱତ ଝରଣା
ଯାଇଛି ଅସୀମ ଧାମେ,
କୁହ ସିନା ମୃତ୍ୟୁ ନାମେ,
ବାହୁଡ଼ା ବିଜୟ ତାହା ନୁହଁଇ ମରଣ ।

(୩) ଅମର ମରଣ ଯା'ର,
ନାହିଁ, ନାହିଁ ମୃତ୍ୟୁ ତା'ର
ସବୁରି ହୃଦୟେ ଆଜି ରହିଛି ସେ ବସି,
ତା' ଦେଶର ଜଳବାୟୁ,
ରଖିଲା ତା ଅସ୍ଥି-ସ୍ନାୟୁ,
ନ ଛୁଇଁବ କାଳ ତାକୁ, ନ ଛୁଇଁବ ମସି ।

(୪) ଉଠାଇଲା ଗିରିଶୃଙ୍ଗ
ତୋଳିଲା ଦେଉଳ ତୁଙ୍ଗ,
ତୋଳିଗଲା 'ପିରାମିଡ୍', 'ତାଜ୍' ନିଜ ଦେଶେ ।
ବିଜୟ ନିଶାଣ ହାତେ
ବୁଲିଛି ସେ ବିଶ୍ୱ ସାଥେ,
ଭଜିଛି ବିଶ୍ରାମ ବୀର କରମର ଶେଷେ ।

(୫) ଉଠାଅନା, ତାକୁ ରୋଳେ
ଶୋଇଛି ସେ ମାଆ କୋଳେ,
ଶାନ୍ତି ଏବେ ଲୋଡ଼ା ତା'ର ହୋଇଛି ଜୀବନେ,
ନିଦ୍ରା ଅନ୍ତେ ଆର୍ଯ୍ୟବର
ତୋଳିବ ତା' ମଧୁ ସ୍ୱର,
ବଜାଇବ ଶତ ଭେରୀ ଭୁବନେ ଭୁବନେ ।

(୬) ଆଜି ହେ ପଥିକ ! ତୁମେ
ଯାଉଛ ବିଶ୍ରାମ ଭୂମେ
ଦେଇଆସ ଖାଲି ପ୍ରାଣ-ପୀରତି ଚନ୍ଦନ,
ସିକ୍ତ କରି ଶଯ୍ୟା ତଳ
ନ ଢାଳିବ ଅଶ୍ରୁଜଳ,
ମନେ ରଖ, ଭୀଷ୍ମର ଏ ଶରର ଶୟନ ।

(୭) ଆବେଗେ ଆଗ୍ରହେ ତାକୁ
ଉଠାଇଲ ଉଠିବାକୁ
ଉଠିଥାଏ, ଉଠିବ ସେ ନିଦ୍ରା ପରିହରି ।
ନିଜ ଦେଶ ମାଆ ଭାଇ
ତାଙ୍କରି ଅଭାବ ଚାହିଁ
ଉଠିବ, ଉଠିବ ପୁଣି ଉତକେଶର ହରି ।

(୮) ସେ ନୁହେଁ ବଧିର ଗିରି
ଦେଇପାରେ ହୃଦ ଚିରି,

ପାବକ ତୃଷାରେ ତାର ଗଠିତ ଜୀବନ,
ତେବେ କିଁପା ଦୁଃଖ ଆଉ,
ମହାରଥୀ ଶୋଇଥାଉ,
ନ କର ତା' ପାଶେ ବସି ଆତୁର କ୍ରନ୍ଦନ ।

(୯) ଆସ ଆର୍ଯ୍ୟ ବଂଶଧରେ,
ପରଶି ତା' ପଦ ଥରେ
ଅର୍ଘ୍ୟରୂପେ ଦିଅ ତାକୁ ରାଜାର ସମ୍ମାନ,
ଫେରିଯାଅ ଧୀରେଧୀରେ
ବହି ନେଇ ନତ ଶିରେ
"ମୃତ୍ୟୁହୀନ ପ୍ରାଣ"- ତାର ଜୀବନର ଦାନ

ମଧୁସୂଦନଙ୍କ ତିରୋଧାନର ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ଅବସରରେ, ତାଙ୍କର ବଂଶଧରମାନେ ଗୋରା କବରସ୍ଥ ତାଙ୍କର ସମାଧୀପୀଠରେ ଶ୍ୱେତ ମାର୍ବଲ ନର୍ମିତ ଏକ ରମଣୀୟ ସୁରମ୍ୟ କବର ନିର୍ମାଣ କରିଥିଲେ । ମଧୁସୂଦନଙ୍କ ସହିତ ଅନ୍ତରଙ୍ଗ ଭାବେ ସମ୍ବନ୍ଧିତ ଥିବା ଓଡ଼ିଶା ଡିଭିଜନର ଇ.ହସ୍.ହର୍‌ନେଲ୍ କମିଶନର ୪.୨.୧୯୩୫ରେ ଏହି ଐତିହାସିକ ସମାଧୀପୀଠ ଉନ୍ମୋଚନ କରିବା ଅବକାଶରେ ତାଙ୍କ କ୍ରାନ୍ତିକାରୀ ଜୀବନର ଯେପରି ମୂଲ୍ୟାୟନ କରିଥିଲେ ତାହାର ପଟାନ୍ତର ନାହିଁ । ତାହାର କିଛି ଅଂଶ ଏଠାରେ ପ୍ରଦାନ କରାଗଲା ।

ହେ ବନ୍ଧୁଗଣ !

ମାନବ ସମାଜର ଜଣେ ମହତ୍ତର ପ୍ରେମାସ୍ପଦ ନେତୃପୁରୁଷ ତଥା ଏହି ମହାନ ଜନଗୋଷ୍ଠୀର ଅନୁତ୍ତର ଗରିମାମୟ ସେବକଙ୍କର ଅବିସ୍ମରଣୀୟ ସ୍ମୃତିକୁ ଗୌରବାନ୍ୱିତ କରିବାପାଇଁ ଆମ୍ଭେମାନେ ଜାତି, ଧର୍ମ ଓ ବୃତ୍ତି ନିର୍ବିଶେଷରେ ଏଠାରେ ସମବେତ ହୋଇଛେ । ସେହି ମହାନ ଜନଗୋଷ୍ଠୀର ଉତ୍‌ଥାନ ନିମନ୍ତେ ସମର୍ପିତ ତାଙ୍କର ମହିମାନ୍ୱିତ ଜୀବନ ଘେନି ସେ ଭାରତୀୟ ମହାଦେଶର ମହାସଂଘୀୟ ଦେଶମାନଙ୍କ (ଲିଗ୍ ଅଫ୍ ନେସନ୍) ମଧ୍ୟରେ ତାଙ୍କର ଜାତୀୟ ବର୍ଗର ଲୋକମାନଙ୍କୁ ନେଇ ଏହି ମହାନ ଦେଶ ପ୍ରତିଷ୍ଠା କ୍ଷେତ୍ରରେ ସ୍ୱତନ୍ତ୍ର କୀର୍ତ୍ତିଶାଳୀ ପରିଚୟ ପ୍ରଦାନ କରିବାପାଇଁ ଅବିରତ ସଂଗ୍ରାମ କରି ଚାଲିଥିଲେ । ତାଙ୍କର ତିରୋଧାନରେ ସେ ମରଶରୀରରୁ ମୁକ୍ତ ହୋଇ ଅମରତ୍ୱ ଲାଭ କରିଛନ୍ତି । ତାଙ୍କର ସମସ୍ତ ବଳବୀର୍ଯ୍ୟ ଆଉ ଶକ୍ତି ଘେନି ସେ ମନ୍ଦଶକ୍ତି, ଅନ୍ୟାୟ, ବିଦ୍ରୂପ ଆଉ ଅମାନବିକତା ବିରୁଦ୍ଧରେ ସଦର୍ପେ ସଂଗ୍ରାମ କରିଥିଲେ ମଧ୍ୟ ଯେପରି ପିଗା ପର୍ବତର ଶିଖର ଦେଶରେ ଦଣ୍ଡାୟମାନ ହୋଇ **ମସେସ୍** ତାଙ୍କର ନିକ୍ଷେପିତ ବଂଶଧରମାନଙ୍କ ଭବିଷ୍ୟତର ବାସଭୂମିକୁ ଅପଲକ ନେତ୍ରରେ ଦେଖୁ ଦେଖୁ ଏ ସଂସାରରୁ ବିଦାୟ ନେଇଗଲେ, ସେହିପରି ମଧୁସୂଦନ ନିଜର ସମସ୍ତ ମାନବୀୟ ଶକ୍ତିକୁ ଘେନି ତାଙ୍କର ଜାତିର ବାସଭୂମି ସ୍ୱୟଂଶାସିତ ଓଡ଼ିଶା

ଦେଶପାଇଁ ସେହି ଅଭିଳକ୍ଷିତ ଲକ୍ଷ୍ୟସ୍ଥଳରେ ଉପନୀତ ହେବା ନିମନ୍ତେ ସେ ସଂଘର୍ଷପୂର୍ଣ୍ଣ ଅଭିଯାନ ଚଳାଇ ରଖିଥିଲେ ମଧ୍ୟ ତାହାର ଦ୍ୱାର ଦେଶରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନର ପ୍ରାକ୍ କାଳରେ ଏହି ମରଧାମରୁ ବିଦାୟ ନେଇଗଲେ ।

ଏଣୁ ତାଙ୍କର ଗୌରବାବହ ଐତିହ୍ୟ ଘେନି ତାଙ୍କର ଜନଗୋଷ୍ଠୀ ସଦର୍ପେ ଉଚ୍ଛ୍ୱସିତ କଣ୍ଠରେ ନିନାଦିତ କରି ଗାଇ ଉଠିବେ-

"ହେ ସମାଧି ! କାହିଁ ତୁମର ଆଘାତର ଶକ୍ତି ?

ହେ ମୃତ୍ୟୁ ! କାହିଁ ତୁମର ବିଜୟ ?

ତୁମେ ଯେ ପରାଜିତ ।

ତାଙ୍କର ମୃତ୍ୟୁ ହୋଇନାହିଁ, ସେ କେବଳ ତାଙ୍କର ଖଡ଼୍ଗ ଆଉ କ୍ରୁଶ୍‌କୁ ସମର୍ପି ଦେଇ ବିଜୟର ଐଶ୍ୱର୍ଯ୍ୟଶାଳୀ ମୁକୁଟ ପରିଧାନ କରିବା ପାଇଁ ଚାଲିଯାଇଛନ୍ତି ।"

ମଧୁସୂଦନଙ୍କର ତିରୋଧାନ ଥିଲା ଯେତିକି ବେଦନା ବିଧୂରିତ, ସେହିପରି ଥିଲା ଅପ୍ରତିହତ, ଅମର ପ୍ରେରଣାର ଚିରନ୍ତନ ଅବାରିତ ଉତ୍ସ । କବି ମାୟାଧର ମାନସିଂହଙ୍କ ଶ୍ରଦ୍ଧାଞ୍ଜଳିର ପ୍ରଥମ କେତେକ ପଙ୍‌କ୍ତି ଏହିପରି ଥିଲା-

## ଆର୍ଯ୍ୟ ମଧୁସୂଦନ

**ମାୟାଧର ମାନସିଂହ**

ଆର୍ଯ୍ୟ ହେ ବୀର ବର୍ଯ୍ୟ ହେ
ସ୍ତବ୍‌ଧ କି ତବ ତୂର୍ଯ୍ୟ ହେ ?
ଗୋଟି ଗୋଟି କରି ଜଳାଇ ଯାଇଛ
କୋଟିଏ ଜାତୀୟ ସୂର୍ଯ୍ୟ ଯେ !
ମୃତ୍ୟୁଞ୍ଜୟ ମୃତ୍ୟୁ ତୁମର ନାହିଁ ଯେ,
ମରଣ ନଇଁବ ତମର ବିଜୟ ପାଇଁ ଯେ,
ସ୍ୱଭାବ ଛାଡ଼ିବ ଦେଖି ସେ ଅମୋଘ-ଶୌର୍ଯ୍ୟ ହେ
ଆର୍ଯ୍ୟ ହେ ବୀର ବର୍ଯ୍ୟ ହେ ।

ଭୀଷ୍ମ ହେ ବାଛି ନେଇଥିଲ ନିଜ ଅୟନ
ରଣ-ସଙ୍କୁଳ ପଣ-ପିଛିଳ ଗହନ,
ପରପାଇଁ କେତେ ବରି ଅଛ ଶର-ଶୟନ

ବଜାଇ ଚାଲିଛ ଏକାଏକା ରଣ ତୂର୍ଯ୍ୟ ହେ
ଆର୍ଯ୍ୟ ହେ ବୀର ବର୍ଯ୍ୟ ହେ
ସ୍ତବ୍ଧ କି ତବ ତୂର୍ଯ୍ୟ ହେ ?

ରୁଦ୍ର ହେ ତବ ଡମ୍ବରୁ ଘନ ଘୋଷରେ
ସୁପ୍ତ ଏ ଜାତି ତେଜିଲା ଜଡ଼ତା ଶେଷରେ,
ଦେଲ ତୁମେ ନିଜେ ଜୈତ୍ର-କୁସୁମ ଲଗାଇ
ଜନନୀ କେଶରେ
ଯଶଲାଗି ତାର ଝସାଇ ପଶିଲ ଯୁଦ୍ଧେ ପରମ ବୀର୍ଯ୍ୟ ହେ
ଆର୍ଯ୍ୟ ହେ ବୀର ବର୍ଯ୍ୟ ହେ
ସ୍ତବ୍ଧ କି ତବ ତୂର୍ଯ୍ୟ ହେ ?

ନରପୁଙ୍ଗବ ମରତେ ଦେଖିଲ ଯାହାକୁ
ବର ସନ୍ତାନ ପରି ଚିହ୍ନାଇଲ ମାଆକୁ
ମାଆର ବିପଦେ ଦେଖାଇଲ ନିଜ ବାହାକୁ
ଇତିହାସ ଆଜି ତୁମର ସେ ସବୁ କାର୍ଯ୍ୟ ହେ
ଆର୍ଯ୍ୟ ହେ ବୀର ବର୍ଯ୍ୟ ହେ
ସ୍ତବ୍ଧ କି ତବ ତୂର୍ଯ୍ୟ ହେ ?

କାରୁଣ୍ୟର ମୃଦୁ ମୂର୍ଚ୍ଛନା ଓଡ଼ିଆଙ୍କ ଗହନ ପ୍ରାଣର ଅନ୍ତରାଳରେ ଏପରି ଲୋତକାପ୍ଲୁତ ଆଉ ବେଦନାବିଦ୍ଧ ହୋଇପାରେ, ତାହାଥିଲା ଅକଳ୍ପନୀୟ । ସମସ୍ତ ବିଷାଦକାଳିମାର ଉର୍ଦ୍ଧ୍ୱରେ ମଧୁସୂଦନ ଉତ୍ତରିତ ହୋଇଥିଲେ ଭାରତର ଜଣେ ମହିମାଦୀପ୍ତ ନେତୃ ପୁରୁଷ ରୂପରେ, ଯେ କି ବହୁ କ୍ଷେତ୍ରରେ ଆଦ୍ୟ ଉଦ୍‌ଗାତା ଭାବରେ ଅବତୀର୍ଣ୍ଣ ହୋଇଥିଲେ ।

ସେ ଥିଲେ ଏକାନ୍ତ ଓଡ଼ିଆ ପ୍ରାଣର ଅକୁହା କୁହାଟ, ଯାହାଙ୍କର ଉଦ୍ଦାମ ସ୍ୱର ଲହରୀ ପ୍ରତ୍ୟେକ ଓଡ଼ିଆଙ୍କର ପ୍ରାଣର ସମ୍ବେଦନଶୀଳ ସୂକ୍ଷ୍ମତନ୍ତ୍ରୀରେ ସୃଷ୍ଟି କରିଥିଲା କ୍ରାନ୍ତିକାରୀ ଝଙ୍କାର ଓ ବୈପ୍ଳବିକ ଉଦ୍‌ବେଳନ ।

" ହେ ପଥିକ ! ରହକ୍ଷଣେ କର ନମସ୍କାର
ଢାଳିଦିଅ ଅଛି ଯେତେ କ୍ଷୀଣ ଅଶ୍ରୁଧାର ।" (ବୈକୁଣ୍ଠ) ।



# ଚିରକାଳର ବର୍ତ୍ତମାନ : ଗରିମାମୟ ମଧୁସୂଦନ

ମଧୁବାବୁ ! 'ଅତୀତ' ହୋଇଥିଲେ ମଧ୍ୟ ଚିରକାଳ 'ବର୍ତ୍ତମାନ' । ଏହି ଦେଶର ସ୍ୱତନ୍ତ୍ରତାର ରବି ୧୫୬୮ ସାଲରେ ଅସ୍ତମିତ ହେବା ପରେ ୧୯୩୬ରେ ସ୍ଥାପିତ ହେଲା ସ୍ୱତନ୍ତ୍ର ଓଡ଼ିଶା । ଏହାର ପ୍ରମୁଖ ବିନ୍ଧାଣୀ ଭାବେ ମଧୁସୂଦନ ଦାସ ଚିରକାଳ ଲାଗି ଚିହ୍ନିତ ହୋଇ ରହିବେ ଏକ ଅନିର୍ବାପିତ ଦୀପଶିଖା ଭାବେ । ଜଣେ କୁଶଳୀ ସ୍ଥପତି ରୂପରେ ତାଙ୍କର ଅନବଦ୍ୟ କୃତି ଉତ୍କୀର୍ଣ୍ଣ ହୋଇ ରହିଛି ଏହି ରାଜ୍ୟର ପ୍ରତିଟି ରେଣୁରେ । ତାଙ୍କ ତିରୋଧାନରେ, ଶିଳାଲେଖର କାଳଜୟୀ ଖୋଦନ ପରି ଉତ୍କଳଦୀପିକା ଲେଖିଥିଲେ-"ମଧୁସୂଦନ ଓଡ଼ିଶାର ପ୍ରତ୍ୟେକ ଧୂଳିକଣା ଆଉ ପ୍ରତ୍ୟେକ ବାୟୁର ହିଲ୍ଲୋଳକୁ ତାଙ୍କ ଶରୀରର ଅଂଶ ବୋଲି ଭାବୁଥିଲେ ।" କେତେ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା ଏହି ଅଭିବ୍ୟକ୍ତି । ବାସ୍ତବରେ ସ୍ୱତନ୍ତ୍ର ଉତ୍କଳ ଗଠନ ହେଉଛି ଏକ ବିସ୍ମୟାତୀତ ବିସ୍ମୟ । ୧୯୩୬ ସାଲରେ ସମଗ୍ର ଦେଶରେ ବିଭିନ୍ନ ଭାଷାଭାଷୀଙ୍କ ସଂଖ୍ୟା ହିସାବକୁ ନେଲେ ଓଡ଼ିଆଙ୍କ ସଂଖ୍ୟା ଥିଲା ନବମ ସ୍ଥାନରେ । ମାତ୍ର ମଧୁସୂଦନଙ୍କ ନେତୃତ୍ୱରେ ଓଡିଶା ହେଲା ଦେଶର ପ୍ରଥମ ଭାଷାଭିତ୍ତିକ ରାଜ୍ୟ । ତେଣୁ ଧନ୍ୟ ସେ ମଧୁସୂଦନ; ଯାହାଙ୍କ କୌଶଳ, ଚାତୁର୍ଯ୍ୟ ଓ ଅପରିମେୟ ବୁଦ୍ଧିମତ୍ତା ଯୋଗୁଁ ଏହା ସମ୍ଭବ ହେଲା । ଅନ୍ୟଥା ଓଡ଼ିଆ ଜାତି ଭୂପୃଷ୍ଠରୁ ତାହାର ସତ୍ତା ହରାଇ ବସିଥାନ୍ତା ।

ମଧୁସୂଦନ ବିଭାଜିତ ଆଉ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣଲାଗି ୧୯୦୩ ସାଲରେ ଯେଉଁ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା କରିଥିଲେ, ତହିଁରେ ଦେଶ ମିଶ୍ରଣ ମୁଖ୍ୟ ପ୍ରସଙ୍ଗ ଥିଲେ ମଧ୍ୟ ଅର୍ଥନୈତିକ ଭିତ୍ତିରେ କେତେକ କାର୍ଯ୍ୟକ୍ରମ ସେ ଗ୍ରହଣ କରିଥିଲେ । କୃଷକର ଜମିରେ ମୃତ୍ତିକା ପରୀକ୍ଷା ଭିତ୍ତିରେ ନିର୍ଦ୍ଧାରିତ ସାର ପ୍ରୟୋଗ, ଉନ୍ନତ କୃଷିପ୍ରଣାଳୀର ବିନିଯୋଗ ମଧ୍ୟରେ ଲାଭକାରୀ ଫସଲର ଉତ୍ପାଦନ, ଉନ୍ନତ କୃଷି ଯନ୍ତ୍ରପାତିର ପ୍ରୟୋଗ, ଅତ୍ୟାଧୁନିକ ଫ୍ଲାଇ ସଟଲ୍ ଲୁମ୍ ମାଧ୍ୟମରେ ତ୍ୱରିତ ରୀତିରେ ବୟନ ପ୍ରଣାଳୀ, ବସ୍ତ୍ରଶିଳ୍ପରେ ନୂତନ ନକ୍ସା ସହିତ ରାସାୟନିକ ରଂଗର ପ୍ରୟୋଗ, ଗ୍ରାମ୍ୟଶିଳ୍ପରେ ଯାନ୍ତ୍ରିକ ପ୍ରକ୍ରିୟାର ଅନ୍ତର୍ଭୁକ୍ତି, କୃଷିଜାତ ସାମଗ୍ରୀର ସୁଲଭ ମୂଲ୍ୟରେ ବିପଣନ ଓ

ସର୍ବୋପରି ଦଳିତ ଜାତିର ଅର୍ଥନୈତିକ କ୍ଷେତ୍ରରେ ସଂସ୍ଥାପନ ପାଇଁ ଚମଡ଼ାକଷେଇ ସହିତ ଉତ୍କଳ ଟ୍ୟାନେରିର ସ୍ଥାପନା । ଏହି ସମସ୍ତ ଅର୍ଥନୈତିକ କାର୍ଯ୍ୟକ୍ରମ, ସାରା ଭାରତର ଦୃଷ୍ଟି ଆକର୍ଷଣ କରିବା ସହିତ ମହାତ୍ମାଗାନ୍ଧୀଙ୍କୁ ଗଭୀର ଭାବରେ ଆକର୍ଷିତ କରିଥିଲା ।

ବର୍ତ୍ତମାନ ଓଡ଼ିଶାର ସାମଗ୍ରିକ ଆୟତନ ୧,୫୫,୮୪୨ ବର୍ଗ ମାଇଲ ଥିଲା ବେଳେ ୧୯୩୬ ଆଉ ୧୯୦୫ ସାଲରେ ମଧୁସୂଦନ ଯେଉଁ ଅଞ୍ଚଳମାନ ଦେଶ ମିଶ୍ରଣ ପ୍ରକିୟା ମାଧ୍ୟମରେ ଓଡ଼ିଶାରେ ସନ୍ନିବେଶିତ କରିଥିଲେ, ତାହାର ଆୟତନ ହେଉଛି ୯୮,୬୦୦ ବର୍ଗ କିଲୋମିଟର । ଏହି ଦେଶ ମିଶ୍ରଣର ପରିଧି ମଧ୍ୟରେ ଅବସ୍ଥିତ ରହିଛି ଅବିଭକ୍ତ କୋରାପୁଟ, ଗଂଜାମ, କନ୍ଧମାଳ, ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗୀର ଏବଂ କଳାହାଣ୍ଡି ଜିଲ୍ଲା । ଆଉ ୧୯୦୦ ସାଲରେ ଓଡ଼ିଶା ମୂଳ ଭୂଖଣ୍ଡରେ ଥିବା କଟକ, ପୁରୀ, ବାଲେଶ୍ଵର ଜିଲ୍ଲା ଥିଲା ମଧୁସୂଦନଙ୍କ ମୂଳ କାର୍ଯ୍ୟକ୍ଷେତ୍ର, ଯହିଁରେ ପ୍ରଶାସନ ଓଡ଼ିଆ ଭାଷାର ବିଲୁପ୍ତିପାଇଁ ଏକ ଦିଗରେ କାର୍ଯ୍ୟରତ ଥିଲାବେଳେ ମଧୁସୂଦନ ପ୍ରାଥମିକ ଶିକ୍ଷାର ପ୍ରସାରଲାଗି ଏହିଭଳି ଦୁର୍ଦ୍ଦମନୀୟ ପ୍ରୟାସ କରିଥିଲେ ଯେ, ଏହି ତିନିଗୋଟି ଜିଲ୍ଲା ବିଶିଷ୍ଟ ଓଡ଼ିଶା ଡିଭିଜନ ସମଗ୍ର ଭାରତର ସର୍ବାଧିକ ସ୍ୱାକ୍ଷର ଅଂଚଳ ରୂପେ ୧୯୦୦ ସାଲର ଜନଗଣନାରେ ଚିହ୍ନିତ ହୋଇଥିଲା । ମୟୂରଭଂଜ ଗଡ଼ଜାତରେ ୧୮୯୨ ସାଲରେ ଯେଉଁ ପ୍ରତିନିଧିମୂଳକ ଅର୍ଦ୍ଧ ଗଣତନ୍ତ୍ର ବ୍ୟବସ୍ଥା ସମ୍ବଳିତ କାଉନସିଲ ଶାସନ ମଧୁସୂଦନଙ୍କ ପ୍ରଚେଷ୍ଟାରେ ପ୍ରଚଳନ କରାଯାଇଥିଲା, ଏଥିରେ ରାଜତନ୍ତ୍ରର ଅଲଂଘନୀୟ କ୍ଷମତାକୁ ବହୁ ପରିମାଣରେ ପ୍ରତିହତ କରାଯାଇଥିଲା । ମଧୁସୂଦନ ୧୮୮୫ ସାଲରୁ ୧୯୦୦ ସାଲ ମଧ୍ୟରେ ଓଡ଼ିଶାର ଉପକୂଳକୁ ରେଳ ଲାଇନଦ୍ଵାରା ଏବଂ ୧୯୨୭ ସାଲରେ କଟକକୁ ତାଳଚେର ଖଣି ସହିତ ସଂଯୋଜିତ କରିଥିଲେ । ଦେଶ ମିଶ୍ରଣ ପ୍ରକ୍ରିୟା ଯୋଗୁଁ ଓଡିଶା, ପ୍ରାକୃତିକ ଐଶ୍ବର୍ଯ୍ୟ ସାଙ୍ଗକୁ ଜଳ ଓ ଖଣିଜସଂପଦର ପ୍ରାଚୁର୍ଯ୍ୟରେ ଯେଭଳି ଋଦ୍ଧିମନ୍ତ ହୋଇଛି ତାହା ପୂର୍ବରୁ ଆଲୋଚିତ ହୋଇଛି ।

ସମ୍ବଲପୁର ଜିଲ୍ଲାର ଉପାନ୍ତରୁ ବହି ଆସୁଥିବା ମହାନଦୀ ଓ ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲା ଅଂଚଳରୁ ଉତ୍ସରିତ ବ୍ରାହ୍ମଣୀ ନଦୀ ଦ୍ଵୟ ଯଥାକ୍ରମେ ଓଡ଼ିଶାର ଶତକଡ଼ା ୪୨.୧୫ ଭୂମିଭାଗ ଓ ୧୪.୫୬ ଭୂମିଭାଗ ଅଂଚଳରୁ ଜଳସଂଗ୍ରହ କରି ମହାନଦୀର ମଧ୍ୟଭାଗରେ ସ୍ଥାପିତ ହୀରାକୁଦ ଜଳଭଣ୍ଡାର ମାଧ୍ୟମରେ ୨,୪୯,୧୩୦ ହେକ୍ଟର ଜମି ପାଇଁ, ବ୍ରାହ୍ମଣୀ ନଦୀରେ ସ୍ଥାପିତ ରେଙ୍ଗାଲି ବନ୍ଧ ମାଧ୍ୟମରେ ୨,୩୫,୫୦୦ ହେକ୍ଟର ଜମିପାଇଁ ଜଳସେଚନର ଲକ୍ଷ୍ୟ ରଖିଅଛି । ଗଂଜାମର ଋଷିକୂଲ୍ୟା ନଦୀ ୬୧,୭୯୦ ହେକ୍ଟର ଜମି ଜଳସେଚିତ କରୁଛି । ଏହାଛଡ଼ା କୋରାପୁଟର ପୋଟେରୁ, ଇନ୍ଦ୍ରାବତୀ ଆଉ କୋଲାବ ନଦୀବନ୍ଧ ଯୋଜନାରେ ୨,୩୬,୫୦୦ ହେକ୍ଟର ଜମି ଜଳସେଚିତ ହେଉଛି । ସେହିପରି ସମସ୍ତ ନଦୀବନ୍ଧ ଯୋଜନା ମାଧ୍ୟମରେ ଏ ରାଜ୍ୟରେ ଦୈନିକ ୧୯୩୫ ମେଗାୱାଟ୍ ବିଦ୍ୟୁତ୍‌ଶକ୍ତି ଉତ୍ପାଦିତ ହେଉଛି ।

ଏହାଛଡ଼ା ସମଗ୍ର ରାଜ୍ୟର ୫୮,୬୩୪ ବର୍ଗକିଲୋମିଟର ଅରଣ୍ୟ ଜମି ମଧ୍ୟରୁ ୪୦,୧୩୫ ବର୍ଗ କିଲୋମିଟର ଅରଣ୍ୟ ଅଞ୍ଚଳ ରହିଛି, ଯାହା ପରିବେଶକୁ ସନ୍ତୁଳିତ ରଖିବା ସହିତ ପ୍ରଚୁର ଜଳଧାରଣର ଉତ୍ସରୂପେ ଓଡ଼ିଶାକୁ ଜଳସଂପଦର ପ୍ରାଚୁର୍ଯ୍ୟରେ ବିଭବଶାଳୀ କରିପାରିଛି ।

କୋରାପୁଟ ସଂଲଗ୍ନ ଜିଲ୍ଲାରେ ୧୨୦୦ ନିୟୁତ ଟନ ବକ୍ସାଇଟ୍ ଆଉ ସୁନ୍ଦରଗଡ଼ ଜିଲ୍ଲାରେ ୨୦୦ ନିୟୁତ ଟନ ଉଚ୍ଚମାନର ଲୁହାପଥର ସଂରକ୍ଷିତ ରହିଛି । ପରିଣାମରେ ଭାରତର ଅନ୍ୟତମ ଲାଭପ୍ରଦାୟୀ ସଂସ୍ଥା ନାଲ୍କୋ ଓ ରାଉରକେଲା ଇସ୍ପାତ୍ କାରଖାନା ଏହି ଦୁଇ ଅଂଚଳରେ ପ୍ରତିଷ୍ଠିତ ହୋଇ ପାରିଛି । ସେହିପରି ସମ୍ବଲପୁର ଜିଲ୍ଲାର ଝାରସୁଗୁଡ଼ା ଅଞ୍ଚଳରେ ୨୧,୩୧୦ ନିୟୁତ ଟନ କୋଇଲା ଗଚ୍ଛିତ ହୋଇ ରହିଛି, ଯାହା ଦେଶର ଅନ୍ୟତମ ଘନୀଭୂତ ତାପଜ ଶକ୍ତି ଉତ୍ପାଦନର କେନ୍ଦ୍ରସ୍ଥଳୀ ରୂପେ ବିବେଚିତ ।

ଏତେ ଅକଳ୍ପନୀୟ ବିଭବ ଆଉ ଅନନୁମେୟ ସଂପଦ ପ୍ରଦାନ କରି କିଏ ବା ଜନ୍ମଭୂଇଁକୁ ଏଭଳି ଐଶ୍ବର୍ଯ୍ୟଶାଳିନୀ ଆଉ ମହିମାମଣ୍ଡିତ କରିଛନ୍ତି । ଦେଶର ସ୍ୱାଧୀନତା ପ୍ରାପ୍ତିର ପରଠାରୁ କ୍ରମାଗତ ଭାବେ ଓଡ଼ିଶାକୁ ତଥା ଓଡ଼ିଶା ସରକାରଙ୍କୁ ଦୁଇ ତୃତୀୟାଂଶ ଆୟ ନିରନ୍ତର ଆଉ ନିରବଚ୍ଛିନ୍ନ ଭାବେ ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ପ୍ରଦାନ କରି ଆସିଛନ୍ତି । ଏହିଠାରେ ଏକ ପକ୍ଷରେ ଓଡ଼ିଶା ରାଜ୍ୟର ପ୍ରତିଷ୍ଠାତା ଆଉ ନିର୍ମାତା ଅନ୍ୟ ପକ୍ଷରେ ଅନ୍ୟାନ୍ୟ ବରପୁତ୍ରମାନଙ୍କର ତାତ୍ପର୍ଯ୍ୟ ସଂପର୍କରେ ଅବହିତ ହେବା ପ୍ରୟୋଜନ । ଇତିହାସ ପୃଷ୍ଠାର ବରପୁତ୍ରମାନେ ସେମାନଙ୍କର ବୀରତ୍ୱ ଓ ଦୁର୍ବାର ଦେଶ ବତ୍ସଳତା ମାଧ୍ୟମରେ ରାଜ୍ୟବାସୀଙ୍କ ମଧ୍ୟରେ ଅପରିସୀମ ପ୍ରେରଣା ଆଉ ଉଦ୍ଦୀପନା ପ୍ରଦାନ କରି ଆସିଛନ୍ତି ।

ମାତ୍ର ଏହା ସତ୍ତ୍ୱେ ଏ ରାଜ୍ୟର ପ୍ରତିଷ୍ଠାତା ବା ନିର୍ମାତା ଚିରକାଳ ଲାଗି ବରପୁତ୍ରମାନଙ୍କଠାରୁ ଉର୍ଦ୍ଧ୍ୱରେ ରହିବେ । ଏ ରାଜ୍ୟର ଭୂମିଭାଗ ଯାହା ପ୍ରତିଷ୍ଠାତାଙ୍କ ଏକାନ୍ତ ଅବଦାନ, ତାହା ରହିବ ଚିରନ୍ତନ ଅପରିବର୍ତ୍ତନୀୟ । ତାହାରି ଭିତ୍ତିଭୂମି ଉପରେ ଏ ରାଜ୍ୟର ଭବିଷ୍ୟତର ସମୃଦ୍ଧି ଏକାନ୍ତ ଭାବେ ନିର୍ଭର କରେ । ରାଜ୍ୟ ସ୍ଥାପନର ପରବର୍ତ୍ତୀ ପର୍ଯ୍ୟାୟରେ ବରପୁତ୍ରମାନେ ରାଜ୍ୟର ନିର୍ଦ୍ଦିଷ୍ଟ ଭିତ୍ତିଭୂମିକୁ କେବଳ ପ୍ରାଚୁର୍ଯ୍ୟ ପ୍ରଦାନ କରିପାରନ୍ତି ମାତ୍ର ରାଜ୍ୟର ଭିତ୍ତିଭୂମିର ଆୟତନ କିଞ୍ଚିତ୍‌ମାତ୍ର ବୃଦ୍ଧି କରିବା ସେମାନଙ୍କ କ୍ଷମତାର ବାହାରେ । ମଧୁସୂଦନ ଜନ୍ମଭୂମିକୁ ଯେଉଁ ଐଶ୍ବର୍ଯ୍ୟ , ପ୍ରାକୃତିକ ବିଭବ ତଥା ଶସ୍ୟ ସମ୍ଭାରର ପ୍ରାଚୁର୍ଯ୍ୟ ପ୍ରଦାନ କରିଛନ୍ତି, ତାହାହିଁ ଆମ ଶରୀରରେ ଶୋଣିତ ରୂପରେ ପ୍ରବାହିତ ହୋଇ ଚାଲିଛି ।

ତେଣୁ ମଧୁସୂଦନ ହେଉଛନ୍ତି ଓଡ଼ିଶାର ଚିରକାଳର ବର୍ତ୍ତମାନ, ଯାହାଙ୍କର ନିରବଚ୍ଛିନ୍ନ ଅବଦାନ ଆଉ ଅବସ୍ଥିତି ଏ ରାଜ୍ୟକୁ ମହିମାମଣ୍ଡିତ କରିଛି । ଯେତେଦିନ ପର୍ଯ୍ୟନ୍ତ ଓଡ଼ିଶା ରାଜ୍ୟର ସତ୍ତା ତିଷ୍ଠି ରହିଥିବ, ମଧୁସୂଦନ ମୃତ୍ୟୁଞ୍ଜୟୀ ହୋଇ ରହିଥିବେ । ଫକୀରମୋହନଙ୍କର ଶ୍ରଦ୍ଧା ନିବେଦନରେ ଏହା ପ୍ରକଟିତ ହୋଇଛି ଅନନ୍ୟ ପ୍ରାଣବନ୍ତ ଆଲେଖ୍ୟରେ-

''ଯେତେଦିନ ଥିବ ଉତ୍କଳ ଜାତି
ଯାବତେ ଚନ୍ଦ୍ରାର୍କେ ରଟିବ ଖ୍ୟାତି ।''



# ମଧୁସୂଦନଙ୍କ କ୍ରାନ୍ତିକାରୀ ଯାତ୍ରାପଥ

୧୫୬୮ :- ମୁକୁନ୍ଦଦେବ ହରିଚନ୍ଦନଙ୍କ ଅକାଳ ମୃତ୍ୟୁପରେ ବାରବାଟୀ ଦୁର୍ଗର ପୃଷ୍ଠଭୂମିରୁ ସ୍ୱାଧୀନତାର ରବି ଚିରକାଳ ଲାଗି ଅସ୍ତମିତ ହେଲେ । ବଂଗର ଆଫଗାନ ଶାସକ ସୁଲେମାନ କିରାନୀ ଓଡ଼ିଶା ଅଧିକାର କଲେ । ଏଣେ ରାଜା ରାମଚନ୍ଦ୍ର ଦେବ ଖୋର୍ଦ୍ଧା ଅଞ୍ଚଳକୁ କେନ୍ଦ୍ର କରି ଏକ ନୂତନ ରାଜ୍ୟ ସ୍ଥାପନା କଲେ ।

୧୫୭୮ :- ଦକ୍ଷିଣ ଓଡ଼ିଶା ସମେତ ଚିକାକୋଲ (ଶ୍ରୀକାକୁଲମ୍)ଅଞ୍ଚଳ ଗୋଲକୋଣ୍ଡା ରାଜ୍ୟର ଶାସକ ଇବ୍ରାହିମ୍‌ଙ୍କ ଅଧୀନସ୍ଥ ହେଲା ।

୧୭୫୨ :- ଦକ୍ଷିଣ ଓଡ଼ିଶା ଆଉ ଚିକାକୋଲ୍ ଅଞ୍ଚଳ ଫରାସୀ ଶାସକ ବୁସିଙ୍କ ଶାସନାଧୀନ ହେଲା ।

୧୭୬୮ :- ଦକ୍ଷିଣ ଓଡ଼ିଶା ଆଉ ଚିକାକୋଲ ଅଞ୍ଚଳ ବ୍ରିଟିଶ ଶାସନାଧୀନ ହେଲା ।

୧୮୦୩:- ଓଡ଼ିଶାର ମୂଳ ଭୂଖଣ୍ଡ ଓ ଉତ୍ତରାଞ୍ଚଳ ବ୍ରିଟିଶ ଶାସନାଧୀନ ହେଲା । ଏଥିପାଇଁ ଦକ୍ଷିଣ ଓଡ଼ିଶା ତଥା ଦକ୍ଷିଣ ବଂଗ ଅଞ୍ଚଳରୁ ଆକ୍ରମଣର ବିଧିବଦ୍ଧ ସଂଯୋଜନା କରାଯାଇଥିଲା ।

୧୮୪୯ / ୧୮୬୨ :- ଓଡ଼ିଶାର ପଶ୍ଚିମାଞ୍ଚଳ ଇଂରେଜ ସେନାପତି ମେଜର ବ୍ରାଉଟନ୍ ଅଧିକାର କରିଥିଲେ, କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ଏହା ମରହଟ୍ଟା ମାନଙ୍କ ଅଧିକାରରେ ରହିଥିଲା । ସମ୍ବଲପୁରର ଶେଷ ରାଜା ନାରାୟଣ ସିଂହଙ୍କର୧୮୪୯ ସାଲରେ ମୃତ୍ୟୁ ପରେ ସମଗ୍ର ପଶ୍ଚିମାଞ୍ଚଳ ବ୍ରିଟିଶ ଶାସନାଧୀନ ହେଲା । ୧୮୬୦ରେ ଏହି ଅଞ୍ଚଳ ଓଡ଼ିଶା ଡିଭିଜନର ଅନ୍ତର୍ଭୁକ୍ତ ହୋଇଥିଲା । ୧୮୬୨ ରେ ଏହି ଅଂଚଳ ମଧ୍ୟ ପ୍ରଦେଶର ଛତିଶଗଡ଼ ଡିଭିଜନର (ଗଡ଼ଜାତ ସମେତ) ଅନ୍ତର୍ଭୁକ୍ତ ହୋଇଥିଲା ।

୧୮୦୩/୧୮୫୮ :- ଓଡ଼ିଶା ମୂଳ ଭୂଖଣ୍ଡ (ଗଡ଼ଜାତ ସମେତ) ଓ ବିଭିନ୍ନ ଜିଲ୍ଲା ମାଧ୍ୟମରେ ଶାସିତ ହେଉଥିଲା । ୧୮୫୮ବେଳକୁ କଟକ, ପୁରୀ, ବାଲେଶ୍ୱର ଜିଲ୍ଲା ସହିତ ସଂଲଗ୍ନ ସଡର

ଗୋଟି ଗଡ଼ଜାତ ଓଡ଼ିଶା ଡିଭିଜନର ଶାସକୀୟ ପରିସର ମଧ୍ୟରେ ବ୍ରିଟିଶ ଶାସନର ଅନ୍ତର୍ଭୁକ୍ତ ହୋଇଥିଲା ।

୧୮୪୩ :- ବ୍ୟାସକବି ଫକୀରମୋହନ ସେନାପତିଙ୍କର ଜନ୍ମ (୧୪.୧.୧୮୪୩) ମକର ସଂକ୍ରାନ୍ତି ।

୧୮୪୮ :- ବିଖଣ୍ଡିତ ଓଡ଼ିଶା ଡିଭିଜନର ଏଭଳି ମର୍ମନ୍ତୁଦ ଆଉ ଦୟନୀୟ ସ୍ଥିତିରେ ମଧୁସୂଦନଙ୍କ ଜନ୍ମ ୨୮ ଅପ୍ରେଲ ୧୮୪୮ରେ ସତ୍ୟଭାମାପୁରର ଜମିଦାର ଚୌଧୁରୀ ରଘୁନାଥ ଦାସଙ୍କର ଜ୍ୟେଷ୍ଠପୁତ୍ର ରୂପେ ହୋଇଥିଲା । ତାଙ୍କ ଜନ୍ମପୂର୍ବରୁ ସୂର୍ଯ୍ୟାସ୍ତ ଆଇନ ବଳରେ ତାଙ୍କ ପରିବାରର ଜମିଦାରି ହସ୍ତାନ୍ତରିତ ହୋଇଯାଇଥିଲା । ପିତା ରଘୁନାଥ ଦାସ ଥିଲେ ସେ ବେଳର ପାରସୀ ପଢ଼ା ଓକିଲ । ମାତା ପାର୍ବତୀ ଦେବୀଙ୍କର ଅତ୍ୟନ୍ତ ପ୍ରଖର ଆଉ ତେଜୋଦୀପ୍ତ ପ୍ରଭାବ ମଧୁସୂଦନଙ୍କ ଜୀବନର ଗତିପଥକୁ ପ୍ରଭାବିତ କରିଥିଲା । ସେ ବାଲ୍ୟକାଳରେ ବିଦ୍ୟା ଅଧ୍ୟୟନ ବେଳେ , ମା'ଙ୍କୁ ତାଳପତ୍ର ଖେଦାରୁ ସାରଳା ଦାସଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ଆଉ ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ସହିତ ଅନ୍ୟ ପୁରାଣମାନ ପଢ଼ି ଶୁଣାଉଥିଲେ । ଏହା ସହିତ ସେତେବେଳେର ପଠନ ଓ ଅଧ୍ୟୟନ ରୀତି ଅନୁସାରେ ସେ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସ, ଲାବଣ୍ୟବତୀ, ଦୀନକୃଷ୍ଣ ଦାସଙ୍କର ରସକଲ୍ଲୋଳ ଆଉ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଦଗ୍ଧ ଚିନ୍ତାମଣି ସମେତ ବହୁ ପ୍ରାଚୀନ ତାଳପତ୍ର ଖେଦାର ଅଧ୍ୟୟନ କରି ପାରଦର୍ଶିତା ଲାଭ କରିଥିଲେ । ହଁ, ସେ ଭଞ୍ଜଙ୍କର ଶବ୍ଦ ସମୁଦ୍ରକୁ ପାରିହୋଇଥିଲେ । ଏଥିରୁ ସହଜରେ ଅନୁମେୟ , ମଧୁସୂଦନ ଓଡ଼ିଆ ସଂସ୍କୃତିର ଗଭୀର ଓ ପ୍ରଗାଢ଼ ଧାରାରେ କିଭଳି ପ୍ରବେଶ ଆଉ ଅବଗାହନ କରିଥିଲେ । ସବୁଠାରୁ ମାର୍ମିକ ବିଷୟ ଥିଲା ଗ୍ରାମ ଗହଳରେ ଉତ୍ପୀଡ଼ିତ କୃଷକ, ନିଷ୍ପେଷିତ କାରିଗର ଆଉ ଦଳିତ ସଂପ୍ରଦାୟ ସହିତ ତାହାଙ୍କର ସଂପର୍କ ଥିଲା ଅତି ନିବିଡ଼ ଆଉ ଅନ୍ତରଙ୍ଗ ।ଏହି ୧୮୪୮ ସାଲର ସେପ୍ଟେମ୍ବର ମାସରେ କବିବର ରାଧାନାଥଙ୍କର ଜନ୍ମ ହୋଇଥିଲା ।

୧୮୬୦ / ୧୮୬୪ :- ଗ୍ରାମର ପ୍ରାଥମିକ ସ୍କୁଲ୍‌ରେ ଅଧ୍ୟୟନ ଶେଷ କରି ୧୮୬୦ ସାଲରେ କଟକ ସରକାରୀ ହାଇସ୍କୁଲ୍‌ରେ ଯୋଗଦାନ କରିଥିଲେ । ଏହି ସମୟରେ ଓଡ଼ିଶାରେ ମଧ୍ୟବର୍ତ୍ତୀ ଶାସକ ଗୋଷ୍ଠୀ ବିଶେଷତଃ ବଂଗାଳୀ କିରାଣି ଓ ପ୍ରଶାସକଙ୍କର ନିଷ୍ପେଷଣ ଅତ୍ୟନ୍ତ ଉତ୍ପୀଡ଼କ ଆଉ ଯନ୍ତ୍ରଣାଦାୟକ ଥିବାରୁ ତାହାରି ବିରୁଦ୍ଧରେ ସଂଗ୍ରାମରତ ଥିଲେ । ଏପରିକି ବଂଗାଳୀ ପ୍ରଧାନ ଶିକ୍ଷକଙ୍କର ଅନ୍ୟାୟୋଚିତ ସିଦ୍ଧାନ୍ତ ବିରୋଧରେ ପ୍ରଶାସନର ଦୃଷ୍ଟି ଆକର୍ଷଣ କରିବାକୁ ପଶ୍ଚାତପଦ ହୋଇ ନଥିଲେ । ମଧୁସୂଦନ ଛାତ୍ରାବସ୍ଥାରେ କଟକରେ ଅବସ୍ଥାନ ସମୟରେ ସହରର ପ୍ରଚଳିତ ଶିଳ୍ପ ଉତ୍ପାଦନ ପ୍ରକ୍ରିୟାକୁ ଅତ୍ୟନ୍ତ ମନୋନିବେଶ ସହିତ ଅନୁଧ୍ୟାନ କରୁଥିଲେ । ତାରକସି ଶିଳ୍ପ ପ୍ରତି ସେ ଆକର୍ଷିତ ହୋଇଥିଲେ ।

୧୮୬୨ :- କବି ଗଙ୍ଗାଧର ମେହେରଙ୍କ ଜନ୍ମ ତା ୯.୮.୧୯୬୨ (ଶ୍ରାବଣ ପୂର୍ଣ୍ଣିମା)

୧୮୬୪/୧୮୬୫ :- ମଧୁସୂଦନ ୧୮୬୪ ରେ କଟକ ହାଇସ୍କୁଲ୍‌ରୁ ଏଣ୍ଟ୍ରାନ୍‌ସ ପାସ କରିବା

ପରେ ୧୮୬୫ ସାଲରେ ବାଲେଶ୍ୱରରେ ଶିକ୍ଷକତା ଓ କିଛି କାଳ ସରକାରୀ ଚାକିରିରେ ନିଯୁକ୍ତ ରହିଥିଲେ । ଏହି ସମୟରେ ଶିକ୍ଷକତା କରୁଥିବା ଫକୀରମୋହନ ସେନାପତି ଓ ରାଧାନାଥ ରାୟଙ୍କ ସହିତ ତାଙ୍କର ସଂପର୍କ ଗଢ଼ି ଉଠିଥିଲା । ଏହା ଜୀବନର ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ବଳବତ୍ତର ରହିଥିଲା ।

୧୮୬୬/୧୮୭୦ :- ୧୮୬୬ସାଲର କରାଳ ଦୁର୍ଭିକ୍ଷରେ ଓଡ଼ିଶାର ଆର୍ଥିକ ସ୍ଥିତି ତଳିତଳାନ୍ତ ହୋଇଥିଲା । ଓଡ଼ିଶାର ଏକ ତୃତୀୟାଂଶ ଜନତା ମୃତ୍ୟୁମୁଖରେ ପଡ଼ିଥିଲେ । ସେହିବର୍ଷ ମଧୁସୂଦନ ଚାନ୍ଦବାଲି ବନ୍ଦର ଦେଇ କଲିକତା ଯାତ୍ରା କରିଥିଲେ । କଲିକତାରେ ସେ ଦାରିଦ୍ର୍ୟର ନିଷ୍ପେଷଣ ଆଉ ପ୍ରବାସୀଙ୍କ ଉତ୍ପୀଡ଼ନ ମଧ୍ୟରେ ଅର୍ଦ୍ଧାହାର ଆଉ ଅନାହାରର କଷଣ ଭିତରେ ୧୮୬୮ ରେ ଏଫ୍.ଏ ଓ ୧୮୭୦ ସାଲରେ ବିଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ବି.ଏ ପରୀକ୍ଷା ପ୍ରଦାନ ସମୟରେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ସହିତ ତୁମୁଳ ପ୍ରତିବାଦ ମଧ୍ୟରେ ସଂସ୍କୃତ ପରୀକ୍ଷାର ଉତ୍ତର ଓଡ଼ିଆ ଲିପିରେ ପ୍ରଦାନ କରି ଯଶସ୍ୱୀ ହୋଇଥିଲେ । ଯୀଶୁଙ୍କର ଅନ୍ତିମ ଅବସ୍ଥାରେ ଶତ୍ରୁଗଣଙ୍କ ପ୍ରତି ପ୍ରଦତ୍ତ ଅପରୂପ କରୁଣାର ବାକ୍ୟ ଶ୍ରବଣ ଓ ଅନୁଧ୍ୟାନ କରି ୧୮୬୯ରେ ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିଥିଲେ ।

୧୮୭୩ :- ୧୮୭୧ ସାଲରେ ସ୍ୱାସ୍ଥ୍ୟହାନି ଯୋଗୁଁ ମଧୁସୂଦନ ଏକ ବର୍ଷ ଶିକ୍ଷା ସ୍ଥଗିତ କରି ୧୮୭୩ ସାଲରେ ଇଂରାଜୀରେ କୃତିତ୍ୱର ସହ ଏମ୍ ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଓ ବଂଗୀୟ ଖ୍ରୀଷ୍ଟିଆନ୍ ମହିଳା ସୌଦାମିନୀ ଦେବୀଙ୍କୁ ବିବାହ କରିଥିଲେ । କିଛି କଲେଜରେ ସ୍ୱଳ୍ପକାଳ ଲାଗି ଅଧ୍ୟାପନା କରିଥିଲେ । ଚନ୍ଦ୍ରଶେଖର ବେହେରାଙ୍କ ଆବିର୍ଭାବ ।

୧୮୭୪/୧୮୭୭ :- ୧୮୭୪ରୁ ୧୮୭୭ ମଧ୍ୟରେ ମଧୁସୂଦନ ଭବାନୀପୁର ଆଉ ଗାର୍ଡ଼େନ ରିଚ୍ ହାଇସ୍କୁଲ୍ର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରି ଅଶେଷ ଖ୍ୟାତିର ଅଧିକାରୀ ହୋଇଥିଲେ । ୧୮୭୫ ସାଲରେ ଆଦର୍ଶ ପ୍ରଶ୍ନମାଳା ପ୍ରକାଶନ କରି ମ୍ୟାଟ୍ରିକ୍ ଇଂରାଜୀ ପରୀକ୍ଷାର୍ଥୀଙ୍କ ପାଇଁ ସମସ୍ୟାର ସମାଧାନ କରିଥିଲେ । ଡାକ୍ତର ଗଂଗାଧର ମୁଖାର୍ଜୀଙ୍କ ପୁତ୍ର ଆଶୁତୋଷ ମୁଖାର୍ଜୀଙ୍କର ଶିକ୍ଷାର ଦାୟିତ୍ୱ ବହନ କରିବା ସହିତ ଛାତ୍ର ବେଳର ଚିତ୍ତରଂଜନ ଦାସଙ୍କୁ ଦିଗ୍ ଦର୍ଶନ ପ୍ରଦାନ କରିଥିଲେ । ୧୮୭୫ ସାଲରେ କଲିକତାର ମାଟିଆ ବୃୁଜ୍‌ଠାରେ ଓଡ଼ିଆ ଶ୍ରମିକଙ୍କପାଇଁ ନୈଶ୍ୟ ବିଦ୍ୟାଳୟ ଓ ସାଧାରଣ ଶ୍ରମିକଙ୍କପାଇଁ ଏକ ଶ୍ରମିକ ସଂଘ ସ୍ଥାପନ କରିଥିଲେ । କଲିକତାର ପ୍ରଥମ ଶ୍ରମିକ ସଂଘ ୧୮୭୦ ସାଲରେ ସ୍ଥାପିତ ହୋଇଥିଲା ।

୧୮୭୭ :- ପଣ୍ଡିତ ଗୋପବନ୍ଧୁଙ୍କ ଜନ୍ମ (୯.୧୦.୧୮୭୭)

୧୮୭୮ :- ଏହି ବର୍ଷ ମଧୁସୂଦନ ଆଇନ ଡିଗ୍ରୀ ହାସଲ କରି ଚବିଶି ପ୍ରଗଣା କୋର୍ଟରେ ଓକିଲାତି କରିଥିଲେ । ଏହି ବର୍ଷ ସୌଦାମିନୀ ଦେବୀଙ୍କର ପରଲୋକ ଘଟିଥିଲା । କଲିକତାର ବିଦ୍ୱାନମଣ୍ଡଳୀ, ବିଭିନ୍ନ ରାଜନୈତିକ ସଂଗଠନ ସହିତ ତାଙ୍କର ଅନ୍ତରଂଗତା ଓ ଘନିଷ୍ଠତା ବୃଦ୍ଧି ପାଇଥିଲା । କଲିକତା ହାଇକୋର୍ଟର ମୁଖ୍ୟ ବିଚାରପତିଙ୍କ ପରାମର୍ଶ କ୍ରମେ ସେ କଟକରେ ଆଇନ

ବ୍ୟବସାୟ ଆରମ୍ଭ କରିବା ପାଇଁ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ଏହି ସମୟରେ ସୁରେନ୍ଦ୍ରନାଥ ବାନାର୍ଜି, ଶିଶିର କୁମାର ଘୋଷ (ସଂପାଦକ ଆନନ୍ଦ ବଜାର ପତ୍ରିକା) ରାଜ ନାରାୟଣ ବୋଷ, ଶ୍ରୀ ଅରବିନ୍ଦଙ୍କର ଅଜା ଆଦିଙ୍କ ସହିତ ସଂପର୍କ ସ୍ଥାପିତ ହୋଇଥିଲା ।

୧୮୮୧ :- ମଧୁସୂଦନ ତାଙ୍କର ପରମ ମିତ୍ର ଗଡ଼ଜାତର ଡେପୁଟି ସୁପରିଟେଣ୍ଡେଣ୍ଟ ନନ୍ଦ କିଶୋର ଦାସଙ୍କ ଆହ୍ୱାନ ଓ ନିବେଦନ କ୍ରମେ ୨୦.୯.୧୮୮୧ରେ କଟକ ଯୋବ୍ରା ଘାଟରେ ପହଞ୍ଚି କଟକର ବିହାରୀବାଗ (ବର୍ତ୍ତମାନର ପ୍ରଜାତନ୍ତ୍ର ଅଫିସ୍)ରେ ଅବସ୍ଥାନ କରିଥିଲେ । ପ୍ରିଣ୍ଟିଂ ପ୍ରେସ୍ କୋଠାରେ ଭାରତୀୟ ବର୍ଣ୍ଣମାଳା ଉପରେ ପାଣ୍ଡିତ୍ୟପୂର୍ଣ୍ଣ ବକ୍ତବ୍ୟ ପ୍ରଦାନ କରି ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ ।

୧୮୮୨ :-ବଡ଼ଲାଟ ଲର୍ଡ଼ ରିପନ୍‌ଙ୍କର ସ୍ୱାୟତ୍ତ ଶାସନ ଆଧାରରେ ଅନୁଷ୍ଠାନ ସ୍ଥାପନର ଆହ୍ୱାନରେ ମଧୁସୂଦନ ୩୦ ଜୁନ୍ ୧୮୮୨ରେ ଗୌରୀଶଙ୍କର ରାୟଙ୍କର ଘନିଷ୍ଠତାରେ ଉତ୍କଳ ସଭାର ପ୍ରାକ୍ ବୈଠକ ଆହ୍ୱାନ କରିଥିଲେ । ଅଗଷ୍ଟ ୧୬ ତାରିଖରେ ଅନୁଷ୍ଠିତ ସଭାରେ ''ଉତ୍କଳ ସଭା'' ବା ଇଂରାଜୀରେ 'ଓଡ଼ିଶା ଆସୋସିଏସନ୍' ପ୍ରତିଷ୍ଠା ହୋଇଥିଲା । ଏହାର ମୁଖ୍ୟ ଲକ୍ଷ୍ୟ ଥିଲା ବିଭାଜିତ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ଓ ଉତ୍କଳର ସମସ୍ୟାର ସମାଧାନ । ଏହି ବର୍ଷ ପୁରୀର ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱରେ ଥିବା ସୂର୍ଯ୍ୟମଣି ପାଟ ମହାଦେଈଙ୍କର ନାତି ଜଗନ୍ନାଥ ଜେନାମଣିଙ୍କୁ ରାଜା ମୁକୁନ୍ଦଦେବ ତୃତୀୟ ନାମରେ ଅଭିଷିକ୍ତ କରିବାର ଉଦ୍ୟମ ଲାଗି ମଧୁସୂଦନ ଆବେଦନ ପତ୍ରର ଚିଠା କରିଥିଲେ । ମଧୁସୂଦନ ରେଭେନ୍‌ସା କଲେଜର ଅବୈତନିକ ଆଇନ ଅଧ୍ୟାପକ ରୂପେ କାର୍ଯ୍ୟ କରିଥିଲେ । ଏହିବର୍ଷଠାରୁ ପ୍ରତି ଶନିବାର ସନ୍ଧ୍ୟାରେ ସଂଗୀତ ମହୋତ୍ସବର ଆୟୋଜନ କରୁଥିଲେ ।

୧୮୮୫ :- ବଂଗର ଗଭର୍ଣ୍ଣର ସାର୍ ରିଚାର୍ଡ଼ ଥମ୍ପସନ୍ ୧୮୮୫ ସାଲରେ କଟକ ପରିଦର୍ଶନରେ ଆସିବା ସମୟରେ ମଧୁସୂଦନ ଉତ୍କଳ ସଭା ପକ୍ଷରୁ ଓଡ଼ିଶାର ବିଭିନ୍ନ ସମସ୍ୟାର ସମାଧାନ ସହିତ ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ଲାଗି ଦାବି ଉପସ୍ଥାପନ କରିଥିଲେ । ଏହି ବର୍ଷ ପ୍ରିଣ୍ଟିଂ ପ୍ରେସ୍ ତରଫରୁ ପ୍ରକାଶିତ ଉପେନ୍ଦ୍ର ଭଞ୍ଜଙ୍କ କବିତା ଆଉ ବିଶ୍ୱନାଥ ଖୁଣ୍ଟିଆଙ୍କ ରଚିତ ବିଚିତ୍ର ରାମାୟଣର ଯେଉଁ ପ୍ରତିରୋଧ ଥିଲା ତାହାକୁ ଦୂର କରିପାରିଥିଲେ । 'ଦି ଓରିଆ' ଲେଖକୀୟ ନାମରେ ଇଂରେଜୀରେ ଓଡ଼ିଶାର ସ୍ୱାର୍ଥରକ୍ଷାପାଇଁ ପ୍ରବନ୍ଧମାନ ଉତ୍କଳଦୀପିକାର ପତ୍ରିକାରେ କ୍ରମାନ୍ୱୟରେ ଲେଖି ଚାଲିଥିଲେ ।

୧୮୮୬ :- ମଧୁସୂଦନ କଟକ ଜିଲ୍ଲା ବୋର୍ଡ଼ର ଭାଇସ୍ ଚେୟାର୍‌ମ୍ୟାନ୍ ନିର୍ବାଚିତ ହୋଇ ନିଷ୍ଠାର ସହିତ କାର୍ଯ୍ୟ କରିଥିଲେ । ଏହି ବର୍ଷ ମଧୁସୂଦନ ଭାରତୀୟ ଜାତୀୟ କଂଗ୍ରେସର କଲିକତାରେ ଅନୁଷ୍ଠିତ ଦ୍ୱିତୀୟ ଅଧିବେଶନରେ ଯୋଗଦାନ କରିଥିଲେ । ୧୫.୧୨.୧୮୮୬ରେ କଟକ ଜିଲ୍ଲା ଜଜ୍ ମିଷ୍ଟର ବ୍ରାଉନ୍, ଶ୍ରୀମନ୍ଦିର ପରିଚାଳନା ସରକାରଙ୍କ ନିଯୁକ୍ତ କମିଟିଦ୍ୱାରା ସମାହିତ କରିବା ବ୍ୟବସ୍ଥାର ଅନୁମୋଦନ କରିଥିଲେ । ଏହି ଆଦେଶ କ୍ରମେ ଶ୍ରୀମନ୍ଦିରର କିଛି ଅଂଶକୁ ଜବତମୁଦ ଦେଇ ସଂପତ୍ତି ତାଲିକା ପ୍ରସ୍ତୁତ କାର୍ଯ୍ୟ ଆରମ୍ଭ ହୋଇଥିଲା । ରାଣୀ ସୂର୍ଯ୍ୟମଣି

ପାଟମହାଦେଈ ମଧୁସୂଦନଙ୍କୁ ଆହ୍ୱାନ କରି ତୁରନ୍ତ କଲିକତା ହାଇକୋର୍ଟରେ ଏହି ବ୍ୟବସ୍ଥା ବିରୁଦ୍ଧରେ ଅପିଲ୍ ଦାଖଲ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ମଧୁସୂଦନ କଲିକତା ଯାଇ ଅପିଲ୍ ଦାଖଲ କରିଥିଲେ । ଏହି ବର୍ଷ କବି ରାଧାନାଥ ରାୟ ଓଡ଼ିଆ ଜାତୀୟତାର ଆଧାରରେ 'ଚନ୍ଦ୍ରଭାଗା' କାବ୍ୟ ରଚନା କରିଥିଲେ ।

୧୮୮୭ :- କଲିକତା ହାଇକୋର୍ଟରେ ପୁରୀ ମନ୍ଦିର ବିଷୟ ମାର୍ଚ୍ଚ ମାସରେ ଆଗତ ହେଲା । ଅବଶେଷରେ ଏପ୍ରିଲ୍ ମାସରେ ପ୍ରଦତ୍ତ ହାଇକୋର୍ଟ ରାୟ ଅନୁସାରେ ରାଣୀଙ୍କର ବିଜୟ ହେଲା । ବଂଗର ନବନିଯୁକ୍ତ ଗଭର୍ଣ୍ଣର ସାର୍ ଷ୍ଟୁଆର୍ଟ ବେଲି ଏହି କ୍ଷେତ୍ରରେ ମିଳାମିଶାର ଉଦ୍ୟମ କରିଥିଲେ । ୧୮୮୭ ସାଲରୁ କଲିକତା ହାଇକୋର୍ଟର ଏଡ଼ଭୋକେଟ ରୂପେ ଗୃହୀତ ହେଲେ ।

୧୮୮୮ :- ବଂଗର ଗଭର୍ଣ୍ଣର ସାର୍ ଷ୍ଟୁଆର୍ଟ ବେଲିଙ୍କର କଟକରେ ସମ୍ବର୍ଦ୍ଧନା ସଭାରେ ବିଖଣ୍ଡିତ ଓଡ଼ିଆ ଅଂଚଳ ମିଶ୍ରଣପାଇଁ ଦାବି ଉପସ୍ଥାପନ ଉତ୍କଳ ସଭା ପକ୍ଷରୁ କରିଥିଲେ । ୧୩.୩.୧୮୮୮ରେ ମଧୁସୂଦନ ଓଡ଼ିଶା ଗ୍ରାଜୁଏଟ୍ ଆଉ ଅଣ୍ଡର ଗ୍ରାଜୁଏଟ୍ ସମିତି ସ୍ଥାପନ କରିଥିଲେ । ମଧୁସୂଦନଙ୍କର କନିଷ୍ଠ ଭ୍ରାତା ଗୋପାଳବଲ୍ଲଭଙ୍କର ବିବାହ ଅନୁଷ୍ଠିତ ହୋଇଥିଲା । ୧୮୮୬ ସାଲରୁ ମଧୁସୂଦନ କଟକ ଜିଲ୍ଲାବୋର୍ଡ଼ର ଉପସଭାପତି ରୂପେ କଲେକ୍ଟରଙ୍କଠାରୁ ସଭାପତିଙ୍କ ସମସ୍ତ କ୍ଷମତା ପ୍ରାପ୍ତ ହୋଇ ପ୍ରାଥମିକ ଶିକ୍ଷାର ବିସ୍ତାର ଲାଗି ବିଭିନ୍ନ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ପୁରୀ ଓ ବାଲେଶ୍ୱର ଜିଲ୍ଲାକୁ ଏହି କାର୍ଯ୍ୟକ୍ରମ ସଂପ୍ରସାରିତ ହୋଇଥିଲା । ଏହି ବର୍ଷଠାରୁ ମଧୁସୂଦନଙ୍କର ରଂଗମଞ୍ଚରେ ଧାରାବାହିକ ଭାବେ ନାଟକ ପ୍ରଦର୍ଶନ ଚାଲୁ ରହିଥିଲା ।ଜଣେ ମ୍ୟାନେଜର ଓ ଏକ କମିଟିଦ୍ୱାରା ରାଣୀ ସୂର୍ଯ୍ୟମଣି ଶ୍ରୀମନ୍ଦିରର ପରିଚାଳନା କରୁଥିଲେ ।

୧୮୯୨ :- ଏହି ବର୍ଷ କଟକ ଚଣ୍ଡୀ ନିକଟରେ ଏକ ଭୂ-ସଂପତ୍ତିକୁ ନିଲାମରେ ଧରି ନିଜସ୍ୱ ରୁଚି ଅନୁସାରେ ଏକ ସ୍ୱତନ୍ତ୍ର କୋଠା ସ୍ଥାପନ କରିଥିଲେ । ୧୮୮୧ଠାରୁ ବିହାରୀବାଗରେ ବାସ କରୁଥିବା ମଧୁସୂଦନ ଏହି ନୂତନ କୋଠାରେ ଆସି ଅବସ୍ଥାନ କରିଥିଲେ, ଯାହା ମଧୁସ୍ମୃତି ନାମରେ ପରିଚିତ । ପ୍ରକୃତରେ ସ୍ୱତନ୍ତ୍ର ଓଡ଼ିଶାର ସ୍ଥାପନାପାଇଁ ଏହାଥିଲା ଓଡ଼ିଶାର ଦ୍ୱିତୀୟ ବାରବାଟୀ ଦୁର୍ଗ । ଦୁର୍ଭାଗ୍ୟର ବିଷୟ ଆଜି ତାହା ମହିଳା କଲେଜ ପରିସରରେ ଅବରୁଦ୍ଧ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଜନ୍ମ ୨୬.୪.୧୮୯୨, ତିରୋଧାନ- ୨୫-୫-୧୯୭୪ । ଏହି ବର୍ଷ ରାଜସ୍ୱ ବନ୍ଦୋବସ୍ତରେ ପ୍ରଜାଙ୍କ ସ୍ୱାର୍ଥରକ୍ଷା ପାଇଁ ଉତ୍କଳ ସଭା ପକ୍ଷରୁ ଏକ ସ୍ମାରକ ପତ୍ର ମଧୁସୂଦନ ସରକାରଙ୍କୁ ପ୍ରେରଣ କରିଥିଲେ ।

୧୮୯୩:- ଝାରସୁଗୁଡ଼ାରୁ ସମ୍ବଲପୁରକୁ ରେଲ ଲାଇନ ସଂପ୍ରସାରିତ ହେଲା, ପରିଣାମରେ ମଧ୍ୟପ୍ରଦେଶ ସରକାର ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନପାଇଁ ଚିନ୍ତା କଲେ ।

୧୮୯୪ :- ଏହି ବର୍ଷଠାରୁ ମଧୁସୂଦନଙ୍କ ପରିକଳ୍ପନାରେ ତାତ୍ପର୍ଯ୍ୟପୂର୍ଣ୍ଣ ଭାବେ ସ୍ୱଦେଶୀ ନିୟୋଜନ ଓ ବିଦେଶୀ ବର୍ଜନର ଚିନ୍ତା ଆରମ୍ଭ ହୋଇଥିଲା । ପ୍ରଥମେ ସେ ନିଜ ଜୋତାକୁ ସ୍ୱଦେଶୀ କରିବାପାଇଁ ପରୀକ୍ଷା ଆରମ୍ଭ କରିବା ସହିତ କଟକ ଓ ପଟିଆ ମୋଚିବସ୍ତିରେ ସେମାନଙ୍କ କାର୍ଯ୍ୟ

ଅନୁଧ୍ୟାନ କରିଥିଲେ । ଆଉ ପାଞ୍ଚ ଜଣ ମୋଚିଙ୍କୁ ମଧୁସ୍ମୃତିରେ ଅବସ୍ଥାନ କରାଇ ଏଥିପାଇଁ ପରୀକ୍ଷାନିରୀକ୍ଷା ଆରମ୍ଭ କରିଥିଲେ । ଏହି ବର୍ଷଠାରୁ ଓଡ଼ିଶାର ଉପକୂଳରେ ମଧୁସୂଦନଙ୍କ ପ୍ରଚେଷ୍ଟାରେ ଟ୍ରେନ୍ ଲାଇନ୍‌ର ସର୍ଭେ କାର୍ଯ୍ୟ ଆରମ୍ଭ ହୋଇଥିଲା ।

୧୮୯୫ :- ମଧ୍ୟପ୍ରଦେଶ ସରକାର ସମ୍ବଲପୁର ଜିଲ୍ଲାରେ ପ୍ରଚଳିତ ରାଜଭାଷା ଓଡ଼ିଆକୁ ଉଚ୍ଛେଦ କରି ଏହା ପରିବର୍ତ୍ତେ ହିନ୍ଦୀକୁ ରାଜ ଭାଷା ରୂପେ ବଦଳାଇବାର ସିଦ୍ଧାନ୍ତ ଗ୍ରହଣ କରି ୧୫.୧.୧୮୯୫ରେ ଓଡ଼ିଆ ଭାଷା ଉଚ୍ଛେଦର ନିର୍ଦ୍ଦେଶନାମା ପ୍ରଚାରିତ କରିଥିଲେ । ଏହି ନିର୍ଦ୍ଦେଶନାମା ବିରୁଦ୍ଧରେ ୧୧.୨.୧୮୯୫ରେ ଧରଣୀଧର ମିଶ୍ରଙ୍କ ନେତୃତ୍ୱରେ ଓ ୧୩.୬.୧୮୯୫ରେ ୨୩୬୪ ବ୍ୟକ୍ତିଙ୍କର ଦସ୍ତଖତ ସଂବଳିତ ମେମୋରାଣ୍ଡମ୍ ଭାରତର ବଡ଼ଲାଟ ଲର୍ଡ଼ ଏଲିଗିନ୍‌ଙ୍କୁ ପ୍ରେରିତ ହୋଇଥିଲା ।

ସମ୍ବଲପୁର ଜିଲ୍ଲାରେ ହିନ୍ଦୀ ଭାଷା ପ୍ରଚଳନ ପରିପ୍ରେକ୍ଷୀରେ ମଧୁସୂଦନ କଟକ ଜିଲ୍ଲା ବୋର୍ଡ଼ର ଭାଇସ୍ ଚେୟାର୍‌ମ୍ୟାନ୍ ପଦବୀରୁ ୧୮୯୫ ସାଲରେ ଇସ୍ତଫା ପ୍ରଦାନ କରିଥିଲେ । ଏହି ବର୍ଷ ରୂପନାରାୟଣ ନଦୀକୂଳସ୍ଥ କୋଲାଘାଟଠାରୁ କଟକ ଅଭିମୁଖେ ରେଳ ଲାଇନ ସ୍ଥାପନାର କାର୍ଯ୍ୟ ଆରମ୍ଭ ହେଲା, ଯାହାପାଇଁ ମଧୁସୂଦନଙ୍କର ଉଦ୍ୟମ ଅବିସ୍ମରଣୀୟ ।

୧୮୯୬:- ମଧୁସୂଦନ ଦାସ, ଓଡ଼ିଶା ଓ ଛୋଟନାଗପୁର ଡିଭିଜନର ମ୍ୟୁନିସିପାଲିଟି ନିର୍ବାଚନ ମଣ୍ଡଳୀରୁ ବଂଗ ବିଧାନସଭାକୁ ପ୍ରଥମ ଓଡ଼ିଆ ସଭ୍ୟ ରୂପେ ନିର୍ବାଚିତ ହୋଇଥିଲେ। ସେ ଏହି ବର୍ଷ ଅପ୍ରେଲ ମାସରେ ଓଡ଼ିଶାର ପ୍ରାଥମିକ ବିଦ୍ୟାଳୟମାନଙ୍କରେ କୃଷି ଶିକ୍ଷାକୁ ନିୟମିତ କରିବାପାଇଁ ବଂଗ ବିଧାନ କାଉନ୍‌ସିଲ୍‌ରେ ପ୍ରସ୍ତାବ ଆଗତ କରିଥିଲେ । ଏହି ବର୍ଷ ଖଡ଼ଗପୁର ପଟୁ ମଧୁସୂଦନଙ୍କ ପ୍ରଚେଷ୍ଟାରେ ରେଳଲାଇନ୍ ସ୍ଥାପନାରେ ଅଗ୍ରଗତି ହୋଇଥିଲା ।

୧୮୯୭:- ବଂଗ ବିଧାନ କାଉନ୍‌ସିଲ୍‌ର ଅଧିବେଶନ ପରେ ୟୁରୋପ ଯାତ୍ରା ଲାଗି ମଧୁସୂଦନ ୨୬.୪.୧୮୯୭ରେ ଭାରତରୁ ଜଳପଥରେ ବାହାରି ଫ୍ରାନ୍‌ସ ପରିଦର୍ଶନ ପରେ ଇଂଲଣ୍ଡରେ ପହଞ୍ଚି ଥିଲେ । ଲଣ୍ଡନରେ ଭାରତ ସଚିବ ହାମିଲ୍‌ଟନ୍‌ଙ୍କ ସହିତ ଓଡ଼ିଶାବାସୀଙ୍କ ପକ୍ଷରୁ ଦାବି ଉପସ୍ଥାପନ ପରେ ମଧୁସୂଦନ ଇଂଲଣ୍ଡର ରାଜନୈତିକ, ପ୍ରାଶାସନିକ, ଶିଳ୍ପଭିତ୍ତିକ ପରମ୍ପରା ସହିତ ସମବାୟ ଆନ୍ଦୋଳନର ଉନ୍ମେଷ ଓ ଅଗ୍ରଗତି ସଂପର୍କରେ ଅଧ୍ୟୟନ କରିଥିଲେ । ସେ ଉତ୍କଳୀୟ ଶିଳ୍ପକଳାର ଏକ ମନୋଜ୍ଞ ପ୍ରଦର୍ଶନୀ ଆୟୋଜିତ କରିବା ସହିତ ବିଭିନ୍ନ ସଭା ଆହୂତ କରି ଯେଉଁ ଭାଷଣମାନ ପ୍ରଦାନ କରିଥିଲେ, ତାହା ଲଣ୍ଡନର ଦୈନିକ ସଂବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା । ଏହି ବର୍ଷ ସେପ୍ଟେମ୍ବର ମାସରେ ଭାରତ ସଚିବ ଲର୍ଡ଼ ହାମିଲ୍‌ଟନ୍‌ଙ୍କୁ ଭେଟି ବିଭାଜିତ ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ ଆଉ ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳନ ସଂପର୍କରେ ଦୁଇଟି ମେମୋରାଣ୍ଡମ୍ ଦାଖଲ କରିଥିଲେ । ଲଣ୍ଡନରେ ଓଡ଼ିଶାର ପୂର୍ବତନ କମିଶନର ରେଭେନ୍‌ସା ସାହେବଙ୍କୁ ମଧୁସୂଦନ ଭେଟିଥିଲେ । ଏହାପରେ ୧୬.୧୦.୧୮୯୭ରେ ଲଣ୍ଡନ ପରିତ୍ୟାଗ କରି ଜର୍ମାନୀ, ଇଟାଲୀ, ବେଲ୍‌ଜିଅମ୍, ସୁଇଜରଲ୍ୟାଣ୍ଡ, ଆଦି ଦେଶ ପରିଦର୍ଶନ କରିଥିଲେ ।

ଏହି ୧୮୯୭ ସାଲରେ ମଧୁସୂଦନ ଓଡ଼ିଶା ଆର୍ଟ ୱାରସ ବା ଓଡ଼ିଶା ଶିଳ୍ପାଗାର ମଧୁସ୍ମୃତିରେ ପ୍ରତିଷ୍ଠା କରିଥିଲେ ।

୧୮୯୮: କଟକ ଫେରିଲା ପରେ ୧୮୯୮ ସାଲର ଫେବ୍ରୁଆରି ମାସର ପ୍ରତି ଶନିବାର ସନ୍ଧ୍ୟାରେ ନିଜର ପ୍ରାସାଦରେ ବିଭିନ୍ନ ସ୍ତରର କଟକବାସୀଙ୍କୁ ଆହ୍ବାନ କରି ତାହାଙ୍କର ୟୁରୋପ ଭ୍ରମଣର ଅନନ୍ୟ ଅନୁଭୂତିମାନ ବ୍ୟାଖ୍ୟାନ କରୁଥିଲେ । ଏହରି ମାଧ୍ୟମରେ ଜୁନ୍ ୧୧ ତାରିଖରେ 'କଟକ କୋ-ଅପରେଟିଭ୍ ଷ୍ଟୋର୍' ସ୍ଥାପନା ପରେ ବର୍ଷର ମଧ୍ୟଭାଗରୁ ତାହାର କାର୍ଯ୍ୟ ଆରମ୍ଭ କରିଥିଲେ ।

୧୮୯୯ : ଏହି ବର୍ଷ ଲର୍ଡ଼ କର୍ଜନ ଭାରତର ବଡ଼ଲାଟ ରୂପେ ଅବସ୍ଥାପିତ ହୋଇଥିଲେ । କଟକ କୋ-ଅପରେଟିଭ୍ ଷ୍ଟୋର୍ ଲାଭଦାୟକ ସଂସ୍ଥାରେ ପରିଣତ ହୋଇଥିଲା । ଓଡ଼ିଶା ଶିଳ୍ପାଗାର ଓଡ଼ିଶା ଆର୍ଟ ୱାରସର ଅଭୂତପୂର୍ବ ଉନ୍ନତି ସାଧିତ ହୋଇଥିଲା ।

୧୯୦୦ :-ଏହି ବର୍ଷ ମାନ୍ଦ୍ରାଜଠାରୁ କଲିକତାର ହାୱାଡ଼ା ପର୍ଯ୍ୟନ୍ତ ରେଳ ଚଳାଚଳ ଆରମ୍ଭ ହେବା ଦୃଷ୍ଟିରୁ ଓଡ଼ିଶା ସମଗ୍ର ବିଶ୍ୱ ସହିତ ସଂଯୁକ୍ତ ହୋଇ ପାରିଥିଲା । ଡିସେମ୍ବର ୧୪- ଲର୍ଡ଼ କର୍ଜନ ରାଜ ମହେନ୍ଦ୍ରୀଠାରେ ବୃହତ ଗୋଦାବରୀ ନଦୀ ଉପରେ ପୋଲ ଉଦ୍‌ଘାଟନ କରିଥିଲେ । ଡିସେମ୍ବର ୧୬- ଲର୍ଡ କର୍ଜନଙ୍କ ପୁରୀ ଓ ଭୁବନେଶ୍ୱର ନଗରୀ ପରିଦର୍ଶନ । ଲର୍ଡ଼ କର୍ଜନ ସମ୍ବଲପୁରର ଭାଷା ସମସ୍ୟା ସଂପର୍କରେ ଏହିଠାରେ ଅବହିତ ହୋଇଥିଲେ ।

୧୯୦୧ :- ସମ୍ବଲପୁରରେ ୧୮୯୯ ସାଲରୁ ୮୨ ଗୋଟି ପ୍ରାଇମେରୀ ସ୍କୁଲ୍‌ର ଉଚ୍ଛେଦ କରାଯାଇ ତୃତୀୟ ଶ୍ରେଣୀରୁ ହିନ୍ଦୀଭାଷା ବାଧ୍ୟତାମୂଳକ କରାଯାଇଥିଲା । ଏହି ଦୃଷ୍ଟିରୁ ମଦନମୋହନ ମିଶ୍ରଙ୍କର ଦ୍ୱିତୀୟ ସ୍ମାରକ ପତ୍ର ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ ପ୍ରେରଣ କରାଗଲା । ଜୁଲାଇ ମାସରେ ଭାଷା ସଂଗ୍ରାମୀମାନେ ବ୍ରଜମୋହନ ପଟ୍ଟନାୟକଙ୍କର ଅଧ୍ୟକ୍ଷତାରେ ମଧ୍ୟପ୍ରଦେଶର ଚିଫ୍ କମିଶନର ସାର୍ ଏଣ୍ଡ୍ରୁ ଫ୍ରେଜରଙ୍କୁ ଭେଟିଥିଲେ । ବଡ଼ଲାଟଙ୍କ ନିର୍ଦ୍ଦେଶ ମତେ ସିମଲାରୁ ସିଧା ମଧ୍ୟପ୍ରଦେଶର ଚିଫ୍ କମିଶନର୍ ସାର୍ ଏଣ୍ଡ୍ରୁ ଫ୍ରେଜର ସମ୍ବଲପୁର ଆସି ସେପ୍ଟେମ୍ବର ୨୬ ତାରିଖରୁ ୩୦ ତାରିଖ ପର୍ଯ୍ୟନ୍ତ ଅନୁସନ୍ଧାନ କଲେ । ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଅନୁସନ୍ଧାନ ଲାଗି ମଧୁସୂଦନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ଅନସ୍ୱୀକାର୍ଯ୍ୟ ।

୧୯୦୨:- ୨୩.୮.୧୯୦୨ରେ ବଂଗର ଗଭର୍ଣ୍ଣର ସାର୍ ଜନ୍ ଉର୍ଡ଼ ବର୍ଣ୍ଣ ମଧୁସ୍ମୃତିରେ ତାରକସି କାର୍ଯ୍ୟର ଅନୁଧ୍ୟାନ କରିଥିଲେ । ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜ ଏକ ନେତୃବର୍ଗ ସମ୍ମିଳନୀ ରମ୍ଭାଠାରେ ଆହ୍ବାନ କରି ଓଡ଼ିଆଭାଷୀ ଅଂଚଳର ମିଶ୍ରଣ ଲାଗି ପ୍ରସ୍ତାବ ଆଗତ କରିଥିଲେ । ଏଥିରେ ମଧୁସୂଦନ, ଫକୀର ମୋହନ ସେନାପତି, ଗୌରୀଶଙ୍କର ରାୟ, ଗୋପବଂଧୁ ଦାସ ପ୍ରମୁଖ ଯୋଗଦେଇ ଥିଲେ ।

୧୯୦୩:- ୭.୧.୧୯୦୩ରେ ଓଡ଼ିଶାର ବୁଦ୍ଧିଜୀବୀ, ରାଜନ୍ୟଗୋଷ୍ଠୀ ଆଉ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ଆହ୍ବାନ କରି ଉତ୍କଳୀୟ ଭାବ ଜାଗ୍ରତ କରାଇଥିଲେ । ଏପ୍ରିଲ୍ ୧୧ ଓ ୧୨ ତାରିଖରେ ବ୍ରହ୍ମପୁରରେ

ଗଂଜାମ ଜାତୀୟ ସମ୍ମିଳନୀର ଦ୍ୱିତୀୟ ଦିବସରେ ମଧୁସୂଦନ ସଭାପତିତ୍ୱ କରି ସମ୍ଭାବ୍ୟ ଉତ୍କଳ ସମ୍ମିଳନୀର ଅଧିବେଶନ ସଂପର୍କରେ ଘୋଷଣା କରିଥିଲେ । ମଧୁସୂଦନଙ୍କ ପରାମର୍ଶରେ କଟକରେ ୭.୫.୧୯୦୩ରେ ଉତ୍କଳ ସାହିତ୍ୟ ସମାଜ ପ୍ରତିଷ୍ଠିତ ହୋଇଥିଲା ।

୧୯୦୩ ସାଲରେ ବଂଗର ଗଭର୍ଣ୍ଣର ସାର୍ ଜନ୍ ବୋର୍ଡ଼ ଲିନ୍ ମଧୁସୂଦନଙ୍କୁ ବଂଗ ବ୍ୟବସ୍ଥାପକ କାଉନ୍‌ସିଲ୍‌ର ଶ୍ରେଷ୍ଠ ସଦସ୍ୟ ରୂପେ ରୋମ୍‌ର ସିନେଟର୍ 'କେଟୋ' ନାମରେ ଆଖ୍ୟାୟିତ କରିଥିଲେ । ଏହି ବର୍ଷ ମଧୁସୂଦନଙ୍କ ପ୍ରେରଣାରେ ବାଙ୍କୀ, ଖୋର୍ଦ୍ଧା, ନିମାପଡ଼ା ଅଞ୍ଚଳରେ ପ୍ରାଥମିକ ଋଣ ସମବାୟ ସମିତିମାନ ସ୍ଥାପିତ ହୋଇଥିଲା ।

ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ୧୯୦୩ ସାଲର ଡିସେମ୍ବର ୩୦ ଓ ୩୧ ତାରିଖରେ ଅନୁଷ୍ଠିତ ହୋଇଥିଲା । ମାତ୍ର ଏହାର କିଛିଦିନ ପୂର୍ବରୁ ୩.୧୨.୧୯୦୩ରେ ଲର୍ଡ଼ କର୍ଜନ ଓଡ଼ିଆଭାଷୀ ଅଂଚଳର ମିଶ୍ରଣକୁ ସ୍ୱୀକୃତି ଜଣାଇ ରିସ୍‌ଲେ ସାର୍କୁଲାର୍ ପ୍ରଚଳିତ କରିଥିଲେ । ଏହି ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ମୟୂରଭଞ୍ଜର ରାଜା ଶ୍ରୀ ରାମଚନ୍ଦ୍ର ଭଂଜଦେଓ ଅଧ୍ୟକ୍ଷତା କରିଥିଲେ । ମଧୁସୂଦନ ୧୯୦୩ ସାଲରେ ସର୍ବପ୍ରଥମେ ସାରା ଭାରତରେ ଉତ୍କଳ ସମ୍ମିଳନୀରେ ଗୃହୀତ ପ୍ରସ୍ତାବବଳୀ ଓଡ଼ିଆ ଭାଷାରେ ଗ୍ରହଣ କରିଥିଲେ । ମଧୁସୂଦନଙ୍କର ସ୍ୱତନ୍ତ୍ର ଅନୁରୋଧରେ ଲର୍ଡ଼ କର୍ଜନ କୋଣାର୍କ ତଥା ଭୁବନେଶ୍ୱରର ମନ୍ଦିରମାନଙ୍କର ସଂରକ୍ଷଣ କାର୍ଯ୍ୟ ଆରମ୍ଭ କରିଥିଲେ । ମଧୁସୂଦନଙ୍କ ପ୍ରେରଣାରେ ବାଙ୍କୀଠାରେ ପ୍ରଥମ କୃଷିଋଣ ସମବାୟ ସମିତିମାନ ସ୍ଥାପିତ ହୋଇଥିଲା ।

୧୯୦୪ :- ଭାରତ ସରକାରଙ୍କ ପକ୍ଷରୁ ମଧୁସୂଦନଙ୍କୁ 'ସି.ଆଇ.ଇ' ବା 'କମ୍ପାନିଅନ୍ ଅଫ୍ ଇଣ୍ଡିଆନ୍ ଏମ୍ପାୟର' ପଦବୀ ପ୍ରଦାନ କରାଯାଇଥିଲା । ଏହି ବର୍ଷ 'ଓଡ଼ିଶା ସ୍ପୋର୍ଟର୍ସ ଆସୋସିଏସନ୍' ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଜୁନ୍ ୧୬ ତାରିଖରେ 'ଓଡ଼ିଶା ୟଙ୍ଗ୍ ମ୍ୟାନ୍‌ସ ଆସୋସିଏସନ୍' ପ୍ରତିଷ୍ଠା ହୋଇଥିଲା । ମଧୁସୂଦନଙ୍କର ଅର୍ଥ ସାହାଯ୍ୟରେ ଗଂଗାଧର ମେହେରଙ୍କର ରଚନା 'କୀଚକ ବଧ', ପ୍ରକାଶିତ ହୋଇଥିଲା । ମଧୁସୂଦନ ବିଭିନ୍ନ ସଭା ଆହ୍ୱାନ କରି ସାରା ଜୀବନ ଧରି 'ସ୍ୱଦେଶୀ ବସ୍ତୁ ନିୟୋଜନ ଓ ବିଦେଶୀ ବର୍ଜନ' ଲାଗି ଶପଥ ପାଠ କରାଇଥିଲେ । ମଧୁସୂଦନ ଉତ୍କଳ ସମ୍ମିଳନୀ ପକ୍ଷରୁ କେତେକ ପ୍ରଚାରକ ନିଯୁକ୍ତ କରାଇଥିଲେ । ଫଳରେ ଏହି ସାଲରେ ଉତ୍କଳ ସମ୍ମିଳନୀ ପକ୍ଷରୁ ୩୫୦ରୁ ଊର୍ଦ୍ଧ୍ୱ ଶାଖା ଖୋଲା ଯାଇଥିଲା । ଡିସେମ୍ବର ୨୮ ଓ ୨୯ ତାରିଖରେ କଟକରେ ଇଦ୍‌ଗା ପଡ଼ିଆରେ ଧରାକୋଟର ରାଜା ମଦନ ମୋହନ ସିଂହ ଦେଓଙ୍କର ଅଧକ୍ଷତାରେ ଉତ୍କଳ ସମ୍ମିଳନୀର ୨ୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା ।

୧୯୦୫ :-ନବ ସ୍ୱତନ୍ତ୍ର ଓଡ଼ିଶାର ଆଦ୍ୟ ଜନ୍ମୋତ୍ସବ । ବଡ଼ଲାଟ ଲର୍ଡ଼ କର୍ଜନ ଇଂଲଣ୍ଡରୁ ଫେରି ୩.୧୨.୧୯୦୩ରେ ପ୍ରଚାରିତ ରିସ୍‌ଲେ ସାର୍କୁଲାର୍‌କୁ କାର୍ଯ୍ୟକାରୀ କରିଥିଲେ ମଧ୍ୟ ଲର୍ଡ଼ ଏମ୍ପଥିଲ୍‌ଙ୍କର ବିରୋଧଯୋଗୁଁ ଦକ୍ଷିଣ ଓଡ଼ିଶାର ମିଶ୍ରଣ ସମ୍ଭବପର ହୋଇନଥିଲା । ବଂଗର ଗଭର୍ଣ୍ଣର ସାର୍ ଏଣ୍ଡ୍ରୁ ଫ୍ରେଜର ୧୬.୧୦.୧୯୦୫ରେ ସମ୍ବଲପୁରଠାରେ ଦରବାରର ଆୟୋଜନ




କଲେଜ ଛାତ୍ର ମଧୁସୂଦନ (x ଚିହ୍ନିତ)



ଉତ୍କଳ ଟ୍ୟାନେରିରେ ନିୟୋଜିତ ଜର୍ମାନି ଇଞ୍ଜିନିୟରଗଣ- ୧୯୦୬



ନିଖିଳ ଭାରତ ଖ୍ରୀଷ୍ଟିୟାନ ସମ୍ମିଳନୀରେ ମଧୁସୂଦନ




ମଧୁସୂଦନଙ୍କ ବୈଠକଖାନା



ମଧୁସୂଦନଙ୍କ ଜନ୍ମସ୍ଥାନ, ସତ୍ୟଭାମାପୁର



ଓଡ଼ିଶା ଶାସନ ବ୍ୟବସ୍ଥା କମିଟିରେ ମଧୁସୂଦନ-୧୯୩୩



ମଧୁସୂଦନଙ୍କ କୋଳରେ ଯୁବରାଜ ବୀରକିଶୋର



ମଧୁସୂଦନଙ୍କ ପାଳିତା କନ୍ୟା ସୁଶ୍ରୀ ଶୈଳବାଳା ଦାସ



ମୃତ୍ୟୁଶଯ୍ୟାରେ ମଧୁସୂଦନ, ବାମଦିଗରୁ:- (୧) ଶ୍ରୀମତୀ ସରଳା ଦେବୀ, (୩) ଶ୍ରୀମତୀ ସୁଧାଂଶୁବାଳା ହାଜରା, (୪) ଶ୍ରୀମତୀ ଶୈଳବାଳା ଦାସ, (୫) ସ୍ୱାମୀ ବିଚିତ୍ରାନନ୍ଦ ଦାସ, (୬) ଶ୍ରୀ ହାଡ଼ିବନ୍ଧୁ ବେହେରା (ପରିଚାରକ), (୭) ଶିବେନ୍ଦ୍ରପଦ ହାଜରା, (୮) ଶ୍ରୀ ପାରେଶ୍ୱର ମହାନ୍ତି, (୯)ତାଙ୍କ ପଛରେ ଶ୍ରୀ ଗୁଣନିଧି ମହାନ୍ତି, (୧୦) ଦେବାନ ବାହାଦୁର ଲକ୍ଷ୍ମୀଧର ମହାନ୍ତି, (୧୧) ଶ୍ରୀ ବ୍ରଜସୁନ୍ଦର ଦାସ, (୧୨) ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ଓ ଅନ୍ୟମାନେ

କରିଥିଲେ । ଏହି ଉପଲକ୍ଷେ ଉତ୍କଳ ସମ୍ମିଳନୀ ପକ୍ଷରୁ ସଭାପତି ମଧୁସୂଦନ ଦାସ ଯଶସ୍ୱୀ କବି ଆଉ ଲେଖନୀକାର ଦାମୋଦର କର, ଚନ୍ଦ୍ରଶେଖର ନନ୍ଦ, ବ୍ରହ୍ମାନନ୍ଦ ଷଡ଼ଙ୍ଗୀଙ୍କୁ ସମ୍ବଲପୁର ପ୍ରେରଣ କରିଥିଲେ ।

୧୯୦୬ :- ଉତ୍କଳ ସମ୍ମିଳନୀର ତୃତୀୟ ଅଧିବେଶନ ବାଲେଶ୍ୱରଠାରେ ତାଳଚେରର ରାଜା କିଶୋର ଚନ୍ଦ୍ରଦେବଙ୍କ ସଭାପତିତ୍ୱରେ ଓ ଡିସେମ୍ବର ୨୭ ଆଉ ୨୮ ତାରିଖରେ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଂଜ ଦେଓଙ୍କର ସଭାପତିତ୍ୱରେ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ଚତୁର୍ଥ ଅଧିବେଶନ ଅନୁଷ୍ଠିତ ହୋଇଥିଲା ।

୧୯୦୭ :- ଜୁନ୍ ୩ ତାରିଖରେ ମଧୁସୂଦନ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଂଜଦେଓଙ୍କର ସହିତ ଲଣ୍ଡନ ଯାତ୍ରାକରି ଭାରତ ସଚିବ ଲର୍ଡ଼ ମର୍ଲ୍ଲେଙ୍କ ସହିତ ସାକ୍ଷାତ କରି ଦାବି ଉପସ୍ଥାପନା କରିଥିଲେ । ଏହି ବର୍ଷ ଲଣ୍ଡନ ଟାଉନ ହଲ୍‌ରେ ଓ ବିଭିନ୍ନ ସାମ୍ବାଦିକ ସମ୍ମିଳନୀରେ ମଧୁସୂଦନ ଯେଉଁ ଭାଷଣ ପ୍ରଦାନ କରିଥିଲେ ତାହା ଲଣ୍ଡନର ଦୈନିକ ପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା । ଓଡ଼ିଶାର ପ୍ରବଳ ବନ୍ୟାପରେ ଦୁର୍ଭିକ୍ଷ ପରିସ୍ଥିତି ସୃଷ୍ଟି ହୋଇଥିବାରୁ ମଧୁସୂଦନ ଗ୍ଲାସ୍କୋ ହେରାଲଡ୍‌ର ସାମ୍ବାଦିକ ନାଭିନ୍‌ସନ୍‌ଙ୍କ ସହିତ ଓଡ଼ିଶା ଫେରିଆସି ସାହାଯ୍ୟ ପ୍ରଦାନ କାର୍ଯ୍ୟ ଆରମ୍ଭ କରିଥିଲେ । ପଣ୍ଡିତ ଗୋପବନ୍ଧୁ ଏହି ବର୍ଷଠାରୁ ବନ୍ୟାଞ୍ଚଳରେ ସେବା କାର୍ଯ୍ୟ ଆରମ୍ଭ କରିଥିଲେ । ମଧୁସୂଦନ ଏହି ବର୍ଷ ବାଳିକା ବିଦ୍ୟାଳୟକୁ ହାଇସ୍କୁଲ୍‌ରେ ପରିଣତ କରିଥିଲେ । ବଙ୍ଗର ଗଭର୍ଣ୍ଣର ଏଣ୍ଡ୍ରୁ ଫେଜର ବନ୍ୟାଞ୍ଚଳ ପରିଦର୍ଶନ କରିଥିଲେ ।

୧୯୦୮ :- ଏହି ବର୍ଷ ମଧୁସୂଦନ ଶାସନ ସଂସ୍କାର କ୍ଷେତ୍ରରେ କଲିକତାରେ ଲର୍ଡ଼ ୱାଲ୍‌ବି କମିଶନ୍ ଆଗରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ଏହି ବର୍ଷ ଉତ୍କଳ ସମ୍ମିଳନୀର ପୁରୀଠାରେ ପଞ୍ଚମ ଅଧିବେଶନରେ ଯେଉଁ ମନ୍ତ୍ରପାଠ କରାଯାଇଥିଲା ତାହାଥିଲା ଏହିପରି- "ଏହିଠାରେ ଆମ୍ଭେ ଉତ୍କଳ ଜନନୀ ତଥା ଭାରତ ଜନନୀଙ୍କ କ୍ରୋଡ଼ରେ ବସିଥାଉ । ସମସ୍ତେ ଏକଥା ଭାବ ଆଉ ପ୍ରତିଜ୍ଞା କର ଯେ, ପ୍ରତିଦିନ ୫ମିନିଟ୍ ଦେଶ କଥା ଭାବିବି । ସମ୍ମିଳନୀ ସକାଶେ ଉତ୍କଳ ନିମନ୍ତେ ଓ ଭାରତ ନିମନ୍ତେ ୫ମିନିଟ୍ ବ୍ୟୟ କରିବି । ଏହା ହେଉଛି ମନ୍ତ୍ର ଏବଂ ଏହି ମନ୍ତ୍ରରେ ଆଜି ସମ୍ମିଳନୀର ବିଦ୍ୟାରମ୍ଭ ।"

୧୯୦୯ :- ମଧୁସୂଦନଙ୍କ ଏକାନ୍ତ ପ୍ରଚେଷ୍ଟାରେ ଆଉ ଆଶୁତୋଷ ମୁଖାର୍ଜୀଙ୍କର ସହଯୋଗରେ କଲିକତାରେ ଆଇନ ପଢ଼ିବା ପାଇଁ ସରକାରଙ୍କ ପକ୍ଷରୁ ପ୍ରତି ଛାତ୍ରଙ୍କୁ ମାସିକ ମଧୁସୂଦନ ତିରିଶିଟଙ୍କା ବୃତ୍ତି ପ୍ରଦାନ କରୁଥିଲେ । ଏହା ଫଳରେ ବହୁ ବୁଦ୍ଧିଜୀବୀ ଛାତ୍ର କଲିକତାରେ ସ୍ନାତକୋତ୍ତର ଡିଗ୍ରୀ ସହିତ ଆଇନ ଅଧ୍ୟୟନ କରିଥିଲେ । ଏହା ମଧ୍ୟରେ ଥିଲେ ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ମିଶ୍ରଙ୍କ ସହ ବହୁ ଗଣ୍ୟମାନ୍ୟ ବ୍ୟକ୍ତି । ମଧୁସୂଦନ ଜମିଦାର ପ୍ରଥା ବିରୁଦ୍ଧରେ କୃଷକଙ୍କ ସ୍ୱାର୍ଥରକ୍ଷା ଲାଗି "ପ୍ରଜା ପରିଷଦ" ଗଠନ କରିଥିଲେ । ଏହିବର୍ଷ ରେଭେନ୍‌ସା ବାଳିକା ଉଚ୍ଚବିଦ୍ୟାଳୟରେ ଦୁଇଜଣ ଛାତ୍ରୀ ଏଣ୍ଟ୍ରାନସ୍ ପାସ୍ କରିଥିଲେ ।

୧୯୧୦ :ବଜେଟରେ ମଧୁସୂଦନଙ୍କ ପ୍ରଚେଷ୍ଟାରେ ସ୍ୱତନ୍ତ୍ର ଅର୍ଥ ବ୍ୟବସ୍ଥାରେ ରେଭେନ୍‌ସା କଲେଜରେ ଇତିହାସ ବିଭାଗ ଖୋଲା ଯାଇଥିଲା । ଏହି ବର୍ଷ ମଧୁସୂଦନଙ୍କ ପ୍ରେରଣାରେ ଗୋପାଳବଲ୍ଲଭ ଦାସଙ୍କ ଷଢ଼ୁ ଭାଇ ବାଳମୁକୁନ୍ଦ କାନୁନ୍‌ଗୋ ଓ ବିଦ୍ୟାଧର ପଣ୍ଡାଙ୍କର ପ୍ରଚେଷ୍ଟାରେ ପ୍ରଥମ ସମବାୟ ବ୍ୟାଙ୍କ ବାଙ୍କୀଠାରେ ଖୋଲା ଯାଇଥିଲା ।

୧୯୧୧ :- ଏହି ବର୍ଷ ମଧୁସୂଦନ ''ପ୍ରଜା ପରିଷଦ''ର କାର୍ଯ୍ୟକୁ ବ୍ୟାପକ କରିଥିଲେ ଓ କଟକ ଜିଲ୍ଲାର ବନ୍ୟାଞ୍ଚଳରେ ସାହାଯ୍ୟଦାନର ବ୍ୟବସ୍ଥା କରିଥିଲେ । ପ୍ରଜା ପରିଷଦରେ ପଣ୍ଡିତ ଗୋପବଂଧୁ, ପଣ୍ଡିତ ନୀଳକଂଠ ଯୁଗ୍ମ ସଂପାଦକ ରହିଥିଲେ ।

୧୯୧୨ :- ଏହିବର୍ଷ ବଂଗ ବିଧାନସଭା କାଉନ୍‌ସିଲ୍‌ରେ ଆଗତ ଓଡ଼ିଶା 'ପ୍ରଜାସ୍ୱତ୍ୱ ଆଇନ'କୁ ବିରୋଧ କରିଥିଲେ ମଧ୍ୟ ୨୩.୩.୧୯୧୨ରେ ଏ ବିଲିଟି ବିଧାନ କାଉନ୍‌ସିଲ୍‌ରେ ଗୃହୀତ ହୋଇଥିଲା । ମଧୁସୂଦନଙ୍କର ପ୍ରଚଣ୍ଡ ପ୍ରତିବାଦ ଫଳରେ ଭାରତର ବଡ଼ଲାଟ ଲର୍ଡ଼ ହାର୍ଡ଼ିଞ୍ଜ ଏହି ବିଲ୍‌ଟିକୁ ମଂଜୁରୀ ପ୍ରଦାନ କରିନଥିଲେ । ଏପ୍ରିଲ୍ ପହିଲାରେ ବଂଗ ପ୍ରଦେଶକୁ ବିଖଣ୍ଡିତ କରି ସ୍ୱତନ୍ତ୍ର ବିହାର ଓ ଓଡ଼ିଶା ରାଜ୍ୟ ସ୍ଥାପନା ହୋଇଥିଲା । ଏଣେ ଇଂଲଣ୍ଡରେ ''ହାଉସ୍ ଅଫ୍ ଲର୍ଡ଼ସ୍''ରେ ଲର୍ଡ଼ କର୍ଜନ ଏ ବ୍ୟବସ୍ଥାକୁ ଆକ୍ଷେପ କରି ତୀବ୍ର ପ୍ରତିବାଦ କରିଥିଲେ । ବ୍ରହ୍ମପୁରଠାରେ ୨୨.୯.୧୯୧୨ରେ ଏହି ଅନ୍ୟାୟ ଦୂର ନହେବା ପର୍ଯ୍ୟନ୍ତ 'ପାର୍ଶ୍ୱ ପରିବର୍ତ୍ତନ ଏକାଦଶୀ' ପାଳନ କରିବାପାଇଁ ଆହ୍ୱାନ ଦେଇଥିଲେ । ଏହି ବର୍ଷ ଡିସେମ୍ବର ମାସରେ ପାଟନାଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ଅଭ୍ୟର୍ଥନା ସମିତିର ଉପସଭାପତି ରୂପେ ଯୋଗଦାନ କରିଥିଲେ । ଏହି ବର୍ଷ ଡିସେମ୍ବର ୨୮ ତାରିଖରେ ଭକ୍ତକବି ମଧୁସୂଦନ ରାଓଙ୍କର ପରଲୋକ ହୋଇଥିଲା ।

୧୯୧୩ :-ଏହି ବର୍ଷ ମଧୁସୂଦନ ଇଣ୍ଡିଆନ୍ ଇମ୍ପିରିଆଲ୍ କାଉନ୍‌ସିଲ୍‌ର ସଦସ୍ୟ ରୂପେ କଟକ ଓ ପାଟନା ମଧ୍ୟରେ ରେଳ ଚଳାଚଳ ଓ ଚାନ୍ଦବାଲି ବନ୍ଦର ସ୍ଥାପନା ପାଇଁ ପ୍ରସ୍ତାବ ଆଗତ କରିଥିଲେ । ରେଭେନ୍‌ସା ଉଚ୍ଚବାଳିକା ବିଦ୍ୟାଳୟ ସରକାରୀ କର୍ତ୍ତୃତ୍ୱାଧୀନ ହେଲା ।

୧୯୧୪:- ଏହି ବର୍ଷ ମଧୁସୂଦନଙ୍କର କନିଷ୍ଠ ଭ୍ରାତା ଗୋପାଳବଲ୍ଲଭ ଦାସଙ୍କର ପରଲୋକର ଦୁଇଦିନ ପରେ ୨୬.୧୨.୧୯୧୪ରେ ସେ ପାରଳା ମହାରାଜାଙ୍କର ଆହୂତ ଉତ୍କଳ ସମ୍ମିଳନୀରେ ଯୋଗଦାନ କରି ପ୍ରେରଣା ପ୍ରଦାନ କରିଥିଲେ । ଏହି ଅଧିବେଶନ ପାରଳାଖେମଣ୍ଡିରେ ଅନୁଷ୍ଠିତ ହୋଇଥିଲା । ଉତ୍କଳ ସମ୍ମିଳନୀର ଏହି ଦଶମ ଅଧିବେଶନରେ ରାଜା ବିକ୍ରମ ଦେବ ସଭାପତିତ୍ୱ କରିଥିଲେ ।

୧୯୧୫ :- ମଧୁସୂଦନ ଇମ୍ପିରିଆଲ୍ କେନ୍ଦ୍ରୀୟ କାଉନ୍‌ସିଲ୍‌ରେ ଲବଣ କରର ବୃଦ୍ଧି ବିରୋଧରେ ଦୃଢ଼ ପ୍ରତିବାଦ କରିଥିଲେ । ଏହି ବର୍ଷଠାରୁ ରେଭେନ୍‌ସା ଗାର୍ଲସ୍ ହାଇସ୍କୁଲ୍ କଲେଜରେ ପରିଣତ ହେଲା । ମଧୁସୂଦନଙ୍କ ପ୍ରଚେଷ୍ଟାରେ ମଧୁସୂଦନ ଇମ୍ପିରିଆଲ୍ ସେଣ୍ଟର କାଉନ୍‌ସିଲ୍‌ରେ ମଦନମୋହନ ମାଲବ୍ୟ ଜିନ୍ନା, ସୁରେନ୍ଦ୍ର ନାଥ ବାନାର୍ଜି, ଆଦି ସହ ବକ୍ତବ୍ୟ ରଖିଥିଲେ ।

୧୯୧୬ :- ୮.୫.୧୯୧୬ରେ ପାଟନା ହାଇକୋର୍ଟର ସର୍କିଟ୍ କୋର୍ଟ କଟକରେ ମଧୁସୂଦନଙ୍କ ପ୍ରଚେଷ୍ଟାରେ ସ୍ଥାପିତ ହୋଇଥିଲା, ଯାହା ୧୯୪୮ ସାଲରେ ଓଡ଼ିଶା ହାଇକୋର୍ଟରେ ପରିଣତ ହୋଇଥିଲା । ମଧୁସୂଦନ ଏହି ବର୍ଷ ଲକ୍ଷ୍ନୌରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ଅଧିବେଶନରେ ଯୋଗଦାନ କରି କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ହୋଇଥିଲେ ଏବଂ ଏହି ବର୍ଷ ଭାରତୀୟ ଇମ୍ପେରିଆଲ୍ କାଉନ୍‌ସିଲ୍‌ର ସଦସ୍ୟ ରୂପେ ଦଳିତ ଜାତିର ମୁକ୍ତି ଆନ୍ଦୋଳନ, ଭାରତୀୟ ରେଳବାଇର ଜାତୀୟକରଣ, ଭାରତୀୟ ଶିଳ୍ପର ଉନ୍ନତି ଆଦି ବହୁମୁଖୀ ବିଷୟରେ ଭାଷଣ ପ୍ରଦାନ କରି ସଦସ୍ୟମାନଙ୍କୁ ସ୍ତବ୍ଧ କରିଦେଇଥିଲେ । ୨୭.୧୨.୧୯୧୬ରେ ମାନ୍ଦ୍ରାସ୍‌ଠାରେ ଭାରତୀୟ ଖ୍ରୀଷ୍ଟିଆନ୍ ଆସୋସିଏସନ୍‌ର ସଭାପତି ପଦ ଅଳଂକୃତ କରିଥିଲେ । ଏହି ବର୍ଷ ମଧୁସୂଦନ 'ଲବଣ କର'କୁ ବ୍ରିଟିଶ ପ୍ରଶାସନର କଳଙ୍କ ବୋଲି ଆଖ୍ୟାୟିତ କରି ସଂସଦରେ ଭାଷଣ ଦେଇଥିଲେ । ବ୍ୟାସକବି ଫକୀର ମୋହନଙ୍କର ତିରୋଧାନ- ୧୪.୬.୧୮୧୬

୧୯୧୭:- ଡିସେମ୍ବର ୧୧ ତାରିଖରେ କଲିକତାରେ ମଣ୍ଟେଗୁ ଚେମସ୍‌ଫୋର୍ଡ଼ ସଂସ୍କାର କମିଟି ଆଗରେ ଓଡ଼ିଶା ତରଫରୁ ମଧୁସୂଦନଙ୍କ ସାକ୍ଷ୍ୟ ପ୍ରଦାନ । ମଧୁସୂଦନଙ୍କ ସଂପାଦନାରେ ଉତ୍କଳ ସମ୍ମିଳନୀର ମୁଖପତ୍ର ରୂପେ "ଦି ଓରିଆ" ଇଂରାଜୀ ପତ୍ରିକା ସାପ୍ତାହିକ ରୂପେ ପ୍ରକାଶ ପାଇଲା; ଯହିଁରେ ମଧୁସୂଦନଙ୍କ ବଳିଷ୍ଠ ପ୍ରକାଶଭଂଗୀ ଏହାକୁ ଅତ୍ୟନ୍ତ ଆକର୍ଷଣୀୟ କରିଥିଲା । ଏହି ବର୍ଷ ମଧୁସୂଦନଙ୍କ ପ୍ରେରଣା ଓ ପ୍ରଚେଷ୍ଟାରେ ପଣ୍ଡିତ ଗୋପବନ୍ଧୁ, ବିହାର ଓ ଓଡ଼ିଶା କାଉନ୍‌ସିଲ୍‌ର ସଦସ୍ୟ ନିର୍ବାଚିତ ହୋଇଥିଲେ ।

୧୯୧୮:- ଜୁଲାଇ ମାସରେ ମଣ୍ଟେଗୁ ଚେମ୍‌ସ୍‌ଫୋର୍ଡ଼ କମିଟି ରିପୋର୍ଟ ପ୍ରକାଶିତ ହୋଇଥିଲା । ଏଣୁ ଉତ୍କଳ ସମ୍ମିଳନୀର ଏକ ସ୍ୱତନ୍ତ୍ର ଅଧିବେଶନ କଟକଠାରେ ସେପ୍ଟେମ୍ବର ୨୧ ଓ ୨୨ ତାରିଖରେ ମଧୁସୂଦନଙ୍କ ଅଧକ୍ଷ୍ୟତାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ମଣ୍ଟେଗୁ ଚେମ୍‌ସ୍‌ଫୋର୍ଡ଼ କମିଟି ରିପୋର୍ଟରେ ଓଡ଼ିଶାକୁ ଉପପ୍ରଦେଶରେ ପରିଣତ କରିବାକୁ ଯେଉଁ ଅନୁମୋଦନ କରାଯାଇଥିଲା, ମଧୁସୂଦନ ତାହାକୁ ତୀବ୍ର ଭାବରେ ଆକ୍ଷେପ କରିଥିଲେ । ଏହି ସମ୍ମିଳନୀର ଖର୍ଚ୍ଚ ବ୍ରଜସୁନ୍ଦର ଦାସ ବହନ କରିଥିଲେ ।

୧୯୧୯:-ମଧୁସୂଦନ ଓ କନିକା ରାଜା ମଣ୍ଟେଗୁ ଚେମ୍‌ସଫୋର୍ଡ଼ ରିପୋର୍ଟ ଉପରେ ବିହାର ବିଧାନ କାଉନ୍‌ସିଲ୍ ପ୍ରଶ୍ନ ଉତ୍‌ଥାପନ କରି ସମାଧାନ ଚାହିଁଥିଲେ । ଏହି ବର୍ଷ ମଧୁସୂଦନଙ୍କ ୩୦୦ ଟଙ୍କାର ସାହାଯ୍ୟ ଦାନରେ ନିଂରଜନ ପଟ୍ଟନାୟକ ଓ ଚକ୍ରପାଣି ପ୍ରଧାନଙ୍କର ପ୍ରଣୀତ "ଦି ଓରିଆ ମୁଭ୍‌ମେଣ୍ଟ" ପୁସ୍ତକ ପକାଶିତ ହୋଇଥିଲା ।

୧୯୨୦:- ବ୍ରଜସୁନ୍ଦର ଦାସଙ୍କ ପ୍ରେରିତ ପତ୍ର ଉପରେ ମହାତ୍ମାଗାନ୍ଧୀ, ୧୮ ତାରିଖରେ "ୟଙ୍ଗ୍ ଇଣ୍ଡିଆ" ପତ୍ରିକାରେ "ଉତ୍କଳର ଚିତ୍କାର" ନାମକ ଏକ ନିବନ୍ଧରେ ସଂଖ୍ୟାଲଘୁ ରୂପେ ପରିଗଣିତ ହୋଇଥିବା ଓଡ଼ିଆମାନଙ୍କର ଦେଶ ମିଶ୍ରଣ ଆନ୍ଦୋଳନ ସହିତ, ସମଗ୍ର ଭାରତରେ ଭାଷା ଭିତ୍ତିରେ ପ୍ରଦେଶ ଗଠନ ପସ୍ତାବକୁ ସମର୍ଥନ ଜଣାଇଥିଲେ । ଏହି ଅବକାଶରେ ମଧୁସୂଦନଙ୍କର କଲିକତାରେ ମହାତ୍ମାଗାନ୍ଧୀଙ୍କ ସହିତ ସାକ୍ଷାତ ଅନୁଷ୍ଠିତ ହୋଇଥିଲା ।

ଡିସେମ୍ବର ୨୬ ତାରିଖରେ ନାଗପୁରଠାରେ ଭାରତୀୟ ଜାତୀୟ କଂଗ୍ରେସର ୩୫ ତମ ଅଧିବେଶନରେ ଚିତ୍ତରଂଜନ ଦାସ ଅସହଯୋଗ ପ୍ରସ୍ତାବ ଆଗତ କରିଥିଲେ ଏବଂ ଏହାକୁ ଗାନ୍ଧିଜୀ ସମର୍ଥନ କରିଥିଲେ । ଭାଷାଭିତ୍ତିରେ ପ୍ରଦେଶ ଗଠନର ପ୍ରସ୍ତାବ ମଧ୍ୟ ଏହି ଅଧିବେଶନରେ ଗୃହୀତ ହୋଇଥିଲା । ଏହି ନାଗପୁରଠାରୁ କଂଗ୍ରେସରୁ ଓଡ଼ିଆ ସଦସ୍ୟମାନେ ଫେରି ବିହାରର ଚକ୍ରଧର ପୁରଠାରେ ଡିସେମ୍ବର ୩୦ ଓ ୩୧ ତାରିଖରେ ଉତ୍କଳ ସମ୍ମିଳନୀର ଷୋଡ଼ଶ ଅଧିବେଶନରେ ଯୋଗଦାନ କରିଥିଲେ। ଏହି ସଭାରେ ଉତ୍କଳମଣି ଗୋପବନ୍ଧୁ ଦାସ ପ୍ରସ୍ତାବ ଆଣିଲେ ଯେ, ସମ୍ମିଳନୀର ବର୍ତ୍ତମାନ ଯେଉଁ ଉଦ୍ଦେଶ୍ୟରେ ନିରୂପିତ ହୋଇଛି, ତାହା ସ୍ଥିର ରଖାଯାଇ ଜାତୀୟ ମହା ସମିତିର ଯେଉଁ ଉଦ୍ଦେଶ୍ୟ ଓ ଆକାଙ୍କ୍ଷା ରହିଛି ତାହା ଏହି ସମ୍ମିଳନୀର ଉଦ୍ଦେଶ୍ୟ ଓ ଆକାଂକ୍ଷା ରୂପେ ଗୃହୀତ ହେଉ । ସମ୍ବଲପୁରର ଚନ୍ଦ୍ରଶେଖର ବେହେରା ଏହାକୁ ସମର୍ଥନ କଲେ । ଏହି ପ୍ରସ୍ତାବ ବହୁ ସଂଖ୍ୟକ ମତରେ ଗୃହୀତ ହୋଇଥିଲା । ବ୍ରଜସୁନ୍ଦର ଦାସ ଓ ବିଶ୍ୱନାଥ କର ପ୍ରମୁଖ ଏହି ପ୍ରସ୍ତାବର ବିରୋଧ କରିଥିଲେ ।

୧୯୨୧ :- ସତ୍ୟେନ୍ଦ୍ର ପ୍ରସାଦ ସିହ୍ନା ପ୍ରଥମ ଭାରତୀୟ ଗଭର୍ଣ୍ଣର ରୂପେ ବିହାର- ଓଡ଼ିଶା ପ୍ରଦେଶ ଗଭର୍ଣ୍ଣର ପଦରେ ଅଧିଷ୍ଠିତ ହୋଇଥିଲେ । ଏହିଠାରୁ ମଣ୍ଟଫୋର୍ଡ଼ କମିଟିର ସୁପାରିଶ ସହିତ ଦ୍ୱୈତ ଶାସନ ବିଧି ବ୍ୟବସ୍ଥା ପ୍ରଚଳନ କରାଯାଇଥିଲା । ଏହା ପରୀକ୍ଷଣ କରିବା ଏକ ଜଟିଳ ସମସ୍ୟା ଥିଲା । ଏଣୁ ବିହାର ଏବଂ ଓଡ଼ିଶା ଗଭର୍ଣ୍ଣର ସତ୍ୟେନ୍ଦ୍ର ପ୍ରସାଦ ସିହ୍ନା, ମଧୁସୂଦନଙ୍କୁ ବିହାର ଓ ଓଡ଼ିଶା ପ୍ରଦେଶର ମନ୍ତ୍ରୀ ପଦ ଗ୍ରହଣ କରିବାକୁ ସ୍ୱତନ୍ତ୍ର ଭାବେ ନିମନ୍ତ୍ରଣ ଜଣାଇଥିଲେ । ମଧୁସୂଦନ ଏହି ବର୍ଷ ଜାନୁଆରି ୬ ତାରିଖରେ ବେସରକାରୀ ସଦସ୍ୟ ରୂପରେ ସ୍ୱାୟତ୍ତ ଶାସନ, ପୂର୍ତ୍ତ ବିଭାଗ ଓ ସ୍ୱାସ୍ଥ୍ୟ ବିଭାଗର ମନ୍ତ୍ରୀ ପଦରେ ଅଧିଷ୍ଠିତ ହେଲେ । ମଧୁସୂଦନ ମନ୍ତ୍ରୀପଦରେ ଯୋଗ ଦେଇଥିବାରୁ , ଚକ୍ରଧରପୁରର ଉତ୍କଳ ସମ୍ମିଳନୀରୁ ପ୍ରତ୍ୟାବର୍ତ୍ତନ କରିଥିବା ଯଦୁମଣି ମଙ୍ଗରାଜ ଆଉ ହରେକୃଷ୍ଣ ମହତାବ ପ୍ରମୁଖ ମଧୁସୂଦନଙ୍କ ବିରୁଦ୍ଧରେ ପ୍ରଚାର କରି ନବକୃଷ୍ଣ ଚୌଧୁରୀ ଓ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ସହିତ ମିଶି କଟକରେ ମଧୁସୂଦନଙ୍କର କୁଶ ପୁତ୍ତଳିକା ଦାହ କରିଥିଲେ ।

ନଭେମ୍ବର ମାସ ୨୫ ତାରିଖରେ ବିହାର ଓଡ଼ିଶା କାଉନ୍‌ସିଲ୍‌ର ଅନ୍ୟତମ ସଦସ୍ୟ ବିଶ୍ୱନାଥ କର ଓଡ଼ିଆ ଭାଷାରେ ବିହାର ଓ ଓଡ଼ିଶା ବିଧାନ କାଉନ୍‌ସିଲ୍‌ରେ ଓଡ଼ିଆଭାଷୀ ଅଂଚଳ ମିଶ୍ରଣ ଲାଗି ଓଡ଼ିଆ ଭାଷାରେ ଯେଉଁ ପ୍ରସ୍ତାବ ଆଗତ କରିଥିଲେ ତାହାକୁ ଇଂରାଜୀରେ ଅନୁବାଦ କରି ମଧୁସୂଦନ ଏହି ପ୍ରସ୍ତାବକୁ ସମର୍ଥନ କରିଥିଲେ । ଏହି ଘଟଣା କାଉନ୍‌ସିଲ୍‌ରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଏହି ସାଲରେ ମଧୁସୂଦନ ସ୍ୱାୟତ୍ତ ଶାସନ, ପୂର୍ତ୍ତ ଓ ସ୍ୱାସ୍ଥ୍ୟ ବିଭାଗର ବଜେଟରେ ଅର୍ଥ ଅନୁଦାନ ଉପରେ ଆଲୋଚନା କରିବା ସହିତ ମ୍ୟୁନିସ୍‌ପାଲ୍ ଜିଲ୍ଲାବୋର୍ଡ଼ ଓ ଲୋକାଲ୍ ବୋର୍ଡ଼ର ସ୍ଥାପନା ଓ ନିର୍ବାଚନ ଉପରେ ତାତ୍ତ୍ୱିକ ଆଲୋଚନା କରିଥିଲେ । ଏହାଛଡ଼ା ନାରୀମାନଙ୍କୁ ଭୋଟ ଅଧିକାର ପ୍ରଦାନ, ପ୍ରାଥମିକ ଶିକ୍ଷାର ପ୍ରସାର, ପବିତ୍ର ଗଂଗାଜଳକୁ ପ୍ରଦୂଷଣ ମୁକ୍ତ କରିବା, ଆୟୁର୍ବେଦିକ, ୟୁନାନୀ ଚିକିତ୍ସାଳୟ ସ୍ଥାପନ ସହିତ କୃଷି କଲେଜର ପ୍ରତିଷ୍ଠା ଉପରେ ତାଙ୍କର

ପ୍ରସ୍ତାବ ବିଧାନ କାଉନ୍‌ସିଲ୍‌ରେ ଗୃହୀତ ହୋଇଥିଲା । ମାର୍ଚ୍ଚ ୨୧ ତାରିଖରେ ମହାତ୍ମାଗାନ୍ଧୀ କଟକ ପରିଦର୍ଶନ କରିଥିଲେ । ୨୯ ତାରିଖରେ ବ୍ରହ୍ମପୁର ପରିଦର୍ଶନ ବେଳେ ଓଡ଼ିଶା ପ୍ରଦେଶକୁ ସମର୍ଥନ କରି ଆନ୍ଧ୍ରବାସୀଙ୍କୁ ଏଥିରେ ସହଯୋଗ କରିବାପାଇଁ ନିବେଦନ କରିଥିଲେ ।

ବ୍ରିଟିଶ ରାଜ ପରିବାରର ଏକ ସଦସ୍ୟଙ୍କର ସମ୍ବର୍ଦ୍ଧନା ଘେନି ପ୍ରଦତ୍ତ ଭୋଜି ସଭାରେ ମଧୁସୂଦନଙ୍କର ପ୍ରସ୍ତାବିତ ସ୍ୱଦେଶୀ ପୋଷାକ ପରିଧାନ କରି ଯୋଗଦାନ ଉପରେ ଏକ ବିତର୍କ ସୃଷ୍ଟି ହୋଇଥିଲା । ଏହି ଭୋଜି ସଭାର ନିମନ୍ତ୍ରଣକୁ ମଧୁସୂଦନ ପ୍ରତ୍ୟାଖ୍ୟାନ କରିଥିଲେ ।

୧୯୨୨:- ମ୍ୟୁନିସିପାଲିଟି, ଜିଲ୍ଲାବୋର୍ଡ଼ ଓ ଲୋକାର୍ଲ ବୋର୍ଡ଼ମାନଙ୍କରେ ଅସ୍ପୃଶ୍ୟ ବ୍ୟକ୍ତିଙ୍କ ପାଇଁ ସ୍ଥାନ ସଂରକ୍ଷଣ ପ୍ରସ୍ତାବଏହି ବର୍ଷ ମଧୁସୂଦନ କାଉନ୍‌ସିଲ୍‌ରେ ଗୃହୀତ କରାଇ ନେଇଥିଲେ । ମୋତିଲାଲ୍ ନେହେରୁ ତଥା ଚିତ୍ତରଂଜନ ଦାସଙ୍କ ପ୍ରତିଷ୍ଠିତ କଂଗ୍ରେସର 'ସ୍ୱରାଜ୍ୟ ଦଳର' ପ୍ରତିନିଧିମାନଙ୍କୁ ନିର୍ବାଚିତ କରାଇବା ପାଇଁ ମଧୁସୂଦନ ଯେଉଁ ପ୍ରଚେଷ୍ଟା ଆରମ୍ଭ କରିଥିଲେ, ତାହା ସଫଳ ହୋଇଥିଲା ।

୧୯୨୩ :- ଫେବୃଆରି ମାସରେ ଯୁଗାନ୍ତକାରୀ ସ୍ୱାୟତ୍ତ ଶାସନ ଆଇନ ବିଧାନ କାଉନ୍‌ସିଲରେ ଗୃହୀତ ହୋଇଥିଲା । ପରବର୍ତ୍ତୀକାଳରେ ୧୯୨୭ ସାଲରେ ବିହାର ଗଭର୍ଣ୍ଣର ଏଚ୍ ଓ୍ୱିଲ୍‌ର ଲଣ୍ଡନର କକ୍ସଟନ୍ ହଲରେ କହିଥିଲେ ଯେ, "ମଧୁସୂଦନ ପ୍ରଣୀତ କରିଥିବା ସ୍ୱାୟତ୍ତ ଶାସନ ଆଇନରେ ଯେଉଁ ପ୍ରଗତିଶୀଳ ଅଗ୍ରଗାମୀ ବ୍ୟବସ୍ଥା ସଂକଳିତ କରାଯାଇଛି, ତାହା ଇଂଲଣ୍ଡର ସ୍ୱାୟତ୍ତ ଶାସନ ଆଇନରେ ମଧ୍ୟ ସ୍ଥାନ ପାଇପାରିବ ନାହିଁ ।" ଭାରତର ପ୍ରାଦେଶିକ ବ୍ୟବସ୍ଥାରେ ପ୍ରଚଳିତ ଦ୍ୱୈତ ଶାସନକୁ ଅଲକ୍ଷଣା ପେଚା ଶାସନ ବୋଲି ଆଖ୍ୟାୟିତ କରି ସ୍ୱାୟତ୍ତ ଶାସନ ମନ୍ତ୍ରୀଙ୍କର ପଦ ଅବୈତନିକ ହେବା ଦାବିରେ ମାର୍ଚ୍ଚ ମାସରେ ମଧୁସୂଦନ ଇସ୍ତଫା ପ୍ରଦାନ କରି ମନ୍ତ୍ରିତ୍ୱ ତ୍ୟାଗ କରିଥିଲେ । ମଧୁସୂଦନଙ୍କର ଅନ୍ୟତମ ପାଳିତା କନ୍ୟା ସୁଧାଂଶୁବାଳା ହାଜରା ୧୯୨୧ ସାଲରେ ଆଇନ ଡିଗ୍ରୀ ହାସଲ କରିଥିଲେ ମଧ୍ୟ ତାଙ୍କର ଆଇନଜୀବୀ ବୃତ୍ତି ଗ୍ରହଣର ଅଧିକାର ୧୯୨୩ ସାଲରେ ପ୍ରଦାନ କରାଯାଇଥିଲା । ଏହି ପରିବର୍ତ୍ତିତ ଆଇନ ବଳରେ ସୁଧାଂଶୁବାଳା ହାଜରା ୧୨.୧୨.୧୯୨୩ରେ ପାଟନା ହାଇକୋର୍ଟରେ ପ୍ରଥମ ମହିଳା ଓକିଲ ରୂପରେ ଗୃହୀତ ହୋଇଥିଲେ ।

୧୯୨୪ :- ସ୍ୱଭାବ କବି ଗଂଗାଧର ମେହେରଙ୍କ ତିରୋଧାନ ୧୪.୪.୧୯୨୪ (ଶ୍ରାବଣ ପୂର୍ଣ୍ଣିମା)

୧୯୨୪:- ୨୩.୧.୧୯୨୪ରେ ମଧୁସୂଦନଙ୍କର ଜଣେ ଜୁନିଅର୍ ରୂପରେ କଳାକୋର୍ଟ ପିନ୍ଧି ସୁଧାଂଶୁବାଳା ହାଜରା ପାଟନା ହାଇକୋର୍ଟରେ ଅବତୀର୍ଣ୍ଣ ହେବାର ଯୁଗାନ୍ତକାରୀ ସଂବାଦ ଆଉ ଦୃଶ୍ୟପଟ ସାରା ଭାରତର ସଂବାଦପତ୍ର ମାନଙ୍କର ପୃଷ୍ଠାମଣ୍ଡନ କରିଥିଲା । ମୁଡ଼ିମ୍ୟାନ୍ କମିଟି ସଂସ୍କାର ଅନୁଧ୍ୟାନପାଇଁ ଓଡ଼ିଶା ଆସିଥିଲେ । ନଭେମ୍ବର ମାସରେ ଫିଲ୍‌ଫ୍ ଡଫ୍ କମିଟି ଦକ୍ଷିଣ ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ଅନୁସନ୍ଧାନ କରିଥିଲେ । ମଧୁସୂଦନ ଏହି କମିଟିକୁ ଓଡ଼ିଶା

ପକ୍ଷରୁ ତାହାଙ୍କର ଦାବିପତ୍ର ଦାଖଲ କରିଥିଲେ ।ଏହି ବର୍ଷର ମଧ୍ୟଭାଗରେ ସାବରମତୀ ଆଶ୍ରମରେ ମଧୁସୂଦନ ମହାତ୍ମାଗାନ୍ଧୀଙ୍କୁ ଭେଟି ସ୍ୱଦେଶୀ ଶିଳ୍ପାୟନର ମହତ୍ତ୍ୱର ଚିନ୍ତାଧାରା ତାଙ୍କ ନିକଟରେ ଉପସ୍ଥାପିତ କରିବା ସହିତ କଟକ ଆସି ଉତ୍କଳ ଟ୍ୟାନେରି ପରିଦର୍ଶନ କରିବାପାଇଁ ନିବେଦନ ଜଣାଇଥିଲେ । ଏହି ବର୍ଷ ନଭେମ୍ବର ଡିସେମ୍ବର ମାସରେ ଫିଲିପ୍ ଡେଫ୍ କମିଶନ, ଗଂଜାମ ଓ ଜୟପୁର ଜମିଦାରି ଓ ଆନ୍ଧ୍ରପ୍ରଦେଶ ସୀମାନ୍ତ ଗସ୍ତକରି ଓଡ଼ିଶା ଦାବିପ୍ରତି ସମର୍ଥନ ଜଣାଇଥିଲେ ।

୧୯୨୫ :-ସବୁଠାରୁ ସ୍ମରଣୀୟ ଘଟଣା ହେଲା ମହାତ୍ମାଗାନ୍ଧୀଙ୍କର ୧୯.୮.୧୯୨୫ରେ ଉତ୍କଳ ଟ୍ୟାନେରି ପରିଦର୍ଶନ, ଯାହା ମହାତ୍ମାଗାନ୍ଧୀଙ୍କର ଦୃଷ୍ଟିଭଂଗୀରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲା । ଏହି ବର୍ଷ ୨୫.୧୦.୧୯୨୫ରେ "ମଧୁସ୍ମୃତି" ନିଲାମରେ ବିକ୍ରି ହୋଇଯାଇଥିଲା । ମଧୁସୂଦନ ୧୨.୯.୧୯୨୫ରେ ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନରେ ଯୋଗଦାନ କରି ସଭାପତି ରୂପେ ଅତ୍ୟନ୍ତ ଭାବଗର୍ଭକ ଭାଷଣ ପ୍ରଦାନ କରିଥିଲେ ।

୧୯୨୬ :- ଜାନୁଆରି୨୪ ତାରିଖରେ ପୁରୀ ରାଜା ଗଜପତି ମୁକୁନ୍ଦଦେବ ତୃତୀୟଙ୍କର ପରଲୋକ ଘଟିଥିଲା । ଏହାପରେ ସୂର୍ଯ୍ୟମଣି ପାଟମହାଦେଈଙ୍କ ନିର୍ବାଚିତ ବାମଣ୍ଡାର ସୁବଳଦେବଙ୍କର ନାତି ଓ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କର ତୃତୀୟ ପୁତ୍ର ଲାଲା ମୋହିନୀ ମୋହନ ଦେବ, ରାମଚନ୍ଦ୍ର ଦେବ (୪ର୍ଥ) ନାମଧାରଣ କରି ଗାଦିନସୀନ ହେଲେ । ଏହା ପଶ୍ଚାତରେ ମଧୁସୂଦନଙ୍କର ପ୍ରଚେଷ୍ଟା ଥିଲା ଅନସ୍ୱୀକାର୍ଯ୍ୟ ।

୨୨.୧୧.୧୯୨୬ରେ ଉତ୍କଳ ଟ୍ୟାନେରି ନିଲାମରେ ଉଠିଥିଲା, ଯାହାକୁ ପୁରୀ ରାଜା ରାମଚନ୍ଦ୍ର ଦେବ (୪ର୍ଥ) ନିଲାମରେ ଧରିଥିଲେ । ୨୪.୧୧.୧୯୨୬ ବିପ୍ଲବିନୀ ନାରୀ ନେତ୍ରୀ ସୂର୍ଯ୍ୟମଣି ପାଟ ମହାଦେଈଙ୍କ ମହାପ୍ରୟାଣ ଘଟିଥିଲା ।

୧୯୨୭ - ୪.୮.୧୯୨୭ରେ ମଧୁସୂଦନ ଦେୱାଲିଆ ଘୋଷିତ ହୋଇଥିଲେ । ଏହି ବର୍ଷ ମହାତ୍ମାଗାନ୍ଧୀଙ୍କର ତୃତୀୟ ଓଡ଼ିଶା ଯାତ୍ରା ବ୍ରହ୍ମପୁରଠାରୁ ୪.୧୨.୧୯୨୭ରେ ଆରମ୍ଭ ହୋଇ ଛତ୍ରପୁର, ବାଣପୁର, ବୋଲଗଡ଼, ଖୋର୍ଦ୍ଧାପୁରୀ, ବାଲେଶ୍ୱର, ଭଦ୍ରକ ଦେଇ କଟକରେ ୨୮ ତାରିଖରେ ସମାପ୍ତ ହୋଇଥିଲା, ଯାହା ଖଦୀ କାର୍ଯ୍ୟକ୍ରମରେ ପ୍ରୋତ୍ସାହନ ପ୍ରଦାନ ପାଇଁ ଉଦ୍ଦିଷ୍ଟ ଥିଲା । ଏହି ଯାତ୍ରାର ଅନ୍ତିମ ପର୍ଯ୍ୟାୟରେ ଗାନ୍ଧିଜୀଙ୍କର ତୀବ୍ର ଅସୁସ୍ଥତା ଯୋଗୁଁ ଡିସେମ୍ବର ୧୮ ତାରିଖରୁ ୨୧ ତାରିଖ ପର୍ଯ୍ୟନ୍ତ ମଧୁସୂଦନଙ୍କ ସେବା ଶୁଶ୍ରୁଷା ମଧ୍ୟରେ ଗାନ୍ଧିଜୀ ମଧୁସୂଦନଙ୍କର ବାସଭବନ ମଧୁସ୍ମୃତିରେ ହିଁ ବିତାଇଥିଲେ ।

୧୯୨୮ :- ମଧୁସୂଦନ 'ଓଡ଼ିଶା ବରାଲ ଲିଗ୍' ନାମକ ଏକ ଅନୁଷ୍ଠାନ ଗଢ଼ି ବ୍ରଜସୁନ୍ଦର ଦାସଙ୍କର ନେତୃତ୍ୱରେ ସାଇମନ କମିଶନକୁ ସ୍ୱାଗତ କରିବା ପାଇଁ ପାଟନା ପ୍ରେରଣ କରିଥିଲେ । ଏହି ପ୍ରତିନିଧି ଦଳ ୧୨.୧୨.୧୯୨୮ରେ ପାଟନା ରେଳ ଷ୍ଟେସନଠାରେ ସାଇମନ କମିଶନକୁ ସ୍ୱାଗତ ଜଣାଇଥିଲେ । ଏଥିରେ ଅନ୍ୟମାନଙ୍କ ମଧ୍ୟରେ ଭିକାରୀ ଚରଣ ପଟ୍ଟନାୟକ, ବ୍ରଜାନନ୍ଦ

ଦାସ, ଗୋପାଳ ଚନ୍ଦ୍ର ପ୍ରହରାଜ, ବିଶ୍ୱନାଥ ମିଶ୍ର (ବାରିଷ୍ଟର), ଲୋକନାଥ ମିଶ୍ର, କନିକା ରାଜା ଓ ଲକ୍ଷ୍ମୀଧର ମହାନ୍ତି ପ୍ରମୁଖ କମିଶନକୁ ପାଟନା ସେକ୍ରେଟାରୀଏଟ୍‌ରେ ଦାବିପତ୍ର ପ୍ରଦାନ କରିଥିଲେ ଯହିଁରେ ବିହାର ଓ ଓଡ଼ିଶା ବିଧାନ ସଭାର ସଦସ୍ୟ ରୂପେ କନିକା ରାଜା ରାଜେନ୍ଦ୍ର ନାରାୟଣ ଓ ଲକ୍ଷ୍ମୀଧର ମହାନ୍ତି ପ୍ରମୁଖ ଅଂଶ ଗ୍ରହଣ କରିଥିଲେ । ଏହି ବର୍ଷ ଦଶହରାରେ ମଧୁସୂଦନ ଛିନ୍ନ ମସ୍ତା ଦିବସ ପାଳନ କରି ଶୋଭାଯାତ୍ରାର ଅଗ୍ରଭାଗରେ ବାହାରି ଥିଲେ । ମାର୍ଚ୍ଚ ୧୬ ତାରିଖରେ ଗାନ୍ଧିଜୀ ସାବରମତୀ ଆଶ୍ରମରେ ମଧୁସୂଦନଙ୍କର ନିର୍ଦ୍ଦେଶନାମାରେ ଏକ କ୍ଷୁଦ୍ର ଟ୍ୟାନେରି ପ୍ରତିଷ୍ଠା କରି, ପରବର୍ତ୍ତୀ ସମୟରେ ମଧୁସୂଦନଙ୍କର ବିଧି ନିର୍ଦ୍ଦେଶ ଗ୍ରହଣ କରିବା ସହିତ ଭାରତ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଚମଡ଼ା କଷେଇ ବ୍ୟବସ୍ଥାକୁ ରଚନାତ୍ମକ କାର୍ଯ୍ୟକ୍ରମ ରୂପେ ଗ୍ରହଣ କରିଥିଲେ ।

ବ୍ରିଟିଶ ପ୍ରଶାସିତ ଅଞ୍ଚଳର ଶାସନ ବ୍ୟବସ୍ଥାରେ ସଂସ୍କାର ଆଣିବା ପାଇଁ ଯେପରି ସାଇମନ୍ କମିଶନ୍‌ର ସ୍ଥାପନ ୧୯୨୭ରେ ହୋଇଥିଲା, ସେହିପରି ବ୍ରିଟିଶ୍ ଭାରତୀୟ ଦେଶୀୟ ରାଜ୍ୟ ଓ ଗଡ଼ଜାତ ପ୍ରଶାସନିକ ବ୍ୟବସ୍ଥା ମଧ୍ୟରେ ସଂସ୍କାର ଆଣିବା ପାଇଁ ୧୯୨୭ ସାଲରେ 'ବଟଲାର କମିଟି' ଗଠିତ ହୋଇଥିଲା । ଏହି ବଟଲାର କମିଟି ୧୯୨୮ ସାଲ ଏପ୍ରିଲ୍ ୨ୟ ସପ୍ତାହରେ ବମ୍ବେରେ ଆସି ପହଞ୍ଚିଥିଲା ସାକ୍ଷ୍ୟ ଗ୍ରହଣ କରିବାପାଇଁ । ଏହି କମିଟି ସମକ୍ଷରେ ସାକ୍ଷ୍ୟ ପ୍ରଦାନପାଇଁ ଗଡ଼ଜାତର କିଛି ରାଜା ଆଉ ମଧୁସୂଦନ ଆସି ବମ୍ବେରେ ପହଞ୍ଚିଲେ । ଏହି କମିଟି ସମ୍ମୁଖରେ ସାକ୍ଷ୍ୟ ପ୍ରଦାନ କରି ମଧୁସୂଦନ ଷଢ଼େଇକଳା, ଖରସୁଆଁ ଗଡ଼ଜାତ ଦ୍ୱୟକୁ ବିହାରରୁ ଆଣି ଓଡ଼ିଶା ଡିଭିଜନ ସହିତ ମିଶ୍ରଣ ପାଇଁ ଦାବି ଉପସ୍ଥାପନ କରିଥିଲେ, ଯାହାର ପରିଣାମରେ ଲୋଥିୟାନ କମିଟିର ସୁପାରିଶ କ୍ରମେ ଏହି ଗଡ଼ଜାତଦ୍ୱୟ ୧୯୩୩-୧୯୩୪ ସାଲ ବେଳକୁ ଓଡ଼ିଶା ଡିଭିଜନ ସହିତ ସଂଯୁକ୍ତ ହୋଇପାରିଥିଲା ।

ସାଇମନ କମିଶନ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନାପାଇଁ ଅଟିଲି କମିଟି ସ୍ଥାପନା କରିଥିଲେ, ଯହିଁରେ ସି.ଆର୍.ଅଟଲିଙ୍କର ଅଧ୍ୟକ୍ଷତାରେ ବଂଗର ସୁରାବର୍ଦ୍ଧିଙ୍କ ସହିତ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଂଜଦେଓ ଓ ଲକ୍ଷ୍ମୀଧର ମହାନ୍ତି ସଦସ୍ୟ ରହିଥିଲେ । ୧୭.୬.୧୯୨୮ ରେ ଉତ୍କଳମଣି ଗୋପବଂଧୁ ଦାସଙ୍କର ତିରୋଧାନରେ ମଧୁସୂଦନ ବେଦନା ବିଧୂର ଶୋକ ବାର୍ତ୍ତାଟିଏ ପ୍ରେରଣ କରିଥିଲେ ।

୧୯୨୯:-ଉତ୍କଳ ସମ୍ମିଳନୀର ବିଂଶ ଅଧିବେଶନ ବ୍ରହ୍ମପୁରରେ ଲକ୍ଷ୍ମୀଧର ମହାନ୍ତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା ।

୧୯୩୦ :- ମଧୁସୂଦନଙ୍କର ନିର୍ଦ୍ଦେଶରେ ୧୨.୧୨.୧୯୨୮ ରେ ଓଡିଶାର ପ୍ରତିନିଧିମାନେ ପାଟନାଠାରେ ସାଇମନ୍ କମିଶନକୁ ସ୍ୱାଗତ ଜଣାଇଲେ । ଫଳରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନାର ଗର୍ଭାଧାନ ଘଟିଥିଲା । ସାଇମନ କମିଶନ ରିପୋର୍ଟ ୧୯୩୦ ସାଲର ମଇ ତିରିଶି ତାରିଖରେ ଦାଖଲ ହେଲା, ଯାହା ଓଡ଼ିଶା ପ୍ରଦେଶ ଗଠନପାଇଁ ସ୍ୱୀକୃତି ପ୍ରଦାନ କରିଥିଲା । ଏହି

ରିପୋର୍ଟ ୭.୬.୧୯୩୦ରେ ପ୍ରକାଶିତ ହେଲା । ଏହି କମିଶନର ପ୍ରସ୍ତାବ ଉପରେ ଆଲୋଚନା କରିବାପାଇଁ ୧୨.୧୦.୧୯୩୦ରୁ ୧୯.୧.୧୯୩୧ ପର୍ଯ୍ୟନ୍ତ ପ୍ରଥମ ଗୋଲ୍‌ଟେବୁଲ୍ ବୈଠକ ଲଣ୍ଡନଠାରେ ଅନୁଷ୍ଠିତ ହେଲା । ମଧୁସୂଦନଙ୍କର ସିଦ୍ଧାନ୍ତକ୍ରମେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଲଣ୍ଡନର ପ୍ରଥମ ଗୋଲଟେବୁଲ୍ ବୈଠକରେ ଯୋଗଦେବା ସ୍ଥିର ହୋଇଥିଲା ।

୧୯୩୧ :- ମଧୁସୂଦନଙ୍କଦ୍ୱାରା ଅନୁପ୍ରେରିତ ପାରଳା ମହାରାଜା ୧୬.୧.୧୯୩୧ରେ ଲଣ୍ଡନରେ ପ୍ରଥମ ଗୋଲଟେବୁଲ୍ ବୈଠକରେ ଯୋଗଦେଇ ଓଡ଼ିଶା ପକ୍ଷରୁ ଦାବି ଉପସ୍ଥାପନ କରିଥିଲେ । ଗୋଲଟେବୁଲ ବୈଠକରେ ଏହି ଦାବି ପ୍ରତି ପ୍ରଭାତ ଚନ୍ଦ୍ର ମିତର, ଡକ୍ଟର ମୁଞ୍ଜେ ଏବଂ ସାର୍ ଏ ପର୍ଶୁରାମ ପାତ୍ର ମଧ୍ୟ ସମର୍ଥନ ଜଣାଇଥିଲେ । ପାରଳା ମହାରାଜାଙ୍କର ଦାବି ଉପସ୍ଥାପନା ପରବର୍ତ୍ତୀ ପର୍ଯ୍ୟାୟ ଥିଲା ପ୍ରସ୍ତାବିତ ଓଡ଼ିଶା ସୀମା ନିର୍ଦ୍ଧାରଣ କରିବାପାଇଁ ଏକ କମିଟିର ଗଠନ ଯାହା ପରବର୍ତ୍ତୀ ପର୍ଯ୍ୟାୟରେ ସମ୍ଭବ ହୋଇଥିଲା ।

ପାରଳା ମହାରାଜା ୧୬.୧.୧୯୩୧ରେ ଲଣ୍ଡନରେ ଗୋଲ୍‌ଟେବୁଲ୍ ବୈଠକରେ ଓଡ଼ିଶା ପାଇଁ ଦାବି ଉପସ୍ଥାପନାର ଫଳଶ୍ରୁତି ସ୍ୱରୂପ ୧୩.୯.୧୯୩୧ରେ ଭାରତ ସରକାର ପ୍ରସ୍ତାବିତ ଓଡ଼ିଶାର ସୀମା ନିର୍ଦ୍ଧାରଣ କରିବା ପାଇଁ ସାର୍ ସାମୁଏଲ୍ ଓଡ଼େନାଲ୍‌ଙ୍କର ଅଧ୍ୟକ୍ଷତାରେ ଏକ କମିଟି ଗଠନ କରିଥିଲେ । ଏଥିରେ ଅନ୍ୟ ଦୁଇଜଣ ସଭ୍ୟ ଥିଲେ ଏଚ୍.ଏମ୍.ମେହେଟ୍ଟା ଆଉ ତରୁଣ ରାମ ଫୁକନ । ଏହାଛଡ଼ା ବିହାରୀ, ତେଲ୍‌ଗୁ ଓ ଓଡ଼ିଆ ଗୋଷ୍ଠୀଙ୍କୁ ପ୍ରତିନିଧିତ୍ୱ କରୁଥିଲେ ସଚ୍ଚିଦାନନ୍ଦ ସିହ୍ନା, ସି.ବି.ଏସ୍ ନାରାୟଣ ରାଜୁ ଆଉ ପାରଳାର ରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ଏହି କମିଟି ୧୯୩୧ ସାଲର ନଭେମ୍ବର ୨୩ଠାରୁ ୧୪ ଜାନୁଆରି ୧୯୩୨ ମଧ୍ୟରେ ଜାମସେଦପୁର, ଚାଇଁବସା, ସମ୍ବଲପୁର, ରାୟପୁର, ମେଦିନୀପୁର, ଗୋପାଳପୁର, କାକିନାଡ଼ା ଆଉ କଟକ ପରିଦର୍ଶନ କରି ୪୧୦ ଜଣ ବ୍ୟକ୍ତିଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରିଥିଲେ । ଏହି କମିଟିର ପରିଦର୍ଶନ ପୂର୍ବରୁ ମଧୁସୂଦନ ତାଙ୍କର ବାର୍ଦ୍ଧକ୍ୟ ଜର୍ଜରିତ, ଜୀର୍ଣ୍ଣଶୀର୍ଣ୍ଣ ଶରୀରରେ ଜାମସେଦପୁର ଅଂଚଳକୁ ଯାଇ ପ୍ରସ୍ତାବିତ ଓଡ଼ିଶାରେ ସିଂହଭୂମି ଜିଲ୍ଲାର ମିଶ୍ରଣ ପାଇଁ ଇସ୍ପାତ କାରଖାନାର କର୍ତ୍ତୃପକ୍ଷ ତଥା ଓଡ଼ିଆ ଶ୍ରମିକ ସଂଗଠନ ଜରିଆରେ ପ୍ରବଳ ଜନମତ ସୃଷ୍ଟି କରିଥିଲେ । ୧୯୩୨ ସାଲର ଜାନୁଆରି ପ୍ରଥମ ସପ୍ତାହରେ ଓଡ଼େନାଲ୍ କମିଟିର କଟକ ପରିଦର୍ଶନ ବେଳେ ମଧୁସୂଦନ କଟକର ରେଳ ଷ୍ଟେସନକୁ ଯାଇ କମିଟିକୁ ଭବ୍ୟ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ନିଜର ବାସ ଭବନରେ ଉଦ୍ୟାନମିଳନୀ ଉତ୍ସବ ଆୟୋଜନ କରି କମିଟିକୁ ଅତ୍ୟନ୍ତ ଉଚ୍ଛ୍ୱସିତ ସ୍ୱାଗତ ଜଣାଇଥିଲେ ।

୧୯୩୨ - ଏହି ବର୍ଷ ଓଡ଼େନାଲ୍ କମିଟି ୪.୧.୧୯୩୨ରେ କଟକଠାରେ ତାହାଙ୍କର ପରିଦର୍ଶନ ସମାପ୍ତି କରି ୧୯.୪.୧୯୩୨ରେ ରିପୋର୍ଟ ଦାଖଲ କରିଥିଲେ, ଯାହା ଜୁନ୍ ମାସର ପ୍ରଥମ ସପ୍ତାହରେ ଆପାତତଃ ପ୍ରକାଶ ପାଇଲା । ଏଥିରେ ପାରଳାଖେମୁଣ୍ଡି ଜମିଦାରି ତଥା ଗଂଜାମ ଉପକୂଳ ଅଂଚଳର ମଞ୍ଜୁଷା, ଟିକାଲି, ଇଚ୍ଛାପୁର, ସମେତ ବହୁ ଆକାଂକ୍ଷିତ କ୍ଷେତ୍ର ସହିତ ସିଂହଭୂମି ମଧ୍ୟ ବାଦ୍ ପଡ଼ିଥିଲା । ଏହା ଓଡ଼ିଶାବାସୀଙ୍କୁ ଅତ୍ୟନ୍ତ ଗଭୀର ଅବସାଦ ମଧ୍ୟକୁ ଟାଣି ନେଇଥିଲା ।

ପାରଳା ମହାରାଜା ଅତ୍ୟନ୍ତ ମର୍ମାହତ ହୋଇଥିଲେ । ଏହି ପରିପ୍ରେକ୍ଷୀରେ ପାରଳାଖେମୁଣ୍ଡିର "ଉତ୍କଳ ହିତୈଷିଣୀ" ସଭାର ଏକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ।

ବୟସର ଗୁରୁତ୍ୱ ଦୃଷ୍ଟିରୁ ମଧୁସୂଦନଙ୍କର ଆହ୍ୱାନରେ ତାଙ୍କର ବାସଭବନରେ ୪.୭.୧୯୩୨ ଏବଂ ୨୬.୭.୧୯୩୨ରେ ଦୁଇଟି ସଭା ଅନୁଷ୍ଠିତ ହୋଇ ଭବିଷ୍ୟତର ପନ୍ଥା ନିର୍ଦ୍ଧାରଣ କରାଯାଇଥିଲା ।

ତୃତୀୟ ଗୋଲଟେବୁଲ୍ ବୈଠକ ଲଣ୍ଡନରେ ୧୭.୧୧.୧୯୩୨ଠାରୁ ୨୪.୧୨.୧୯୩୨ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ୨୪.୧୨.୧୯୩୨ରେ ଭାରତ ସଚିବ ସାର୍ ସାମୁଏଲ୍ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନାର ଘୋଷଣା କରିଥିଲେ ।

୧୯୩୩ :- ତିନିଗୋଟି ଗୋଲ ଟେବୁଲ୍ ବୈଠକ ସମାହିତ ହେବାପରେ ଏହାର ନିର୍ଯ୍ୟାସ ଶ୍ୱେତପତ୍ର ଆକାରରେ ୧୮.୩.୧୯୩୩ରେ ପ୍ରକାଶିତ ହେଲା । ଏହା ଥିଲା ଓଡ଼ିଶା ପାଇଁ ଅତ୍ୟନ୍ତ ଦୁଃଖଦ ଘଟଣା । ଏହି ରିପୋର୍ଟରେ ଉଭୟ ପାରଳା ଖେମୁଣ୍ଡି ଓ ଜୟପୁର ଜମିଦାରି ବାଦ୍ ପଡ଼ିଥିବାରୁ ଓଡ଼ିଶା ପ୍ରଦେଶର ଆୟତନ ୩୩୦୦୦ ବର୍ଗମାଇଲ୍‌ରୁ ୨୧୦୦୦ବର୍ଗ ମାଇଲ୍‌କୁ ଖସି ଆସିଲା । ଏହି ଶ୍ୱେତପତ୍ର ପ୍ରକାଶ ପାଇଲାପରେ ସମଗ୍ର ଓଡ଼ିଆ ଜାତି ସ୍ତବ୍ଧହୋଇଯାଇଥିଲା । ପାରଳା ମହାରାଜାଙ୍କ ପାଇଁ ଏହାଥିଲା ଦାରୁଣ ଆଘାତ । ଏଣେ ଶ୍ୱେତପତ୍ର ପ୍ରକାଶ ପାଇଲା ପରେ ବିହାର, ଓଡ଼ିଶା ବିଧାନ କାଉନ୍‌ସିଲ୍‌ରେ ସଚ୍ଚିଦାନନ୍ଦ ସିହ୍ନା ୧୨.୩.୧୯୩୩ରେ ବକ୍ତବ୍ୟ ପ୍ରଦାନ କରି କହିଥିଲେ ଯେ, ସୀମା ନିର୍ଦ୍ଧାରଣ କମିଟିର ସମସ୍ତ ସଭ୍ୟ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରି ମିଶ୍ରଣ ହେବାପାଇଁ ମତ ପ୍ରକାଶ କରିଥିଲେ ମଧ୍ୟ ଶ୍ୱେତପତ୍ରରେ ଏହା ବାଦ ପଡ଼ିବା ଦୁର୍ଭାଗ୍ୟଜନକ । ଏହି ସମୟରେ ବିହାର ଓଡ଼ିଶା ସରକାରଙ୍କ ଅର୍ଥ ସଦସ୍ୟ କନିକା ରାଜା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ବିହାର, ଓଡ଼ିଶା କାଉନ୍‌ସିଲ୍‌ର ସଭ୍ୟ ଲୋକନାଥ ମିଶ୍ର ୨୨.୩.୧୯୩୩ରେ କାଉନସିଲ୍‌ରେ ଏକ ସଂଶୋଧନ ପ୍ରସ୍ତାବ ଆଗତ କରିଥିଲେ । ୧୯୩୩ ସାଲର ଏପ୍ରିଲ୍ ତୃତୀୟ ସପ୍ତାହରେ ମଧୁସୂଦନ କଟକରେ ପାରଳାଖେମୁଣ୍ଡିର ଉତ୍କଳ ହିତୈଷିଣୀ ସଭାର ସହଯୋଗରେ ଏକ ସର୍ବଦଳୀୟ ବୈଠକ ଆହ୍ୱାନ କରିଥିଲେ । ଏଥିରେ ପାରଳା ମହାରାଜା କଂଗ୍ରେସ ସଭାପତି ନୀଳକଣ୍ଠ ଦାସ, ଖଲ୍ଲିକୋଟ ରାଜା ସାହେବ ସତ୍ୟନାରାୟଣ ରାଜଗୁରୁ, ଲିଙ୍ଗରାଜ ପାଣିଗ୍ରାହୀ ପ୍ରମୁଖ ଯୋଗ ଦେଇଥିଲେ । ଦୁର୍ବଳ ସ୍ୱାସ୍ଥ୍ୟ ଯୋଗୁଁ ଲଣ୍ଡନ ଯିବା ମଧୁବାବୁଙ୍କ ପକ୍ଷରେ ସମ୍ଭବପର ନଥିଲା । ତେଣୁ ତାଙ୍କ ପ୍ରେରଣାରେ ପାରଳା ମହାରାଜା ୨୭.୪.୧୯୩୩ରେ ଲଣ୍ଡନ ଯାତ୍ରା କଲେ । ଗଲାବେଳେ କହିଥିଲେ ଯେ, ଯଦି ପାରଳାଖେମୁଣ୍ଡି ଓଡ଼ିଶାରେ ନ ମିଶେ ତେବେ ସେ ଇଂଲଣ୍ଡରୁ ଫେରିବେ ନାହିଁ ।

ଲଣ୍ଡନରେ ଜଏଣ୍ଟ ପାର୍ଲିଆମେଣ୍ଟାରି କମିଟିରେ ସାକ୍ଷ୍ୟପ୍ରଦାନ ପାଇଁ ପାରଳା ମହାରାଜାଙ୍କୁ ଛଡ଼ା ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ, ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ, ଶ୍ୟାମସୁନ୍ଦର ଗନ୍ତାୟତ, ପ୍ରମୁଖ ଉପସ୍ଥିତ ଥିଲେ । ଇଂଲଣ୍ଡରେ ପ୍ରସ୍ତାବିତ ଜଏଣ୍ଟ ପାର୍ଲାମେଣ୍ଟାରି କମିଟିରେ ଭାରତ

ସଚିବ ଲର୍ଡ୍ ଜେଟ୍‌ଲାଣ୍ଡ ଲର୍ଡ୍ ଡେର୍ବି, ଲର୍ଡ୍ ଲୋଥିଆନ, ମେଜର ଅଟଲୀ ଏନ୍ ସରକାର ଆଉ ଜଫୁରୁଲ୍ଲା ଖାନ୍ ସଦସ୍ୟ ରହିଥିଲେ । ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ୩.୭.୧୯୩୩ରେ ଓଡ଼ିଆ ସଭ୍ୟମାନେ ଏହି ଜଏଣ୍ଟ ପାର୍ଲାମେଣ୍ଟାରି କମିଟି ଆଗରେ ଅତ୍ୟନ୍ତ ପ୍ରଭାବଶାଳୀ ଭାବରେ ସେମାନଙ୍କର ସାକ୍ଷ୍ୟ ପ୍ରଦାନ କରିଥିଲେ । ଏହାପରେ ୧୦.୧୯୩୩ରେ ଆନ୍ଧ୍ର ପ୍ରତିନିଧି ଦଳ ସେମାନଙ୍କର ସାକ୍ଷ୍ୟ ପ୍ରଦାନ କରିଥିଲେ ।

ଏଣେ ବିହାର, ଓଡ଼ିଶାର ଅର୍ଥ ସଦସ୍ୟ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଂଜଦେଓ ବିହାର, ଓଡ଼ିଶା କାଉନ୍‌ସିଲ୍‌ରେ ୧୯୩୩ ଆଉ ୧୯୩୪ ସାଲରେ ଓଡ଼ିଶା ପାଇଁ ସ୍ୱତନ୍ତ୍ର ବଜେଟର ଉପସ୍ଥାପନା କଲେ । ଏହି ସ୍ୱତନ୍ତ୍ର ଓଡ଼ିଶା ବଜେଟରେ ବାର୍ଷିକ ବଳକା ଆୟ ୯.୩୪ ଲକ୍ଷ ଥିଲା । ଏଣୁ ନିଅଣ୍ଟିଆ ଅବସ୍ଥାରୁ ମୁକ୍ତ ହୋଇ ସ୍ୱତନ୍ତ୍ର ଓଡ଼ିଶା ସ୍ଥାପନା ପାଇଁ ପଥ ପରିଷ୍କାର ହେଲା । ପରବର୍ତ୍ତୀକାଳରେ ଡକ୍ଟର ହରେକୃଷ୍ଣ ମହତାବ କନିକା ରାଜାଙ୍କର ଏ ଉଦ୍ୟମକୁ ପ୍ରଶଂସା କରିଛନ୍ତି ।

ଓଡ଼ିଶା ପ୍ରଦେଶ ଗଠନ କ୍ରମଶଃ ବାସ୍ତବ ରୂପ ନେବାପାଇଁ ସମ୍ଭାବନା ସୃଷ୍ଟି ହେଲା । ଏହାର ପ୍ରାରମ୍ଭିକ ପର୍ଯ୍ୟାୟରେ ଭାରତ ସରକାର ୨୬.୪.୧୯୩୩ରେ ସାର୍ ଜନ୍ ଅଷ୍ଟିନ୍ ହବାକ୍‌ଙ୍କର ନେତୃତ୍ୱରେ ଓଡ଼ିଶା ପ୍ରାଶାସନିକ କମିଟି ଗଠନ କଲେ । ଏଥିରେ ମଧୁସୂଦନ ଦାସ, ଲକ୍ଷ୍ମୀଧର ମହାନ୍ତି, ବୀରବର ନାରାୟଣ ଚନ୍ଦ୍ର ଧୀର, ଏନ୍.ଆର୍.ନାଇଡୁ, ଡବ୍‌ଲୁ.ଓ.ନିୟୁସାମ୍, ନୀଳମଣି ସେନାପତି, ଲୋକନାଥ ମିଶ୍ର, ଗୌରୀ ଚନ୍ଦ୍ର ଦେବ ପ୍ରମୁଖ ଏହାର ସଭ୍ୟ ରହିଥିଲେ । ଭି.ରାମସ୍ୱାମୀ ଆଇ.ସି.ଏସ୍ ଏହି କମିଟିର ସେକ୍ରେଟାରୀ ଥିଲେ । ଏହି କମିଟି ସମ୍ବଲପୁର, ରାୟପୁର, ଅନୁଗୁଳ, ବ୍ରହ୍ମପୁର, କଳିଙ୍ଗୀ, ଜି.ଉଦୟଗିରି ଓ କଟକ ପରିଦର୍ଶନ କରିଥିଲେ । ନୀଳମଣି ସେନାପତି କହନ୍ତି ଯେ, ମଧୁସୂଦନ ତାଙ୍କର ଜୀର୍ଣ୍ଣସ୍ୱାସ୍ଥ୍ୟ ସତ୍ତ୍ୱେ ଅଧିକାଂଶ ଗସ୍ତ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିଲେ ।

ଏହି କମିଟିର ଶେଷ ସାକ୍ଷ୍ୟ ଗ୍ରହଣ ଅକ୍ଟୋବର ମାସର ଅନ୍ତିମ ପର୍ଯ୍ୟାୟରେ ସମାପ୍ତ ହୋଇଥିଲା । ମଧୁସୂଦନ ତାହାଙ୍କର ଦୁର୍ବଳ ଆଉ କ୍ଷୟଗ୍ରସ୍ତ ସ୍ୱାସ୍ଥ୍ୟସ୍ଥିତିରେ ପରିଭ୍ରମଣ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରି ତାହାଙ୍କର ସ୍ୱାକ୍ଷର ପ୍ରଦାନ କରିଥିଲେ । ଏହି କମିଟି ୬୯ ଜଣ ବ୍ୟକ୍ତିଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରିଥିଲେ । ଏହି କମିଟିର ରିପୋର୍ଟ ୨୦.୧୨.୧୯୩୩ରେ ପ୍ରକାଶିତ ହୋଇଥିଲା ।

୧୯୩୪:- ଏହି ୧୯୩୪ ସାଲର ପ୍ରାରମ୍ଭରୁ ଜାନୁଆରି ମାସରେ ମଧୁସୂଦନ ବାର୍ଦ୍ଧକ୍ୟ ପ୍ରପୀଡ଼ିତ ହୋଇ ଶଯ୍ୟାଶାୟୀ ହୋଇ ରହିଥିଲେ । ୧୬.୧.୧୯୩୪ରେ ଘଟିଥିବା ବିହାର ଭୂମିକମ୍ପ ତାଙ୍କୁ ଦାରୁଣ ଆଘାତ ପ୍ରଦାନ କରିଥିଲା ।

ମଧୁସୂଦନ ଦାସଙ୍କର ମହାପ୍ରୟାଣ ୧୯୩୪ ସାଲର ଫେବ୍ରୁଆରି ୪ ତାରିଖରେ ହୋଇଥିଲା । ମହାତ୍ମାଗାନ୍ଧୀଙ୍କର ହରିଜନ ପଦଯାତ୍ରା ମଇମାସ ୮ ତାରିଖରୁ ପୁରୀଠାରୁ ଆରମ୍ଭ କଲେ । ସେ ତାଙ୍କର ଦ୍ୱିତୀୟ ପଦଯାତ୍ରା ୨୨ ତାରିଖରୁ ବଇରୀ ରେଳଷ୍ଟେସନଠାରୁ ପୁନରାୟ ଆରମ୍ଭ କଲେ । ଗାନ୍ଧିଜୀଙ୍କ ପଦଯାତ୍ରା ଜୁନ୍ ୮ ତାରିଖରେ ଭଦ୍ରକଠାରେ ସମାପ୍ତ ହେଲା ।

ପାରଳା ମହାରାଜା ଓଡ଼ିଶା ପ୍ରଦେଶ ସ୍ଥାପନାର ଅନ୍ତିମ ପର୍ଯ୍ୟାୟରେ ଏହାର ସମାଧାନର ସୂତ୍ର ବାହାର କରିବାପାଇଁ ୨୨.୫.୧୯୩୪ରେ ପୁନର୍ବାର ଲଣ୍ଡନ ଯାତ୍ରା କରି ଇଂଲଣ୍ଡରେ ୮.୧୧.୧୯୩୪ ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ । ଇଂଲଣ୍ଡରେ ୧୯୩୪ ନଭେମ୍ବର ମାସରେ ଭାରତର ସାମ୍ବିଧାନିକ ସଂସ୍କାର ଜଏଣ୍ଟ କମିଟି ଶ୍ୱେତପତ୍ରରେ ଓଡ଼ିଶାର ନିର୍ଦ୍ଧାରିତ ସୀମା ସହିତ ନିମ୍ନଲିଖିତ ଅଞ୍ଚଳ ସଂଲଗ୍ନ କରିବାକୁ ସୁପାରିଶ କରିଥିଲେ । ୧. ଜୟପୁର ଜମିଦାରି, ୨. ପାରଳାଖେମୁଣ୍ଡି ଓ ଜଳନ୍ତରର ମାଳ ଅଞ୍ଚଳ, ୩.ପାରଳାଖେମୁଣ୍ଡି ସହିତ ପାରଳା ଜମିଦାରିର କିଛି ଅଂଶ । ସେହି ନଭେମ୍ବର ମାସରେ ଲର୍ଡ଼ ଲିନଲିଥ୍ ଗୋଙ୍କର ଅଧ୍ୟକ୍ଷତାରେ ଗଠିତ ଜଏଣ୍ଟ ପାର୍ଲିଆମେଣ୍ଟାରି କମିଟି ମଧ୍ୟ ଏଥିପ୍ରତି ସ୍ୱୀକୃତି ପ୍ରଦାନ କରିଥିଲେ । ଏହି ସ୍ୱତନ୍ତ୍ର ବଜେଟରେ ନିଅଣ୍ଟିଆ ହେବା ଫଳରେ କିଛି ଲକ୍ଷ ଟଙ୍କା ବଳକା ରହିଥିଲା ଯାହା ଓଡ଼ିଶା ପ୍ରଦେଶ ଗଠନକୁ ବଳିଷ୍ଠ ସହାୟତା ପ୍ରଦାନ କରିଥିଲା ।

୧୯୩୫:- ବିହାର ଓ ଓଡ଼ିଶା ସରକାର ସ୍ୱତନ୍ତ୍ର ଓଡ଼ିଶା ସ୍ଥାପନା କରିବାପାଇଁ ୧୫.୧.୧୯୩୫ରେ ଏକ ପ୍ରସ୍ତାବ ଗ୍ରହଣ କଲେ ।

ଇଂଲଣ୍ଡରେ ବ୍ରିଟିଶ ସରକାର ଓଡ଼ିଶା ପ୍ରଦେଶ ସ୍ଥାପନା ସଂପର୍କରେ ଭାରତ ସରକାର ତଥା ଅନ୍ୟ ପ୍ରଦେଶମାନଙ୍କର ଏହି ପ୍ରସ୍ତାବର ପ୍ରତିକ୍ରିୟାକୁ ଅପେକ୍ଷା ନକରି ଓଡ଼ିଶା ପ୍ରଦେଶ ସ୍ଥାପନ ସଂପର୍କରେ ଜଏଣ୍ଟ ପାର୍ଲାମେଣ୍ଟାରି କମିଟିର ପ୍ରସ୍ତାବ ଆଧାରରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଭାରତ ସରକାର ୧୯୩୫ ବିଲ୍ ୧.୨.୧୯୩୫ରେ ଉପସ୍ଥାପନ କଲେ । ଏହା ୪.୮.୧୯୩୫ରେ ସମ୍ରାଟଙ୍କର ସ୍ୱୀକୃତି ପ୍ରାପ୍ତ ହେଲା ।

୧୯୩୬:- ସିନ୍ଧୁ ଓ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆବଶ୍ୟକୀୟ ଆଦେଶ ପ୍ରକାଶ ପାଇଲା । ଏହା ପାର୍ଲିଆମେଣ୍ଟର ଉଭୟ ଗୃହର ସମ୍ମତି ଲାଭକଲା । ଲଣ୍ଡନରେ ବ୍ରିଟିଶ ସମ୍ରାଟ ମାର୍ଚ୍ଚ ୩ତାରିଖ ୧୯୩୬ରେ ଭାରତ ସରକାରଙ୍କର ଓଡ଼ିଶା ପ୍ରଦେଶ ଗଠନ ଆଦେଶକୁ ପ୍ରଚାରିତ କଲେ ଏବଂ ୧୯.୩.୧୯୩୬ରେ ଏହା ପ୍ରକାଶିତ ହେଲା ।

ଆସି ପହଞ୍ଚିଲା ଚିର ଆକାଂକ୍ଷିତ ଅଭୀଷ୍ଟ ଦିବସ ୧୯୩୬ ସାଲର ଏପ୍ରିଲ୍ ପହିଲା । ସାଢ଼େ ତିନିଶହ ବର୍ଷର ସ୍ୱାଧୀନତା ହରାଇଥିବା ପରାଧୀନ ଓଡ଼ିଆ ଜାତିର ଭାଗ୍ୟରେ ସୂର୍ଯ୍ୟୋଦୟ ମଧ୍ୟରେ ସ୍ୱତନ୍ତ୍ରତାର ଗୌରବୋଜ୍ଜ୍ୱଳ ରବି ପୁନରାୟ ଉଦିତ ହେଲେ ।

୧୯୩୬ସାଲର ଏପ୍ରିଲ୍ ପହିଲା ନିର୍ବିବାଦରେ ଥିଲା ଏକ ପ୍ରଖର ଉଦ୍ଦୀପନାର ପ୍ରଜ୍ୱଳିତ ସ୍ତମ୍ଭ । ଏପ୍ରିଲ୍ ପହିଲାଦିନ ରେଭେନ୍‌ସା କଲେଜର ମୁଖ୍ୟ ହଲ୍‌କୁ ଓଡ଼ିଶା ଆସେମ୍ବ୍ଲିର ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସାମ୍ବିଧାନିକ ମଞ୍ଚରେ ପରିଣତ କରାଯାଇଥିଲା । ସେହି ଦିବସର ପୂର୍ବାହ୍ନରେ ନବନିଯୁକ୍ତ ଓଡ଼ିଶାର ଗଭର୍ଣ୍ଣର ସାର୍ ଜନ୍ ଅଷ୍ଟିନ୍ ହବାକ୍‌ଙ୍କୁ ବିପୁଳ ଉତ୍ସାହ ଆଉ କରତାଳି ନିନାଦରେ ବିହାରର ମୁଖ୍ୟ ବିଚାରପତି ସାର୍ କୋର୍ଟେନ୍ ଟେରେଲୀ ଶପଥପାଠ କରାଇଥିଲେ । ସେହି ଗୌରବୋଜ୍ଜ୍ୱଳ ଦିବସର ସାୟାହ୍ନରେ ବାରବାଟୀ ଦୁର୍ଗର ପରିସର ମଧ୍ୟରେ ପାରଳା ମହାରାଜା

ଉଜ୍ଜ୍ୱଳ ଆଲୋକରେ ପ୍ରଦୀପ୍ତମାନ ଏକ ଉତ୍ସବର ଆୟୋଜନ କରିଥିଲେ । ହେଲେ ଓଡ଼ିଶା ଇତିହାସରେ ଚିରକାଳ ଲାଗି ଏପ୍ରିଲ୍ ପହିଲା ଚିହ୍ନିତ ହୋଇ ରହିବ ମଧୁସୂଦନଙ୍କ ଅମ୍ଳାନ ଗରିମାମୟ ଅପରାଜେୟ କୀର୍ତ୍ତି ନବ ସ୍ୱତନ୍ତ୍ର ଓଡ଼ିଶାର ସ୍ଥାପନା ଦିବସ ରୂପରେ ।

୧୯୩୭ ସାଲଃ- ୧୯୩୭ ସାଲର ନିର୍ବାଚନରେ କଂଗ୍ରେସ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା, ମାତ୍ର ୧.୪.୧୯୩୭ରୁ ୧୯.୭.୧୯୩୭ ପର୍ଯ୍ୟନ୍ତ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀରୂପେ କାର୍ଯ୍ୟନିର୍ବାହ କରିଥିଲେ ଆଉ ୧୯.୭.୧୯୩୭ରୁ ୭.୧୧.୧୯୩୯ ପର୍ଯ୍ୟନ୍ତ କଂଗ୍ରେସ ସଦସ୍ୟ ବିଶ୍ୱନାଥ ଦାସ ଦ୍ୱିତୀୟ ପ୍ରଧାନମନ୍ତ୍ରୀ ରୂପେ କାର୍ଯ୍ୟ ନିର୍ବାହ କଲେ । ପରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୨୪.୧୧.୧୯୪୧ରୁ ୩୦.୬.୧୯୪୪ ପର୍ଯ୍ୟନ୍ତ ଓଡ଼ିଶାର ପ୍ରଧାନମନ୍ତ୍ରୀ ପଦ ସମ୍ଭାଳିଥିଲେ ।

ଧନ୍ୟଧନ୍ୟ ମଧୁସୂଦନ<br>
ଉତ୍କଳମାତାର ଯୋଗ୍ୟ ନନ୍ଦନ<br>
ଦେଲ ଉତ୍କଳକୁ ନବ ଜୀବନ,<br>
ଶିଖାଇଲ ଲୋକେ ଜାତି ବନ୍ଧନ । (ଫକୀରମୋହନ)



# ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନିକଟକୁ ପତ୍ର

My dear Gopabandhoo,

I enclose some notes on the economic condition in Orissa. You are at liberty to use them in the best way they can be used. The great thing is to induce the men to change the hue of gravitation of these money.

I am anxious for your health. I have grown desperate and may pass away any day. You are the only person with whom I should like to pray in my death bed.

Take care of your health. Orissa is very unfortunate. If Ashutosh had lived he would have made a magnificent thing of this Tannery.

He was personally attached to me and I have lost more than a brother in him.

I commenced public life single handed and it is natural I made mistakes, but I hope you believe that any thing but country's interest was my ruling idea.

Yours ever the same,
**Sd. M. S. Das**

I am enclosing a letter to the Samaj over my signature and its enclosure is your letter. Please see that they are published.

# ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିକଟକୁ ପତ୍ର

**9th June, 1932**

My Dear Rai Saheb,

The Utkal Luminary which illuminated the Indian Firmament has set, and has gone down the horizon. But an observer can see the rich colours reflected in the Western sky.

We all wish to see the great luminary rise once more and give us the dawn of a new national life.

Your have devoted a good deal of your valuable time to direct the attention of the present generation to the ancient literature of the nation. The beautiful colours in the Western sky must be fully appreciated, loved and admired before the youthful mind is aglow with a desire to see the dawn of a new national life.

The honour conferred on you should have come earlier. But you are young and I am sure you will receive higher honours not only from Government but from your nation, who will crown you with ever green laurels while you live and when you leave this world, you will receive a crown of life from your creator for your services to your nation and country.

With best wishes for health, happiness and prosperity.

Yours very Sincerely
**Sd. M.S.DAS**

# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ନିକଟକୁ ପତ୍ର

Mission Road,
Cuttack, B.N. Rly
28th july, 1931

My Dear Gopal,

It is very kind of you indeed to think of my picture in connection with your herculean work which will, as it ought to be your glorious and priceless gift to the Oriya nation, but I do not understand how my photo can fittingly have a place in it. Do you know the best definition of "dirt" ? "Dirt" is matter in the wrong place. Ink is dirt in your shirt, but it is in right place in a book where ink is used in printing. There is ink in the letter, but it is not dirt, but I see a little of it on my finger, then it is dirt.

So, you will see why I do not wish my photograph in the Oriya Webster. But I am surely thankful to you for my good wishes.

Believe me
Yours affectionately,
**Sd. M.S. Das.**

# MODEL QUESTION

IN

ENGLISH

DESIGNED FOR THE USE

OF

# ENTRANCE CANDIDATI

BY

MADHU SUDAN DAS, M.A.
Law Lecturer, Ravenshaw College, Cuttac

*Eighth Edition.*

PART I.

---

BHOWANIPORE:

INTED BY B. M. BOSE, SAPTAHIK SAMBA

*To be had at the Canning Library*

*55 College Street, Ca*

1884.

23^d September 97

TELEGRAMS. HUNTLEY. MEREDITH. GLOUCESTER.

Dear Mr. Das,

I thank you for the revised copy of your note on Orissa. I have also received the beautiful specimen of Cuttack silver which you have so kindly sent me as a remembrance. I never saw a

more artistic piece
of filigree work, and
accept it in the friendly
spirit in which it
is offered. Thereafter I
am sorry that you
should have incurred
the expense on my
account

. Poor Sudra Kemi
now to be suffering
from every calamity
to which a nation
can be subjected, but
I see some signs that
the people of this country
are gradually opening
their eyes to the ruinous
policy pursued by offi-
cial rulers.
Yours sincerely

The Direction of the Brahma to Indradumna Maharaja

(Extracts from Chapter VII of Niladrimohodoya Puran)

1. A directed above during the festival time, the important ceremonies of Jagannath will be performed by the Raja himself & when the Raja will be unable to perform them personally they will be performed by "Agnisharma" (Undivatt) nominated by the Raja as his representative

2 (Extracts from Chapter IX of the Niladri mohodaya)

~~The person to be nominated as~~ as ~~Agni~~sharma" (Undivatt) must undergo the ceremony of investiture of the sacred thread at the age of 6 years & 2 months. He must be always pious; should be a devotee; give his time to the study of "veda" & must not dine in any ones house He shall hold his office until he reaches his 12th year, when he shall be disqualified for his service being considered as a dead body; & if perchance he comes in contact with Jagannath, the body of Jagannath will be considered poluted & the necessary ablution (Mahasnan) should be performed to make the body pure.



VICEREGAL LODGE,
SIMLA.

12th September 1901.

Dear Sir;

I have shown your letter of the 4th Instant and its enclosure to the Viceroy. I have also shown him your telegrams.

It is understood that Mr. Fraser has before him a representation on the subject of the use of Uriya in Sambalpur. When Mr. Fraser's report is received by the Government of India, His Excellency will go into the matter.

With my kindest regards,

Believe me, Yours sincerely,

W. Lawrence

The Hon'ble M.S.Das.




THE SHRUBBERY, DARJEELING

The 7th July 1903.

Dear Sir,

His Honour desires to thank you for the silver statuette you have kindly sent and to say that he considers it a delightfully excellent piece of work.

I enclose a cheque for 25/- which please acknowledge.

Yours truly.

E. J. Hammond

To

M. S. Das Esq.

Registered No.A.D—85

ଉଠରେ ଉଠରେ ଉତ୍କଳ ସନ୍ତାନ ଉଠିବୁ କି କେବେ ଜନେ

# The Oriya

ପୁଣି ଗୌରବ ପୂରବ ମହିମା ପାଇବ କି. ତୋର ମନେ

Vl 3 } Cuttack, Wednesday, February 4, 1920 { No. 9

'ଦି ଓଡ଼ିଆ' କାଗଜର ପ୍ରଥମ ପୃଷ୍ଠା

IN THE COURT OF THE DISTRICT JUDGE OF CUTTACK

**The humble petition of**

**Madhu Sudan Das of Town Cuttack**

**Most Respectfully sheweth:-**

1. That your petitioner resides within the jurisdiction of this Court.

2. That your petitioner has suffered loss and incurred liabilities to the extent of Rs. 1,80,000/- approximately.

3. That the amount and particulars of all pecuniary claims against your petitioner together with the names and residences- so far as they are known to or can by the exercise of reasonable care and diligence be ascertained- are set forth in schedule A annexed herewith.

4. That your petitioner is unable to pay his debts.

5. That in Execution Case No. 87 of 1296 of the Court of Subordinate Judge of Cuttack (in which the petitioner is the judgement debtor and the Executors of Nanda Kumar Bose's estate are the decree-holders) an order of attachment of petitioner's properties was made to realise the sum of Rs. 16,436-3-0 and that order is subsisting now.

6. That in Execution Case No. 296 of 1925 in the Court of Subordinate Judge of Cuttack, the petitioner's residence was sold in auction on 21st October 1925. The petitioner now occupies a part of the house as a tenant, the other part being occupied by the Deputy Registrar of Co-operative Societies.

7. That on 7th March 1927 the auction-purchaser took possession of the Utkal Tannery of which the petitioner was the proprietor.

8. That a general description of the property which your petitioner is in possession of and their approximate value, the place at which such property is to be found are truly set forth in a schedule annexed hereto.

9. That your petitioner is willing to place at the disposal of the Court all such property save in so far as it includes such items as are exempted by the Code of Civil Procedure, 1908.

10. That your petitioner has not on any previous occasion filed any petition to be adjudged an insolvent.

11. That in the circumstances set forth above, your petitioner humbly prays that your petitioner may be adjudged an insolvent under the provision of Act V of 1920 and such orders may be passed as the Court may deem fit and proper.

And for this your petitioner as in duty bound shall ever pray.

**(Verification)**

I Madhu Sudan Das do hereby declare that what is stated herein in paras 1, 2, 3, 4, 5, 6, 7, 8, 9, 10 are true to my knowledge.
I sign this verification at my residence in [illegible] Road Cuttack.

---

ମଧୁସୂଦନ ଦେବାଳିଆ ହେବାପାଇଁ ଦାଖଲ ହୋଇଥିବା ଆବେଦନର ନକଲ ।

# ପାରଳାଖେମଣ୍ଡିର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମଧୁବାବୁଙ୍କ ପାଖକୁ ଲେଖିଥିବା ଚିଠି

P & O.S.N.Co.
S.S. Mooltan
2.5.33

My dear Mr. Das,

I just had a talk with your friend the Chief Justice of Bihar and Orissa. He has nothing but all praise to you and all of us. I am lucky in having on board this steamer my sincere old friends and colleagues that had worked with me in the first round table conference, Sir Henry Gidney M.L.A. and N.M Joshi M.L.A. and the Dewan of Sangli, and glad to say that they are very very sympathetic indeed. As I have got a Memorandum on Paralakimidi printed, dealing with all aspects, I have circulated a copy to each one of them. I have to give one to the chief justice also, whom I find very sympathetic and a great friend of the Oriyas. I hope you have been able to go up to Simla and see your friends. The voyage so far has been very pleasant and comfortable and unlike the other two P & O boats I have travelled by. The food and attention on this one is infinitely better. So much so that all of us feel that one can live without our own food though we have our own cooks here and separate cooking accomodation is available. Until my permanent residence is fixed up, my address in London will be C/o. Thomas Cooke and Sons limited on the imperial Banks of India.

Hope you are feeling fit. With best regards.

Yours sincerely,
**Sd. K.C. Gajapathi.**

## ପାରଳାଖେମଣ୍ଡିର ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମଧୁବାବୁଙ୍କ ପାଖକୁ ଲେଖିଥିବା ଆଉ ଏକ ଚିଠି

PARLAKIMIDI
Ganjam District
28.9.1933

My dear Mr. Das,

Many thanks for your note. As I have been rather busy since my return from the West, and now that I am without a Dewan as Mr. Rath has gone on leave, I could not write to you earlier. With all the worst formidable difficulties, I must say, Oriya work was carried to our entire satisfaction and from what we could gather while there and after my return to india. I have every reason to believe that, the boundaries of Orissa as was published in the white paper recommendations will be enlarged and large portions of Jeypore of Vizag District as well as of Paralakimidi and other contiguous parts of this district will be joining in. On my way to Great Britain I had quite a lot to see of the chief justice of Bihar and Orissa and the Philips in London. I hope you will find it convenient to come here when you visit this district next month with the Committee.

With best regards.

Yours sincerely,
**Sd. K.C. Gajapathi.**

**P.S.**

I have not attempted to submit my views before your committee as I am not interested in its work so long as I do not definitely know what the boundaries of Orissa is going to be.

**Sd. K.C. Gajapathi.**

# Extracts of the speeches delivered by Madhusudan Das in the Central Legislature

## Salt is vital

" Salt tax in India has always been considered as a blot on the fiscal policy of Government of India. Salt is not a luxury. Being a poor man unable to buy salt, If he takes a little saline dust (where saline earth is found) he is sent to prison for three to six months and the man who sends him to prison gets a reward; whereas if a cow impelled by hunger to trespass on a farm, the cow is only taken into the pound and not sent to jail. Here is the enormity of the tax."

*(From his speech delivered on floors on the Central Legislature on 7-3-1916).*

## Blood Suckers

" Government had an exhibition in calcutta to show the industrial products of Germany and Austria which found their way to India. Austria and Germany have been sucking the blood of India like the Americans, but while it sucks human blood, actually fans its victim with its wings. It has been discovered that they are blood suckers."

*(From his speech delivered on floors on the Central Legislature on 21-3-1916).*

## Duty of a Legislator

"At a psychological moment like this, if we realise the importance, the far-reaching significance of this resolution and imagine to ourselves that outside this Chamber there are millions

